# ହନୁମାନ ଚରିତାମୃତ

ହନୁମାନ ଚରିତାମୃତ
ରଚନା:
କବି ତିଳକ ଡଃ ସୁରେଶ ଚନ୍ଦ୍ର ବରାଡ଼
ଗ୍ରା/ପୋ:ହରିହରପୁର, ଭାୟା:ଶରଣକୁଳ,
ଜିଲ୍ଲା:ନୟାଗଡ଼
ଓଡ଼ିଶା, ପିନ୍:୭୫୨୦୮୦
ଦୂରଭାଷ:୯୪୩୭୯୫୮୦୭୭

ପ୍ରକାଶକ :
ଗୁରୁକୁଳ ପବ୍ଲିସିଙ୍ଗ ହାଉସ
ଶରଣକୁଳ, ଜିଲ୍ଲା:ନୟାଗଡ଼
ଓଡ଼ିଶା, ପିନ୍:୭୫୨୦୮୦
ଦୂରଭାଷ:୯୪୩୭୯୫୮୦୭୭

ମୁଦ୍ରଣ, ପ୍ରଚ୍ଛଦ ଓ ପରିପାଟୀ
ଜଗନ୍ନାଥ ପ୍ରିଣ୍ଟିଙ୍ଗ୍ ପ୍ରେସ୍
ଶରଣକୁଳ, ନୟାଗଡ଼
ମୋ-୯୮୫୩୨୫୨୮୪୩,
ପ୍ରଥମ ପ୍ରକାଶ:
୨୦୨୨ ମସିହା
ଛପା ସଂଖ୍ୟା:
୧୦୦୦
ମୂଲ୍ୟ:
ଟ.୩୦୦.୦୦
(ତିନିଶହ ଟଙ୍କା ମାତ୍ର)


*Hanuman Charitamruta*
Writer:
Kabi Tilak Dr.Suresh Chandra Barad
AT/PO:Hariharpur,Via:Sarankul
DIST:Nayagarh,
ODISHA, 752080
Mob: 9437958077

Publisher:
Gurukula Publishing House
Sarankul, DIST:Nayagarh,
ODISHA, 752080
Mob: 9437958077

Printing, Cover Design:
Jagannath Printing Press
Sarankul, Nayagarh
Mob: 9853252843
1ST EDITION:
Year 2022
Copy:
1000
Price:
Rs.300/-
(Three Hundred Rupees only)


ISBN : 9789394422063

୨



# ଗୁରୁଦେବଙ୍କ ଶ୍ରୀମୁଖରୁ ..........

ସକାରାତ୍ମକ ଅନ୍ୱେଷୀ ମାନସିକତା ସର୍ଜନଶୀଳତାର ଧାରକ । ଆହରଣ-ସମୀକରଣ ଧୂରୀଣ ଡଃ ସୁରେଶ ଚନ୍ଦ୍ର ବରାଡ଼ ବିଦ୍ୟାର୍ଣ୍ଣବଙ୍କ ମୌଳିକ ଅବବୋଧ ଓ ବ୍ୟାଖ୍ୟାନ ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞା-ସମୃଦ୍ଧ । ବୃତ୍ତି ଓ ପ୍ରବୃତ୍ତିରେ ସମନ୍ୱୟ ରକ୍ଷା କରି, ନିଷ୍ଠାର ସହିତ ସମାଜର ବିବିଧ କ୍ଷେତ୍ରରେ ଉତ୍ସର୍ଗୀକୃତ ସେବା ନିମଗ୍ନ ନିଜସ୍ୱ ବଳିଷ୍ଠ ପ୍ରତିଭାରେ ମୂର୍ତ୍ତିମନ୍ତ ସୁଶିକ୍ଷକ, କବି, ଜଗନ୍ନାଥ ସଂସ୍କୃତିର ପ୍ରଚାରକ, ପ୍ରସାରକ ଏବଂ ଗବେଷକ, ଦକ୍ଷ ସଂଗଠକ, ସମାଜ ସଚେତକ, ସଂସ୍କାରକ, କବି ତିଳକ ଡଃ ବରାଡ଼ ଏକ ଅନନ୍ୟ ପ୍ରତିଭୂ ।

ଡଃ ବରାଡ଼ଙ୍କ ସର୍ଜନାତ୍ମକ ପ୍ରତିଭାର ଦ୍ୟୋତକ ସୃଷ୍ଟି ଗୁଡ଼ିକ ହେଉଛି-'ଭାଗବତ ଶତକ', 'ମହିମା ମୟ ଲଡୁବାବା', 'ଲଡୁବାବା ସ୍ତୁତିମାଳା', 'ଲଡୁବାବା ବିଳାସ', 'ପୁରୁଷୋତ୍ତମ ସ୍ତବ', 'ନୀଳାଚଳ କ୍ଷେତ୍ର ମାହାତ୍ମ୍ୟ( କପିଳ ସଂହିତା)', 'ବିପ୍ଳବ', 'କୁସୁମୀ', 'ଶ୍ରୀଜଗନ୍ନାଥ ବେଶ ପରଂପରା:ଏକ ଅଧ୍ୟୟନ', 'ଶ୍ରୀଜଗନ୍ନାଥ ଜ୍ଞାନ ମଣ୍ଡଳ' ଇତ୍ୟାଦି ।

ପୌରାଣିକ ତଥ୍ୟ ଓ ପ୍ରଚଳିତ କିମ୍ବଦନ୍ତୀକୁ ଭିତ୍ତିକରି ନିଜସ୍ୱ ଚେତନାର ସ୍ପର୍ଶରେ ସେ ରୂପ ଦେଇଛନ୍ତି ତାଙ୍କର ସୃଷ୍ଟିସମ୍ଭାରକୁ ।

ଏତଦ୍ ଭିନ୍ନ ଶିଶୁ କବିତା ସଂକଳନ 'ବିପ୍ଳବ' ଏକ ସମାଜ ସଚେତନ ଧର୍ମୀ ଅସାଧାରଣ ସୃଷ୍ଟି ।

ନିଜସ୍ୱ ଜନ୍ମମାଟିର ଆକର୍ଷଣରେ ବିଭୋର କବି ତିଳକ ଡଃ ବରାଡ଼ଙ୍କର ମାନସ ସନ୍ତାନ 'କୁସୁମୀ' ଭ୍ରମଣାନୁଭୂତିର ଏକ ଆତ୍ମିକ ପରିପ୍ରକାଶ ।

କବି ଶ୍ରଦ୍ଧେୟ ଡଃ ସୁରେଶ ଚନ୍ଦ୍ର ବରାଡ଼ଙ୍କର ସଦ୍ୟ ପ୍ରକାଶିତ ପୌରାଣିକ କାବ୍ୟ 'ହନୁମାନ ଚରିତାମୃତ' ପାଠ କରି ମୁଁ ଅତ୍ୟନ୍ତ ପ୍ରୀତ । ଆଳଙ୍କାରିକ ରୀତିରେ ରଚିତ ଏହି କାବ୍ୟର ଶବ୍ଦବିନ୍ୟାସ ମନମୁଗ୍ଧକର । ରାମାୟଣର ସୁନ୍ଦରାକାଣ୍ଡ ଭିତ୍ତିରେ ରଚିତ ଏହା ଏକ ପୂର୍ଣ୍ଣାଙ୍ଗ ରସାଳ କାବ୍ୟ ।

ଜୀବନର ଅନ୍ୟତମ ବ୍ରତ ରୂପେ ଗ୍ରହଣ କରିଥିବା ଡଃ ବରାଡ଼ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାରକ, ଆନ୍ତର୍ଜାତୀୟ ଚାରଣ ଗୋଷ୍ଠୀ, ପୁରୀର ଯୁଗ୍ମ ସଂପାଦକ ଅଧିକରୁ ଅଧିକ ତତ୍ତ୍ୱଦର୍ଶୀ ହୋଇ ନିଜସ୍ୱ ଲେଖନୀକୁ ଅବ୍ୟାହତ ରଖି ମନନଶୀଳତାରେ ବ୍ରତୀ ରୁହନ୍ତୁ, ଏହାହିଁ ପୀଠାଧୀଶ ଶ୍ରୀ ଶ୍ରୀ ଲଡୁକେଶ ମହେଶଙ୍କ ପଦାବ୍ଜରେ ନିବେଦନ ।

ତାଙ୍କର କାବ୍ୟ ସମ୍ଭାର ପାଠକୀୟ ଆଦୃତି ଲାଭ କରୁ ଏବଂ କବି ଯଶସ୍ୱୀ ହୁଅନ୍ତୁ-ଏତିକି କାମନା ।

ଡ.ଗୋବିନ୍ଦ ଚନ୍ଦ୍ର ଦାଶ
ପ୍ରାଧ୍ୟାପକ ଓଡ଼ିଆ ଭାଷା ସାହିତ୍ୟ ବିଭାଗ
ନୟାଗଡ଼ ସ୍ୱୟଂ ଶାସିତ ମହାବିଦ୍ୟାଳୟ
ନୟାଗଡ଼



## ବାବାଙ୍କ ଆଶୀର୍ବଚନ

ଓଁ ଜଗନ୍ନାଥାୟ ନମଃ

ଅଖିଳ କୋଟି ବ୍ରହ୍ମାଣ୍ଡ ନାୟକ ସାମବେଦ ପ୍ରିୟ ଋଷିଗଣ ବନ୍ଦ୍ୟ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଅପାର୍ କରୁଣା, ପିତା ଶ୍ରୀ ଗୋବିନ୍ଦ ବରାଡ଼ ତଥା ମାତା ପଦ୍ମାଙ୍କର୍ କୃପାପ୍ରାପ୍ତ ଗର୍ଭୋତ୍ପନ୍ନ ଶ୍ରୀ ସୁରେଶ ଚନ୍ଦ୍ର ବରାଡ଼, ଆପଣଙ୍କର୍ 'ହନୁମାନ ଚରିତାମୃତ' ଶୀର୍ଷକ ମହାର୍ଘ ଗ୍ରନ୍ଥ ସମନଯୋଗ ଆମୂଳଚୂଳ ଅଧ୍ୟୟନ କରିବା ସୁଯୋଗ ଲାଭ୍ କରି ଭକ୍ତରାଜ ହନୁମାନଙ୍କର୍ ଚରିତାମୃତ ଆସ୍ୱାଦନ କରିବାର୍ ସୌଭାଗ୍ୟ ଲାଭ୍ କରି ନିଜକୁ ଧନ୍ୟ ମନେ କରୁଛି ।

ଆଶା କରେ କି ପ୍ରାଚୀନ ଛନ୍ଦୋବଦ୍ଧ କବିତାର୍ ରୂପନେଇଥିବା ଏହି ଗ୍ରନ୍ଥ, ସୁଖପାଠ୍ୟ ତଥା ସୁହୃଦ୍ୟ ହୋଇ ସକଳ ଜନମାନସକୁ ଅମୃତ ଆସ୍ୱାଦନ କରାଇବାରେ ସୁଅବସର୍ ପ୍ରଦାନ କରି ଭବସାଗର୍ ପାର୍ ହେବା ପାଇଁ ପାଥେୟ ଯୋଗାଇ ଦେବ । ତେଣୁ କରି ପଣ୍ଡିତ ମହାଶୟଙ୍କର୍ ଏ ମହାନ ରସପରିବେଷଣ ଶୈଳୀ ମୁକ୍ତିକାମୀ ଉତ୍କଳୀୟ ଭକ୍ତବୃନ୍ଦଙ୍କର୍ ଜୀବନ ଗାଥାକୁ ସରସ ସୁନ୍ଦର୍ ମଧୁମୟ କରି ଗଢ଼ିତୋଳି ବିଭୁ ପଦାରବିନ୍ଦରେ ନିଜକୁ ସମର୍ପଣ କରିବାର୍ ଅପୂର୍ବ ସୁଯୋଗ ସୃଷ୍ଟି କରିବ ।

॥ଇତି॥

ଅକିଞ୍ଚନ

ଭାଗବତ ସୌରଭ୍ ନିର୍ବାଣ ଭଗବାନ ଦାସ
(ଉଦାସିନ)

ଭାଗବତ ସୌରଭ୍ ନିର୍ବାଣ ଭଗବାନ ଦାସ(ଉଦାସିନ) ମହାରାଜ





ଶ୍ରୀଯୁକ୍ତ ସତ୍ୟନାରାୟଣ ପ୍ରଧାନ
ମାନ୍ୟବର ବିଧାୟକ, ରଣପୁର

# ଅଭିମତ

ହରିହର ପୁର ନିବାସୀ କବି ତିଳକ ଡଃ ସୁରେଶ ଚନ୍ଦ୍ର ବରାଡ଼ଙ୍କ ଲିଖିତ ଛନ୍ଦୋବଦ୍ଧ କାବ୍ୟ 'ହନୁମାନ ଚରିତାମୃତ' ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ମୋ ନିର୍ବାଚନ ମଣ୍ଡଳୀର ଅଧିବାସୀ ତଥା ମୋ ନିର୍ବାଚନ ମଣ୍ଡଳୀସ୍ଥ ଲୋକ ନୋଡ଼ାଲ ବିଦ୍ୟାପୀଠ, ପଞ୍ଚିରିଡା ମାନପୁରରେ ଶିକ୍ଷକତା କରୁଥିବା ଡଃ ବରାଡ଼ ଜଣେ ବହୁ ପ୍ରତିଭାର ଅଧିକାରୀ ବ୍ୟକ୍ତିତ୍ୱ । ସେ ଏକାଧାରରେ ଜଣେ ଛାତ୍ର ବତ୍ସଳ ଶିକ୍ଷକ, ପରିବେଶବିତ, କବି, ଗବେଷକ ଓ ଜଗନ୍ନାଥ ସଂସ୍କୃତି ପ୍ରଚାରକ, ପ୍ରସାରକ ତଥା ଗବେଷକ ଅଟନ୍ତି । ତାଙ୍କ ରଚିତ 'ଲଡୁବାବା ବିଳାସ', 'ବିପ୍ଳବ' ଓ 'ପୁରୁଷୋତ୍ତମ ସ୍ତବ' ପଢିବାର ସୁଯୋଗ ପ୍ରାପ୍ତ କରିଥିଲି । ସେ ଅନେକ ଗ୍ରନ୍ଥ ରଚନା କରି ମୋ ନିର୍ବାଚନ ମଣ୍ଡଳୀର ଗୌରବ ବୃଦ୍ଧି କରନ୍ତୁ । ପ୍ରକାଶ ପାଉଥିବା ହନୁମାନ ଚରିତାମୃତ ନିଶ୍ଚୟ ଓଡ଼ିଶାର ଭକ୍ତ ପାଠକମାନଙ୍କ ମଧ୍ୟରେ ଆଦୃତି ଲାଭ କରିବ ଏତିକି ମହାପ୍ରଭୁ ଲଡୁକେଶ ମହେଶଙ୍କ ପଦ କଞ୍ଜରେ ନିବେଦନ ।

(ସତ୍ୟନାରାୟଣ ପ୍ରଧାନ)
ବିଧାୟକ, ରଣପୁର ନିର୍ବାଚନ ମଣ୍ଡଳୀ
ଓଡ଼ିଶା ସରକାର, ଭୁବନେଶ୍ୱର



# ଅମୃତ ଅନୁଭବରୁ ଦ୍ୱିପଦ........

ସରସ-ସୁନ୍ଦର, ସରଳ-ସାବଲୀଳ ଭାଷାରେ ହନୁମାନ ଚରିତାମୃତ ସମ୍ପୂର୍ଣ୍ଣ ସମ୍ପନ୍ନ । ଏହା ବିଭିନ୍ନ ଛାନ୍ଦ ତଥା ରାଗ ରାଗିଣୀରେ ସୁରଚିତ । ଠାଏ ଠାଏ ପୂର୍ବ ପୂର୍ଣ୍ଣ ଉପାଧା ମିଳନର ପଦ ଗୁଡ଼ିକ ବେଶ ଶ୍ରୁତି ମଧୁର । କହିବାକୁ ଗଲେ ଠିକେ ଠିକେ ଆଦ୍ୟାନୁପ୍ରାସ, ପ୍ରାନ୍ତ୍ୟାନୁପ୍ରାସ ଦେଇ ଛାନ୍ଦଗୁଡ଼ିକୁ ଗତିଶୀଳ କରାଇବାରେ କବି ବେଶ ଧୂରନ୍ଧର । ଉକ୍ତ କାବ୍ୟଟି ବ୍ୟାକରଣ ବିଭାଗର ଚୌତିଶା, ଅବନା ଏକାଦଶା, ଯମକ, ସିଂହାବଲୋକନ ଆଦି ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରରେ ବିମଣ୍ଡିତ । କବି ପ୍ରଥମରୁ ମା' ବିଦ୍ୟାଦାତ୍ରୀ ସରସ୍ୱତୀଙ୍କ ବନ୍ଦନାରୁ କାବ୍ୟଟି ଆରମ୍ଭ କରିଛନ୍ତି ସତ; କିନ୍ତୁ ସେଥିରେ ଆଶୀର୍ବାଦ ଭିକ୍ଷା କରିଛନ୍ତି ଅଗ୍ରପୂଜ୍ୟ ଶ୍ରୀ ଶ୍ରୀ ଗଜାନନ, ଶ୍ରୀ ଶ୍ରୀ ହନୁମାନ ଓ ନିଜ ଗ୍ରାମ ତଥା ଗ୍ରାମ ଚତୁଃପାର୍ଶ୍ୱରେ ବିରାଜମାନ କରୁଥିବା ଦେବଦେବୀଙ୍କ ଠାରୁ ।

ବାସ୍ତବରେ କାବ୍ୟଟିକୁ ପଢୁଥିଲେ ପଢୁଥିବ । ଉକ୍ତକାବ୍ୟଟିର ସଂଶୋଧନ କାର୍ଯ୍ୟ ତୁଲାଇବା ପାଇଁ ଅଗ୍ରଜତୁଲ୍ୟ କବି ତିଳକ ଡ.ସୁରେଶ ଚନ୍ଦ୍ର ବରାଡ଼ ମୋତେ ଦେଇଥିବା ଯୋଗୁଁ ମୁଁ ବିଶେଷ ଆହ୍ଲାଦିତ । କାରଣ ରଥ ଦେଖା ସହ କଦଳୀ ବିକା କାମ ମୋର ହୋଇଛି । ହନୁମାନଙ୍କ ଜନ୍ମ, ଅଲୌକିକ ଲୀଳା, ଭକ୍ତିପୂର୍ଣ୍ଣ ଶ୍ରୀରାମଙ୍କ କାର୍ଯ୍ୟ, ସୁଚିନ୍ତିତ ବିଚାର, ପୂଜ୍ୟପୂଜା, ନିର୍ଣ୍ଣାୟକ ନିଷ୍ପତି, ଅସୁର ନିଧନ ପୂର୍ବକ ଭୂ-ଭାରା ଲାଘବ ତଥା ବିଭୁ ପ୍ରେମରେ ତଲ୍ଲୀନ ଚରିତ ଗୁଡ଼ିକ ମୋତେ ବହୁତ ଖୁସି ଦେଇଛି ଉକ୍ତ ଗ୍ରନ୍ଥଟିର ସଂଶୋଧନ କାର୍ଯ୍ୟ ବେଳେ । ଡ.ବରାଡ଼ଙ୍କ କାବ୍ୟ ସମ୍ଭାର ମଧ୍ୟରୁ 'ହନୁମାନ ଚରିତାମୃତ' ନିଶ୍ଚିତ ଶ୍ରେଷ୍ଠତ୍ୱ ଲାଭ କରିବ ।

ତାଙ୍କର ଭକ୍ତିଭାବ ପରାକାଷ୍ଠା, ନିତ୍ୟ ସ୍ୱାଧ୍ୟାୟ, ବହୁ ଶାସ୍ତ୍ର ଦର୍ଶନ-ପଠନ ଓ ପାଠନ, ତନ-ଧନ-ମନଲଗା ଶ୍ରମର ସାକାର ରୂପ ମାନସ ସନ୍ତାନ ହେଉଛି-'ହନୁମାନ ଚରିତାମୃତ' । ପ୍ରତିଟି ପଦ ଅମୃତମୟ-ଯୁକ୍ତିଯୁକ୍ତ-ତଥ୍ୟ ସମ୍ବଳିତ-ପୁରାଣ ସମ୍ବଳିତ ଓ ସଂସ୍କାର ଆଧାରିତ ।

ପ୍ରିୟ ପାଠକେ! ଉକ୍ତ ଗ୍ରନ୍ଥ ପଠନ କରି ଶ୍ରୀରାମ ତଥା ଶ୍ରୀ ହନୁମାନଙ୍କର ଆଶୀର୍ବାଦ ପ୍ରାପ୍ତ ହେବା ପୂର୍ବକ ବହୁ କଥା, ଗାଥା, ପୁରାଣକୁ ଜାଣନ୍ତୁ ।

ସ୍ରଷ୍ଟାଙ୍କ ସମ୍ବନ୍ଧରେ କ'ଣ ବା କହିବି-

ଆଳସ୍ୟ ହାରିଛି ବିଳାସ ଲୁଚିଛି
ତୁମ ପାରିବାର ଦେଖି,
କରତବ୍ୟ ପଥ ଉଜ୍ଜଳ ଡାଉଳ
ଚନ୍ଦ୍ର ଦିବାକର ସାକ୍ଷୀ ।୧ ।

ଧରି ଜଗନ୍ନାଥ          ପଥ ପରେ ପଥ
 ଚାଲୁଛ ଚାଲିବ ଭାଇ,
ଝରୁଛି ଝରିବ          କାବ୍ୟାମୃତ ତବ
 ସୂଚେଇ ଦେଲେଣି ସାଇଁ ।୨ ।
କାର୍ଯ୍ୟ ସରେ ନାହିଁ          ବେଳ ଅଣ୍ଟେ ନାହିଁ
 ଡହକ ବିକଳ ପ୍ରାଣ,
ତାହା କେ କରିବ          ଯାହା ନ କରିଲେ
 ପ୍ରତ୍ୟେକ୍ଷେ ଭାସେ ପ୍ରମାଣ ।୩ ।
ସଞ୍ଚମିତ ମନ-          ମୀନ କାବ୍ୟ-ନୀରେ
 ସନ୍ତରଣେ ବ୍ୟାକୁଳିତ,
ହଟାଇ ଦୁର୍ଗତି          ଭରିବ ସୁଗତି
 ସୁସ୍ଥ ସମାଜ ପାଇଁ ତ ।୪ ।
ପ୍ରକମ୍ପିତ ହେଉ          କରର କଲମ
 କଳୁଷ-କାଳିମା କାଟି,
ଭରିଦେଇ ଯାଉ          ହୃଦେ ପ୍ରୀତି-ନୀର
 ସାମାଜିକ ପରିପାଟୀ ।୫ ।
ତବ ସାଥ ଲଭି          ଶିଖି ମୁଁ କରିବି
 ଛଡ଼ାଇଛି ଯାହା ଯାହା,
ଆନକେ କରିବ          ବିଭୂ କୃପା ହେଲେ
 କରିବି ମୁଁ ତାହା ତାହା ।୬ ।

ପରିଶେଷରେ ପୀଠାଧୀଶ ଶ୍ରୀ ଶ୍ରୀ ଲଡୁକେଶ ମହେଶଙ୍କ ପାଦପଦ୍ମରେ ଏତିକି ପ୍ରାର୍ଥନା କରେ କି  ମୋର ଅଗ୍ରଜ ପ୍ରତିମ ଡଃ ବରାଡ଼ଙ୍କ ଲେଖନୀ ଚଳଚଞ୍ଚଳ ହୋଇ ଅନେକ ଆଧାତ୍ମିକ କାବ୍ୟ କବିତା ରଚନା କରି ବାଣୀ ଭଣ୍ଡାରକୁ ଋଦ୍ଧିମନ୍ତ କରୁ ।

।।ଇତି।।

କବି କଲ୍ଲୋଳ ଗୋଦାବରୀ ବସନ୍ତିଆ
ଏମ.ଏ.(ଓଡ଼ିଆ)
ଶିକ୍ଷକ, ନାରାୟଣ ହାଇସ୍କୁଲ, ଶରଣକୁଳ



# ସୃଷ୍ଟି ଓ ସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ........

କରୁଣାର ବରୁଣାଳୟ ପ୍ରଜାନୁରଞ୍ଜନ ଭକ୍ତ ହୃଦ ଚନ୍ଦନ ଯୋଗୀଜନ ବନ୍ଦନ, ଜଗଦ୍ ବନ୍ଦନ କୌଶଲ୍ୟା ହୃଦ ଚନ୍ଦନ ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କର ଚରିତ ବର୍ଣ୍ଣନ ରାମାୟଣ ଏକ ରସାଳ କାବ୍ୟ । ରାମାୟଣରେ ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ଶ୍ରୀରାମଙ୍କ ଗାଥା ଯେମିତି ଅମୃତମୟ, ସେଥିରେ ବର୍ଣ୍ଣିତ ଭକ୍ତକୁଳ ତିଳକ ମଙ୍ଗଳ ମୂରତି ଶଙ୍କଟମୋଚନ ବଜରଙ୍ଗବାଲୀ ମହାବୀର ହନୁମାନଙ୍କର ଚରିତ ସେମିତି ପୂତ ପବିତ୍ର ଓ ଅମୃତମୟ । ଶିବାବତାର ପରମବୈଷ୍ଣବଙ୍କର ମହିମା ବର୍ଣ୍ଣିତ ରସସିକ୍ତ କାବ୍ୟ 'ହନୁମାନ ଚରିତାମୃତ' ଓଡ଼ିଆ ସାହିତ୍ୟ ପାଇଁ ଏକ ମାଇଲଖୁଣ୍ଟ ହେବ ଏଇ ଦୃଢ଼ ବିଶ୍ୱାସ ମୋର ରହିଛି ।

ମୋର ଅଗ୍ରଜ ପ୍ରତିମ କବି ତିଳକ ଡଃ ସୁରେଶ ଚନ୍ଦ୍ର ବରାଡ଼(ମୋର ଅତି ପ୍ରିୟ ସୁର ଭାଇ) ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ଏକାଧାରରେ ଜଣେ ଛାତ୍ରବତ୍ସଳ ଆଦର୍ଶ ଶିକ୍ଷକ, ପରିବେଶବିତ୍, ସୁସଂଗଠକ, ଅନୁବାଦକ, ଜୀବନୀ ଲେଖକ, ସଂଗ୍ରାହକ, ଆଲୋଚକ, ସମାଲୋଚକ, କବି, ଜଗନ୍ନାଥ ସଂସ୍କୃତିର ପ୍ରଚାରକ, ପ୍ରସାରକ, ସଂସ୍କାରକ ଏବଂ ସର୍ବୋପରି ଜଣେ ଗବେଷକ ଅଟନ୍ତି । ଜଣେ ଗବେଷକ ଭାବେ ସେ ରଚନା କରିଛନ୍ତି-'ମହିମାମୟ ଲଡ୍ଡୁବାବା'; ଶୈବ ଭାବେ- 'ଲଡ୍ଡୁବାବା ସ୍ତୋତ୍ରମାଳା' ଏବଂ କାବ୍ୟ ସ୍ରଷ୍ଟାଭାବେ-'ଲଡ୍ଡୁବାବା ବିଳାସ' । ଜଣେ ବୈଷ୍ଣବ ଭାବେ ରଚନା କରିଛନ୍ତି-'ପୁରୁଷୋତ୍ତମ ସ୍ତବ', 'ନୀଳାଚଳ କ୍ଷେତ୍ର ମାହାତ୍ମ୍ୟ', 'ବଳରାମ ପୁରାଣ', 'ଶ୍ରୀଜଗନ୍ନାଥ ଜ୍ଞାନମଣ୍ଡଳ' ଏବଂ 'ହନୁମାନ ଚରିତାମୃତ' । ଶିଶୁ ମାନସିକତାର ଜଣେ ବିଶ୍ୱସ୍ତ ରୂପକାର ଭାବେ ରଚନା କରିଛନ୍ତି ଏକ ମନୋଜ୍ଞ ସଂକଳନ 'ବିପ୍ଳବ' । ଜଣେ ଗବେଷକ ଭାବରେ ବହୁସ୍ଥାନ ଭ୍ରମଣ କରି ତତ୍ତ୍ୱ-ତଥ୍ୟ ଏବଂ ଲୋକ କଥାକୁ ଉପଜୀବ୍ୟ କରି ରଚନା କରିଛନ୍ତି ତାଙ୍କର ମୌଳିକ କାବ୍ୟ 'କୁସୁମୀ' । ଏହା କବିଙ୍କର ନିଜସ୍ୱ ବିଚାରଧାରାର ଏକ ମାର୍ମିକ ଆଲେଖ୍ୟ ତଥା ମୌଳିକ ସୃଷ୍ଟି ।

ଡଃ ବରାଡ଼ ଏକାଧାରାରେ ଜଣେ ସମର୍ପିତ ଶୈବ ଏବଂ ପରମ ବୈଷ୍ଣବ ହୋଇଥିବାରୁ ଶୈବ ଏବଂ ବୈଷ୍ଣବ ଉଭୟ ସ୍ରୋତରୁ ତତ୍ତ୍ୱ-ତଥ୍ୟ ଓ ସୁନ୍ଦର ପ୍ରସଙ୍ଗକୁ ଗ୍ରହଣ କରି ଯୁକ୍ତି ସଂଗତ ଏବଂ ସର୍ବଜନସମ୍ମତ ଭାବେ ହନୁମାନ ଚରିତାମୃତରେ ସନ୍ନିବେଶିତ କରି 'ହନୁମାନ ଚରିତାମୃତ' କାବ୍ୟକୁ କରିଛନ୍ତି ମହିମା ମଣ୍ଡିତ । ବହୁ ଶାସ୍ତ୍ର ପୁରାଣକୁ ଆଶ୍ରୟ କରିଥିଲେ ମଧ୍ୟ ଅନେକ ସ୍ଥାନରେ ନିଜର ମୌଳିକତା ପ୍ରତିପାଦନ କରି ଜଣେ ପୋଖତ କାବ୍ୟକାର ଭାବରେ ଅଲିଭା ଛାପ ଛାଡ଼ି ଯାଇଛନ୍ତି ।

ଏହି କାବ୍ୟରେ ପ୍ରଭାତ ବର୍ଣ୍ଣନା, ସନ୍ଧ୍ୟାବର୍ଣ୍ଣନା, ବିଭିନ୍ନ ଚରିତ ବର୍ଣ୍ଣନା ସହିତ ନୈସର୍ଗିକ ସୁଷମା ବିମଣ୍ଡିତ ପ୍ରକୃତି ବର୍ଣ୍ଣନା ଶୈଳୀ ସ୍ରଷ୍ଟାଙ୍କ ସୃଷ୍ଟିକୁ ଅନୁପମ ମର୍ଯ୍ୟାଦା ପ୍ରଦାନ କରେ । ବିଭିନ୍ନ ପ୍ରସଙ୍ଗ ବର୍ଣ୍ଣନା ବେଳେ ବିପଥଗାମୀ ସମାଜକୁ ସଜାଡ଼ିବା ପାଇଁ କାବ୍ୟରେ ସେ ଭରି ଦେଇଛନ୍ତି ଯୁଗୋପଯୋଗୀ ଉପଦେଶାବଳୀ ।

ଏହି କାବ୍ୟକୁ ପାଠ କଲାବେଳେ ଯେଉଁ ଅମୃତ ଅନୁଭବ ହୁଏ, ତାହା ଗୁଣଗ୍ରାହୀ ରସିକ ପାଠକ ପାଠ କଲା ବେଳେ ବେଶ ଠଉରେଇ ପାରିବ । ଏଭଳି ଭକ୍ତିରସାଣିତ କାବ୍ୟକୁ ସଂଶୋଧନ କରିବାର ଦାୟିତ୍ୱ ଦେଇଥିବାରୁ ମୁଁ ବଡ଼ ଭାଇଙ୍କ ନିକଟରେ ଚିର ଋଣୀ । କାରଣ ଏଭଳି ଶାସ୍ତ୍ର ପାଠ କରିବାର ସୁଯୋଗ ପାଇ ଅନେକ ଅଜଣା ପ୍ରସଙ୍ଗ ଜାଣିବା ସହିତ କବିଙ୍କର ମୌଳିକ ଚିନ୍ତା ଓ ଚେତନାର ପ୍ରତିଫଳନକୁ ଅନୁଭବ କଲି ।

ଡକ୍ଟର ଶ୍ରୀ ବରାଡ଼ଙ୍କର ଏ ମହାନ କୃତି କାଳଜୟୀ ହେଉ । ଏହି ଅମ୍ଳାନ ସୃଷ୍ଟି ଅମରତ୍ୱ ଓ ପାଠକୀୟ ସ୍ୱୀକୃତି ଲାଭ କରି ଓଡ଼ିଶାର ବାଣୀଭଣ୍ଡାରକୁ ସମୃଦ୍ଧ କରୁ । ସୁର ଭାଇଙ୍କର ଲେଖନୀ ଅଜସ୍ରସ୍ରାବୀ ହେଉ ଏହାହିଁ ସତ୍ୟ-ଶିବ-ସୁନ୍ଦର ପୀଠାଧୀଶ ଶ୍ରୀ ଶ୍ରୀ ଲଡୁବାବାଙ୍କ ପଦ କଞ୍ଜରେ ବିନମ୍ର ପ୍ରାର୍ଥନା ।

ନିରାକାର ସ୍ୱାଇଁ

କବି କୁସୁମ ନିରାକାର ସ୍ୱାଇଁ

ଏମ.ଏ(ଓଡ଼ିଆ),ଏମ.ଏ.(ରାଜନୀତି ବିଜ୍ଞାନ),ଏମ.ଏ.(ହିନ୍ଦୀ), ବି.ଏଡ଼.

ଶିକ୍ଷକ ଗୋପୀନାଥ ଉଚ୍ଚ ବିଦ୍ୟାଳୟ, ଗୋଡ଼ିପଲ୍ଲୀ

# ବଡ଼ ଭାଇଙ୍କ ହୃଦୟର କଥା



ଶୁଣି ବହୁତ ଖୁସି ହେଲି ଆମ ସୁର 'ହନୁମାନ ଚରିତାମୃତ' ନାମକ ଏକ ପୌରାଣିକ କାବ୍ୟ ଗ୍ରନ୍ଥ ରଚନା କରିଛି । ଗ୍ରନ୍ଥଟିର ପାଣ୍ଡୁଲିପି ପାଠ କରି ଯେତିକି ଖୁସି ହେଲି ସେତିକି ନୂଆ ନୂଆ କଥା ଜାଣି ଆହ୍ଲାଦିତ ହେଲି । ଏଭଳି ଏକ ଉପାଦେୟ ଗ୍ରନ୍ଥ ଓଡ଼ିଆ ବାଣୀଭଣ୍ଡାରକୁ ଋଦ୍ଧିମନ୍ତ କରିବା ସଙ୍ଗେ ସଙ୍ଗେ ପାଲା ଗାୟକ, ଦାସକାଠିଆ, ସଂକୀର୍ତ୍ତନ ଗାୟକ ପ୍ରଭୃତି ଲୋକନାଟ୍ୟ କଳାକାରମାନେ ଏ ଗ୍ରନ୍ଥଟିକୁ ଅଳଙ୍କାର ଶାସ୍ତ୍ର ଭାବେ ବ୍ୟବହାର କରି ପାରିବେ । ସାନ ଭାଇ ତ ଅନେକ କାବ୍ୟ କବିତା ରଚନା କରିଛନ୍ତି ତଥାପି ଏହି ଗ୍ରନ୍ଥଟି ସବୁସ୍ତରର ପାଠକ ମାନଙ୍କର ହୃଦୟକୁ ଛୁଇଁ ପାରିବ ଏବଂ ଗାଁର ଭାଗବତ ଟୁଙ୍ଗିଠାରୁ ଆରମ୍ଭ କରି ସାହିତ୍ୟ ସଭା ପର୍ଯ୍ୟନ୍ତ ସବୁଠାରେ ଏହା ଗାୟନଯୋଗ୍ୟ ହୋଇ ପାରିବ । ବହୁତ ଖୁସି ଲାଗିଲା, ସାନଭାଇ ଡଃ ବରାଡ଼ଙ୍କର କଲମ ଆଗକୁ ଆଗକୁ ଆଗେଇ ଚାଲୁ ମହାପ୍ରଭୁ ଲଙ୍କେଶ ମହେଶଙ୍କ ପାଖରେ ଏତିକି ଅଳି ଓ ପ୍ରାର୍ଥନା ।

।।ଇତି।।

(ସତ୍ୟନାରାୟଣ ମିଶ୍ର)
ବରିଷ୍ଠ ସାମ୍ବାଦିକ

## ପ୍ରେରଣା ଦାତାଙ୍କ ପ୍ରେରଣା ପତ୍ର . . .



ଭକ୍ତରାଜ ହନୁମାନଙ୍କର ଚରିତ **"ହନୁମାନ ଚରିତାମୃତ"** କାବ୍ୟରେ ଅତି ସୁନ୍ଦର ଭାବେ ସନ୍ନିବେଷିତ ହୋଇଛି । ଭକ୍ତ ସୁରଭାଇ ୧୯୯୦ ମସିହାର ସେ ପଞ୍ଚିରିଡ଼ା ମାନପୁର ହାଇସ୍କୁଲରେ ଶିକ୍ଷକ ରୂପେ ଯୋଗ ଦେଲା ପରେ ପଞ୍ଚିରିଡ଼ା ମାନପୁର ଚାରଣ ଶାଖା ଦ୍ୱାରା ଚଢ଼ୟାପଲ୍ଲୀ, ପଞ୍ଚିରିଡ଼ା, ମାନପୁର, ଖଳିପାଟଣା ଆଦିଗ୍ରାମରେ ଅନୁଷ୍ଠିତ ଚାରଣ ଯଜ୍ଞ ମାନଙ୍କରେ ଉକ୍ତ ବିଦ୍ୟାଳୟର ଶିକ୍ଷକ ତଥା ପଞ୍ଚିରିଡ଼ା ମାନପୁର ଚାରଣ ଶାଖାର ସମ୍ପାଦକ ହରିହର ସାହୁଙ୍କ ସହିତ ଯାଇ ଯୋଗ ଦେବା ଅବସରରେ ସେଠାରେ ପାଠ କରାଯାଉଥିବା ହନୁମାନ ଚାଳିଶା ପ୍ରତି ତାଙ୍କର ଶ୍ରଦ୍ଧା ସୃଷ୍ଟି ହୋଇଥିଲା । ହନୁମାନଙ୍କର ରହସ୍ୟ ଜାଣିବା ପାଇଁ ସେ ଦିନରୁ ସେ ପ୍ରୟାସ ଜାରି ରଖିଥିଲେ । ଯାହାର ଫଳ ସ୍ୱରୂପ ସେ ୪୫ ଅଧ୍ୟାୟ ବିଶିଷ୍ଟ ଏ ବିରାଟ କାବ୍ୟଟିକୁ ତାଙ୍କର ଭକ୍ତି ଅର୍ଘ୍ୟରୂପେ ବଜରଙ୍ଗବାଲୀଙ୍କ ଶ୍ରୀପୟରେ ଭେଟି ଦେଇଛନ୍ତି । ବିଭୂ କୃପାରୁ, ଲଡୁବାବା ଭଜନମାଳା, ମହିମାମୟ ଲଡୁବାବା, ଲଡୁବାବା ବିଳାସ, ପୁରୁଷୋତ୍ତମ ସ୍ତବ(ସିଦ୍ଧାନ୍ତ ଦର୍ପଣ), ନୀଳାଚଳ କ୍ଷେତ୍ର ମହାତ୍ମ୍ୟ (କପିଳ ସଂହିତା) ସଂପାଦନ କରି ଶ୍ଳୋକର ଅର୍ଥ ନିଜସ୍ୱ ଭାଷାରେ ଓ ନବାକ୍ଷରୀ ଛନ୍ଦରେ ତଥା ଲୋକପ୍ରିୟ ପୌରାଣିକ ରାଗରେ ରଚନା କରି ସର୍ବାଧିକ ତଥ୍ୟ ଓ ତତ୍ତ୍ୱ ଆମମାନଙ୍କ ପାଇଁ ଆଣି ଦେଇଛନ୍ତି । ସୁରଭାଇଙ୍କ ସହିତ ମୋର ବହୁ ବର୍ଷର ସମ୍ପର୍କ । ମୁଁ ତାଙ୍କୁ ଅତି ନିକଟରୁ ଯେତିକି ଜାଣିଛି ସେ ଜଣେ ସୁନାମଧନ୍ୟ ଛାତ୍ର ବତ୍ସଳ ଶିକ୍ଷକ ଅଟନ୍ତି । ଏକାଧାରରେ ସେ ଜଣେ କବି, ସମାଜସେବୀ, ଗବେଷକ ଓ ଚରିତ୍ରବାନ୍ ବ୍ୟକ୍ତି ଅଟନ୍ତି ।

ମୋ ଦ୍ୱାରା ରଚିତ "ପୁରୁଷୋତ୍ତମ ଶ୍ରୀଜଗନ୍ନାଥ" ପୁସ୍ତକର ସଂପୂର୍ଣ୍ଣ ଦାୟିତ୍ୱ ସେ ନେଇ ନ ଥିଲେ ମୋ ଭଳି ଜଣେ ବ୍ୟସ୍ତ ମଣିଷ ପକ୍ଷରେ ପୁସ୍ତକ ପ୍ରକାଶ କରିବା ସମ୍ଭବ ହୋଇ ନ ଥାନ୍ତା । ଆମ ରାଜ୍ୟ ତଥା ରାଜ୍ୟ ବାହାରେ ହାଇସ୍କୁଲ କଲେଜ ଛାତ୍ରଛାତ୍ରୀମାନଙ୍କୁ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରତି ଆକୃଷ୍ଟ କରି ଜଣେ ଉତ୍ତମ ନାଗରୀକ ରୂପେ ଗଢ଼ି ତୋଳିବାକୁ ଚାରଣଗୋଷ୍ଠୀ, ପୁରୀ ଦ୍ୱାରା ଆୟୋଜିତ "ଶ୍ରୀଜଗନ୍ନାଥ ସଂସ୍କୃତି ଜ୍ଞାନ ପରୀକ୍ଷା"ର ସେ ପରୀକ୍ଷା ନିୟନ୍ତ୍ରକ ଅଟନ୍ତି । ତାଙ୍କର ଅକ୍ଲାନ୍ତ ପରିଶ୍ରମ ଦ୍ୱାରାଏହି ମହାନ୍ କାର୍ଯ୍ୟ ସମ୍ଭବ ହୋଇ ପାରିଛି । ମୁଁ ତାଙ୍କର ଉତ୍ତରୋତ୍ତର ଉନ୍ନତି ଓ ମଙ୍ଗଳ କାମନା କରୁଛି । ତାଙ୍କର ଏହି ଉତ୍ତମ ପ୍ରୟାସ ଜାରୀ ରଖିବାକୁ ମୁଁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ।

ଜୟ ଜଗନ୍ନାଥ

(signature)

ସମ୍ପାଦକ, ଆନ୍ତର୍ଜାତୀୟ ଚାରଣଗୋଷ୍ଠୀ, ପୁରୀ

# ମୋ ମନ କଥା......



ପିଲାଟି ଦିନରୁ ପରିବାରରୁ ଉତ୍ତରାଧିକାର ସୂତ୍ରରେ ସମ୍ଭବତଃ ମିଳିଥିଲା ସତ ପଥରେ ଚାଲିବାର ମାନସିକତା । ବିଦ୍ୟାଳୟକୁ ଯିବା ପରେ ବାହାର ଜଗତ ସହ ସମ୍ପର୍କ ଯୋଡ଼ି ହେବା ପରେ କିଛି ବ୍ୟକ୍ତି ବିଶେଷ ତଥା ଦେବଦେବୀଙ୍କର ପ୍ରଭାବ ପଡ଼ିଥିଲା ମନ ଉପରେ । ଯେଉଁମାନେ ଚିରାଚରିତ ସ୍ରୋତର ବିପରୀତ ଦିଗରେ ଗତି କରି ସଂସାରରେ କିଛି କରିବାର ସାହସ ଜୁଟାଇବାରେ ସମର୍ଥ ହୋଇ ଥିଲେ ସେମାନେ ମୋର ଅଜଣାରେ ଆବୋରି ବସିଥିଲେ ମୋ ମନକୁ । ଏଇ ଯେମିତି ଅହିଂସାକୁ ଆପଣାର କରିଥିବା ମହାତ୍ମା ଗାନ୍ଧୀ, ଅଦମ୍ୟ ନେତା ନେତାଜୀ ସୁବାଷ, ସେବାର ମୂର୍ତ୍ତିମନ୍ତ ପ୍ରତୀକ ଗୋପବନ୍ଧୁ, ସନାତନ ଧର୍ମର ବାସ୍ତବ ବ୍ୟାଖ୍ୟାକାର ସ୍ୱାମୀ ବିବେକାନନ୍ଦ । ସେମାନଙ୍କ ରାସ୍ତାରେ ଚାଲିବାର ଅବାରିତ ସ୍ପୃହାଟିଏ ସୃଷ୍ଟି ହେବା ସହିତ ତାହା ଉପରେ ପରୀକ୍ଷା ନିରୀକ୍ଷା କରିବାର ପରିବେଶଟିଏ ନିଜେ ନିଜେ ସୃଷ୍ଟି କରି ସଫଳତାର ହାର ମୂଲ୍ୟାଙ୍କନ କରିବା ଭିତରେ ଆଧ୍ୟାତ୍ମିକତା ଆଡ଼କୁ ସ୍ୱତଃ କେବେ ଯେ ମନ ଆଗେଇ ଗଲା ତା'ର ସୁରାକ ମିଳିଲା ନାହିଁ । ତେବେ ବିଜ୍ଞାନର ଛାତ୍ରଟିଏ ହୋଇଥିବାରୁ ସେଥିରେ ପରୀକ୍ଷା ନିରୀକ୍ଷା ଆରମ୍ଭ କରିବାର ପ୍ରବଳ ଇଚ୍ଛାକୁ ଚରିତାର୍ଥ କରିବାକୁ ଗଲାବେଳେ ହନୁମାନ ଚାଳିଶା ସମ୍ପର୍କରେ ଆସିଲି ଚାରଣଗୋଷ୍ଠୀ ସହ ସମ୍ପର୍କରୁ । ହନୁମାନ ଚାଳିଶାର ଶକ୍ତିକୁ ପରଖି ପରଖି ପ୍ରଭୁ ହନୁମାନ ମୋ ଶରୀରରୂପକ ନନ୍ଦିଘୋଷ ରଥର ପତାକାରେ ଆସି ସନ୍ତର୍ପଣରେ କେବେ ବସିଗଲେ ତାର ହିସାବ ରଖିବାକୁ ବେଳ ମିଳିଲା ନାହିଁ । ସେଇଥିରୁ ବଜରଙ୍ଗବାଲୀ ହନୁମାନଙ୍କ ପ୍ରତି ଜାତ ହେଲା ଅନୁରକ୍ତି । ଅନୁରକ୍ତିରୁ ତାଙ୍କ ସମ୍ପର୍କରେ ଅନୁସନ୍ଧିତ୍ସା ଓ ଅନୁସନ୍ଧାନ । ୧୯୯୫ ମସିହାରେ ପାଇଲି କଲ୍ୟାଣ ପତ୍ରିକାର ହନୁମାନାଙ୍କ । ସେତେବେଳେ ହନୁମାନଙ୍କ ଉପରେ ଓଡ଼ିଆ ସାହିତ୍ୟରେ ଗ୍ରନ୍ଥର ଦୁଷ୍ପ୍ରାପ୍ୟତାକୁ ଆଖିରେ ରଖି କ୍ଷୀଣ ଆଶାଟିଏ ଗଜୁରିଥିଲା ନବାକ୍ଷରୀରେ ଗ୍ରନ୍ଥଟିଏ ରଚନା କରିବା ପାଇଁ । କିନ୍ତୁ ବୁନ୍ଦା ଫିଟି ନ ଥିଲା । ଅନେକ ଚେଷ୍ଟାପରେ ପଦଟିଏ ଲେଖିବା ସମ୍ଭବପର ନ ହେବାରୁ ଡୋରିବନ୍ଧା ହୋଇ ରହିଥିଲା ସେହି ଇଚ୍ଛାରେ । ନିରାକାର ଭାଇ ଓ ଗୋଦାବରୀ ଭାଇଙ୍କ ସହ ଯାଇ 'ଓସୁ'ରେ ଓଡ଼ିଆ ଏମ୍.ଏ. ଶ୍ରେଣୀରେ ପଢ଼ିଲା ବେଳେ ଗୁରୁଦେବ ଡଃ ଗୋବିନ୍ଦ ଚନ୍ଦ୍ର ଦାଶଙ୍କର ଅଲୌକିକ ଶୈଳୀରେ ପାଠପଢ଼ା ମଧ୍ୟ ଯୁଗୀୟ ସାହିତ୍ୟ ରଚନା ପ୍ରତି ମନରେ ଆଣି ଦେଇଥିଲା ଏକ ଅପୂର୍ବ ଆକର୍ଷଣ ଓ ଦିବ୍ୟ ପ୍ରେରଣା । 'ଲଡୁବାବା ଚଉତିଶା' ରଚନା କରି ଗୁରୁଦେବ ଓ ସହପାଠୀ ନିରାକାର ଭାଇ ତଥା ଗୋଦାବରୀ ଭାଇଙ୍କୁ ଦେଖାଇବା ପରେ ତହିଁରୁ ମିଳିଥିବା ବାହାବାକୁ ନେଇ 'ଲଡୁବାବା ବିଳାସ' ରୂପ ନିଏ । ଗୋଟିଏ

ରାଗରେ ଲିଖିତ ଉକ୍ତ ଗ୍ରନ୍ଥ କାବ୍ୟରୂପ ନେବା ପରେ ମନରେ ସାହସ ତଥା ଉନ୍ମାଦନା ଭରିଦେଲା କରୋନା । କରୋନା ସଂସାର ପାଇଁ ଅନେକ ଦୁଃଖ କଷ୍ଟର ଅର୍ଘ୍ୟଥାଳି ଧରି ଆସିଥିଲା ବେଳେ ମୋ ପାଇଁ ଆଣି ଦେଇଥିଲା ମୋ ଜୀବନରେ କିଛି ନ କରିପାରିବାର ବ୍ୟର୍ଥତା ଦୂରୀକରଣକାରୀ ଅବ୍ୟର୍ଥ ମଲମ । ସେ ଦେଇଥିଲା ମୋ ପ୍ରାଣପ୍ରିୟ ପ୍ରଭୁ ଜଗନ୍ନାଥଙ୍କର ପ୍ରାଣାଧିକ ପ୍ରିୟଭକ୍ତ ତଥା ମୋର ଧ୍ୟେୟ ମହାପ୍ରଭୁ ହନୁମାନଙ୍କ ଉପରେ ବିଭିନ୍ନ ରାଗ ଓ ଛନ୍ଦରେ 'ହନୁମାନ ଚରିତାମୃତ' ପରି କାବ୍ୟ ଲେଖିବାର ମହାର୍ଘ ଅବସର । ଏହା ଲୋକଲୋଚନକୁ ଆସିବା ପରେ ମୋ ହୃଦୟ ପୂର୍ଣ୍ଣ ପୂର୍ଣ୍ଣ ଲାଗୁଛି । ମୋର ମନେ ହେଉଛି ଭଗବାନ ହନୁମାନ ମୋତେ ଯାହା କିଛି ଦେବା କଥା ସବୁ ଦେଇ ଦେଇଛନ୍ତି । ମୋ'ର ପାଇବାର ଇଚ୍ଛାକୁ ସେ ସ୍ୱକୃପାବଳରେ ନିଃଶେଷ କରି ଦେଇଛନ୍ତି ।

ଏ ଅବସରରେ ମୋ ଜୀବନର ଚଉବର୍ଗ ଦାତା ଚାରି ଗୋବିନ୍ଦ, ପିତା ଗୋବିନ୍ଦ ବରାଡ଼, ସାରସ୍ୱତ ଗୁରୁ, ଗୁରୁଦେବ ଡଃ ଗୋବିନ୍ଦ ଚନ୍ଦ୍ର ଦାଶ, ଆଧାତ୍ମିକ ଗୁରୁ ଗୋବିନ୍ଦ ଚନ୍ଦ୍ର ବେହେରା ଓ ଆତ୍ମିକ ଗୁରୁ ମହାପ୍ରଭୁ ଗୋବିନ୍ଦ(ପ୍ରଭୁ ଜଗନ୍ନାଥ)ଙ୍କ ପ୍ରତି ସେମାନଙ୍କ ଅହେତୁକି କରୁଣା ପାଇଁ କୃତଜ୍ଞତା ଜଣାଉଛି । ସାଥିରେ ରହି ପ୍ରତି କ୍ଷେତ୍ରରେ ମାର୍ଗଦର୍ଶନ କରିଥିବା(ଯେଉଁମାନଙ୍କ ବିନା ମୁଁ ଏବେ ଯାହା ଦେଖା ଯାଉଛି ତାହା ଦିଶନ୍ତି ନାହିଁ) ଭାଗବତ ସୌରଭ ବାବା ଭଗବାନ ଦାଶ ଉଦାସୀନ, ବାଣୀ ସୌରଭ ଅର୍ଜୁନ ବାରିକଙ୍କ ଚରଣରେ ଶ୍ରଦ୍ଧା ସୁମନ ଅର୍ପଣ କରୁଛି ।  କବି କଲ୍ଲୋଳ ଗୋଦାବରୀ ବସନ୍ତିଆ, କବି କୁସୁମ ନିରାକାର ସ୍ୱାଇଁ ଉଭୟ ପାଖରେ ବସି, ସାଥିରେ ରହି ମୋ ମନରେ ଉତ୍ସାହ ଭରିବା ସହ ମୋ ପରି ଜଣେ ନିରସ ସାହିତ୍ୟର ଧାର ଧରିବାକୁ ଅକ୍ଷମ ବିଜ୍ଞାନର ଛାତ୍ର ଠାରେ ସାହିତ୍ୟ ରସ ଭରିବା ସହିତ ଏ ଭକ୍ତି ରସାତ୍ମକ ଗ୍ରନ୍ଥର ଆବଶ୍ୟକ ସଂଶୋଧନ କାର୍ଯ୍ୟକୁ ବିନାଦ୍ୱିଧାରେ ଗ୍ରହଣ କରି ସଂପୂର୍ଣ୍ଣ କରିଥିବାରୁ ଅନ୍ତରର ଗଭୀର ପ୍ରଦେଶରୁ ଶ୍ରଦ୍ଧା ଜ୍ଞାପନ କରୁଛି । ମୋର ସମସ୍ତ ଶୁଭେଚ୍ଛୁଙ୍କୁ ସାଧୁବାଦ ଜଣାଉଛି ।

ମୋ ସହଧର୍ମିଣୀ ସବିତା ଯିଏ ବିନା ପ୍ରତିବାଦରେ ଗ୍ରନ୍ଥ ରଚନା କାଳୀନ ମୋର ବିତସ୍ପୃହତା ପ୍ରତି ସମବେଦନାତ୍ମକ ଭାବନା ରଖି ମୋତେ ସହ୍ୟ କରିଛନ୍ତି ତାଙ୍କର ମହାନୁଭବତା ପ୍ରତି ଅଜସ୍ର ସାଧୁବାଦ ଜଣାଉଛି ।

ମୋର ପୁତ୍ର ଆୟୁଷ୍ମାନ ଶିବଶଙ୍କର, କନ୍ୟା ଆୟୁଷ୍ମତୀ ସୋନାଲୀ ଏବଂ ଜାମାତା ଶ୍ରଦ୍ଧେୟ ସଞ୍ଜୟ ଏହି ଗ୍ରନ୍ଥ ରଚନା କାଳରେ ଯେଉଁ ସ୍ନେହ ସହାନୁଭୂତି ଓ ସହଯୋଗ ଦେଇଛନ୍ତି ସେଥି ପାଇଁ ସେମାନଙ୍କୁ ହୃଦୟର ଗଭୀର ପ୍ରଦେଶରୁ ଢ଼େର ସାରା ଶୁଭେଚ୍ଛା ଓ ଆଶୀର୍ବାଦ ।

ଶ୍ରୀଜଗନ୍ନାଥ ପ୍ରେସର ମାଲିକ ହରିହର ମହାରଣା ଛାପା କାର୍ଯ୍ୟରେ କରିଥିବା ଅକୁଣ୍ଠ ସହଯୋଗ ପାଇଁ ତାଙ୍କୁ ଯେତେ ପ୍ରଶଂସା କଲେ ମଧ୍ୟ କମ ଲାଗୁଛି ।

ବାସ୍ତବରେ ଦେଖିବାକୁ ଗଲେ ଏ କାବ୍ୟ ରଚନାରେ ମୋର କିଛି ବି ଶ୍ରେୟ ନାହିଁ । ମୋତେ ଯାହା କିଛି ପ୍ରଭୁ ହନୁମାନଙ୍କ କୃପା ସ୍ୱରୂପ ପ୍ରାପ୍ତ ହୋଇଛି ତାହା କେବଳ ମୋ ଦ୍ୱାରା ଶବ୍ଦରୂପ ନେଇଛି । ଏ ଗ୍ରନ୍ଥ ପାଠକମାନଙ୍କ ମଧ୍ୟରେ ଯଦି କିଞ୍ଚିତ ମାତ୍ର ଭକ୍ତି ଭାବର ଉଦ୍ରେକ କରାଇ ପାରିବ ତେବେ ତାହା ମୋ ପ୍ରତି ବିଭୂ କୃପା ବୋଲି ମୁଁ ଗ୍ରହଣ କରିବି ।

॥ଇତି॥

(କବି ତିଳକ ଡଃ ସୁରେଶ ଚନ୍ଦ୍ର ବରାଡ଼)



ମୋ ପରିବାର





ପରମ୍ପରା ତରଫରୁ "କବି ତିଳକ" ସମ୍ମାନ



# ସୂଚୀପତ୍ର


| ଅଧ୍ୟାୟ | ରାଗ | ବିଷୟ | ପୃଷ୍ଠା |
|---|---|---|---|
| ୧.ମଙ୍ଗଳାଚରଣ | ଭାଗବତବାଣୀ | ମାତା ସରସ୍ୱତୀ | ୧୭ |
| ୨. | | ଅଗ୍ରପୂଜ୍ୟ ଗଣେଶ | ୧୮ |
| ୩. | | ମା' ବ୍ରାହ୍ମଣୀ ଦେବୀ | ୧୯ |
| ୪. | | ମା' ବରାଳିଆ | ୨୦ |
| ୫. | | ଶ୍ରୀ ଦଧିବାମନ | ୨୧ |
| ୬. | ଚକ୍ରକେଳି | ପଞ୍ଚମୁଖି ହନୁମାନାଷ୍ଟକ | ୨୨ |
| ୭. | ଭୂପାଳ | ସଙ୍କଟମୋଚନ ହନୁମାନାଷ୍ଟକ | ୨୩ |
| ୮. | ପଟ୍ଟ ମହଞ୍ଜରୀ | ହନୁମାନ ପଞ୍ଚକ | ୨୫ |
| ୯.ପ୍ରଥମ ଛାନ୍ଦ- | ରସକୁଲ୍ୟା | ପୁଞ୍ଜିକସ୍ଥଳାଙ୍କର ଶାପପ୍ରାପ୍ତି, ଅଞ୍ଜନାରୂପେ ଜନ୍ମଗ୍ରହଣ ଓ କେସରୀ ସହିତ ବିବାହ | ୨୬ |
| ୧୦.ଦ୍ୱିତୀୟ ଛାନ୍ଦ- | ଧନାଶ୍ରୀ | ମହେଶ୍ୱରଙ୍କ ମୋହିନୀ ରୂପ ଦର୍ଶନ | ୩୦ |
| ୧୧.ତୃତୀୟ ଛାନ୍ଦ- | ବଙ୍ଗଳାଶ୍ରୀ | ରାଜା ଦଶରଥଙ୍କର ପୁତ୍ରେଷ୍ଟୀ ଯଜ୍ଞ | ୩୬ |
| ୧୨.ଚତୁର୍ଥ ଛାନ୍ଦ- | ରାମକେରୀ | ଅଞ୍ଜନାଙ୍କ ତପସ୍ୟା ଓ ଶିବଙ୍କ ଠାରୁ ବରପ୍ରାପ୍ତି | ୪୩ |
| ୧୩.ପଞ୍ଚମ ଛାନ୍ଦ- | କଳସା | ମାତଙ୍ଗ ଋଷି ପରାମର୍ଶରେ ଅଞ୍ଜନାଙ୍କର ପବନ ଦେବତାଙ୍କ ଉଦ୍ଦେଶ୍ୟରେ ତପସ୍ୟା, ବର ଓ ଚରୁପ୍ରାପ୍ତି | ୪୮ |
| ୧୪.ଷଷ୍ଠ ଛାନ୍ଦ- | ବିଳାସ ମଞ୍ଜରୀ | ହନୁମାନ ଜନ୍ମ | ୫୩ |
| ୧୫.ସପ୍ତମ ଛାନ୍ଦ- | ଗୁଜ୍ଜରୀ | ହନୁମାନଙ୍କ ସୂର୍ଯ୍ୟ ମଣ୍ଡଳରେ ପ୍ରବେଶ, ବଜ୍ରାଘାତ ଓ ଦେବତା ମାନଙ୍କ ଠାରୁ ବରପ୍ରାପ୍ତି | ୫୬ |
| ୧୬.ଅଷ୍ଟମ ଛାନ୍ଦ- | ଚୋଖି | ହନୁମାନଙ୍କ ବାଲ୍ୟଲୀଳା ଓ ଋଷିଙ୍କ ଶାପ ପ୍ରଦାନ | ୬୨ |
| ୧୭.ନବମ ଛାନ୍ଦ- | ଚକ୍ରକେଳି | ହନୁମାନଙ୍କୁ ଅଞ୍ଜନାଙ୍କ ବାଲ୍ୟଶିକ୍ଷା ପ୍ରଦାନ | ୬୭ |
| ୧୮.ଦଶମ ଛାନ୍ଦ- | ଆଷାଢ଼ଶୁକ୍ଳବାଣୀ | ହନୁମାନଙ୍କୁ ଗୁରୁଗୃହକୁ ପ୍ରେରଣ | ୭୪ |
| ୧୯.ଏକାଦଶ ଛାନ୍ଦ- | ବାହୁଡ଼ା ବସନ୍ତ | ରାମଙ୍କ ସହ କପିରୂପରେ ହନୁମାନଙ୍କ ସାନିଧ | ୮୦ |
| ୨୦.ଦ୍ୱାଦଶ ଛାନ୍ଦ- | କଳହଂସ କେଦାର | ବାଳୀ ସୁଗ୍ରୀବ ଶତ୍ରୁତା ଓ ପବନ ପୁତ୍ରଙ୍କର ସୁଗ୍ରୀବ ସହିତ ମିତ୍ରତା | ୮୫ |
| ୨୧.ତ୍ରୟୋଦଶ ଛାନ୍ଦ- | ସିନ୍ଧୁଡ଼ା | ରାମ ହନୁମାନ ଭେଟ, ବାଳୀ ବଧ | ୯୫ |
| ୨୨.ଚତୁର୍ଦ୍ଦଶ ଛାନ୍ଦ- | କୁମ୍ଭକାମୋଦି | ସୁଗ୍ରୀବ ଉପରେ ଲକ୍ଷ୍ମଣଙ୍କ ରୋଷ | ୧୦୬ |
| ୨୩.ପଞ୍ଚଦଶ ଛାନ୍ଦ- | ମୁନିବରବାଣୀ | ସୀତା ଠାବ ନିମନ୍ତେ ଦୂତ ପ୍ରେରଣ | ୧୧୪ |
| ୨୪.ଷୋଡ଼ଶ ଛାନ୍ଦ- | କାମୋଦୀ | ସ୍ୱୟଂପ୍ରଭା ଯୋଗିନୀ ସହ ଭେଟ | ୧୧୯ |
| ୨୬.ସପ୍ତଦଶ ଛାନ୍ଦ- | କାଳୀ | ସମ୍ପାତି ସହ ଭେଟ | ୧୨୫ |
| ୨୭.ଅଷ୍ଟାଦଶ ଛାନ୍ଦ- | ପାହାଡ଼ିଆ କେଦାର | ହନୁମାନଙ୍କର ସାଗର ଅତିକ୍ରମଣ | ୧୩୦ |
| ୨୮.ଊନବିଂଶ ଛାନ୍ଦ- | ଆହାରୀ | ବିଭୀଷଣ ମିଳନ | ୧୪୧ |

| | | |
|---|---|---|
| ୨୯.ବିଂଶ ଛାନ୍ଦ- କେଦାର | ମାତା ସୀତାଙ୍କ ସହ ଭେଟ | ୧୪୮ |
| ୩୦.ଏକବିଂଶ ଛାନ୍ଦ-ଦେଶାକ୍ଷ | ଅଶୋକ ବାଟିକା ବିଧ୍ୱଂସ | ୧୫୮ |
| ୩୧.ଦ୍ୱାବିଂଶ ଛାନ୍ଦ- ମଙ୍ଗଳ ଗୁଜ୍ଜରୀ | ରାବଣ ସଭାରେ ପ୍ରଭୁ ହନୁମାନ | ୧୬୬ |
| ୩୨.ତ୍ରୟୋବିଂଶ ଛାନ୍ଦ-ମାଳବ ରୋଢ଼ାବାଣୀ | ଲଙ୍କା ଦହନ | ୧୭୩ |
| ୩୩.ଚତୁର୍ବିଂଶ ଛାନ୍ଦ-ଦକ୍ଷିଣ କାମୋଦୀ | ମାତା ସୀତାଙ୍କ ଠାରୁ ବିଦାୟ | ୧୭୭ |
| ୩୪.ପଞ୍ଚବିଂଶ ଛାନ୍ଦ-କଲ୍ୟାଣ ଆହାରୀ | ହନୁମାନଙ୍କ ପ୍ରତ୍ୟାବର୍ତ୍ତନ ଓ ମଧୁବନରେ ପ୍ରବେଶ | ୧୮୪ |
| ୩୫.ଷଡ଼ବିଂଶ ଛାନ୍ଦ-ଖଣ୍ଡିତା | ହନୁମାନଙ୍କ ଦ୍ୱାରା ମାତା ସୀତାଙ୍କ ସନ୍ଦେଶ ପ୍ରଭୁ ରାମଙ୍କୁ ପ୍ରଦାନ | ୧୮୭ |
| ୩୬.ସପ୍ତବିଂଶ ଛାନ୍ଦ-କାଫି | ଲଙ୍କାଯାତ୍ରା | ୧୯୩ |
| ୩୭.ଅଷ୍ଟବିଂଶ ଛାନ୍ଦ-ସାନ ଭୂପାଳ | ବିଭୀଷଣଙ୍କ କୃପାପ୍ରାପ୍ତି | ୧୯୭ |
| ୩୮.ଊନତ୍ରିଂଶ ଛାନ୍ଦ-ବସନ୍ତ ବରାଡ଼ି | ସେତୁବନ୍ଧ ନିର୍ମାଣ | ୨୦୪ |
| ୩୯.ତ୍ରିଂଶ ଛାନ୍ଦ- ଭୈରବ | ରାମ ରାବଣ ଯୁଦ୍ଧାରମ୍ଭ | ୨୧୧ |
| ୪୦.ଏକତ୍ରିଂଶ ଛାନ୍ଦ-ବିଭାସ ଗୁଜ୍ଜରୀ | ଲକ୍ଷ୍ମଣ ଶକ୍ତିଭେଦ ଓ ହନୁମାନଙ୍କର ସଞ୍ଜିବନୀ ଆନୟନ | ୨୧୫ |
| ୪୧.ଦ୍ୱାତ୍ରିଂଶ ଛାନ୍ଦ- ଆଶାବରୀ | ଅହିରାବଣ ବଧ | ୨୨୩ |
| ୪୨.ତ୍ରିତ୍ରିଂଶ ଛାନ୍ଦ- ଶାରଙ୍ଗ | ରାବଣ ବଧ, ବିଭୀଷଣଙ୍କ ରାଜ୍ୟାଭିଷେକ ଓ ମାତା ସୀତାଙ୍କ ସହ ମାରୁତିର ପୁନଃ ଭେଟ | ୨୩୩ |
| ୪୩.ଚତୁତ୍ରିଂଶ ଛାନ୍ଦ-ଖଣ୍ଡ କୁମ୍ଭକାମୋଦୀ | ରାମଙ୍କର ଲଙ୍କାରୁ ପ୍ରତ୍ୟାବର୍ତ୍ତନ ଓ ଋଷିମାନଙ୍କର ଶ୍ରୀରାମ ସ୍ତୁତି | ୨୪୧ |
| ୪୪.ପଞ୍ଚତ୍ରିଂଶ ଛାନ୍ଦ-ରସକେଦାର | ରାମ ଭରତ ମିଳନ | ୨୫୯ |
| ୪୫.ଷଟ୍‌ତ୍ରିଂଶ ଛାନ୍ଦ-ଗୁଜ୍ଜରୀ ଖେମଟା | ହନୁମାନଙ୍କ ହୃଦୟ ମଧ୍ୟରେ ରାମସୀତା ଦର୍ଶନ | ୨୬୮ |
| ୪୬.ସପ୍ତତ୍ରିଂଶ ଛାନ୍ଦ-ମଙ୍ଗଳ କେଦାର | ମାରୁତିଙ୍କର ସିନ୍ଦୁର ଧାରଣ ଚରିତ | ୨୭୨ |
| ୪୭.ଅଷ୍ଟତ୍ରିଂଶ ଛାନ୍ଦ-ଦୀର୍ଘକାମୋଦୀ | ରାମ ହନୁମାନ ଯୁଦ୍ଧ | ୨୮୦ |
| ୪୮.ଊନଚତ୍ୱାରିଂଶ ଛାନ୍ଦ-ବିଚିତ୍ର ଦେଶାକ୍ଷ | ଅଶ୍ୱମେଧ ଯଜ୍ଞାରମ୍ଭ | ୨୮୭ |
| ୪୯.ଚତ୍ୱାରିଂଶ ଛାନ୍ଦ-କୌଶିକ | ଶିବ ହନୁମାନ ଯୁଦ୍ଧ | ୨୯୫ |
| ୫୦.ଏକଚତ୍ୱାରିଂଶ ଛାନ୍ଦ-ଘଣ୍ଟାରବ | ସୁରଥ ରାଜା କଥା | ୩୦୧ |
| ୫୧.ଦ୍ୱିଚତ୍ୱାରିଂଶ ଛାନ୍ଦ-ଗୌରୀ | ହନୁମାନ ଭୀମ ଭେଟ | ୩୦୮ |
| ୫୨.ତ୍ରିଚତ୍ୱାରିଂଶ ଛାନ୍ଦ-ପୂରବୀ | ସତ୍ୟଭାମାଙ୍କ ଗର୍ବଚୂର୍ଣ୍ଣ | ୩୧୩ |
| ୫୩.ଚତୁଶ୍ଚତ୍ୱାରିଂଶ ଛାନ୍ଦ-ଲଳିତ କାମୋଦୀ | ଶନି ହନୁମାନ ଯୁଦ୍ଧ | ୩୧୯ |
| ୫୪.ପଞ୍ଚଚତ୍ୱାରିଂଶ ଛାନ୍ଦ-କେଦାର ଚକ୍ରକେଳୀ | ଶ୍ରୀକ୍ଷେତ୍ରରେ ହନୁମାନଙ୍କ ଲୀଳା | ୩୩୫ |

# ହନୁମାନ ଚରିତାମୃତ

## ମଙ୍ଗଳା ଚରଣ

(ରାଗ-ଭାଗବତ ବାଣୀ)

### ମାତା ସରସ୍ୱତୀ

ନମସ୍ତେ ମାତା ସରସ୍ୱତୀ ।
କମଳ ପ୍ରାୟ ପଦ କାନ୍ତି ॥୧।
ନମସ୍ତେ ମାତା ଶ୍ୱେତାମ୍ବରୀ ।
ବିଷ୍ଣୁଦେବଙ୍କ ପ୍ରାଣେଶ୍ୱରୀ ॥୨।
ନମସ୍ତେ ଶୁକ୍ଳ ପୁଷ୍ପ ପ୍ରିୟା ।
ନମସ୍ତେ କୁନ୍ଦ ପୁଷ୍ପ କାୟା ॥୩।
ନମସ୍ତେ ସୂକ୍ଷ୍ମବାଣୀ ରୂପା ।
ନମସ୍ତେ ମା' ଜ୍ଞାନ ସ୍ୱରୂପା ॥୪।
ନମସ୍ତେ ଅଜ୍ଞାନ ହାରିଣୀ ।
ପଣ୍ଡିତ ହୃଦ ବିହାରିଣୀ ॥୫।
ନମସ୍ତେ ମା' ହଂସ ବାହିନୀ ।
ନମସ୍ତେ ବିଦ୍ୟା ପ୍ରଦାୟିନୀ ॥୬।
ସ୍ଫଟିକ ମାଳା ହସ୍ତେ ଶୋହେ ।
ବରଦ ହସ୍ତ ମନ ମୋହେ ॥୭।
ନମସ୍ତେ କମଳ ଆସନା ।
ହସ୍ତରେ ଶୋଭା ପାଏ ବୀଣା ॥୮।
କିଞ୍ଚିତେ ମାତ କର ଦୟା ।
ନାଶ ହେଉ ମା' ଭବ ମାୟା ॥୯।
ଦିଅ ବିମଳ ଶୁଦ୍ଧ ବୁଦ୍ଧି ।
ତରିବି ସଂସାର ବାରିଧି ॥୧୦।
ହନୁମାନଙ୍କ ଲୀଳାମାନ ।
ଭାବିଛି କରିବି ବର୍ଣ୍ଣନ ॥୧୧।
ପ୍ରଣମୁଛି ମା' ତୋର ପାଦ ।
ହୃଦୟେ ବସି କୁହ ପଦ ॥୧୨।

# ଅଗ୍ରପୂଜ୍ୟ ଗଣେଶ

ନମୋ ଅଗ୍ରପୂଜ୍ୟ ଗଣେଶ ।
ସ୍ଥୂଳ ତନୁ ପ୍ରଭୁ ବିଘ୍ନେଶ ॥୧୩।
ମୂଷା ବାହନ ଲମ୍ବୋଦର ।
ହସ୍ତରେ ଶୋଭଇ କୁଠାର ॥୧୪।
ପାଶ ଅଙ୍କୁଶ ହସ୍ତେ ଶୋହେ ।
ବକ୍ରତୁଣ୍ଡଟି ମନ ମୋହେ ॥୧୫।
ମହାଦେବଙ୍କ ଗେହ୍ଲାପୁଅ ।
ଏକଦନ୍ତ ଲଡ୍ଡୁକ ପ୍ରିୟ ॥୧୬।
ରମା କମଳା ସରସ୍ୱତୀ ।
ବ୍ରହ୍ମା ବିସ୍ତାରେ ତୁମ୍ଭ କୀର୍ତ୍ତି ॥୧୭।
ନମସ୍ତେ ପ୍ରଭୁ ବିଦ୍ୟାଦାତା ।
ନମସ୍ତେ ପ୍ରଭୁ ବିଘ୍ନହର୍ତ୍ତା ॥୧୮।
ସବୁରି ପ୍ରିୟ ଗୌରୀ ସୁତ ।
ଅଜନ୍ମା ମାନସରୁ ଜାତ ॥୧୯।
ନମସ୍ତେ ପ୍ରଭୁ ଗଜମୁଖ ।
ନାଶିଛ ଦେବତାଙ୍କ ଦୁଃଖ ॥୨୦।
ନମସ୍ତେ ମଙ୍ଗଳ ଦାୟକ ।
ସିଦ୍ଧିଦାୟକ ବିନାୟକ ॥୨୧।
ମଥାରେ ଶୋଭଇ ସିନ୍ଦୁର ।
ରୂପ ଗୁଣରେ ବଳିୟାର ॥୨୨।
ହନୁମାନ ଚରିତାମୃତ ।
ଲେଖିବି ବଳାଇଛି ଚିତ୍ତ ॥୨୩।
ପାଇଲେ ତୁମର ଆଶିଷ ।
ସମ୍ଭବ ହୋଇବ ଅବଶ୍ୟ ॥୨୪।
ଗଣ ଈଶ୍ୱର ଦୟାବହି ।
ପଦ କାନରେ ଦିଅ କହି ॥୨୫।

# ମା' ବ୍ରାହ୍ମଣୀ ଦେବୀ

ନମସ୍ତେ ମା' ଦେବୀ ବ୍ରାହ୍ମଣୀ ।
ହରିହରପୁର ବାସିନୀ ॥୨୬।
ଗ୍ରାମ ମୁଣ୍ଡରେ କେଉଁ କାଳୁ ।
ରହିଛୁ ମାଆ ତୁ ଦୟାଳୁ ॥୨୭।
ଶୁଣୁଛୁ ଭକତ ଦୟିନୀ ।
ଗ୍ରାମବାସୀଙ୍କ ମନ ଘେନି ॥୨୮।
ନିଶାରେ ଅଶ୍ୱ ପରେ ବସି ।
ବୁଲୁ ମା' ପୁରେ ପୁରେ ଆସି ॥୨୯।
ଦୁଃଖ ଆପଦ ବିପଦରେ ।
ଡାକିଲେ ଶୁଣୁ ମା' ସତ୍ୱରେ ॥୩୦।
ଅଳ୍ପେ ସନ୍ତୁଷ୍ଟା ମାଆ ମୋର ।
ଭକତ ଜୀବନ ତୋହର ॥୩୧।
ସୁମରି ଯାତ୍ରା ଆରମ୍ଭିଲେ ।
ସବୁ ଦାୟିତ୍ୱ ନେଉ ଭଲେ ॥୩୨।
ମନେ ସୁମରି କଲେ କର୍ମ ।
ସଫଳ ହୁଏ କଲା କର୍ମ ॥୩୩।
ହନୁମାନ ଚରିତାମୃତ ।
ବର୍ଣ୍ଣନେ ଆଶା କରି ଚିତ୍ତ ॥୩୬।
ଲେଖନୀ ହସ୍ତେ ମା' ବସିଛି ।
ତୋହର ଆଶିଷ ମାଗୁଛି ॥୩୫।
ତୋ ଦୟା ବିନା ଏହି କାର୍ଯ୍ୟ ।
ପୂରଣେ ମା' ମୋ ନାହିଁ ଧୈର୍ଯ୍ୟ ॥୩୬।
ହନୁମାନ ଚରିତ କଥା ।
ଭରି ଦିଏ ମା' ମୋର ମଥା ॥୩୭।
ସ୍ନେହମୟୀ ମା' ଦୟା କର ।
ଚରିତ ହନୁମାନଙ୍କର ॥୩୮।
ବର୍ଣ୍ଣନେ ସାମର୍ଥ୍ୟ ମା' ଦିଅ ।
ପଦକୁ ପଦ କାନେ କୁହ ॥୩୯।
ପଶିଲି ତୋ ଠାରେ ଶରଣ ।
ତୋ ପାଦେ ସଦା ରହୁ ମନ ॥୪୦।

# ମା' ବରାଳିଆ

ନମସ୍ତେ ମାତ ବରାଳିଆ ।
କ୍ଷମାଶୀଳା ତୁ ଭକ୍ତପ୍ରିୟା ॥୪୧।
ଭକତି ଭରା ହୃଦୟରେ ।
କାନ୍ଦିଣ ଡାକିଲେ ଆତୁରେ ॥୪୨।
ତତକ୍ଷଣରେ ଶୁଣୁ ତୁହି ।
ଉଦ୍ଧାରୁ ପାଖେ ପାଖେ ରହି ॥୪୩।
ଭକତ ଆର୍ତ୍ତ ଡାକ ଶୁଣି ।
ଅଶ୍ୱରେ ବସି ମନ ଜାଣି ॥୪୪।
ପାଶରେ ପହଁଚି ତାହାର ।
ଆରତ ବିନାଶୁ ସତ୍ୱର ॥୪୫।
ସିଙ୍ଗାରପୁର ଗାଁ ଦେବତୀ ।
ପଣତ ତଳେ ସ୍ନେହେ ଅତି ॥୪୬।
ରଖିଛୁ ସେ ଗ୍ରାମବାସୀରେ ।
ବିପଦେ ଆପଦେ ଦୁଃଖରେ ॥୪୭।
ଫୁଲ ଫଳ ପତର ଦେଇ ।
ଯିଏ ତୋର ଦୁଆରେ ଯାଇ ॥୪୮।
ଶିଳା ଖଣ୍ଡିଏ ଥୋଇ ସାକ୍ଷୀ ।
ପୂଜିଲେ ମାନସିକ ରଖି ॥୪୯।
ପୁରାଉ ଶୁଣିଛି ତୁ ଆଶ ।
ଭକତେ ନ କରି ନିରାଶ ॥୫୦।
ମୋ ପରେ ଲବେ ଦୟା କର ।
ଆଶିଷ ହୋଇଲେ ତୋହର ॥୫୧।
ହନୁମାନ ଚରିତ କଥା ।
ନାଶିବ ଯିଏ ଭବବ୍ୟଥା ॥୫୨।
ଲେଖିବି ତୋ କରୁଣା ପାଇ ।
କରୁଣା ମୟୀ ମହାମାୟୀ ॥୫୩।
ପାଦରେ ପଶୁଛି ଶରଣ ।
କାନରେ କୁହ ପଦ ମାନ ॥୫୪।

# ଶ୍ରୀ ଦଧିବାମନ

ନମସ୍ତେ ଶ୍ରୀ ଦଧିବାମନ ।
ଦଧିପ୍ରିୟ ହେ ଭଗବାନ ।।୫୫।
ହରିହରପୁର ଗ୍ରାମରେ ।
ବସିଛ ପଶ୍ଚିମ ଦିଗରେ ।।୫୬।
ସାଙ୍ଗରେ ଧରି ଜଗନ୍ନାଥ ।
ତୁମେ ସ୍ୱୟଂ ଜଗତ ନାଥ ।।୫୭।
ଅଶରଣ ଜନ ଶରଣ ।
ରକ୍ଷା କରୁଛ ନାରାୟଣ ।।୫୮।
ଗ୍ରାମବାସୀ ତୁମ ପୟରେ ।
ଖଟନ୍ତି କିଙ୍କର ପ୍ରକାରେ ।।୫୯।
ଯୋଗକ୍ଷେମ ସେମାନଙ୍କର ।
ବହନ କରୁଛ ଠାକୁର ।।୬୦।
ମଙ୍ଗଳା ମା ଭଣ୍ଡାର ଦେଇ ।
ବ୍ରାହ୍ମଣୀ ଦେବୀ ବିରଜାଇ ।।୬୧।
ବେଢ଼ୀ ଅଛନ୍ତି ଚତୁଃପାର୍ଶ୍ୱେ ।
ପାଳନ୍ତି ତୁମ୍ଭର ନିର୍ଦ୍ଦେଶେ ।।୬୨।
ବଳବନ୍ତ ହେ ପ୍ରଭୁ ତୁମେ ।
ଭକତ ପ୍ରିୟ ଧରାଧାମେ ।।୬୩।
ଦଧିବାମନ ଦୟାବନ୍ତ ।
ତୁମ୍ଭର ମହିମା ଅନନ୍ତ ।।୬୪।
ଭକତ ଜନଙ୍କର ଦୁଃଖ ।
ନାଶ କରୁଛ ପଦ୍ମ ମୁଖ ।।୬୫।
ଆରତେ ପକାଇଲେ ହୁରି ।
ଚକ୍ରେ ନାଶ ଆର୍ତ୍ତି ଶ୍ରୀହରି ।।୬୬।
ହନୁମାନ ଚରିତ ଚିତ୍ତେ ।
ଲେଖିବ ବୋଲି ଭାବି ଗୀତେ ।୬୭।
ସୁରେଶ ମାଗଇ ଚରଣେ ।
କୃପା ବରଷ କଣେ କଣେ ।।୬୮।
ହୋଇଲେ କରୁଣା ତୁମ୍ଭର ।
ବର୍ଣ୍ଣିବ ଗୁଣ ମାରୁତିର ।।୬୯।

# ପଞ୍ଚମୁଖୀ ହନୁମାନାଷ୍ଟକ ସ୍ତୋତ୍ର

ରାଗ-ଚକ୍ରକେଳି

ଦଶ ହସ୍ତ ପଞ୍ଚଦଶ ନୟନ
ବିରାଟ ସ୍ୱରୂପ ପଞ୍ଚ ଆନନ
ସର୍ବ ଇଚ୍ଛା ସିଦ୍ଧି ପ୍ରଦାନକାରୀ
ନମେ ହନୁମାନ ପାଦେ ତୁମରି ।୧ ।
ଖଡ଼ଗ ତ୍ରିଶୂଳ ଖଟ୍ୱାଙ୍ଗ ପାଶ
ଗଦା କମଣ୍ଡଳୁ ବୃକ୍ଷ ଅଙ୍କୁଶ
ମୁଷ୍ଟି ପରବତ ଧାରଣକାରୀ
ନମେ ହନୁମାନ ପାଦେ ତୁମରି ।୨ ।
କୋଟି ସୁର୍ଯ୍ୟସମ ତେଜ ପ୍ରକାଶେ
କରାଳ ବଦନ ଦିଶଇ ରୋଷେ
ପାବନୀ ଅଛ ପୂର୍ବେ ମୁଖ କରି
ନମେ ହନୁମାନ ପାଦେ ତୁମରି ।୩ ।
ନରସିଂହ ମୁଖ ଦିଗେ ଦକ୍ଷିଣ
ଅତି ଉଗ୍ରତେଜ ବପୁ ଭୀଷଣ
ହେ ଉଗ୍ରବୀର ଭୟ ନାଶକାରୀ
ନମେ ହନୁମାନ ପାଦେ ତୁମରି ।୪ ।
ପଶ୍ଚିମ ଦିଗରେ ଗରୁଡ଼ାନନ
ମହାବଳୀ ବକ୍ର ତୁଣ୍ଡ ଧାରଣ
ବିଷ ଭୂତ ନାଶି ନାଗ ଅଇରୀ
ନମେ ହନୁମାନ ପାଦେ ତୁମରି ।୫ ।
କୃଷ୍ଣ ଦୀପ୍ତ ନଭୋପମ ଶୂକର
ଚାହିଁ ରହିଅଛ ଦିଗେ ଉତ୍ତର
ପେଷଣ ଜ୍ୱର ରୋଗ ନାଶକାରୀ
ନମେ ହନୁମାନ ପାଦେ ତୁମରି ।୬ ।
ହୟଗ୍ରୀବ ମୁଖ ଉର୍ଦ୍ଧ୍ୱକୁ ତୁମ
ଦାନବାନ୍ତକାରୀ ଘୋର ପରମ
ତାରକାସୁର ପ୍ରାଣନାଶକାରୀ
ନମେ ହନୁମାନ ପାଦେ ତୁମରି ।୭ ।
ଇଷ୍ଟ ପାବନୀ ଅଭିଷ୍ଟ ନୃସିଂହ
ସୌଭାଗ୍ୟ ଗରୁଡ଼ ଧନ ବରାହ
ବିଦ୍ୟା ଜୟ ଦିଅ ଅଶ୍ୱଆନନ
ନମସ୍ତେ ପଞ୍ଚାନନ ହନୁମାନ ।୮ ।

# ସଙ୍କଟ ମୋଚନ ହନୁମାନାଷ୍ଟକ

ରାଗ-ଭୂପାଳ

ବାଳକାଳେ ତୁମେ ପକ୍ୱଫଳ ଭାବି
ମୁଖେ ପୁରାଇଲ ବଳବାନ ରବି
ଅନ୍ଧକାରେ ବୁଡି ସମସ୍ତ ସଂସାର
ତ୍ରାହି ତ୍ରାହି ଡାକେ ଭୟରେ ଆତୁର
ଭାସ୍କରେ ଛାଡ଼ିଣ ତୁମେ ମହାମତି
ରଖିଲ ଜଗତ ଶୁଣି ଦେବ ସ୍ତୁତି
ସଂସାରେ ପ୍ରସିଦ୍ଧ ମାରୁତି ନନ୍ଦନ
ଘେନ ମୋ ପ୍ରଣାମ ସଙ୍କଟ ମୋଚନ ।୧ ।
ବାଳି ଭୟେ ରହେ କପୀଶ ଗିରିରେ
ଯହିଁ ସେ ନ ଯାଏ 'ଚୌକି' ଶାପ ଡରେ
ଭେଟିଲ ପ୍ରଭୁଙ୍କୁ ଦ୍ୱିଜ ରୂପ ଧରି
ସୁଗ୍ରୀବେ ତାରିଲ ରାମେ ମିତ୍ର କରି
ଭକ୍ତର ଦୁଃଖକୁ କରିଲ ମୋଚନ
ପାଇ ଧନ୍ୟ ହେଲ ପ୍ରଭୁ ଦରଶନ
ସଂସାରେ ପ୍ରସିଦ୍ଧ ମାରୁତି ନନ୍ଦନ
ଘେନ ମୋ ପ୍ରଣାମ ସଙ୍କଟମୋଚନ ।୨ ।
ଗଲ ସୀତା ଠାବେ ଅଙ୍ଗଦ ସହିତ
ସୈନ୍ୟମାନେ ହେଲେ ଶ୍ରମେ ମୃତବତ
ଆଶ୍ରିତଙ୍କ ରକ୍ଷା ପ୍ରଭୁ ତୁମ୍ଭେ କର
ମହାଭୟଙ୍କର ସଙ୍କଟୁ ଉଦ୍ଧର
ସୀତା ଠାବ କରି ସର୍ବେ ରକ୍ଷାକଲ
ପ୍ରଭୁଙ୍କର ପ୍ରିୟ ପାତ୍ର ପାଲଟିଲ
ଅଜ୍ଞାନ ନାଶନ ଅଞ୍ଜନା ନନ୍ଦନ
ଘେନ ମୋ ପ୍ରଣାମ ସଙ୍କଟ ମୋଚନ ।୩ ।
ରାବଣ ନିଯୁକ୍ତ ରାକ୍ଷସୀଙ୍କ ଦଳ
ସୀତାମାତେ ଦୁଃଖ ଦିଅନ୍ତି ସକଳ
ସାଗର ଲଙ୍ଘିଣ ଲଙ୍କାରେ ପହଞ୍ଚି
ତୁମ ପାଇଁ ତାଙ୍କ ଦୁଃଖ ଗଲା ଘୁଞ୍ଚି
ମାରିଣ ରାକ୍ଷସ ରାମବାର୍ତ୍ତା ଦେଲ
ସୀତା ମାତେ ନୂଆ ଜୀବନ ଭରିଲ
ରାମଙ୍କର ଦୂତ ଆତଙ୍କ ନାଶନ

ଘେନ ମୋ ପ୍ରଣାମ ସଙ୍କଟ ମୋଚନ ।୪ ।
ଲକ୍ଷ୍ମଣେ ମାରିଲା ମେଘନାଦ ଶକ୍ତି
ବୈଦ୍ୟ ଶୁଷେଣକୁ ଆଣିଲ ଝଟତି
ଉପଦେଶେ ଗଲ ସଂଜିବନୀ ଆଣି
ଗନ୍ଧମାର୍ଦ୍ଧନକୁ ଉପାଡ଼ିଲ ଟାଣି
ରାତି ଥାଉ ଯୁଦ୍ଧ କ୍ଷେତ୍ରରେ ପହଞ୍ଚି
ତତକ୍ଷଣେ ଉଠିଲେ ଲକ୍ଷ୍ମଣ ବଞ୍ଚି
ସଂସାରେ ପ୍ରସିଦ୍ଧ ପ୍ରଭୁ ହନୁମାନ
ଘେନ ମୋ ପ୍ରଣାମ ସଙ୍କଟ ମୋଚନ ।୫ ।
ନାଗପାଶ ବାଣ ମାରିଣ ରାବଣ
ସୈନ୍ୟ ସହ ରାମେ କରିଲା ବନ୍ଧନ
ଆଣିଲ ଗରୁଡ଼ ବୈକୁଣ୍ଠୁ ଡକାଇ
ନାଗମାନେ ଗଲେ ଭୟରେ ପଳାଇ
ସୈନ୍ୟସାମନ୍ତଙ୍କୁ ଉଦ୍ଧାର କରିଲ
ଗରୁଡ଼ ସହିତ ରାମେ ମିଳାଇଲ
ସଂସାରେ ପ୍ରସିଦ୍ଧ ବିପଦ ନାଶନ
ଘେନ ମୋ ପ୍ରଣାମ ସଙ୍କଟ ମୋଚନ ।୬ ।
ଦୁଷ୍ଟ ମହିରାବଣ ପାତାଳେ ନେଇ
ରାମଙ୍କ ସହିତ ଲଇକ୍ଷଣ ଭାଇ
ବଳୀ ଦେବାପାଇଁ ହୋଇ ଆଗଭର
ଖଡ୍ଗ ଉଠାଇଲା ଦେବାକୁ ପ୍ରହାର
ତୁମ୍ଭେ ଉଭା ହୋଇ ତତ୍କ୍ଷଣେ ସେଠାରେ
ମୁକ୍ତ କଲ ବଳୀ ଦେଇଣ ତାହାରେ
ଆହେ କପିବର ବିପଦ ତାରଣ
ଘେନ ମୋ ପ୍ରଣାମ ସଙ୍କଟ ମୋଚନ ।୭ ।
ପ୍ରଭୁ ରାମଙ୍କର କାର୍ଯ୍ୟ ସମ୍ଭାଳିଛ
ଦେବତା ମାନଙ୍କ ଶରଣ ରଖିଛ
ଏମିତି ସଙ୍କଟ ଅଛି ମୋର କି ବା
ତୁମ୍ଭରି ପ୍ରସାଦେ ନ ଟଳିବ ଅବା
ମୋ ପରି ଗରିବ ପ୍ରତି ଦୟାକର
ଯେତକ ସଙ୍କଟ ସବୁଦୂର କର
ହେ ଶିବାବତାର ପ୍ରଭୁ ହନୁମାନ
ଘେନ ମୋ ପ୍ରଣାମ ସଙ୍କଟ ମୋଚନ ।୮ ।

# ହନୁମାନ ପଞ୍ଚକ

ରାଗ-ପଞ୍ଚ ମହଞ୍ଜରୀ

ମନ ଠାରୁ ତୀବ୍ର ବେଗ ପବନୁ ଶୀଘ୍ରତା
ବୁଦ୍ଧିମାନ ବିଦ୍ୟାବାନ ଇନ୍ଦ୍ରିୟ ନିୟନ୍ତା ।୧ ।
ବାନରଙ୍କ ମୁଖ୍ୟ ପ୍ରଭୁ ମରୁତଙ୍କ ପୁତ୍ର
ସୁଗ୍ରୀବ ଭଣଜା ତୁମେ ଶ୍ରୀରାମଙ୍କ ଦୁତ ।୨ ।
ମହାବଳବାନ ତୁମ ଅମିତ ବିକ୍ରମ
ଦଶଗ୍ରୀବ ଦର୍ପହାରୀ ରାକ୍ଷସଙ୍କ ଯମ ।୩ ।
ଲକ୍ଷ୍ମଣଙ୍କ ପ୍ରାଣ ଦାତା ଅଞ୍ଜନାଙ୍କ ସୁତ
ସୀତାଶୋକ ବିନାଶକ ଅର୍ଜ୍ଜୁନ ମଇତ୍ର ।୪ ।
ପିଙ୍ଗାକ୍ଷୋଦଧିକ୍ରମଣ ଦୁଷ୍ଟ ବିନାଶନ
ଦୁଃଖ ଶୋକ କଷ୍ଟ ନାଶ ପ୍ରଣାମ ମୋ ଘେନ ।୫ ।



# ପ୍ରଥମ ଛାନ୍ଦ

ରାଗ-ରସକୁଲ୍ୟା

(ପୁଞ୍ଜିକସ୍ଥଳାଙ୍କର ଶାପ ପ୍ରାପ୍ତି, ଅଞ୍ଜନାରୂପେ ଜନ୍ମଗ୍ରହଣ ଓ କେଶରୀ ସହିତ ବିବାହ)

କର କର୍ଣ୍ଣପୁଟେ ଭକ୍ତ ସୁଜନ । ହନୁମାନ ଚରିତାମୃତ ପାନ ।
ସୁନ୍ଦର ମରୁତ ନନ୍ଦନ କଥା । ଶୁଣିଲେ ଛିଣ୍ଡିଯିବ ଭବବ୍ୟଥା ।
ସୁଖ ମିଳିବ ଅପାର,
ସୁଦୟା କରିବେ, ପ୍ରାରବ୍ଧ ନାଶିବେ, ପ୍ରଭୁ ଅଞ୍ଜନା କୁମର ।୧।
ଭକତ ଶ୍ରେଷ୍ଠଙ୍କର କଥା ଏହି । ଶ୍ରବଣେ ମନକୁ ଦିଅଇ ମୋହି ।
ଶରୀରଟି ହୁଅଇ ରୋମାଞ୍ଚିତ । ମନ ହୃଦୟ ହୁଏ ପୁଲକିତ ।
ବିମଳ ଆନନ୍ଦ ମିଳେ,
ମନେ ଭକ୍ତି ଭରେ, ଖୁସି ହୃଦୟରେ, ଶାନ୍ତ ଇନ୍ଦ୍ରିୟ ସକଳେ ।୨ ।
ସ୍ୱର୍ଗଲୋକେ ଶଚୀପତି ସଭାରେ । ଅପ୍ସରୀ ଯେତେ ଅଛନ୍ତି ସେବାରେ ।
ଏକୁ ଏକ ବଳି ଅତି ସୁନ୍ଦରୀ । ଗାନ୍ଧର୍ବ କଳାରେ ପ୍ରବୀଣା ଭାରି ।
ସେବାରେ ଥାଆନ୍ତି ନିତ୍ୟ,
ଶ୍ରୀପୟର ସେବା, ପୁଣି ଦୂତି ସେବା, କରଣେ ଥାନ୍ତି ପ୍ରସ୍ତୁତ ।୩ ।
ମେନକା, ତିଳୋତ୍ତମା, ମଞ୍ଜୁକେଶୀ । ସୌଦାମିନୀ, ସୁକେଶୀ, ମିଶ୍ରକେଶୀ ।
ରମ୍ଭା, ଘୃତଚି, ବୁଦ୍ଧା, ସୁଲୋଚନା । ଦେବଦତ୍ତା, ସୁଦତ୍ତି, ଦେବସେନା ।
ଏକକୁ ଏକ ସୁନ୍ଦରୀ,
ସୁଚାରୁକେଶିନୀ, ହରିଣୀନୟନୀ, ସୁନିପୁଣା ବିଦ୍ୟାଧରୀ ।୪ ।
ସୁନ୍ଦରୀ, ସୁମୁଖି, ମାଗଧି, ନନ୍ଦା । ବିଦଗ୍ଧା, ବିବିଧା, ଅର୍ଜ୍ଜୁନୀ, କୁନ୍ଦା ।
ସୁମାଳା, ସୁନନ୍ଦା, ମଧୁରସ୍ୱନା । ମନୋରମା, ଉର୍ବଶୀ, ଚିତ୍ରସେନା ।
ଚଞ୍ଚଳା, ସିଂହକଟିନୀ,
ସୁବେଶଧାରିଣୀ, ସ୍ଥୂଳନିତମ୍ବିନୀ, ହଂସିନୀ ଗଜଗମନୀ ।୫ ।
ସ୍ୱୟଂପ୍ରଭା, ଦଣ୍ଡଗୌରୀ, ସନ୍ତତି । ଚିତ୍ରଲେଖା, ଗୋପାଳୀ, ପୂର୍ବଚିତ୍ତି ।
ସହଜନା, କଳମ୍ବା, ସୁପୁସ୍କଳା । ବାରୁଧିନୀ, ସାହା, ସୁପୁଷ୍ପମାଳା ।
ରମ୍ୟା ଗନ୍ଧର୍ବ ଲଳନା,
ଗନ୍ଧର୍ବ କଳାରେ, ନୃତ୍ୟ ଓ ଗୀତରେ, ଏକୁ ଏକ ସୁପ୍ରବୀଣା ।୬ ।
କୁମ୍ଭଯୋନୀ, ପ୍ରଜାଗରା, ସରଳା । ଧୃତି, କେରଳା ଓ ପୁଞ୍ଜିକସ୍ଥଳା ।
ରତିଶାସ୍ତ୍ରେ ସର୍ବେ ନିପୁଣା ଅତି । ସେବା କରନ୍ତି ଲୟେ ଶଚୀପତି ।
ଆଜ୍ଞା ପ୍ରମାଣେ ଖଟନ୍ତି,
ସୁର ମାନଙ୍କର, ସେବାରେ ତତ୍ପର, ନିତ୍ୟପ୍ରତି ରହିଥାନ୍ତି ।୭ ।

ବିଶିଷ୍ଟ ଦେବତାଙ୍କ ବ୍ୟକ୍ତିଗତ । ସହାୟିକା ରୂପେ ଥାନ୍ତି ନିଯୁକ୍ତ ।
ଅଳ୍ପ ବୟସୀ ସଦା ଯୁବା ତନ୍ୱୀ । ସୁମୁଖୀ ବିମ୍ବାଧରୀ ସୁହାସିନୀ ।
ବିଦ୍ୟୁତ୍‌ପ୍ରଭା ପ୍ରାୟ ଦ୍ୟୁତି,
ତପ ଆଚରଣ, କରେ ଯେ ଦୃଢ଼େଣ, ତପ ତାହାର ଭାଙ୍ଗନ୍ତି ।୮ ।
ପୁଞ୍ଜିକସ୍ଥଳା ନାମେ ଅପସରୀ । ଦେବଗୁରୁଙ୍କର ସେ ସେବାକାରୀ ।
ଗୁରୁଙ୍କ ଦେବପୂଜନ ନିମନ୍ତେ । ପୁଷ୍ପ ଚୟନ କରଣେ ଯାଆନ୍ତେ ।
ଦେଖିଲେ ଉପବନରେ,
ଯୁବକ ଯୁବତୀ, ଆଦିରସେ ମତି, ପ୍ରଯୁକ୍ତ ରସ ରଙ୍ଗରେ ।୯ ।
ଚାଲନ୍ତି ବୁଲନ୍ତି ବିଭିନ୍ନ ଢଙ୍ଗେ । ବାର୍ତ୍ତାଳାପ କରି ବିଭିନ୍ନ ରଙ୍ଗେ ।
କରନ୍ତି ଚାତୁର୍ଯ୍ୟେ ନେତ୍ର ଚାଳନା । ଅଙ୍ଗଭଙ୍ଗୀ ଯେହ୍ନେ ଲଜ୍ଜା ବିହୀନା ।
ହାସ୍ୟରେ କାମ ବିକାର,
ଦେଖି ଅପସରୀ, କାମ ବାଣେ ଘାରି, ହୋଇଲା ହୃଦ ମନର ।୧୦ ।
ମନରେ ଭାବଇ ମୁଁ ବଡ଼ ଦୁଃଖୀ । ମୋ ସାଥେ ନାହାଁନ୍ତି ମୋହର ସଖୀ ।
ଥାନ୍ତା କେହି ସାଥେ ଯଦି ମୋହର । କାନ୍ତ ସହିତ କରନ୍ତି ବିହାର ।
ବେପଥୁ ଶରୀରେ ଜାତ,
ମନ ଚଇତନ, ଭୁଲି କାଳ ସ୍ଥାନ, ଦହିଲା ହୃଦେ ସତତ ।୧୧ ।
ସୁମନ ହସ୍ତେ ଗୁରୁ ପାଶେ ଯାଇ । ମନ ରତିରେ ହସ୍ତକୁ ଟାଣଇ ।
ଦେବ ପୂଜନେ ଗୁରୁଙ୍କର ମନ । ପୁଞ୍ଜିକସ୍ଥଳାକୁ ଦେଖି ଏସନ ।
ବୋଇଲେ ବାଳାକୁ ଚାହିଁ,
ଏପରି କିମ୍ପାଇ, ହେଉ ରାମା ତୁହି, ମନ ରମେ ଅନ୍ୟ କାହିଁ ।୧୨ ।
ତଥାପି ପୁଞ୍ଜିକସ୍ଥଳାର ମନ । ରହିଲା ନାହିଁ ହୋଇ ନିୟନ୍ତ୍ରଣ ।
ରତିଚିନ୍ତାରେ ମନ ତା ଆବୃତ । ବ୍ୟବହାର ଦେଖାଏ ବିପରୀତ ।
ଦେବଗୁରୁ ବୃହସ୍ପତି,
ବାନରୀ ଯେପରି, ବୁଦ୍ଧି ତୋ ସେପରି, ଶାପ ଦେଲେ କ୍ରୋଧେ ଅତି ।୧୩ ।
ବାନରୀ ପରି ଚଞ୍ଚଳ ତୋ ମନ । ବାନରୀ ଗରଭେ ନେବୁ ଜନମ ।
ଶାପ ଶୁଣି ଥରି ଥରି ଅପ୍ସରୀ । କାନ୍ଦଇ ପଡ଼ିଣ ଚରଣ ଧରି ।
କାମ ମୋହ ଗଲା ଛାଡ଼ି,
ରକ୍ଷାକର ଯତି, ମୁହିଁ ହୀନମତି, କ୍ଷମ ବାଟ ଗଲି ହୁଡ଼ି ।୧୪ ।
ଦୟାର ସାଗର ହେ ଦୟାକର । ତୁମ୍ଭର ମୁହିଁ ତ କିଣା ଚାକର ।
କ୍ଷଣିକ ଆବେଶେ ହୋଇଲି ଅନ୍ଧ । ନ ଜାଣିଲି କେ ଓଲୁଅ କେ କନ୍ଦ ।
ଶାପୁ କର ମୋତେ ମୁକ୍ତ,

ମୁଁ ସିନା ଅକ୍ଷମ, ତୁମେ ତ ସକ୍ଷମ, କ୍ଷମାକର ତାରା କାନ୍ତ ।୧୫
ସହଜ କୃପାଳୁ ଦେବଙ୍କ ଗୁରୁ । ପୁଞ୍ଜିକସ୍ଥଳା କ୍ଷମା ମାଗିବାରୁ ।
ହୃଦୟ ହୋଇଗଲା ଦ୍ରବିଭୂତ । ବୋଲିଲେ ଦୁଃଖେ ତୋ ମୁହିଁ ଦୁଃଖିତ ।
ଏ ମୋର ଯେଉଁ ବଚନ,
ନିଶ୍ଚେ ସତ୍ୟ ହେବ, ଅବଶ୍ୟ ଫଳିବ, ଫେରାଇବା ଟି କଠିନ ।୧୬ ।
ତୋହ ଉପରେ ମୁଁ ହେଲି ସଦୟ । ଯେଣୁ ତୋର ଚଇତନ ଉଦୟ ।
ବର ଗୋଟିଏ ଦେଉଅଛି ତୋତେ । ରୂପ ଧରିବୁ ତୁହି ଇଚ୍ଛା ମତେ ।
ବାନରୀ ନାରୀ ଅପ୍ସରୀ,
ହେଲେ ପୁତ୍ରବତୀ, ପାଇବୁ ମୁକତି, ସ୍ୱର୍ଗରେ ଆସିବୁ ଫେରି ।୧୭ ।
ପରମ ରୂପବତୀ ଅପସରା । ଅଭିଶାପ ପାଇ ଆସିଲା ଧରା ।
ବାନର ରାଜ କୁଞ୍ଜରର ପୁରେ । କପିଯୋନିରେ ତା ପୁତ୍ରୀ ରୂପରେ ।
ଜନ୍ମି ଅନିନ୍ଦ୍ୟ ସୁନ୍ଦରୀ,
ବଢ଼େ ଦିନୁ ଦିନ, ତାହାର ସମାନ, ପୃଥ୍ୱୀରେ ନ ଥିଲେ ନାରୀ ।୧୮ ।
ବୃହସ୍ପତି ପୁତ୍ର ସୁମେରୁ ରାଜା । ଆନନ୍ଦ ମନରେ ପାଳଇ ପ୍ରଜା ।
ତୀର୍ଥ ଭ୍ରମଣରେ ଏକଦା ଯାଇ । ପ୍ରଭାସ ତୀର୍ଥରେ ଆନନ୍ଦ ହୋଇ
ପହଞ୍ଚି ହୃଷ୍ଟ ଚିତ୍ତରେ,
ତୀର୍ଥ ମଧ୍ୟେ ସ୍ନାନ, କରିବାକୁ ମନ, ପ୍ରଣାମେ ଯୋଡ଼ ହସ୍ତରେ ।୧୯ ।
ତୀର୍ଥ ତଟରେ ଶହ ଶହ ଯତି । ଦେବାର୍ଚ୍ଚନାରେ ପ୍ରବୃତ୍ତ ଅଛନ୍ତି ।
ଏହି ସମୟରେ ଗୋଟିଏ ଗଜ । ଆସିଲା ମତ୍ତରେ ପକାଇ ଖୋଜ ।
କେତେକ ମାରିଲା ଋଷି,
କେତେକଙ୍କୁ ଧରି, ଶୁଣ୍ଢରେ ଓଟାରି, କଚାଡ଼େ ନେଇ ଆକର୍ଷି ।୨୦ ।
ଦୂରୁ ଦେଖି ବୃହସ୍ପତି ନନ୍ଦନ । ବଢ଼ିଗଲା ତାଙ୍କ ହୃଦସ୍ପନ୍ଦନ ।
ବସିଥିଲେ ଧ୍ୟାନରେ ଭରଦ୍ୱାଜ । ବାହ୍ୟ ଦୁନିଆଁର ନ ଥିଲା ହେଜ ।
ମତ୍ତଗଜ ପ୍ରମତ୍ତରେ,
ଋଷିଙ୍କ ଆଡ଼କୁ, ଆସେ ମାରିବାକୁ, ଦେଖିଲେ ସୁମେରୁ ରାଜ ।୨୧ ।
ତତକ୍ଷଣେ ବିଜୁଳିର ବେଗରେ । ଯାଇ ମାରେ ଦନ୍ତ ଉପାଡ଼ି ତାରେ ।
ଧ୍ୟାନ ଭାଙ୍ଗି ଭରଦ୍ୱାଜ ଉଠିଣ । ଦେଖି ଶୁଣି ସମସ୍ତ ବିବରଣ ।
ଧନ୍ୟ ହେ ଧନ୍ୟ ଉଚାରି,
ମାଗ ଦେବି ବର, ଭାଷେ ଯତି ବର, ଏ ବାକ୍ୟ ସତ୍ୟ ମୋହରି ।୨୨ ।
ବୀରତ୍ୱରେ ତୁମ୍ଭର ମୁହିଁ ଖୁସି । ବୀରବର ତୁମ୍ଭେ ବହୁ ସାହସୀ ।
ରକ୍ଷା କରିଅଛ ମୋର ଜୀବନ । ଯାହା ମାଗିବ କରିବି ପ୍ରଦାନ ।

କେଶରୀ ବଧିଛ କରୀ,
କେଶରୀ ନାମରେ, ସାରା ସଂସାରରେ, ବାନା ଉଡ଼ିବ ତୁମ୍ଭରି ।୨୩।
ଯତିଙ୍କ ପାଦେ କରି ନମସ୍କାର । ସୁମେରୁ ରାଜନ କହଇ ଗୀର ।
କେଶରୀ ନାମ କରୁଛି ଗ୍ରହଣ । କାମନା ଅନ୍ୟେକ କର ପୂରଣ ।
ମୋତେ ହେଉ ପୁତ୍ରପ୍ରାପ୍ତି,
ପବନ ସମାନ, ଯିଏ ବେଗବାନ, ରୁଦ୍ରପରି ଯା'ର ଶକ୍ତି ।୨୪।
ତଥାସ୍ତୁ କହିଣ ସେ ଯତି ସାଇଁ । ମନ୍ତ୍ରୀତ ଜଳକୁ ହାତରେ ନେଇ ।
ଛିଞ୍ଚିଲେ କେଶରୀ ରାଜା ଉପରେ । ପତ୍ନୀ ତୋର ଅଛି କୁଞ୍ଜର ପୁରେ ।
ଅଞ୍ଜନା ନାମ ତାହାର,
ତା ପାଣି ଗ୍ରହଣ, କରିଲେ ରାଜନ, କାମନା ପୂରିବ ତୋର ।୨୫।
ଋଷି ବର ପାଇ ବାନର ରାଜ । କୁଞ୍ଜର ପୁରେ ଗଲା ହୋଇ ସଜ ।
ମାଗିଲା ତା'ରେ ଅଞ୍ଜନାଙ୍କ ପାଣି । ନାଗରୀ ରତନ ସୁନ୍ଦରୀମଣି ।
ଶୁଣି କେଶରୀ ବୀରତ୍ୱ,
କୁଞ୍ଜର ରାଜନ, ଆନନ୍ଦିତ ମନ, ଅର୍ପିଲେ ଅଞ୍ଜନା ହସ୍ତ ।୨୬।
ଯାନି ଯଉତୁକ ଅନେକ ଦେଇ । ସେବକ ସେବିକା ସାଥେ ଖଞ୍ଜାଇ ।
ଝିଅ ଜୋଇଁଙ୍କୁ ସୁଖେ କଲେ ବିଦା । ଆଶିଷ ଦେଲେ ସୁଖେ ରୁହ ସଦା ।
ନିଜ ରାଜ୍ୟକୁ କେଶରୀ,
ସାଥେ କନ୍ୟା ରତ୍ନ, ଘେନିଣ ସଯତ୍ନ, ଚଳିଲେ ସଭିଙ୍କୁ ଧରି ।୨୭।
ଅଞ୍ଜନାଙ୍କୁ ନେଇ ରାଜା କେଶରୀ । ବିଜେ କଲେ ଯାଇ କାଂଚନଗିରି
ପତିବ୍ରତା ଧର୍ମ କରି ପାଳନ । ଅଞ୍ଜନା ବଞ୍ଚନ୍ତି ସୁଖି ଜୀବନ ।
କପିଈଶ ବୀରବର,
ନିଜର ସୁନ୍ଦରୀ, ପତ୍ନୀକୁ ତାହାରି, ଦଣ୍ଡେ କରେନା ଅନ୍ତର ।୨୮।
ପରସ୍ପର ମଧ୍ୟେ ସ୍ନେହ ବନ୍ଧନ । ସୁରତି ସୁଖ ଆଦାନ ପ୍ରଦାନ ।
ପୀରତି ଦିନକୁ ଦିନ ବଢ଼ଇ । ବନ୍ଧନ ଗାଢ଼ୁ ଗାଢ଼ତର ହୋଇ ।
ବର୍ଷ ଦିନ ପ୍ରାୟ ଗଲା,
ଭାଷଇ ସୁରେଶ, ଅନେକ ବରଷ, କୋଳେ ସନ୍ତାନ ନୋହିଲା ।୨୯।



# ଦ୍ୱିତୀୟ ଛାନ୍ଦ

ରାଗ-ଧନାଶ୍ରୀ

(ମହେଶ୍ୱରଙ୍କର ମୋହିନୀ ରୂପ ଦର୍ଶନ ଚରିତ)

ଶୁଣ ହେ ସୁଜନ ହୋଇ ତୋଷ ମନ ଶ୍ରୀ ହନୁମନ୍ତ ଚରିତ
ହରିହର ବେନି ଜନଙ୍କ ସମ୍ବାଦ ଶୁଣି ଖଣ୍ଡିବ ଦୁରିତ
ଲୀଳା ଏ ତାହାଙ୍କର
ସଂସାରି ଜନରେ ଅଗୋଚର ।୧ ।
ଶିବ ଶିବା ଦିନେ କୈଳାସ ଭୁବନେ ବସି ଭାବନ୍ତି ମନର
ଯେତେ ହରିଙ୍କର ଅଛି ଅବତାର ଲୀଳା ଅଟଇ ସୁନ୍ଦର
ଗୋଟି ଗୋଟି ଭାବନ୍ତି
ମନେ ପୁଲକିତ ହେଉଥାନ୍ତି ।୨ ।
ଶିବ କହୁଛନ୍ତି ଶିବା ଶୁଣୁଛନ୍ତି ମତ୍ସ୍ୟ କଚ୍ଛପାବତାର
ବରାହ ନୃସିଂହ ବାମନର ଦେହ ଧରିଥିଲେ ରମାବର
ଅଭିନବ ସୁନ୍ଦର
ଏକ ଏକ କେଡ଼େ ମନୋହର ।୩ ।
ପର୍ଶୁରାମ ରାମ ପ୍ରଭୁ ବଳରାମ ବୁଦ୍ଧ କଳକୀ ଶରୀର
ଚିନ୍ତି ମହେଶ୍ୱର ଉମାଙ୍କର ବର ଉମାଙ୍କୁ କୁହନ୍ତେ ଗୀର
ଚେତନା ଦୁହିଁଙ୍କର
ରୋମାଞ୍ଚିତ ହୁଅଇ ଅପାର ।୪ ।
ସନକାଦି ମୁନି ଯଜ୍ଞ ରୂପ ଘେନି ଅଛନ୍ତି ପ୍ରଭୁ ମୋହର
ପୃଥୁ ହୟଗ୍ରୀବ ଦତ୍ତାତ୍ରେୟ ଦେବ ରୂପ ଲାଗେ ଚମତ୍କାର
କୃଷ୍ଣ ଋଷଭଦେବ
ରୂପ ଚିନ୍ତିଲେ ଦୁଃଖ ଲାଘବ ।୫ ।
ନାରଦ ଶ୍ରୀହରି ପ୍ରଭୁ ଧନ୍ୱନ୍ତରି ନରନାରାୟଣ ହଂସ
ସ୍ୱରୂପ କପିଳ ଲାଗଇ ବିମଳ ଶୁଦ୍ଧ ରୂପ ବେଦବ୍ୟାସ
ଧରିଣ ଅବତାର
ହରିଛନ୍ତି ଦୁଃଖ ସଂସାରର ।୬ ।
ଶୁଣିଛି ମୋହିନୀ ରୂପ ପ୍ରଭୁ ଘେନି ଅମୃତ ବଣ୍ଟନ ପାଇଁ
ସେହି ଅବତାର ରୂପ ପ୍ରଭୁଙ୍କର ମନେ କିମ୍ପା ନ ଆସଇ
ଉମା ବୋଲନ୍ତି ଗୀର
ହଳାହଳେ ତୁମେ ଥିଲ ଚୂର ।୭ ।

ଏହି କାରଣରୁ ଆହେ ମହାମେରୁ ସେ ରୂପ ନ ଆସେ ମନ
ତୁମରି ସେବାରେ ଥିବାରୁ ସାଥିରେ ପାଇ ନାହିଁ ମୁଁ ଦର୍ଶନ
ଚାଲ ବୈକୁଣ୍ଠେ ଯିବା
ନାରାୟଣେ ପ୍ରାର୍ଥନା କରିବା ।୮ ।
ଏକମାତ୍ର ଏହି ନାରୀ ରୂପ ବହି କିପରି ମୋହିଲେ ରକ୍ଷ
ସେ ରୂପ ଦର୍ଶନ କରିବା ବହନ ଯିବା ଚାଲ ତାଙ୍କ ପାଖ
ଦୁହେଁ ବୃଷଭ ପରେ
ତ୍ୱରିତେ ଗଲେ ବୈକୁଣ୍ଠ ପୁରେ ।୯ ।
ରମାଈଶ ପାଶେ ପହଞ୍ଚି ହରଶେ ପ୍ରେମେ କଲେ ଦଣ୍ଡବତ
ନମୋ ଜଗଦ୍ ବ୍ୟାପୀ ପ୍ରଭୁ ବିଶ୍ୱରୂପୀ ହେ ପରମ ଭାଗବତ
ବସୁ ଆତ୍ମା ରୂପରେ
ସଚରାଚର ସବୁ ଶରୀରେ ।୧୦ ।
ତୁହି ଆଦି ଅନ୍ତ ସମସ୍ତ ଜଗତ ବୋଲାଉ ତେଣୁ ଅନନ୍ତ
ଚରଣ କମଳ ପ୍ରାଣୀଏ ସକଳ ଚିନ୍ତନ୍ତି ସୁଖେ ଅତ୍ୟନ୍ତ
ବିଷୟ କରି ଦୂର
ମୁନିଏ ଚିନ୍ତନ୍ତି ପାଦ ତୋର ।୧୧ ।
ତୁହି ସୁଧାସାର ବିଶୋକ ମନ୍ଦିର ସୁଖ ରୂପ ନିର୍ବିକାର
ହେତୁ ତୁ ବିଶ୍ୱର ରମୁ ସର୍ବାନ୍ତର ସୃଷ୍ଟି ତୋର ଖେଳ ଘର
ସତ ଅସତ ପରେ
ପରମ ତୁ କେ ବା ଚିନ୍ତିପାରେ ।୧୨ ।
ମାୟାରେ ତୋହର ସକଳ ସଂସାର ମୁଁ ବ୍ରହ୍ମା ଦେବାଦି ଯେତେ
ନ ଜାଣନ୍ତି କେହି ଦୁଷ୍ଟେ ଅବା କାହିଁ ରୂପ ଜାଣିବେ ଜଗତେ
ଜଗତ ସ୍ଥିତି ନାଶ
ସୃଷ୍ଟି ସ୍ରଷ୍ଟଙ୍କ ଦେହେ ପ୍ରକାଶ ।୧୩ ।
ବନ୍ଧ ମୋକ୍ଷ ବେନି କରୁ ମାୟା ଘେନି ତୁରନ୍ତ ଶୂନ୍ୟେ ନିର୍ଲିପ୍ତ
ବାୟୁ ଆକାଶରେ ରହେ ଯେ ଭାବରେ ନୋହୁଁ ତୁ କାହିଁରେ ଲିପ୍ତ
ନାନା ସ୍ୱରୂପ ଧରି
ତ୍ରିଗୁଣେ, ସଂସାର ଉପକାରୀ ।୧୪ ।
ସଂସାର ରକ୍ଷଣେ କ୍ରୀଡ଼ାର କାରଣେ ଧରିଛୁ ଯେତେ ସ୍ୱରୂପ
ସବୁ ମୁଁ ଦେଖୁଛି ଆନନ୍ଦ ନେଇଛି ଆହେ ପ୍ରଭୁ ବିଶ୍ୱରୂପ
ପୁରୁଷ ରୂପେ ତୁହି

ରମିଅଛୁ ସସାଗର ମହୀ ।୧୫ ।
ସାଗର ମନ୍ଥନ ଦେବ ରକ୍ଷ ଗଣ କଲେ ଯେବେ ତୋ ଇଚ୍ଛାରୁ
ପିଇ ହଳାହଳ କଣ୍ଠ ମୋର ନୀଳ ଉଭବ ଯା’ ମନ୍ଥନରୁ
ଦେବେ ଚିନ୍ତିଲେ ଧ୍ୟାନେ
ଯୋଗ ଦିଅ ଅମୃତ ବଣ୍ଟନେ ।୧୬ ।
ମୋହିନୀ ରୂପରେ ଉଭା ସେହିଠାରେ ମୋହିଲୁ ଅସୁର ମନ
ଦେବଙ୍କୁ ପୀୟୁଷ ଦେଇଣ ବିଶ୍ୱେଶ ରଖିଲ ସୁରଙ୍କ ମାନ
ସେହି ରୂପ ମୋହିନୀ
ଦର୍ଶନେ ଆସିଛୁ ଆମ୍ଭେ ବେନି ।୧୭ ।
ରୁଦ୍ର ବାଣୀ ଶୁଣି ହସି ଚକ୍ରପାଣି ରକ୍ଷେ ସୁଧା ନେବା ବେଳେ
ମାୟାରେ ମୋହିନୀ ସ୍ୱରୂପକୁ ଘେନି ଶୁଣି ଦେବଙ୍କ ବିକଳେ
ଅସୁରେ ମାୟା କରି
ସୁରେ ଦେଇଥିଲି ମନ ଭରି ।୧୮ ।
ସେ ରୂପ ଧରିଲି ପୁଣି ସଂହରିଲି ସଂସାରର ଉପକାରେ
ଦେଖିବାର ଆଶେ ଆସିଛ ମୋ ପାଶେ ମୋହିନୀ ରୂପ ଏଠାରେ
ଦେଖାଇବି ଅଗ୍ରତେ
ଦମ୍ଭରେ ରୁହ ତୁମ୍ଭେ ସଂଯତେ ।୧୯ ।
ସେ ରୂପ ମୋହର କନ୍ଦର୍ପର ଘର ଭାଙ୍ଗିଦେବ ଧୈର୍ଯ୍ୟ ବନ୍ଧ
ଆହେ ଯୋଗୀବର ତୁମ୍ଭେ ପାରିବାର କାମେ ନ ହୋଇବ ଅନ୍ଧ
ମୋ ରାମା ଅବତାର
କାମ ନାଶକେ ନାଶିବା ସାର ।୨୦ ।
ଏତେ କହି ଗୀର ପ୍ରଭୁ ମାୟାଧର ମାୟାକୁ ଭିଆଣ କଲେ
ବୈକୁଣ୍ଠ ଭୁବନ ହେଲା ଅନ୍ତର୍ଦ୍ଧାନ ଉପବନ ଭିଆଇଲେ
ନାନା କୁସୁମ ତରୁ
ଭ୍ରମର ଖେଳେ ପୁଷ୍ପେ ପୁଷ୍ପରୁ ।୨୧ ।
ଉପବନେ ସେହି ପ୍ରଭୁ ଭାବଗ୍ରାହୀ ମୋହିନୀ ରୂପକୁ ଧରି
କନ୍ଦୁକେକ ହସ୍ତ ଚାହାଣିଟି ତ୍ରସ୍ତ ଚଳଇ ଯେସନେ କରୀ
ବୃହତ ନିତମ୍ବିନୀ
ନୟନ ଦ୍ୱୟ ଯେହ୍ନେ ହରିଣୀ ।୨୨ ।
ମେଖଳା କଟିରେ ଶୋହେ ଝିନାମ୍ବରେ ଯୌବନ ଫୁଟି ଦିଶଇ
ହୃଦେ ଘନ କୁଚ କମ୍ପଇ ସୁସଞ୍ଚ ହାର କାଞ୍ଚିଲା ଶୋହଇ

ସିଂହ କଟିଟି ତାର
ସ୍ୱଭାବରେ ଡ଼ମ୍ବରୁ ଆକାର ।୨୩ ।
ମଣି ସୀମନ୍ତରେ ନୀଳ ଅଳକାରେ ଚନ୍ଦ୍ରମୁଖୀ ମୁଖ ଶୋହେ
ଭୁରୁ ସାଜେ ଶିର ଗଳେ ମୁକ୍ତାହାର ହସଟି ମନକୁ ମୋହେ
କର୍ଣ୍ଣେ ହେମ କୁଣ୍ଡଳ
ଲୋଚନ ଭ୍ରମଇ ତା ଚଞ୍ଚଳ ।୨୪ ।
ବିମ୍ବ ଓଷ୍ଠଧରୀ ଫିଟା ତା କବରୀ ମାରଇ ସେ ଫୁଲ ଶର
ଡାଳିମ୍ବ ଦଶନା ଲତିକା ଲଳନା ଅଳସୀ ଚେହେରା ତାର
ଅଳକା ସେ ତୋଳଇ
ସୁରଙ୍ଗ ଅଙ୍ଗୁଳି ତ ଶୋଭଇ ।୨୫ ।
ଅଳକା ବାମରେ ଦକ୍ଷିଣ ହସ୍ତରେ କନ୍ଦୁକ ସୁସଞ୍ଚେ ଧରି
ସେ ବାମା ଖେଳଇ ଯେହ୍ନେ ଯିବ ବହି ନୀର ହୋଇ ସେହି ନାରୀ
ଲମ୍ପଟକକୁ ଲୋଭାଇ
କାମ ଶିକାଁରୀକୁ ଖୋଜୁଥାଇ ।୨୬ ।
ଏମନ୍ତ ହରିର ରୂପ ଦେଖି ହର ଆଖି ନ ପାରି ପିଛାଡ଼ି
କଟାକ୍ଷ ତାହାର ହୋଇଣ ନିଷ୍ଠୁର ହୃଦୁ ଚିତ୍ତ ନେଲା କାଢ଼ି
ଗଣ, ଶିବ, ଶିବାନୀ
ସ୍ତମ୍ଭିତେ ଦେଖନ୍ତି ତାର ଠାଣି ।୨୭ ।
ମୋହିନୀର କରେ କନ୍ଦୁକଟି ଧିରେ ଖସି ପଡ଼ିଲା ଭୂମିରେ
ପଡ଼ିଗଲା ଦୂର ଛଳେ ଆଣିବାର ବୃକ୍ଷ ଉହାଡ଼କୁ ଖରେ
ବାଳା ସେହି ଧାମଇ
କୁଚରୁ ବସ୍ତ୍ର ଉଡ଼ି ଦିଶଇ ।୨୮ ।
ମାରୁତିର ତାତ ହେଲା ଉତପାତ ଉଡ଼ି ଗଲା ଜାନୁବାସ
କଦଳୀ ବୃକ୍ଷର ପରାୟ ତାହାର ଜାନୁଦ୍ୱୟ ହେଲା ଦୃଶ୍ୟ
ବସ୍ତ୍ର ତୋଳାଇ ହସ୍ତେ
ପୀଡ଼ିତ ସେ ଲଜ୍ଜା ଭୟ ଚିତ୍ତେ ।୨୯ ।
ଅଙ୍ଗୁଳିର ଅଗ୍ରେ ତୋଳେ ଅତିବ୍ୟଗ୍ରେ କପୋଳ ଅଳକା ପଂକ୍ତି
ଏ ରୂପ ତା ଦେଖି ଗଉରୀ ଉପେକ୍ଷୀ ହର ଚିତ୍ତେ ଚିନ୍ତେ ରତି
ମନ ଲୋଡ଼ିଲା ସଙ୍ଗ
ମଦନ ବାଣେ କ୍ଷତାକ୍ତ ଅଙ୍ଗ ।୩୦ ।
ହର ଲଜ୍ଜା ଛାଡ଼ି କାମେ ମନ ବୁଡ଼ି ଉମା ଦେଖନ୍ତେ ଧାମନ୍ତେ

ଦେଖି ବେଗେ ଧାଇଁ ଗହଳେ ଲୁଚଇ ବୃକ୍ଷ କୂଳରେ ଦେଖନ୍ତେ
ଶଙ୍କର ବେଗେ ଅତି
ମିଳିଲେ ସେ ବୃକ୍ଷଙ୍କର କତି ।୩୧ ।
ବୃକ୍ଷ ଗହଳରେ ବାଳି ଗଳି ଯାଏ ହସ୍ତକୁ ଦେଖାଏ ଟେକି
ଧାମନ୍ତି ଦେଖିଣ ଶଙ୍କର ଶୀଘ୍ରେଣ କଟିବସ୍ତ୍ର ପଡ଼େ ଗଳି
ଜଟା ଯେ ଅସମ୍ଭାଳ
କପୋଳରୁ ଗଳେ ଶ୍ରମଝାଳ ।୩୨ ।
ଦେଖି ଯେହ୍ନେ ଗଜ ଧାଏଁ ଟେକି ଭୂଜ କରିଣୀକୁ ସମ୍ମୁଖରେ
ରୁଦ୍ର ଧାଇଁ ବଳେ ବେନି ଭୁଜେ କୋଳେ ଧରିଲେ ଆବୋରି ତା'ରେ
ମୋହିନୀ କରୁ ଗଳି
ଧାମଇଁ ସେ ଜାନୁ ବସ୍ତ୍ର ଟେକି ।୩୩ ।
କବରୀର ଭାର ପଡ଼ିଲା ତଳର ଫିଟି କରି ଅସମ୍ଭାଳେ
ଗ୍ରଥିତ ସୁମନ ହୋଇ ଆନମନ ପଡ଼େ ଖସି ଫୁଲ ମାଳେ
ଧରନ୍ତେ ହର କୋଳେ
ମୋହିନୀ ଗଳଇ ଭୁଜ ତଳେ ।୩୪ ।
ମୁକୁଳା ତା କେଶ ଫିଟି ଛଇଁ ବାସ ଅଧୋ ମୁଖେ ସେ ଗମଇଁ
ସୁରେଖେ ବଦନ ଛନଛନ ମନ କଟାକ୍ଷ ହାଣି ଧାମଇଁ
ନିତମ୍ବ ଚଳେ ଧିରେ
ପୁଣି ଧରିଲେ ଶଙ୍କର କରେ ।୩୫ ।
ବିଷ୍ଣୁ ମାୟା ବଳେ ମଦନ ଆକୁଳେ ବ୍ୟାକୁଳିତ ସଦାଶିବ
ବଇରୀ ବଶରେ ପୁଣି ଆକୁଳରେ ଧରନ୍ତି ଭୁଲି ବାସ୍ତବ
ପଳାଏ ଭୁଜ ଟେକି
ରୁଦ୍ର ଶରୀରରୁ ରେତ ଗଳି ।୩୬ ।
ଏ କାଳେ ସଜ୍ଞାନ ହୋଇ ଭଗବାନ ଅମୋଘ ରେତ ପତ୍ରରେ
ସପ୍ତର୍ଷି ଡାକିଣ ରେତ ସମର୍ପିଣ ଗଲେ ଉମା ନିକଟରେ
ହୋଇଲେ ଛନଛନ
ବିଷ୍ଣୁ ମାୟାରେ ମୋହିତ ମନ ।୩୭ ।
ମାୟାରୁ ଉଭୁରୀ ଶଶଧରଧାରୀ ବିକଳେ କଲେ ପ୍ରାର୍ଥନା
ଆହେ ମାୟାଧର ମାୟା ତୋ ସଂହର ମୁଁ ଅଟେ ତୁମ୍ଭ ଖେଳନା
ଧନ୍ୟ ମାୟା ତୋହର
ମୋହିନୀ ରୂପକୁ ନମସ୍କାର ।୩୮ ।

ମାୟା ପରିହରି ଲକ୍ଷ୍ମୀପତି ହରି ମୃଦୁମୃଦୁ ହସି ଦିଶି
ବାୟୁଙ୍କ ହାତରେ ଅମୋଘ ରେତରେ ସମର୍ପିଲେ ସପ୍ତଋଷି
ସର୍ବେ ଯେ ଯାହା ପୁରେ
ଗଲେ ନମି ହରିଙ୍କ ପୟରେ ।୩୯ ।
ହରଙ୍କର ରେତ ପବନ ଦାୟିତ୍ୱ ରହିଲା ଯେ ସୁରକ୍ଷାରେ
ମୋହିନୀ ବାରତା ରୁଦ୍ର ବ୍ୟାକୁଳତା ବର୍ଣ୍ଣେ ଦ୍ୱିତୀୟ ଅଧ୍ୟାରେ
ହନୁମାନ ଚରିତ
ସୁର ପରଷା ଭକ୍ତି ଅମୃତ ।୪୦ ।



 

# ତୃତୀୟ ଛାନ୍ଦ

ରାଗ-ବଙ୍ଗଳାଶ୍ରୀ

(ରାଜା ଦଶରଥଙ୍କର ପୁତ୍ରେଷ୍ଟୀ ଯଜ୍ଞ ଚରିତ)

ଶୁଣ ହେ ସୁଜନ ହୋଇ ତୋଷ ମନ
ଏ ହନୁମାନ ଚରିତ,
ଶ୍ରବଣେ ଶମନ ଭୟ ଅବସାନ
ଭକ୍ତ ନିମନ୍ତେ ଅମୃତ ।୧ ।
ଅଜ ତାଙ୍କ ପିତା ଇନ୍ଦୁମତି ମାତା
ବିଦର୍ଭ ରାଜାର ପୁତ୍ରୀ,
ନେମୀ ନାମେ ଜଣା ଯୋଦ୍ଧା ରୂପେ ଗଣା
ଧରା ତଳେ ଶ୍ରେଷ୍ଠ କ୍ଷତ୍ରି ।୨ ।
ରାଜା କୋଶଳର ସବିତା ବଂଶର
ପ୍ରସିଦ୍ଧ ଶୌର୍ଯ୍ୟବୀର୍ଯ୍ୟରେ,
ଇକ୍ଷ୍ୱାକୁ କୁଳରେ ଜନମୀ ଶୁଭରେ
ପାଳଇ ପ୍ରଜା ସୁଖରେ ।୩ ।
ମହାଶକ୍ତିବାନ ଅଟେ ସେ ରାଜନ
ଯୋଦ୍ଧା ବୀର ବିଚକ୍ଷଣ,
ଦଶଟି ଦିଗକୁ ନିଜର ରଥକୁ
ବାହିବାରେ ସେ ପ୍ରବୀଣ ।୪ ।
ଶବ୍ଦ ଭେଦି ବାଣ କରଇ ସନ୍ଧାନ
ଏକାଥରେ ଦିଗେ ଦଶ,
ଦଶରଥ ନାମେ ଏହି ଧରାଧାମେ
ବିସ୍ତାରିତ ତାଙ୍କ ଯଶ ।୫ ।
ପ୍ରଜା ପାଳନରେ ବଚନ ରକ୍ଷାରେ
ସଂସାରରେ ତାଙ୍କ ଖ୍ୟାତି,
ସତ୍ୟ ବଚନକୁ ଉଚ୍ଚେ ରଖିବାକୁ
ଜୀବନେ ତୁଚ୍ଛ ମଣନ୍ତି ।୬ ।
ଯୌବନ ପ୍ରବେଶ କରନ୍ତେ ନରେଶ
ମଗଧ ରାଜାଙ୍କ କନ୍ୟା,
କୌଶଲ୍ୟା ସୁନ୍ଦରୀ ପାଟରାଣୀ କରି
ଆଣିଲେ ଯୋଶା ଅନନ୍ୟା ।୭ ।

ଉତ୍ତରାଧିକାରୀ ପ୍ରଦାନ ନ କରି
ପାରିବାରୁ ବହୁ ଦିନ,
କେକେୟ ରାଜାର କୈକେୟୀ କନ୍ୟାର
କରିଲେ ପାଣି ଗ୍ରହଣ ।୮ ।
କେକେୟ କୁମାରୀ କୈକେୟୀ ସୁନ୍ଦରୀ
ନ ହେବାରୁ ପୁତ୍ରବତୀ,
କାଶି ରାଜାଙ୍କର ସୁନ୍ଦରୀ ପୁତ୍ରୀର
ହସ୍ତ ଧରେ ନରପତି ।୯ ।
ବୟସ ବଢ଼ିଲା ଭାବନା ବଢ଼ିଲା
ଉତ୍ତରାଧିକାର ନେଇ,
କେହ୍ନେ ବଂଶ ଲତା ରହିବ ଜୀବିତା
ରାଜାଙ୍କୁ ଚିନ୍ତା ଘାରଇ ।୧୦ ।
କୁଳଗୁରୁ ପାଶେ ଯାଇ ରାଜା ଭାଷେ
ଶୁଣ ବଶିଷ୍ଠ ଗୋସାଇଁ,
ଏ ରାଜ୍ୟକୁ ମୋର ଉତ୍ତରାଧିକାର
କେଉଁ ପରି ଦେବି ମୁହିଁ ।୧୧ ।
କାନ୍ଦ କାନ୍ଦ ହୋଇ ରାଜନ କହଇ
ତିନି ତିନି ରାଣୀ ମୋର,
ହୀନବୀର୍ଯ୍ୟ ମୁହିଁ କେଉଁ ମୁହଁ ନେଇ
ଯିବି ପ୍ରଜାଙ୍କ ଆଗର ।୧୨ ।
ବଶିଷ୍ଠ କହନ୍ତି ଅଧୀର ନୁହଁନ୍ତି
ତୁମ ପରି ଶ୍ରେଷ୍ଠ ଜନ,
ଦଇବ ବିଧାନ କେ କରିବ ଆନ
ଛୋଟ କର ନାହିଁ ମନ ।୧୩ ।
କ୍ଷଣେ ଧ୍ୟାନ ମଗ୍ନ ହୋଇ ତପୋଧନ
ବୋଲନ୍ତି ମଧୁର ବାଣୀ,
ପ୍ରଭୁ ନାରାୟଣ ତୋ କୋଳ ମଣ୍ଡନ
କରି ତାରିବେ ଧରଣୀ ।୧୪ ।
ମହା ଭାଗ୍ୟବାନ ତୁ ଅଟୁ ରାଜନ
ଏ ଦୁଃଖ ଅଳିକ ତୋର,
ଚାରି ଚାରି ବାଳ ଖେଳିବେ ତୋ କୋଳ

ଏ ସତ୍ୟ ବଚନ ମୋର ।୧୫ ।
ଶାନ୍ତାକନ୍ୟା ପତି          ଋଷ୍ୟଶୃଙ୍ଗ ଯତି
ଡକାଇଣ ଶୀଘ୍ର ଆଣ,
ତାଙ୍କରି ହସ୍ତରେ          ପୁତ୍ରେଷ୍ଟୀ ଯଜ୍ଞରେ
ଆହୂତି କର ପ୍ରଦାନ ।୧୬ ।
ଯଜ୍ଞରୁ ପୁରୁଷ          ହସ୍ତରେ କଳଶ
ଧରି ହେବେ ଆବିର୍ଭୂତ,
ଚରୁ କଳଶର          ଖାଇ ରାଣୀଙ୍କର
ଗର୍ଭ ହୋଇବ ସମ୍ଭୂତ ।୧୭ ।
ଶୁଣି ଯତିବାଣୀ          ଖୁସି ନରମଣି
ତ୍ୱରିତେ ପେଶିଲେ ଦୂତ,
ଋଷି ନିମନ୍ତ୍ରଣ          କାର୍ଯ୍ୟେ ଦୂତଗଣ
ଗମିଲେ ହୋଇଣ ପ୍ରୀତ ।୧୮ ।
ନାନା ପ୍ରକାରର          ରତ୍ନ ଅଳଙ୍କାର
ଫୁଲ ଫଳ ସାଥେ ନେଲେ,
ଗୋଧନ ରତନ          ଅଶ୍ୱ ଗଜ ଧନ
ନେଇଣ ସର୍ବେ ଚଳିଲେ ।୧୯ ।
ଅଙ୍ଗ ଦେଶେ ଋଷି          ଲୋମପାଦ ଶିଶି
ସହିତେ ଆନନ୍ଦେ ଥିଲେ,
ଦୂତ ମାନେ ଯାଇ          ଅନୁନୟ ହୋଇ
ରାଜା ନିମନ୍ତ୍ରଣ ଦେଲେ ।୨୦ ।
ନିମନ୍ତ୍ରଣ ଘେନି          ଋଶ୍ୟଶୃଙ୍ଗ ମୁନି
ହୋଇଲେ ମନେ ହରଶ,
କହିଲେ ଦୂତଙ୍କୁ          ବୋଲିବ ରାଜାଙ୍କୁ
ଯିବି ଅଯୋଧ୍ୟା ଅବଶ୍ୟ ।୨୧ ।
ଋଷି ତତକ୍ଷଣ          କରିଲେ ଗମନ
ଦଶରଥ ରାଜା ପାଶ,
ଦେଖିଣ ଋଷିଙ୍କୁ          ଶାନ୍ତାଙ୍କ ପତିଙ୍କୁ
ରାଜା ମୁଖେ ଫୁଟେ ହସ ।୨୨ ।
ଆବଶ୍ୟକ ମତେ          ଯଜ୍ଞ ଦ୍ରବ୍ୟ ଯେତେ
ମନ୍ତ୍ରୀଏ ଦେଲେ ଯୋଗାଇ,

ନୈଷ୍ଠିକ ବ୍ରାହ୍ମଣ ଯେତେ ଋଷିଗଣ
ଋଣ୍ଡ ନିମନ୍ତ୍ରଣ ପାଇ ।୨୩ ।
ଶୁଭ ଦିବସରେ ମାହେନ୍ଦ୍ର ବେଳାରେ
ଲଗ୍ନେ ଥାଇ ଶୁଭ ଗ୍ରହ,
ପୁତ୍ରେଷ୍ଟୀ ଯଜ୍ଞକୁ ଡାକି ବଶିଷ୍ଠଙ୍କୁ
ଆରମ୍ଭିଲେ ସମାରୋହ ।୨୪ ।
ନିର୍ମଳ ସରଳ ବିଭାଣ୍ଡକ ବାଳ
ନିର୍ମୋହ ନିର୍ଲୋଭୀ ମନ,
ଯଜ୍ଞରେ ପ୍ରବୀଣ ଦେବ ଆବାହନ
କରିବାରେ ସେ ଧୂରୀଣ ।୨୫ ।
ଭକତି ଭାବରେ ତଲ୍ଲୀନତା ଭରେ
ଆହୂତି ପ୍ରଦାନ କଲେ,
ଭକ୍ତିରେ ତାଙ୍କର ପ୍ରଭୁ ଯଜ୍ଞେଶ୍ୱର
ଯଜ୍ଞେ ଆବିର୍ଭୂତ ହେଲେ ।୨୬ ।
ହସ୍ତରେ କଳସ ସେ ଯଜ୍ଞ ପୁରୁଷ
ଧରି ମନ୍ଦ ମନ୍ଦ ହସି,
ଋଷ୍ୟଶୃଙ୍ଗ ହସ୍ତେ ଦେଲେ ଦଶରଥେ
ଋଷି ରାଜା ଦୁହେଁ ଖୁସି ।୨୭ ।
ରାଜନେ କହନ୍ତି ଶୁଣ ନରପତି
ଏ ଚରୁ ଅନ୍ନକୁ ନେଇ,
ରାଣୀଙ୍କ ମଧ୍ୟରେ ବାଣ୍ଟିବ ଭାବରେ
ପ୍ରଭୁ ସ୍ମରି ଦେବ ଖୋଇ ।୨୮ ।
ଅଳପ ଦିନରେ ରାଣୀଙ୍କ ଗର୍ଭରେ
ସନ୍ତାନ ହେବେ ସମ୍ଭୂତ,
ଋଷ୍ୟଶୃଙ୍ଗ ଋଷି ରାଜାଙ୍କ ମହିଷୀ
ଶୁଣି ସର୍ବେ ଆନନ୍ଦିତ ।୨୯ ।
ପବିତ୍ର ଚରୁକୁ ରାଣୀଙ୍କ ହସ୍ତକୁ
ରାଜା ଭାଗ କରି ଦେଲେ,
କୌଶଲ୍ୟା ରମଣୀ ଯେଣୁ ପାଟରାଣୀ
ଅର୍ଦ୍ଧେକ ଚରୁ ପାଇଲେ ।୩୦ ।
ଅନ୍ୟ ଅର୍ଦ୍ଧେକରୁ ଅଧା ନେଇ ଚରୁ

କୈକେୟୀଙ୍କ ହସ୍ତେ ଦେଲେ,
ଅଳପ ବୟସୀ ସ୍ୱାମୀର ପ୍ରେୟସୀ
ଚତୁର୍ଥାଂଶ ପ୍ରାପ୍ତ ହେଲେ ।୩୧ ।
ଅନ୍ୟ ଚତୁର୍ଥାଂଶ କରି ଦୁଇ ଅଂଶ
କୌଶଲ୍ୟା କୈକେୟୀ ହସ୍ତେ,
ରଖିଣ ରାଜନ ମାଗିଣ ବଚନ
ସୁମିତ୍ରାଙ୍କୁ ଦେଲେ ପ୍ରୀତେ ।୩୨ ।
ହସ୍ତେ ଧରିକରି ସୁମିତ୍ରା ସୁନ୍ଦରୀ
ଭାବୁଛନ୍ତି ହୃଷ୍ଟମନେ,
ଗୃଧ୍ରୀ କାହୁଁ ଏକ ଆସି ଏକା ଏକ
ଚରୁ ନେଇ ଗଲା ଶୂନ୍ୟେ ।୩୩ ।
ହା ହୁତାଶ କରି ସୁମିତ୍ରା ସୁନ୍ଦରୀ
କରିଲା ଉଚ୍ଚେ ରୋଦନ,
କୌଶଲ୍ୟା କୈକେୟୀ ଦୁହେଁ ସ୍ନେହମୟୀ
କହନ୍ତି ପ୍ରିୟ ବଚନ ।୩୪ ।
ନ ହୁଅ ଅଧିର ତୁମ୍ଭେ ଧୈର୍ଯ୍ୟ ଧର
ତିଳେ ଚିନ୍ତା କର ନାହିଁ,
ଆମ୍ଭର ଭାଗରୁ ଦେଉଅଛୁ ଚରୁ
ମହାଭାଗ୍ୟବତୀ ତୁହି ।୩୫ ।
ତିନିରାଣୀ ଯାକ ହୃଦୟ ସାତ୍ତ୍ୱିକ
ଚରୁ ଖାଇ ଗର୍ଭବତୀ,
ପ୍ରଭୁଙ୍କ ପାଦରେ ସନ୍ତୋଷ ମନରେ
ନିତିଦିନ ପ୍ରଣମନ୍ତି ।୩୬ ।
ଶୁଣ ହେ ସୁଜନେ ଗୃଧ୍ରୀ କଥା ଏଣେ
ସେ ଥିଲା ଏକ ଅପ୍ସରୀ,
ଚଞ୍ଚଳ ତା ମତି କ୍ଷିପ୍ର ତାର ଗତି
ଅସ୍ଥିର ମନ ତାହାରି ।୩୭ ।
ସହାୟିକା ଭାବେ ବ୍ରହ୍ମଦେବେ ସେବେ
ଶୁଭର୍ଚ୍ଚନା ନାମ ତାର,
ଅତୀବ ସୁନ୍ଦରୀ ମନେ ଗର୍ବ ଭାରି
ଘୁରି ବୁଲେ ନୋହି ସ୍ଥିର ।୩୮ ।

ଦର୍ଶନେ ତାହାର ଏହି ବ୍ୟବହାର
ବ୍ରହ୍ମା ହୋଇଲେ କ୍ରୋଧିତ,
ମନେ କଲେ କୋପ ଦେଲେ ଅଭିଶାପ
ଗୃଧ୍ରୀ ହୋଇ ଯାଅ ମର୍ତ୍ତ୍ୟ ।୩୯ ।
ଅଭିଶାପ ପାଇ ସଂବିତ୍ ଫେରିପାଇ
ଅପ୍ସରୀ ଦୁଃଖିତ ହୋଇ,
କ୍ଷମା କର ଦେବ ଏସନ ନ ହେବ
ବ୍ୟବହାର ମୋ କହଇ ।୪୦ ।
ଅଭିଶାପ ତୁମ୍ଭ କର ହେ ଖଣ୍ଡନ
ମୁହିଁ ତୁମ ସେବାକାରୀ,
ମୋର ଏ ଜୀବନ ତୁମ୍ଭର ଅଧୀନ
ଦୁଃଖ ଫେଡ଼ ବେଦଧାରୀ ।୪ ୧ ।
କହନ୍ତି ବ୍ରାହ୍ମଣ ମୋ ବଚନ ଶୁଣ
ଶାପ ଆଉ ନ ଫେରିବ,
କହୁଛି ବୁଝାଇ ତୋର ମୁକ୍ତି ପାଇଁ
ଯାହା କିଛି ବି ସମ୍ଭବ ।୪ ୨ ।
ତ୍ରେତୟା ଯୁଗରେ ଦଶରଥ ଘରେ
ବିଷ୍ଣୁ ନେବେ ଅବତାର,
ପୁତ୍ରେଷ୍ଟୀ ଯଜ୍ଞରୁ ଉଦ୍ଭବିବ ଚରୁ
ତହୁଁ ଜନ୍ମିବେ କୁମର ।୪୩ ।
ପ୍ରଭୁ ନାରାୟଣ ଚକ୍ର ସୁଦର୍ଶନ
ଅନନ୍ତ ଓ ପଞ୍ଚଜନ୍ୟ,
ରାମ ଓ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ
ଚାରି ଭାଇ ନେବେ ଜନ୍ମ ।୪୪ ।
ପ୍ରଭୁ ମହେଶ୍ୱର ନେବେ ଅବତାର
ମହାବୀର ହନୁମାନ,
ସୁମିତ୍ରା ହସ୍ତରୁ ଚାଣ୍ଡେ ନେଇ ଚରୁ
ଦେବୁ ପବନ ହସ୍ତେଣ ।୪୫ ।
ସେ ପବିତ୍ର ଚରୁ ସ୍ପର୍ଶ କାରଣରୁ
ହେବୁ ତୁହି ଶାପ ମୁକ୍ତ,
ସ୍ୱରୂପ ପାଇବୁ ମୋ ଲୋକେ ଫେରିବୁ

ସ୍ୱକାର୍ଯ୍ୟେ ହେବୁ ନିଯୁକ୍ତ ।୪୬ ।
ଶୁଭର୍ଚ୍ଚନାପ୍ସରୀ ଗୃଧ୍ରୀ ରୂପ ଧରି
ଭାଗ୍ୟ ସ୍ମରି ମର୍ତ୍ତ୍ୟେ ଥିଲା,
ସୁମିତ୍ରା ହସ୍ତରୁ ଚୋରୀ କରି ଚରୁ
ଗଗନରେ ଉଡ଼ି ଗଲା ।୪୭ ।
ପବିତ୍ର ଚରୁର ସ୍ପର୍ଶେ ରୂପ ତା'ର
ସହସା ଗଲା ବଦଳି,
ପଞ୍ଝାରୁ ତାହାର ପାତ୍ରଟି ଚରୁର
ଶୂନ୍ୟରେ ପଡ଼ିଲା ଗଳି ।୪୮ ।
ମରୁତ ଦେବତା ଜାଣି ଏ ବାରତା
ଯତ୍ନେ କରିଲେ ଧାରଣ,
ଶୁଭର୍ଚ୍ଚନା କଷ୍ଟ ଅଭିଶାପ ନଷ୍ଟ
ହୋଇ ଗଲା ତତକ୍ଷଣ ।୪୯ ।
ସେ ଚରୁ ପବିତ୍ର କରି ପ୍ରଣିପାତ
ବ୍ରହ୍ମଲୋକକୁ ଗମିଲା,
ମରୁତ ହସ୍ତରେ ଚରୁ ସୁରକ୍ଷାରେ
ଦେବ କାର୍ଯ୍ୟରେ ରହିଲା ।୫୦ ।
ରଘୁବଂଶ ନାଥ ରାଜା ଦଶରଥ
ପୁତ୍ରେଷ୍ଟୀ ଯଜ୍ଞ ଘଟଣା,
ତୃତୀୟ ଛାନ୍ଦରେ ପ୍ରଭୁଙ୍କ ଇଚ୍ଛାରେ
ସୁରେଶ କରେ ବର୍ଣ୍ଣନା ।୫୧ ।



# ଚତୁର୍ଥ ଛାନ୍ଦ

ରାଗ-ରାମକେରୀ

(ଅଞ୍ଜନାଙ୍କ ତପସ୍ୟା ଓ ସଦାଶିବଙ୍କ ଠାରୁ ବରପ୍ରାପ୍ତି)

ହିମାଦ୍ରୀ ତନୟା ନନ୍ଦନ ପାଦେ କରେ ବନ୍ଦନ
ସୁକୃପା କର ପ୍ରଭୁ ମୋରେ ଗଜ ରାଜ ବଦନ ।୧ ।
ନିର୍ମଳ ମରୁତ ନନ୍ଦନ କଥା ପବିତ୍ର ଅତି
ପଠନେ ଶ୍ରବଣେ ଦୂରିତ ଭକ୍ତ ଶ୍ରେଷ୍ଠ ହରନ୍ତି ।୨ ।
ଅଞ୍ଜନାଙ୍କୁ ନେଇ କେଶରୀ ସୁମେରୁ ପର୍ବତରେ
ପହଞ୍ଚି ସୁଖରେ ଶାନ୍ତିରେ ରହିଲେ ଆନନ୍ଦରେ ।୩ ।
ରତି ରଙ୍ଗରେ  ସୁରଙ୍ଗରେ ଅନଙ୍ଗର ଆଶ୍ରିତେ
ଗଲାବହି ଅନେକ ଯୁଗ ପ୍ରତୀତ ଦିନ କେତେ ।୪ ।
ଯଉବନର ଉଦ୍ଦାମତା ସରି ସରି ଆସିଲା
ଅଞ୍ଜନା ରାଣୀର ପୂରୁବ ଶାପ ହେଜ ହୋଇଲା ।୫ ।
ପୁତ୍ର ସନ୍ତାନ ପ୍ରାପତରେ ଶାପୁ ମୋକ୍ଷ ହୋଇବ
ଦେବଗୁରୁଙ୍କର ବଚନ ଅନ୍ୟଥା ଯେ ନ ଯିବ ।୬ ।
କେଶରୀର ମନେ ପଡ଼ିଲା ପ୍ରଭାସ ତୀର୍ଥ କଥା
ଭରଦ୍ୱାଜଙ୍କର ବଚନ କେବେ ନୋହିବ ମିଥ୍ୟା ।୭ ।
ଦମ୍ପତିଙ୍କର ଶାପ ବର ଦୁଇ କରେ ନିର୍ଭର
ଆତ୍ମଜ ଜନ୍ମି ରାଜ୍ୟେ ପାଇବ ଉତ୍ତରାଧିକାର ।୮ ।
କାଳ ଯେତେ ବହି ଯାଅଇ ହୃଦେ ଦିଅଇ ଦୁଃଖ
ଅଞ୍ଜନା କେଶରୀ ଦୁହିଁଙ୍କ ମନେ ନ ଥାଏ ସୁଖ ।୯ ।
ପୁତ୍ରେଚ୍ଛାରେ ଅଞ୍ଜନା ବାଳୀ ମନେ କଲା ନିଶ୍ଚୟ
ପୂଜିବି ମୁଁ ଚନ୍ଦ୍ର ମଉଳି ପ୍ରଭୁ ହେଲେ ସଦୟ ।୧୦ ।
ମନସ୍କାମନା ମୋ ପୂରଣ କରିବେ ପଶୁପତି
ସ୍ୱର୍ଗଲୋକେ ମୁହିଁ ଫେରିବି ପାଇ ଶାପରୁ ମୁକ୍ତି ।୧୧ ।
ଏତେ ଚିନ୍ତା କରି ସ୍ୱାମୀଙ୍କ ପାଶୁ ନେଇ ସ୍ୱୀକୃତି
ଶିବେ ପୂଜେ ବହୁ ବରଷ ସାଥେ ନେଇଣ ପତି ।୧୨ ।
ଆତୁରେ ଭକ୍ତିଭରେ ଡାକେ ପ୍ରଭୁ ଶିବ ଶଙ୍କର
ତନୟ ଦିଅ ଦୟାକରି ପ୍ରାରବ୍ଧ ନାଶି ମୋର ।୧୩ ।
କର ଯୋଡ଼ି କରେ ଦୟିନୀ ପ୍ରଭୁ ଆହେ ଗିରୀଶ
କର ଦୟା କରୁଣାକର ନୀଳକଣ୍ଠ ଉମେଶ ।୧୪ ।

ଖଣ୍ଡ ଚନ୍ଦ୍ରଧାରି ଖଟ୍ୱାଙ୍ଗ ଖଣ୍ଡ ଦୁଃଖ ମୋହରି
ଖଗପତି ଅରି ଧାରି ହେ ଖରେ ଶୁଣ ଗୁହାରି ।୧୫ ।
ଗମ୍ଭିରା ଗର୍ବରେ ପ୍ରଭୁ ହେ ତୁମ ଚୁମେ ଗଗନ
ଗରୁ ହେଲାଣି ଭବ ଦୁଃଖ ଗଞ୍ଜ ଗଉରୀ ଧନ ।୧୬ ।
ଘରେ ଆଉ ମନ ନ ଲାଗେ ପ୍ରଭୁ ତ୍ରିଶୂଳ ଧର
ଘନଘଟା ପୂର୍ଣ୍ଣ ଜୀବନ କଣ୍ଟକପୂର୍ଣ୍ଣ ମୋର ।୧୭ ।
ଊଁଆସ ପୂରୁବ ଦିବସ ଫାଲଗୁନ ମାସରେ
ଉମାପତି ଜାଗର ଜାଳି ଯିଏ ଡାକେ ଭକ୍ତିରେ ।୧୮ ।
ଚନ୍ଦ୍ରମୌଳି କର୍ମ ଦିଅନ୍ତି ଅକରମା ଭକ୍ତରେ
ଚରଣ ପଙ୍କଜ ଆବୋରି ଯିଏ ପୂଜେ ଶ୍ରଦ୍ଧାରେ ।୧୯ ।
ଛନ୍ଦ କପଟକୁ ତେଜିଣ ମହାଦେବ ଦୁଆରେ
ଛନ୍ଦା ଚରଣରେ ଗୁହାରି କରେ ଶୁଦ୍ଧ ମନରେ ।୨୦ ।
ଜଟାଧାରୀ ଆଶୁତୋଷ ତତକାଳେ ଦେଇ ବର
ଜନମ ଜନମ ପାପ ତା କରି ଦିଅନ୍ତି ଦୂର ।୨୧ ।
ଝଷ ଯେହ୍ନେ ଜଳ ବିହୁନେ ଅବସ୍ଥା ଏବେ ମୋର
ଝଟତିରେ ତ୍ରିଶୂଳରେ ମୋ ତ୍ରିଶୂଳ ନାଶ କର ।୨୨ ।
ଈଶ୍ୱର ଦେଉଛ ଭକତେ ମାଗୁଣି ଇଷ୍ଟ ଫଳ
ଈଶାନ ଶରଣ ପ୍ରଦାନ ପାଉ ନାହିଁ ଯେ କୂଳ ।୨୩ ।
ଟଭା ଲହୁଣୀ ଚନ୍ଦନରେ ଘସା ତୁମର ତନୁ
ଟଙ୍କଧର ତୁମରି ରୂପ ଭକ୍ତ ନ ଭୁଲେ ମନୁ ।୨୪ ।
ଠକ ଭରା ଇହଲୋକରେ କେବଳ ତୁମେ ସତ୍ୟ
ଠକାଅ ନାହିଁ ଆହେ ପ୍ରଭୁ ସହାୟ ହୁଅ ନିତ୍ୟ ।୨୫ ।
ଡମ୍ବରୁ ଧର ହେ ଡରାଉ ଅଛି ଦେଖ ସଂସାର
ଡାକୁଛି ଆକୁଳେ ଉଦ୍ଧର ପ୍ରଭୁ ଶିବ ଶଙ୍କର ।୨୬ ।
ଢକା ବାଜୁଅଛି ଜଗତେ ପ୍ରଭୁ ତୁମରି ନାମ
ଢଧର ଥରଇ ତୁମର ଡର ଭୟରେ ଯମ ।୨୭ ।
ନ କରିଣ ମଠ ପ୍ରଭୁ ହେ ଶୀଘ୍ର ଶୁଣ ଗୁହାରି
ନଟରାଜ ନାଥ ତୁମ୍ଭଙ୍କୁ ଅଛି ଆଶ୍ରୟ କରି ।୨୮ ।
ପଞ୍ଚାନନ ତୁମ ମନ୍ଦିର ସତେ କେଡ଼େ ସୁନ୍ଦର
ପୁଷ୍କରିଣୀ ପାଶେ ରହିଣ ଦିଶଇ ମନୋହର ।୨୯ ।
ଫରଫର ବାନା ଉଡ଼ିଣ ଡାକେ ଭକତ ଆସ

ଫଟକାରେ ଭକତ ପାପ ସବୁ କରଇ ନାଶ ।୩୦ ।
ବିରାଟ ସ୍ୱରୂପୀ ପ୍ରଭୁ ହେ ପାଦେ ତୁମ ପ୍ରଣାମ
ବିଶ୍ୱପିତା ହେ ବିଶ୍ୱନାଥ ଶୋହେ କଣ୍ଠଟି ତୁମ ।୩୧ ।
ଭକ୍ତିରେ ଆହେ ବୈଦ୍ୟନାଥ କରୁଛି ନମସ୍କାର
ଭୋଳାନାଥ ଶ୍ମଶାନରେ ଅଟଇ ବାସ ତୁମର ।୩୨ ।
ମନ ଚଇତନ ଏକାଠି କରି ତାଙ୍କୁ ସ୍ମରିଲେ
ମୋଚନ କରନ୍ତି ସମସ୍ତ ପାପ ଭକ୍ତର ଭଲେ ।୩୩ ।
ତ୍ରାଣ କରତା ମହେଶ୍ୱର ପ୍ରଭୁ କର ଉଦ୍ଧାର
ତୁମରି ଦୁଆରେ ଡାକୁଛି ଆର୍ତ୍ତେ ଆସି ଠାକୁର ।୩୪ ।
ଥକି ପଡ଼ିଲିଣି ପ୍ରଭୁ ହେ ପଡ଼ି ଭବ ଚକ୍ରରେ
ଥରେ ଡାକ ଶୁଣି ଉଦ୍ଧର ନାଶିଣ ପିନାକରେ ।୩୫ ।
ଦୟାର ସାଗର ତୁମେ ହେ ପ୍ରଭୁ ଉମା ଈଶ୍ୱର
ଦମ୍ଭ ମୋହ ଅହଙ୍କାରକୁ ପ୍ରଭୁ ବିନାଶ କର ।୩୬ ।
ଧନ ସନମାନ ମାଗୁନି ମାଗେ ତୁମ୍ଭ ଶରଣ
ଧୂର୍ଜଟି ଶରଣ ରକ୍ଷଣ ପ୍ରଭୁ ପରା ଆପଣ ।୩୭ ।
ନିଅଣ୍ଟ ହୋଇଲା କି ପ୍ରଭୁ ମୋର ପାଶେ ଭକତି
ନିବେଦନ ମୋର କିମ୍ପାଇ ନ ଶୁଣୁଛ ଝଟତି ।୩୭ ।
ଯମ ଦଣ୍ଡ ଭୟ ଘାରଇ ମନ ହୁଏ ଅଥୟ
ଯିବ ଡର ଭୟ ମୋହର ତୁମ୍ଭେ ହେଲେ ସଦୟ ।୩୯ ।
ରମା ଉମାନାଥ ତୁମେ ହେ ହରିହର ମୂରତି
ରହିଲେ କରୁଣା ହୋଇବ ନାଶ କାଳର ଭୀତି ।୪୦ ।
ଲେଖା ଯା କପାଳେ ହୋଇଛି ତାର ପରିବର୍ତ୍ତନ
ଲକ୍ଷେ ପାପ ନାଶ କରିଣ ତାରିପାର ଆପଣ ।୪୧ ।
ବସିଣ ଅକର୍ମେ କରମ ଦିଅ ହେ ତ୍ରିଲୋଚନ
ବିତରୁଛ ଆଶୁତୋଷ କରୁଣା ନାଶେ କଷଣ ।୪୨ ।
ଶଠତାରେ ପୂର୍ଣ୍ଣ ସଂସାର ଭଉଁରୀରେ ପଡ଼ିଛି
ଶକ୍ତି ଦିଅ ପ୍ରଭୁ ମନରେ ତୁମ ପାଦେ ନମୁଛି ।୪୩ ।
ଷଡ଼ ରିପୁ କଷ୍ଟ ଦିଅନ୍ତି ପ୍ରଭୁ ହେ ଗଙ୍ଗାଧର
ଷଡ଼ାନନ ତାତ ଆଶିଷ ଦେଇ କର ଉଦ୍ଧାର ।୪୪ ।
ସରି ସରି ଆସେ ଆୟୁଷ ଦିନେ ଭଜିଲି ନାହିଁ
ସମର୍ଥ ପ୍ରଭୁଙ୍କୁ ଭୁଲିଲି ମୋର ଉଦ୍ଧାର କାହିଁ ।୪୫ ।

ହଳାହଳ ଭକ୍ଷି ଜୀବନେ କିଛି କରିନି ପୁଣ୍ୟ
ହର ପାପ ଦୋଷ ମୋହର ହେଉ ଜୀବନ ଧନ୍ୟ ।୪୬।
କ୍ଷମାର ବାରିଧି ଶରଣ ଗଲି ଚରଣେ ତୁମ
କ୍ଷମା ଦେଇ ପ୍ରଭୁ ଉଦ୍ଧର ପାଦେ କରେ ପ୍ରଣାମ ।୪୭।
କେଶରୀ ଘରଣୀ ତପରେ ପ୍ରଭୁ ହୋଇ ସନ୍ତୋଷ
କହନ୍ତି କାହିଁକି ଡାକିଲୁ କଷ୍ଟ ତୋହର କିସ ।୪୮।
ତପସ୍ୟାରେ ତୋର ସନ୍ତୁଷ୍ଟ କଞ୍ଜରର ତନୟୀ
ମନୋବାଞ୍ଛା ହେବ ପୂରଣ ଶୀଘ୍ର ଦିଅ ବତାଇ ।୪୯।
ମାଗି ନିଅ ମନ ଇଚ୍ଛାରେ ଯାହା ଯାହା ଦର୍କାର
ଅଚିରେ କରିବି ପୂରଣ ଯାହା ଇଚ୍ଛା ତୋହର ।୫୦।
ସର୍ବଲୋକ ମହେଶ୍ୱରଙ୍କ ପାଦେ କରି ପ୍ରଣାମ
ବିନୟ ପୂର୍ବକ ବୋଲଇ ମନ କରି ସଂଯମ ।୫୧।
ଆହେ କଲ୍ୟାଣମୟ ଶମ୍ଭୁ ତୁମ୍ଭେ ତ୍ରିକାଳ ଜ୍ଞାତା
ମୋ ଭିତରେ ତୁମ୍ଭେ ବସିଛ ସ୍ୱରୂପେ ମୋର ଆତ୍ମା ।୫୨।
କାହିଁ କଲ୍ୟାଣ ମୋହର ଅଜଣା ନୁହଁଇ ତୋତେ
ଯହିଁରେ ହେବ ମୋ ମୁକତି ତାହା ପ୍ରଦାନେ ମୋତେ ।୫୩।
ସମସ୍ତ ସଦ୍‌ଗୁଣରେ ପୂର୍ଣ୍ଣ ପୁତ୍ରେକ ମୁହିଁ ଚାହେଁ
ରୂପ ଗୁଣ ଆଉ କର୍ମରେ ତୁମ୍ଭଠୁ ଭିନ୍ନ ନୁହେଁ ।୫୪।
ଭୋଳାବାବା ହୋଇ ପ୍ରସନ୍ନ ଅଞ୍ଜନାକୁ ବୋଲନ୍ତି
ଧନ୍ୟ ଧନ୍ୟ ତୋର ଜୀବନ ଧନ୍ୟ ତୋହର ମତି ।୫୫।
ଏକାଦଶ ରୁଦ୍ର ମଧ୍ୟରୁ ମୋ ଏକାଦଶ ରୂପ
ପ୍ରକଟ ହୋଇବି ସେ ରୂପେ ଧରି ପୁତ୍ର ସ୍ୱରୂପ ।୫୬।
ସଂସାରେ ହୋଇବୁ ମୋ ମାତା ଅଜନ୍ମା ମୁଁ ଜନ୍ମିବି
ଚଉଦ ବ୍ରହ୍ମାଣ୍ଡେ ମାତା ଗୋ ପ୍ରସିଦ୍ଧି ତୋତେ ଦେବି ।୫୭।
ଦେଉଅଛି ମନ୍ତ୍ର ତୁମ୍ଭଙ୍କୁ ଶୁଣ ରଖି ଆଗ୍ରହ
*ଓଁ ଶ୍ରୀଂ ହ୍ରୀଂ କ୍ଲୀଂ ଗ୍ଲୌଂ ଦେବକୀ ସୁତ ସହ* ।୫୮।
*ଗୋବିନ୍ଦ ବାସୁଦେବ ଜଗତ୍ପତେ ଦେହି ସଂଯୋଗ*
*ମେ ତନୟଂ କୃଷ୍ଣ ତ୍ୱାମହଂ ଶରଣଂ ଗତଃ* ଯୋଗ ।୫୯।
ସନ୍ତାନ ଗୋପାଳ ମନ୍ତ୍ର ଏ ଜପିବ ବିଧି ମତେ
ମାତଙ୍ଗ ଋଷିଙ୍କ ପାଖକୁ ଯାଅ ଶୀଘ୍ର ଗୋ ମାତେ ।୬୦।
ପବନ ଦେବତା ଚରଣେ ଆରାଧନା କରିଣ

ପାଇବୁ ସୁତ ରୂପେ ମୋତେ ଜୀବନ ହେବ ଧନ୍ୟ ।୬୧ ।
ଜପବିଧି ଆରାଧନାର ଯେତେ ବିଧି ରହିଛି
ମାତଙ୍ଗ ମହର୍ଷି ବତାଇ ଦେବେ ଗୋ ସବୁ କିଛି ।୬୨ ।
ଅଞ୍ଜନାକୁ ସବିସ୍ତାରରେ କହି ପ୍ରଭୁ ଦେବେଶ
ଅନ୍ତର୍ଦ୍ଧାନ ହୋଇ ତତ୍‌କ୍ଷଣେ ଗଲେ ଗଣଙ୍କ ଈଶ ।୬୩ ।
ଅଞ୍ଜନା ସାନନ୍ଦେ ଗୃହକୁ କଲା ପ୍ରତ୍ୟାବର୍ତ୍ତନ
କେଶରୀ ସମ୍ମୁଖେ ଜଣାଏ ଦୁହେଁ ହେଲେ ପ୍ରସନ୍ନ ।୬୪ ।
ଏ ରୂପେ ଚତୁର୍ଥ ଛାନ୍ଦରେ ଅଞ୍ଜନା ତପ କଥା
ସୁରେଶ ବର୍ଣ୍ଣେ ପ୍ରଭୁ ପାଦେ ଲଗାଇ ନିଜ ମଥା ।୬୫ ।



# ପଞ୍ଚମ ଛାନ୍ଦ

ରାଗ-କଳସା

(ମାତଙ୍ଗ ଋଷି ପରାମର୍ଶରେ ଅଞ୍ଜନାଙ୍କର ପବନ ଦେବତାଙ୍କ ଉଦ୍ଦେଶ୍ୟରେ ତପସ୍ୟା, ବରପ୍ରାପ୍ତି ଓ ଅମୋଘ ରେତ ସହ ଚରୁପ୍ରାପ୍ତି)

ଗଉରୀ ସୁତ ଚରଣ କରିଣ ବନ୍ଦନ ।
ହନୁମାନ ବିଳାସକୁ କରୁଛି ବର୍ଣ୍ଣନ ଯେ ।୧ ।
ଏଥୁ ଅନନ୍ତରେ ଶୁଣ ବିଦୁଷ ସୁଜନେ ।
ହର ବାକ୍ୟରେ ଅଞ୍ଜନା ମାତଙ୍ଗ ସାମନେ ।୨ ।
ସନ୍ତାନ ପ୍ରୟାସୀ ସାଧ୍ୱୀ ଅଞ୍ଜନା ସୁନ୍ଦରୀ ।
ମାତଙ୍ଗେ କହଇ ଶିବ ଆଜ୍ଞା ଅନୁସରୀ ।୩ ।
ନାମ ମୋ ଅଟେ ଅଞ୍ଜନା ସ୍ୱାମୀ ମୋ କେଶରୀ ।
ବହୁ ବର୍ଷ ଗଲା ବିତି ତପ ଜପ କରି ।୪ ।
ସନ୍ତାନ ସୁଖ ଅଦ୍ୟାପି ନ ମିଳିଲା ମୋତେ ।
ପୂଜା କରି ତୋଷାଇଲି ପ୍ରଭୁ ପଶୁପତେ ।୫ ।
ମନ୍ତ୍ର ପ୍ରଦାନ କରିଣ ପାଶକୁ ତୁମ୍ଭର ।
ବରଗିଛନ୍ତି କହିଣ ଜପ ବିଧି ତାର ।୬ ।
କେଉଁ ପରି ପ୍ରାପ୍ତ ହେବ ମୋତେ କୁହ ସୁତ ।
ଅନ୍ୟଥା ନୋହି ହୋଇବ ଶିବ କଥା ସତ୍ୟ ।୭ ।
ପବନ ଦେବତାଙ୍କର ଆରାଧନା କରି ।
କେମ୍ନେ ପ୍ରାପତ କରିବି ପୁତ୍ର ରୁଦ୍ର ପରି ।୮ ।
ତାହାର ଉପାୟ କୁହ ଆହେ ତପୀବର ।
ଜନ୍ମ ଜନ୍ମ ଋଣୀ ହୋଇ ରହିବୁ ତୁମର ।୯ ।
ତପି ମାତଙ୍ଗ ମହର୍ଷି ସହଜେ କୃପାଳୁ ।
କୁହନ୍ତି ଆସିଛୁ ଏଥେ ତୋର ଭାଗ୍ୟବଳୁ ।୧୦ ।
ଏଠୁ ବୃଷଭାଚଳକୁ ତୁମେ ଚଳି ଯିବ ।
ତହିଁ ଭେଙ୍କଟେଶ୍ୱରଙ୍କ ପାଦେ ପ୍ରଣମିବ ।୧୧ ।
ଆକାଶ ଗଙ୍ଗା ତୀରଥ ଅଛି କିଛି ଦୂରେ ।
ସ୍ନାହାନ କରିବ ତହିଁ ତାହାର ଜଳରେ ।୧୨ ।
ତଦନନ୍ତରେ ପିଇବ ପୂତ ଜଳ ତା’ର ।
ପୂଜି ପବନ ଦେବତା ହୃଦୟକୁ ହର ।୧୩ ।
ମାତଙ୍ଗ ଋଷି ଚରଣେ କରି ନମସ୍କାର ।
ବୃଷଭାଚଳେ ଚଳଇ ସେହି ନାରୀବର ।୧୪ ।

ଭେଙ୍କଟେଶ୍ୱର ଚରଣେ କରି ଦଣ୍ଡବତ ।
ଆଶିଷ ପ୍ରଭୁଙ୍କୁ ମାଗେ ହର ମୋ ଦୂରିତ ।୧୫ ।
ଭକ୍ତିରେ ଅର୍ଚ୍ଚନ କରି ସେ ଆନନ୍ଦ ମନେ ।
ଆକାଶଗଙ୍ଗା ତୀର୍ଥକୁ ଚଳେ ରହି କ୍ଷଣେ ।୧୬ ।
ତୀର୍ଥସ୍ଥଳ ଅତି ପୂତ ତହିଁ ଶାନ୍ତି ରାଜେ ।
ବୃକ୍ଷଲତା ଫୁଲ ଫଳେ ଦିବ୍ୟ ଦୃଶ୍ୟ ସର୍ଜେ ।୧୭ ।
ଦର୍ଶନେ ମନେ ଭରିଲା ଅଫୁରନ୍ତ ସୁଖ ।
ସ୍ନାନେ ଶରୀରୁ ହରିଲା ଜନ୍ମ ଜନ୍ମ ଦୁଃଖ ।୧୮ ।
ପାନ କରି ତା ପାବନ ସଲିଳ ଅଞ୍ଜନା ।
ତପଶ୍ଚରଣରେ ବସେ ହୋଇ ଦୃଢ଼ ମନା ।୧୯ ।
ତୀର୍ଥ ତଟ ପରେ ବସି ଚାହିଁ ତୀର୍ଥ ଜଳେ ।
ପବନ ଦେବେ ଡାକଇ ଅତ୍ୟନ୍ତ ବ୍ୟାକୁଳେ ।୨୦ ।
ଶ୍ରଦ୍ଧା ବିଶ୍ୱାସ ଧୈର୍ଯ୍ୟରେ ତପ କରେ ବାଳୀ ।
ଶରୀର କଷ୍ଟକୁ ଭୁଲି ଦେବେ କରେ ଅଳି ।୨୧ ।
ମାତଙ୍ଗ ମତକୁ ହୃଦେ ଧରି ତପ କରେ ।
ସଂଯମେ ନିଷ୍ଠାରେ ଦୃଢ଼ ନିଶ୍ଚୟ ହୃଦରେ ।୨୨ ।
ମେଷ ରବି ଚିତ୍ରାଯୁକ୍ତ ପୂର୍ଣ୍ଣିମା ତିଥିରେ ।
ଅନ୍ୟ ଗ୍ରହେ ବଳବାନ ଥାଇଣ ଶୁଭରେ ।୨୩ ।
ଏମନ୍ତ ଶୁଭଦ କାଳେ ତପ ଅଞ୍ଜନାର ।
ବାୟୁ ଦେବତାଙ୍କ ମନ କଲା ଅକ୍ତିଆର ।୨୪ ।
ସୂକ୍ଷ୍ମ ରୂପ ତେଜି ସ୍ଥୂଳ ରୂପକୁ ଧରିଣ ।
ବୋଇଲେ ତୁଷ୍ଟ ତପରେ ଭୋ ନାରୀ ରତନ ।୨୫ ।
ଅତ୍ୟନ୍ତ ପ୍ରସନ୍ନ ମନ ତୋ ଉପରେ ମୋର ।
ମାଗ ଇଚ୍ଛିତ ବର ଯା ମନ କରି ସ୍ଥିର ।୨୬ ।
ମନ କାମନା ତୋହର ପୁରାଇବି ସତ୍ୟ ।
ନିଜ ମୁଖେ କର ବ୍ୟକ୍ତ ଜାଣୁ ତା ଜଗତ ।୨୭ ।
ବାୟୁ ଦେବଙ୍କ ଦର୍ଶନ ପାଇଣ ଅଞ୍ଜନା ।
ଶରୀରରେ ରୋମାଞ୍ଚନ ଉତ୍‌ଫୁଲ୍ଲିତ ମନା ।୨୮ ।
ପ୍ରସନ୍ନ ମନରେ କରି ପ୍ରଣାମ ପାଦରେ ।
ଅଞ୍ଜନା ବୋଲନ୍ତି ପ୍ରଭୁ କୃପା କର ମୋରେ ।୨୯ ।
ଦିଅନ୍ତୁ ମୋତେ ଆତ୍ମଜ ସରବ ସମର୍ଥ ।

ପୂରାଅ ହେ ପ୍ରଭୁ ମୋର ଏହି ମନୋରଥ ।୩୦ ।
"ତଥାସ୍ତୁ" କହି ପବନ ଅଞ୍ଜନାକୁ ଚାହିଁ ।
ବୁଝାଇଲେ ଶୁଣ ତୁମେ ଆରେ ଚାନ୍ଦ ମୁହିଁ ।୩୧ ।
ଖୁସି ମନେ ଏବେ ଯାଅ ସ୍ୱଗୃହକୁ ମାତ୍ର ।
ଆନନ୍ଦେ ଆନନ୍ଦ ନିଅ କେଶରୀ ସହିତ ।୩୨ ।
ଉଚିତ ସମୟେ ମାତେ ଗରଭେ ତୁମର ।
ପୁତ୍ର ରୂପେ ସ୍ଥାନ ନେବେ ପ୍ରଭୁ ଗଙ୍ଗାଧର ।୩୩ ।
ସେହି କାର୍ଯ୍ୟ ସମାପନ ହେବ ମୋ ହସ୍ତରେ ।
ବାୟୁ ପୁତ୍ର ନାମେ ହେବ ସେ ଖ୍ୟାତ ସଂସାରେ ।୩୪ ।
ରାମ କାର୍ଯ୍ୟ କରିବାକୁ ପ୍ରଭୁ ମହେଶ୍ୱର ।
ତୋ ଗରଭେ ବିଶ୍ୱନାଥ ନେବେ ଅବତାର ।୩୫ ।
ବର ପାଇଣ ଅଞ୍ଜନା ସ୍ୱଗୃହେ ଚଳିଲା ।
କେଶରୀ ସମ୍ମୁଖେ ସର୍ବ ବୃତ୍ତାନ୍ତ ଭାଷିଲା ।୩୬ ।
କପିରାଜ ଖୁସି ମନେ ଅଞ୍ଜନାକୁ କୋଳ ।
କରିଣ ଚୁମିଲା ମୁଖ ନୟନ କପୋଳ ।୩୭ ।
ରସ ରଙ୍ଗେ ଦୁଇ ଜଣ ଦିବସ ରଜନୀ ।
ବିତାଇଲେ କାଳ ଦଣ୍ଡ ଦେହଧର୍ମ ମାନି ।୩୮ ।
ଯେଉଁ ଦିନ ମହାଦେବ ମୋହିନୀ ରୂପରେ ।
ବିମୋହିତ ହୋଇ ରେତ ଦେଲେ ସପ୍ତର୍ଷିରେ ।୩୯ ।
ସପ୍ତର୍ଷି ତାକୁ ସମର୍ପି ଥିଲେ ପବନଙ୍କୁ ।
ସେହି ଦିନ ଗୃଧ୍ରୀ ନେଲା ସୁମିତ୍ରା ଚରୁକୁ ।୪୦ ।
ସ୍ୱରୂପ ପ୍ରାପ୍ତ କଲାରୁ ବାୟୁଦେବ ହସ୍ତେ ।
ଚରୁ ରହିଲା ଅମୋଘ ରେତର ସହିତେ ।୪୧ ।
ବିଚିତ୍ର ସଂଯୋଗ ଦେଖ ସେଦିନ ପ୍ରାତଃରେ ।
ଅଞ୍ଜନା ସୁବେଶ ହୋଇ ଗବାକ୍ଷ ପାଶରେ ।୪୨ ।
ଦଣ୍ଡାୟମାନା ହୋଇଣ ବାୟୁଦେବ ବର ।
ଚିନ୍ତା କରେ କେବେ ପ୍ରଭୁ ଅର୍ପିବେ କୁମର ।୪୩ ।
ଏ ସମୟେ ସମୀରଣ ବହି ମନ୍ଦ ମନ୍ଦ ।
ଝୀନବସ୍ତ୍ର ଉଡ଼ାଇଣ ଦେଖାଇଲା ଛନ୍ଦ ।୪୪ ।
ଚତୁର୍ଦ୍ଦିଗ ସୁଗନ୍ଧରେ ଗଲା ପୂର୍ଣ୍ଣ ହୋଇ ।
ବୃକ୍ଷ ଗହଳେ କୋକିଳ କୂଜନ କରଇ ।୪୫ ।

ସୁମନରେ ଭରିଗଲା ବନ ଉପବନ ।
ଭୃଙ୍ଗରାଜ ଉଡ଼ିବୁଲେ ସୁମନୁ ସୁମନ ।୪୬ ।
ରଙ୍ଗ ବେରଙ୍ଗ ବିଭିନ୍ନ ପ୍ରଜାପତିଗଣ ।
ମନ ରାଇଜରେ ଯେହ୍ନେ କରନ୍ତି ଭ୍ରମଣ ।୪୭ ।
ମନରେ ଜାତ କରଇ ଅନଙ୍ଗର ଭାବ ।
ମନ ହୁଏ ଆନମନା ବଦଳା ସ୍ୱଭାବ ।୪୮ ।
ଶରୀରରେ ହସ୍ତ ଯେହ୍ନେ କେ କରେ ଚାଳନା ।
ଗୁପ୍ତ ଅଙ୍ଗେ ସ୍ପର୍ଶ କାର ବାରଇ ଲଳନା ।୪୯ ।
ଜାନୁ ପରେ ଅଙ୍ଗୁଳିର ପାଇଲା ପରଶ ।
ରୋମାଞ୍ଚ ଶରୀରେ ଜାତ ମନରେ ହରଶ ।୫୦ ।
ବୁକୁ ତଳେ ହସ୍ତ ଚାପ ଅନୁଭବ କଲା ।
ଗ୍ରୀବା ପାର୍ଶ୍ୱେ ଉଷ୍ମ ଓଷ୍ଠ ଛୁଆଁ ସେ ଲଭିଲା ।୫୧ ।
ନୟନ ଦ୍ୱୟ ମୁଦ୍ରିତ ହେବାକୁ ଧାଇଁଲେ ।
ଶରୀର ଅସାଡ଼ ହେବା ଅନୁଭବ କଲେ ।୫୨ ।
ଅନିର୍ବଚନୀୟ ଆନନ୍ଦ ମିଳଇ ତା'ରେ ।
ଲାଗେ କେ ଜାବୋଡ଼ି ଧରେ ବାହୁ ଯୁଗଳରେ ।୫୩ ।
ତନ୍ଦ୍ରାଳୁତା ଭାବାବିଷ୍ଟ ସେ ନବ ନାଗରୀ ।
ଘନ ନିଶ୍ୱାସ ବାରିଲା କର୍ଣ୍ଣରେ କାହାରି ।୫୪ ।
କାମେ ଅଚେତନାବସ୍ଥା ଘର୍ମେ କରେ ସ୍ନାନ ।
ଏହି ସମୟେ ଅଞ୍ଜନା ହେଲା ସଚେତନ ।୫୫ ।
ସ୍ୱାମୀ ନୁହଁଇ ତାହାର କାହାର ଏ କର୍ମ ।
ଦେବି ଶାପ ନିଶ୍ଚେ ତାରେ ନାଶେ ସତୀ ଧର୍ମ ।୫୬ ।
ସତୀ କୋପ ଜାଣି ବାୟୁ ସ୍ଥୁଳ ରୂପ ନେଇ ।
ଅଞ୍ଜନା ସମ୍ମୁଖେ ଆସି ବଚନ ଭାଷଇ ।୫୭ ।
କ୍ଷେତ୍ର ପ୍ରସ୍ତୁତି ନିମନ୍ତେ ରୁଦ୍ରର ପ୍ରସ୍ତାବେ ।
ଏତେ କର୍ମ କଲି ମୁହିଁ ଆସି ସୂକ୍ଷ୍ମ ଭାବେ ।୫୮ ।
ରୁଦ୍ର ବର ମୋର ବର ଏବେ ହେବ ସତ୍ୟ ।
ସତୀତ୍ୱ ହରଣ ନୁହେଁ ପାଇବୁ ଅପତ୍ୟ ।୫୯ ।
ହସ୍ତ ପ୍ରସାର ସୁମୁଖି ଘେନିବ ପ୍ରସାଦ ।
ମନରେ ସ୍ମର ଶଙ୍କର ନୟନ ତୋ ମୁଦ ।୬୦ ।
ସାନନ୍ଦେ ଅଞ୍ଜନା ଦୁଇ ଚକ୍ଷୁ ନିମୀଳନ ।

ମରୁତ ଆଗ୍ରହେ ହସ୍ତ କଲା ପ୍ରସାରଣ ।୬୧ ।
ଯଜ୍ଞ ଚରୁ ହସ୍ତେ ଦେଲେ ରୁଦ୍ର ରେତ କର୍ଣ୍ଣେ ।
ପବନ ଦେବତା ପୁଣି ଅଞ୍ଜନାକୁ ଭଣେ ।୬୨ ।
ତୋ ଗରଭେ ରୁଦ୍ର ବିଷ୍ଣୁ ଅଂଶ ଦ୍ୱୟ ମିଶି ।
ରହିଲେ ସମ୍ଭାଳ ଯତ୍ନେ ଏହି ତୋର ଶିଶି ।୬୩ ।
ଏପରି କହି ମରୁତ ହେଲେ ଅନ୍ତର୍ଦ୍ଧାନ ।
ପଞ୍ଚମ ଛାନ୍ଦ ସୁରେଶ କରଇ ସମ୍ପୂର୍ଣ୍ଣ ।୬୪ ।
ହେ ବିଦୁଷେ ଦୋଷ ମୋର କ୍ଷମିବ ନ ଧରି ।
ବର୍ଣ୍ଣିଲି ମରୁତ ସୁତ କୁହଇ ଯେପରି ।୬୫ ।



# ଷଷ୍ଠ ଛାନ୍ଦ

ରାଗ-ବିଳାସ ମଞ୍ଜରୀ

(ହନୁମାନ ଜନ୍ମ)

ସ୍ୱାତୀ ନକ୍ଷତ୍ରେ ବରଷା ଜଳ ଯେହ୍ନେ ପଡ଼ି
ଶାମୁକା ଗରଭେ ମୁକ୍ତା ଜନ୍ମ ନେଇ ବଢ଼ି
ଅଞ୍ଜନା ଉଦରେ ସେହି
ରୁଦ୍ର ରେତ ଯଜ୍ଞଚରୁ ଗଢ଼େ ରନ୍ ରହି ।୧ ।
ଗର୍ଭେ ଏକାଦଶତମ ଭବ ମହେଶ୍ୱର
ଅଞ୍ଜନା ଦିଶେ ସୁନ୍ଦରୁ ଅଧିକ ସୁନ୍ଦର
ଅମ୍ଳ ରସ ଠାରେ ମନ
କଟୁତିକ୍ତ ତତ୍ତ୍ୱ ଯେତେ ଦର୍ଶନେ ବମନ ।୨ ।
ହରି କଟି କରି କଟି ପରାଯେ ଦିଶଇ
ସୁବର୍ଣ୍ଣ ପାରଦ ମିଶି ଜ୍ୟୋତି ପ୍ରକାଶଇ
ଯେଣୁ ଗରଭେ ଗିରୀଶ
ଉଦର ପ୍ରତେ ହୁଅଇ ଯେହ୍ନେ କଇଲାସ ।୩ ।
ମୁଖଟି ଉଜ୍ଜ୍ୱଳ ଯେହ୍ନେ ପ୍ରାଚୀ ଉଷାକାଳ
ଉରଜ ରମ୍ୟଲତାରେ ଶ୍ରେଷ୍ଠ କାଶୀଫଳ
ତୁଳୀତଲ୍ପ ବିଷ ସମ
ଧରିତ୍ରୀ ମାତାର କୋଳ ଲାଗଇ ଉତ୍ତମ ।୪ ।
ଚକ୍ଷୁଦ୍ୱୟ ତନ୍ଦ୍ରାଛନ୍ନ ଦିବସ ରଜନୀ
ଅଳସ ନାୟିକା ପ୍ରାୟ ଶରୀର ଧାରିଣୀ
ବିଷ୍ଣୁ ଦ୍ୱିତୀୟାବତାର
ପ୍ରାୟେକ ଗମନ ତାର ଦିଶେ ମନୋହର ।୫ ।
ଚଇତ୍ର ଶୁକ୍ଳ ପୂର୍ଣ୍ଣମୀ ଭୌମବାର ଦିନ
କରିଥିଲେ ଗ୍ରହେ ଉଚ୍ଚ ସ୍ଥାନେ ଅବସ୍ଥାନ
ଶୁଭ ଅମୃତ ବେଳାରେ
ମଧୁ ଋତୁରାଜ କରେ ରାଜତ୍ୱ ମହୀରେ ।୬ ।
ରବି ମେଷେ ବୃହସ୍ପତି କର୍କଟ ରାଶିରେ
ଶନି ତୁଳା ଶୁକ୍ର କ୍ଷେତ୍ରେ ମଙ୍ଗଳ ମକରେ
ଶୁକ୍ରାଚାର୍ଯ୍ୟ ଥିଲେ ମୀନେ
ପାଞ୍ଚ ଗ୍ରହ ବଳିୟାନ ଥିଲେ ଉଚ୍ଚ ସ୍ଥାନେ ।୭ ।

ମଙ୍ଗଳ ଥିଲେ ଲଗ୍ନରେ ଉଚ୍ଚେ ମିତ୍ର ଗୃହେ
ମହାପରାକ୍ରମୀ ଯୋଗ ବେଦନେତ୍ର କୁହେ
ପ୍ରଭୁ ଆସିବେ ଧରାକୁ
ଗ୍ରହମାନେ ଶୁଭ ମନେ ଚିନ୍ତି ଦର୍ଶନକୁ ।୮ ।
ପ୍ରଭୁଙ୍କର ଆଗମନ ମନେ କରି କାମ୍ୟ
ପ୍ରକୃତିରାଣୀ ହୋଇଲା ପୂର୍ଣ୍ଣରୂପେ ରମ୍ୟ
ଦିଗ ବିଦିଗ ପ୍ରସନ୍ନ
ସୁଖଦ ଶୀତଳ ଦିନକରଙ୍କ କିରଣ ।୯ ।
ସ୍ୱଚ୍ଛ ସଲିଳ ବହଇ ନିର୍ଝରିଣୀ ବକ୍ଷେ
ଉତ୍ସୁକ ନେତ୍ରେ ପର୍ବତେ ପ୍ରତୀକ୍ଷାରେ ସୁଖେ
ପ୍ରସନ୍ନତାରେ ପ୍ରପାତ
ଧାମନ୍ତି ମୃଗେ ଯେପରି ହୋଇ ଉଲ୍ଲସିତ ।୧୦ ।
ଉଦ୍ୟାନ ବାଟିକା ବନ ଉପବନ କୋଳେ
ରଙ୍ଗ ବେରଙ୍ଗ ସୁମନ ହସଇ ମଞ୍ଜୁଳେ
ମଧୁକର ଫୁଲେ ଫୁଲେ
ମଧୁ ଆଶେ ଆଦିରସ ଆଶେ ଘୁରି ବୁଲେ ।୧୧ ।
ମଦମତ୍ତ ସମୀରଣ ବହେ ମନ୍ଦ ମନ୍ଦ
ଶୀତଳତା ମଧୁରତା ଖେଳାଏ ସୁଗନ୍ଧ
ଛୁଇଁ ହୃଦ ମନ ତନୁ
ଭରିଲା ଅଣୁ ଅଣୁରେ ଆନନ୍ଦର ଅଣୁ ।୧୨ ।
ଛନ୍ଦରେ ନାଚିଲେ ଫୁଲୁ ଫୁଲେ ପ୍ରଜାପତି
ଗ୍ରାମେ ଗ୍ରାମରେ ବ୍ରାହ୍ମଣେ ଅର୍ପିଲେ ଆହୂତି
ଦେବାଳୟେ ବେଦଧ୍ୱନି
ଚଉଦିଗେ ଶୁଭେ ଘଣ୍ଟ ଘଣ୍ଟା ଶଙ୍ଖ ଧ୍ୱନି ।୧୩ ।
କୋକିଳ ଶୁକ ପିକାଦି ଖଗେ ଆବାହନୀ
ଗାଇଲେ ସଂଗୀତ ସାଥେ ମିଶି ସ୍ରୋତସ୍ୱିନୀ
ବାଳ ବାଳାଏ ଉଚ୍ଚାଟ
କେବେ ଆସି କ୍ରୀଡ଼ା କରିବେ କେଶରୀ ଚାଟ ।୧୪ ।
ଶଙ୍କର ମାତା ଅଞ୍ଜନା ଉଦରୁ ବାହାର
ସର୍ବତ୍ର ଶୁଭିଲା ଜୟ ଜୟ ଜୟକାର
ପ୍ରଭୁ ପବନ ନନ୍ଦନ

ପ୍ରାକଟ୍ୟ ସ୍ୱରୂପ କାନ୍ତି ଅଟେ ଅତୁଳନ ।୧୫ ।
ଅଙ୍ଗକାନ୍ତି ଝଟକଇ ପିଙ୍ଗଳ ବରନ
ରୋମ କେଶ ସହ ପିଙ୍ଗଳ ବର୍ଣ୍ଣ ନୟନ
ବିଦ୍ୟୁଚ୍ଛଟା ତୁଲ୍ୟ କର୍ଣ୍ଣ
ସ୍ୱର୍ଣ୍ଣ ନିର୍ମିତ କୁଣ୍ଡଳ ଦିଶଇ ଶୋଭନ ।୧୬ ।
ମାତା ଅଞ୍ଜନା ଦେଖନ୍ତି ରୁଦ୍ର ଅବତାର
ମଣି ଜଟିତ ମୁକୁଟ ବିରାଜେ ଶିରର
କାଛା କୌପୀନ ସହିତ
ପ୍ରଶସ୍ତ ବକ୍ଷେ ଶୋଭଇ ଯଜ୍ଞ ଉପବିତ ।୧୭ ।
ହସ୍ତରେ ବଜ୍ର ବିରାଜେ ମହା ତେଜିୟାନ
କଟିରେ ମୁଞ୍ଜି ମେଖଳା ଦିଶେ ଶୋଭାବନ
ଅଲୌକିକ ରୂପ ଧରି
ଦେଖି ମା ହୃଦେ ଆନନ୍ଦ ହିଲ୍ଲୋଳ ଉବୁରି ।୧୮ ।
ଭାଗ୍ୟବତୀ ଧରିତ୍ରୀରେ ପ୍ରଭୁ ହନୁମାନ
କେଶରୀ ଅଞ୍ଜନା ପ୍ରୀତ ରଖନ୍ତେ ଚରଣ
ହର୍ଷ ଉଲ୍ଲସିତ ମନ
ସର୍ବତ୍ର ବିରାଜେ ଖୁସି ଦକ୍ଷିଣି ପବନ ।୧୯ ।
ଦେବଗଣ ଋଷିଗଣ କପି ତପି ଗଣ
ପର୍ବତ ପ୍ରପାତ ସର ଜଡ଼ ଓ ଚେତନ
ସରିତ ପତି ସରିତ
ପଶୁପକ୍ଷୀ ବସୁନ୍ଧରା ସର୍ବେ ପୁଲ୍‌କିତ ।୨୦ ।
ସଙ୍କଟ ମୋଚନ ପ୍ରଭୁ ହନୁମାନ ଜନ୍ମ
ଷଷ୍ଠ ଅଧ୍ୟାରେ ଭକ୍ତିରେ ହୋଇଲା ବର୍ଣ୍ଣନ
ପ୍ରଭୁ ଶିବ ଅବତାର
ପ୍ରଣାମ କରେ ସୁରେଶ ପାଦେ ବାରବାର ।୨୧ ।



# ସପ୍ତମ ଛାନ୍ଦ

ରାଗ-ଗୁଜ୍ଜରୀ

(ହନୁମାନଙ୍କର ସୂର୍ଯ୍ୟ ମଣ୍ଡଳରେ ପ୍ରବେଶ, ବଜ୍ରାଘାତ ଓ ଦେବତା ମାନଙ୍କ ଠାରୁ ବରପ୍ରାପ୍ତି)

ଶୁଣ ସୁଜନେ କଥା ଏଥୁ ଅନନ୍ତରେ
ପୁତ୍ର ପାଳେ ଅଞ୍ଜନା ଅତି ପ୍ରୀତି ଭରେ ।୧ ।
ଏକାଦଶ ଦିନେ କଲା ନାମ କରଣ
ତ୍ରିଂଶ ଦିବସ ଶେଷେ ବହିଃ ନିଷ୍କ୍ରାମଣ ।୨ ।
କପିରାଜ ପୁତ୍ରକୁ କ୍ଷଣେ ନ ଛାଡ଼ନ୍ତି
ପଦେ ପଦେ ପାଶରେ ପହରାରେ ଥାନ୍ତି ।୩ ।
ହସରେ ହସନ୍ତି ତା କାନ୍ଦନ୍ତି କାନ୍ଦରେ
ବାଳକ୍ରୀଡ଼ା ରଚନ୍ତି ତାହାର ସାଥିରେ ।୪ ।
ଆତ୍ମଜ ଚାଲି ବେଲି ଅତ୍ୟନ୍ତ ମୋହକ
ମୁଖ ଭଙ୍ଗି ଭଙ୍ଗିମା ବଡ଼ ଆକର୍ଷକ ।୫ ।
ଏକଦା କପିରାଜ କାର୍ଯ୍ୟରେ ଅନ୍ତର
ଥୋଇ ଅଞ୍ଜନା ଝୁଲା ମଧ୍ୟେ ବାଳ ତା'ର ।୬ ।
ଫଳ ପୁଷ୍ପ ସଂଗ୍ରହ କରିବା ଇଛାରେ
ବନକୁ ଯାଇଥିଲେ ସନ୍ତର୍ପଣେ ଧିରେ ।୭ ।
ଝୁଲାରେ ଅଞ୍ଜନା ଲାଲ ରହିଥିଲେ ଶୋଇ
କ୍ଷୁଧାକଷ୍ଟ ଦେବାରୁ ଉଠିଲେକ ଚେଇଁ ।୮ ।
ମାତାଙ୍କୁ ନ ଦେଖିଣ ବତ୍ସା ଯେହ୍ନେ ରଡ଼େ
ହସ୍ତପଦ ପ୍ରହାର କରି ଧ୍ୱନି ଛାଡ଼େ ।୯ ।
ରୋଦନ ସେ କରନ୍ତି ରାହାକୁ ଲମ୍ବାଇ
କ୍ରନ୍ଦନ ଶବ୍ଦେ ସାରା ଜଗତ କମ୍ପାଇ ।୧୦ ।
ଏ ସମୟେ ଗବାକ୍ଷ ଦେଇ କ୍ଷିତିଜରୁ
ବାଳ ରବିଙ୍କ କିରଣ ପଡ଼ିଲା ପ୍ରାଚୀରୁ ।୧୧ ।
କେଶରୀ ନନ୍ଦନଙ୍କ ଦୃଷ୍ଟି ଗଲା ତେଣେ
ଅରୁଣୋଦୟ ରଶ୍ମି ହୃଦୟକୁ ଟାଣେ ।୧୨ ।
ବାଳ ଦିବାକର ବିମ୍ବ ଦିଶେ ସୁନ୍ଦର
ପକ୍ୱ ଫଳ ପ୍ରାୟ ମଣି ବାତ କୁମର ।୧୩ ।
ଭକ୍ଷିବା ଉଦ୍ଦେଶ୍ୟରେ ଉର୍ଦ୍ଧ୍ୱେ ଲମ୍ଫ ଦେଲେ
ତୀବ୍ର ବେଗେ ଯାଇଣ ବ୍ୟୋମ ମାର୍ଗେ ହେଲେ ।୧୪ ।

ଅମିତ ବଳ ତାଙ୍କ ବେଗ ଚମତ୍କାର
ଆଶ୍ଚର୍ଯ୍ୟରେ ଦେଖନ୍ତି ସର୍ବ ସୁରାସୁର ।୧୫ ।
ଯେତେବେଳେ ମରୁତ ଦେଖିଲେ ପୁତ୍ରକୁ
ଅଚିନ୍ତ୍ୟ ବେଗେ ଧାଏଁ ସୂର୍ଯ୍ୟମଣ୍ଡଳକୁ ।୧୬ ।
ହୃଦୟେ ଚିନ୍ତା କରି ସେଠାର ଉତ୍ତାପ
ସ୍ୱୟଂକୁ କରିଦେଲେ ଯେସନ ବରଫ ।୧୭ ।
ଚଳିଲେ ପ୍ରଭଞ୍ଜନ ସାଥିରେ ତାହାର
ପବନ ବେଗେ ଆସିବା ଦେଖି ଭାସ୍କର ।୧୮ ।
ଜାଣିଲେ ଏ ନିଶ୍ଚୟ ମରୁତ କୁମାର
ଅଲୌକିକ ସ୍ୱରୂପ ରୁଦ୍ର ଅବତାର ।୧୯ ।
ବାତ ସହିତ ଚନ୍ଦ୍ରମୌଳି ଆଗମନ
ସୌଭାଗ୍ୟ ପ୍ରାୟ ମଣି ଆହ୍ଲାଦିତ ମନ ।୨୦ ।
ଉତ୍ତପ୍ତ କିରଣକୁ କରିଲେ ଶୀତଳ
ଅଞ୍ଜନା କୁମରକୁ ନେଇ କଲେ କୋଳ ।୨୧ ।
ଗ୍ରହପତି ରଥରେ କେଶରୀ ନନ୍ଦନ
ଛାୟାପତି ସହିତ ଖେଳେ ଖୁସିମନ ।୨୨ ।
ଦେଖି ପୁତ୍ରକୁ ବାତ କୋଳେ ପ୍ରଭାକର
ମନେ ମନେ ହରଷ ହୋଇଲା ଅପାର ।୨୩ ।
ଏଣେ ଘଟଣା ଯାହା ଶୁଣ ହେ ବିଦୁଷ
ଶୁଣିଲେ ହୃଦୟରୁ ନାଶିବ କଳ୍ମଷ ।୨୪ ।
ସଂଯୋଗେ ସେହି ତିଥି ଅମାବାସ୍ୟା ଥିଲା
ସିଂହିକା ପୁତ୍ର ରାହୁ ଆଦିତ୍ୟେ ଦେଖିଲା ।୨୫ ।
ରବିଙ୍କୁ ଗ୍ରାସିବାର ପାଳିତ ମୋହର
ମୋ ପୂର୍ବରୁ କିଏ ଏ ଅଛି ବଳିୟାର ।୨୬ ।
ଅଂଶୁମାଳି ଗ୍ରସନେ ଆଗଭର ହୋଇ
ବସିଛି ରଥ ପରେ ବିକ୍ରମରେ ଯାଇ ।୨୭ ।
ଦିବ୍ୟ ବାଳକେ ମନେ ହେୟ ଜ୍ଞାନ କରି
ଗ୍ରାସିବାକୁ ମିହିରେ ମୁଖକୁ ପ୍ରସାରି ।୨୮ ।
ଆଗକୁ ବଢ଼ିବାରୁ ଅଞ୍ଜନା ନନ୍ଦନ
ବଜ୍ର ମୁଷ୍ଟିରେ ତାକୁ ଧରିଲେ ବହନ ।୨୯ ।
ମୁଷ୍ଟି ମଧ୍ୟେ ଅତୀବ ହେଲା ଛଟପଟ

ପବନାତ୍ମଜ ଫିଙ୍ଗି ଦେଲେ ଭାବି କୀଟ ।୩୦ ।
ମୁଷ୍ଟିକାରୁ ମୁକୁଳି ସିଂହିକା କୁମର
ଅଭିଯୋଗ ନେଇଣ ଗଲା ସୁରପୁର ।୩୧ ।
କ୍ରୋଧେ କ୍ଷୋଭେ କହଇ ପ୍ରଭୁ ସୁରେଶ୍ୱର
ରାକ୍ଷସୀ କ୍ଷୁଧା ଦୂର କରିବାକୁ ମୋର ।୩୨ ।
ମାର୍ତଣ୍ଡେ ଦେଇଥିଲ ସାଧନ ରୂପରେ
ଏବେ କିମ୍ପା ତାହାକୁ ଦେଇଛ ଅନ୍ୟରେ ।୩୩ ।
ସୂର୍ଯ୍ୟ ପରାଗ କାଳେ ଗ୍ରାସିବା ପାଇଁ କି
ଅଦ୍ୟ ଯେବେ ଯାଆଇ ଅର୍କଙ୍କ କତିକି ।୩୪ ।
ଅନ୍ୟ ଏକଇ ରାହୁ ପୂର୍ବରୁ ସେଠାରେ
ଆସ୍ଥାନ ଜମାଇ ଥିଲା ଦ୍ୟୁମଣି ପୁରେ ।୩୫ ।
ଧରିଲା ମୋର ଶିର ବଜ୍ର ମୁଷ୍ଟିକାରେ
ଖସି ଆସି ଅଛଇଁ ବହୁତ କ୍ଲେଶରେ ।୩୬ ।
କ୍ରନ୍ଦନ କରି କହେ ରାହୁ ବାସବଙ୍କୁ
ଶ୍ରବଣେ ଶଚୀପତି ଉଠାଇ ବଜ୍ରକୁ ।୩୭ ।
ଐରାବତ ପୃଷ୍ଠରେ କଲେ ଆରୋହଣ
ମିତ୍ର ମଣ୍ଡଳ ଦିଗେ କରିଲେ ଗମନ ।୩୮ ।
ଆଗେ ଆଗେ ସିଂହିକା ନନ୍ଦନ ଚଳଇ
ଯାଉ ଯାଉ ସୁରପତି ମନେ ଚିନ୍ତଇ ।୩୯ ।
ମହାପରାକ୍ରମୀ କେ ଅଛଇ ଏମନ୍ତ
ତିମିରାରୀ ନିକଟେ ଏଡ଼େ ବଳବନ୍ତ ।୪୦ ।
ଯାହାରେ ଡରି ମରି ସିଂହିକା ନନ୍ଦନ
ଦୌଡ଼ିବାକୁ ହୋଇଲା ବଞ୍ଚାଇଣ ପ୍ରାଣ ।୪୧ ।
ରାହୁକୁ ବାସବ ଆଗେ ଆସିବା ଦେଖି
କେଶରୀ ସୁତ ମନେ ହେଲେ ମହାସୁଖି ।୪୨ ।
କ୍ଷୁଧା ତାଡ଼ନା ସ୍ମୃତି ହୋଇଲା ଜାଗ୍ରତ
ରାହୁ ଦର୍ଶନେ ଚିନ୍ତି ସୁଖାଦ୍ୟ ଆଗତ ।୪୩ ।
ରଥୁ ଡେ଼ଇଁ ଦୃଢ଼େଣ ଧରିଲେ ତାହାରେ
ଦୌଡ଼ଇ ଖସି ରାହୁ ଭୟେ ବିକଳରେ ।୪୪ ।
ରାହୁ ରକ୍ଷଣ ଅର୍ଥେ ସୁରେନ୍ଦ୍ର ଆସିଣ
ପହଞ୍ଚିଲେ ସମ୍ମୁଖେ ପବନ ନନ୍ଦନ ।୪୫ ।

ଐରାବତେ ଦେଖିଣ ମୁଖକୁ ପ୍ରସାରି
ଧାଆନ୍ତି ବାୟୁ ସୁତ ଘୋର ରଡ଼ି କରି ।୪୬ ।
କ୍ଷୁଧାରେ ଆକ୍ରାନ୍ତ ସେ ଭୟାନକ ରୂପ
ପ୍ରଜ୍ୱଳିତ ଅନଳ ପ୍ରାୟେକ ସ୍ୱରୂପ ।୪୭ ।
ବାସବ କରି ପୃଷ୍ଟେ ଡରେ ଥରହର
ବଜ୍ରେ ବାଳକ ଉପରେ କରିଲା ପ୍ରହାର ।୪୮ ।
ଭାଙ୍ଗିଲା ବାଳକର ବାମ ହନୁହାଡ଼
ପର୍ବତ ଶିଖରରେ ପଡ଼ି ହେଲା ଜଡ଼ ।୪୯ ।
ମୂର୍ଚ୍ଛିତ ଅବସ୍ଥାରେ ଆତ୍ମଜକୁ ଦେଖି
ବାୟୁ ଦେବତା ରୋଷ ନ ପାରିଲେ ରଖି ।୫୦ ।
ପୁତ୍ରକୁ କୋଳେ ଧରି ଭଗ୍ନ ହୃଦୟରେ
ଗତି ରୋଧି ପ୍ରବେଶି ପର୍ବତ ଗୁହାରେ ।୫୧ ।
ତ୍ରିଭୁବନ ପ୍ରାଣୀଙ୍କ ଶ୍ୱାସ ଗଲା ରହି
ପ୍ରାଣ ଗତି ଅଭାବେ ଜଡ଼ ହେଲେ ଦେହୀ ।୫୨ ।
ପ୍ରାଣ ସଂକଟ ଭୟେ ଜୀବ ଚରାଚର
ଇନ୍ଦ୍ର ଦେବ ଗନ୍ଧର୍ବ ନାଗ ଓ ଅସୁର ।୫୩ ।
ଜୀବନ ରକ୍ଷା ଅର୍ଥେ ବ୍ରହ୍ମା ନିକଟରେ
କହିଲେ ସର୍ବ କଥା ଭେଟି ଚୁମ୍ବକରେ ।୫୪ ।
ପର୍ବତ ଗୁହାକୁ ବେଦପତିଙ୍କ ସହିତ
ସର୍ବେ ପବନ ଆଗେ ହେଲେ ଉପଗତ ।୫୫ ।
ପୁତ୍ର ଶରୀର ଅଙ୍କେ ଧରି ଦୁଃଖଭରେ
ରୋଦନ କରୁଥିଲେ ନେତ୍ରୁ ଅଶ୍ରୁ ଝରେ ।୫୬ ।
ଚଣ୍ଡାଂଶୁ ଅଗ୍ନି ସ୍ୱର୍ଣ୍ଣ ସମ ଅଙ୍ଗ କାନ୍ତି
ମୂର୍ଚ୍ଛିତ ବାୟୁ ସୁତ ଚମତ୍କୃତ ଅତି ।୫୭ ।
ଦେଖି ସ୍ରଷ୍ଟା ସମ୍ମୁଖେ ବାତ ପୁତ୍ରେ ଧରି
ଦଣ୍ଡାୟମାନ ହେଲେ ଅଶ୍ରୁ ଦୂର କରି ।୫୮ ।
ମନୋହର ଦିଶନ୍ତି ପବନ କୁମର
କର୍ଣ୍ଣେ କୁଣ୍ଡଳ ଶୋହେ ଗଳେ ମୁକ୍ତାହାର ।୫୯ ।
ମସ୍ତକରେ ମୁକୁଟ ସ୍ୱର୍ଣ୍ଣ ଆଭୂଷଣ
ଦିବ୍ୟ ଅଙ୍ଗ ସମସ୍ତ ଦିଶଇ ଶୋଭନ ।୬୦ ।
ଶରୀରୁ ଦିବ୍ୟ ଜ୍ୟୋତି ପ୍ରକଟ ହେଉଛି

ବାଳକର ତନୁରେ ଆଭା ପ୍ରକାଶୁଛି ।୬୧ ।
ପ୍ରଭଞ୍ଜନ ବ୍ରହ୍ମାଙ୍କ କମଳ ଚରଣେ
ଦଣ୍ଡ ପ୍ରଣାମ କରି ଦୁଃଖେ ବାଣୀ ଭଣେ ।୬୨ ।
ଭୋ ପ୍ରଭୁ କୁମରର ଅବସ୍ଥା ଏପରି
ଦେଖି କେ ଅଛି ସଂସାରେ ସହିବ ସଂସାରି ।୬୩ ।
ସୁଦୟା କର ପ୍ରଭୁ ଏହାରେ ଉଦ୍ଧର
ବିଗଳିତ ଦୃଷ୍ଟିପାତରେ ବେଦବର ।୬୪ ।
ସ୍ନେହ ପୂର୍ବକ ହସ୍ତେ ଧରି ପବନଙ୍କୁ
ଉଠ ଦୁଃଖ ତେଜିଣ ମାନ ମୋ ଗୀରକୁ ।୬୫ ।
ପବନ ସୁତ ଶିରେ ହସ୍ତ ସଞ୍ଚାଳିଲେ
କର ସ୍ପର୍ଶେ ବାଳକ ମୂର୍ଚ୍ଛାରୁ ଉଠିଲେ ।୬୬ ।
ପୁତ୍ର ଜୀବିତେ ପାଇ ସମୀର ଦେବତା
ଜଗତ ପ୍ରାଣ ରୂପ ଛାଡ଼ି ମନୁ ଚିନ୍ତା ।୬୭ ।
ବହିଲେ ଯଥାବତ୍ ତ୍ରୈଲୋକେ ଜୀବନ
ପୂର୍ବବତ୍ ତତ୍କ୍ଷଣେ ହେଲା ସଞ୍ଚାଳନ ।୬୮ ।
ବ୍ରହ୍ମା ଆନନ୍ଦ ମନେ କଲେ ଆଶୀର୍ବାଦ
ସଂସାରେ ଏ ବାଳକ ହୋଇବ ପ୍ରସିଦ୍ଧ ।୬୯ ।
ବ୍ରହ୍ମ ଶାପ ଏହାକୁ କେବେ ନ ଲାଗିବ
ବଜ୍ରଅଙ୍ଗ ହୋଇବ ଶସ୍ତ୍ର ନ ଭେଦିବ ।୭୦ ।
ସମସ୍ତ ସୁରଗଣେ ପାଶକୁ ରାଇଣ
କହିଲେ ଏ ଦେବଙ୍କ କରିବ କଲ୍ୟାଣ ।୭୧ ।
ଏଣୁ ସରବେ ବର ଦିଅ ଶୀଘ୍ର ଯାରେ
ଧର୍ମ ସଂରକ୍ଷଣରେ ଜନ୍ମ ଯା ସଂସାରେ ।୭୨ ।
ଇନ୍ଦ୍ର ହୋଇ ପ୍ରସନ୍ନ ଅମ୍ଳାନ କମଳ
ପିନ୍ଧାଇଲେ ଗଳାରେ ଦିବ୍ୟ ପୁଷ୍ପମାଳ ।୭୩ ।
ବଜ୍ରାଘାତେ ବାଳକ ହନୁ ଭଙ୍ଗ ଯେଣୁ
ନାମଟି ହନୁମାନ ବୋଲାଇବେ ତେଣୁ ।୭୪ ।
ବଜ୍ରହୁଁ ହେବ ଟାଣ ଏହାର ଶରୀର
ପ୍ରଭାବ ନ ପଡ଼ିବେ ଅଙ୍ଗରେ ବଜ୍ରର ।୭୫ ।
ଅଂଶୁମାଳି ଆଗକୁ ଆସିଣ ଆଶିଷ
ସ୍ୱରୂପେ ଦେଲେ ନିଜ ତେଜରୁ ଶତାଂଶ ।୭୬ ।

ଶାସ୍ତ୍ରମର୍ମଜ୍ଞ ବକ୍ତା ହୋଇବ ବିଦ୍ୱାନ
ଗୁରୁ ରୂପେ ଏହାରେ ପ୍ରଦାନିବି ଜ୍ଞାନ ।୭୭ ।
ଜଳ ଭୟୁ ରକ୍ଷିତ କରିଲେ ବରୁଣ
ରୋଗ ମୃତ୍ୟୁରୁ ମୁକତ କଲେ ଶମନ ।୭୮ ।
ଯକ୍ଷରାଜ କୁବେର ସୁରକ୍ଷା ଗଦାରୁ
ଅଭୟ ବର ଦେଲେ ରଣ ବିଷାଦରୁ ।୭୯ ।
ଯକ୍ଷ ରାକ୍ଷସ ସହ ଯୁଦ୍ଧେ ପରାଜିତ
ନ ହୋଇବା ଆଶିଷ ଦେଲେ ହୋଇ ପ୍ରୀତ ।୮୦ ।
ଶଙ୍କର ଅବତାର ସମ୍ମୁଖେ ଶଙ୍କର
ଆଶୀର୍ବାଦ ପ୍ରଦାନେ ପ୍ରକାଶିଲେ ଗୀର ।୮୧ ।
ସ୍ୱୟଂ ମୁଁ କିମ୍ବା ମୋର ଯେତେ ଅସ୍ତ୍ର ଶସ୍ତ୍ର
ହେବେ ପବନ ନନ୍ଦନ ଆଗେ ନିରସ୍ତ୍ର ।୮୨ ।
ବିଶ୍ୱକର୍ମା ସାନନ୍ଦେ ପ୍ରଦାନିଲେ ବର
ଯେତେ ଅସ୍ତ୍ର ନିର୍ମିତ ହସ୍ତରେ ମୋହର ।୮୩ ।
ବଜ୍ରାଙ୍ଗ ହନୁମାନେ ନ କରିବେ କ୍ଷତି
ହୋଇ କରି ଚିରାୟୁ ବଂଚିବେ ଏ କ୍ଷିତି ।୮୪ ।
ପୁନର୍ବାର ବ୍ରାହ୍ମଣ ହୋଇ ଖୁସି ମନ
କହନ୍ତି ହନୁମାନ ବଡ଼ ଭାଗ୍ୟବାନ ।୮୫ ।
ଦୀର୍ଘାୟୁ ଓ ମହାତ୍ମା ବ୍ରହ୍ମଦଣ୍ଡ ମୁକ୍ତ
ଶତ୍ରୁ ନିମନ୍ତେ ଯମ ଭକ୍ତଙ୍କର ମିତ୍ର ।୮୬ ।
ଇଚ୍ଛାନୁସାରେ ବପୁ କରିବ ଧାରଣ
ପରାଜିତ ନ ହେବ କଲେ ଯେତେ ରଣ ।୮୭ ।
ଯଶବାନ ଅତ୍ୟନ୍ତ ଗତି ଅବ୍ୟାହତ
ରୋମାଞ୍ଚକାରୀ କାର୍ଯ୍ୟ କରିବ ଅଦ୍ଭୁତ ।୮୮ ।
ସୁରେ ନାନା ପ୍ରକାରେ ଗଲେ ବର ଦେଇ
ପ୍ରଭଞ୍ଜନ ସୁମେରୁ ପର୍ବତକୁ ଯାଇ ।୮୯ ।
ହନୁମାନଙ୍କୁ ହସ୍ତେ ଦେଇ ଅଞ୍ଜନାର
ସ୍ୱସ୍ଥାନରେ ଚଳିଲେ ଆନନ୍ଦ ମନର ।୯୦ ।
ସପ୍ତମ ଛାନ୍ଦ ଶେଷ ହନୁମାନ କଥା
ସୁରେଶ ବର୍ଣ୍ଣେ ପାଦେ ନୁଆଁଇଣ ମଥା ।୯୧ ।



# ଅଷ୍ଟମ ଛାନ୍ଦ

ରାଗ-ଚୋଖି

(ହନୁମାନଙ୍କ ବାଲ୍ୟଲୀଳା ଓ ଋଷିଙ୍କ ଶାପ ପ୍ରଦାନ)

ଶୈଳ ଆତ୍ମଜା ଆତ୍ମଜ ମୟୁର ବାହନାନୁଜ
ପଦକଞ୍ଜରେ ମୋହର ପ୍ରଣାମ ଘେନ,
ବିଦ୍ୟାଦାତା ବିଘ୍ନେଶ୍ୱର ପ୍ରଭୁ ମୋ ମୂଢ଼ତା ହର
କର୍ଣ୍ଣଗହ୍ୱରେ କହିଦିଅ ପଦମାନ,
ଭାବେ ହନୁମାନ ବିଳାସ
ବିରଚିବି ମନେ କରିଛି ଅଭିଳାଷ ।୧ ।
ନଟଖଟ ଓ ଚଞ୍ଚଳ ଅଟନ୍ତି ଅଞ୍ଜନାବାଳ
ପ୍ରଳୟଙ୍କର ମହେଶ୍ୱର ଅବତାର,
କପି କେଶରୀ ଶାବକ ଦେବତା ବର ପ୍ରାପକ
ଅପରାଜେୟ ବଳିଷ୍ଠ ବାୟୁ କୁମର,
ଦରଶନେ ତା' ଚପଳତା,
ମନ ହୃଦୟରେ ପ୍ରସନ୍ନ ପିତା ମାତା ।୨ ।
ମୃଗରାଜର ଲାଙ୍ଗୁଳ ଧରି ଘୁରାଇ ଚଞ୍ଚଳ
ଫିଙ୍ଗନ୍ତି ତୃଣ ଉପରେ କ୍ରୀଡ଼ା କ୍ରୀଡ଼ାରେ,
ଗଜରାଜ ଶୁଣ୍ଢ ଧରି ଦନ୍ତକୁ ହସ୍ତେ ଆବୋରି
ଗତିରୋଧ କରିଣ ପକାନ୍ତି ମହୀରେ,
ନିତ୍ୟ କ୍ରୀଡ଼ା ଏହି ତାଙ୍କର,
ବିଶାଳ ବୃକ୍ଷ ହଲାନ୍ତି ମୂଳରୁ ତା'ର ।୩ ।
ବୁଲନ୍ତି ବନରୁ ବନ ଯେତେ ଅଗମ୍ୟ କାନନ
ଡେଇଁ କରି ପର୍ବତ ଶିଖରୁ ଶିଖର,
ପ୍ରାଣୀଏ ସର୍ବେ ବନର ଆଗମନରେ ତାଙ୍କର
ହୁଅନ୍ତି ବ୍ୟସ୍ତ ବିବ୍ରତ ମନ ମଧ୍ୟର,
ଅନ୍ତରରେ କରନ୍ତି ଶ୍ରଦ୍ଧା,
ଦୁର୍ବଳେ ରକ୍ଷା କରନ୍ତି ଘୁଞ୍ଚାଇ ବାଧା ।୪ ।
ବୃକ୍ଷ ଶିଖରୁ ଶିଖର ଡେଇଁ ଯାନ୍ତି କ୍ରୋଶ ଦୂର
ଶାଲ୍ମଳୀ ବୀଜ ପରାୟେ ଶରୀର ଭାର,
ସୁରବର ପ୍ରଭାବରେ ପ୍ରବେଶି ତପସ୍ୱୀ ପୁରେ
ଚପଳତା ବଶତଃ କର୍ମ ତାଙ୍କର,

କ୍ଲେଶ ଦିଏ ଋଷି ପ୍ରାଣରେ,
ଋଷିଏ ଆନନ୍ଦ ନ୍ୟନ୍ତି ଦେଖି ତାହାରେ ।୫ ।
ଏକ ଋଷିଙ୍କ ଆସନ       ରଖନ୍ତି ଅନ୍ୟ ଅଗ୍ରେଣ
କାହା ମୃଗ ଚର୍ମ ପିନ୍ଧି ବୃକ୍ଷେ ଚଢ଼ନ୍ତି,
ନେଇ କମଣ୍ଡଳୁ କା'ର     ଜଳ ଫିଙ୍ଗନ୍ତି ବାହାର
ଅନ୍ୟ କା'ର କମଣ୍ଡଳୁ ପିଟି ଭାଙ୍ଗନ୍ତି,
ଜପେ ମଗ୍ନ ଋଷି କୋଳରେ,
ବସନ୍ତି ଆନନ୍ଦେ ଯାଇ ମନ ମୌଜରେ ।୬ ।
ଧ୍ୟାନସ୍ଥ ମୁନିଙ୍କ ଦାଢ଼ୀ     ଟାଣି ଯାଆନ୍ତି ଦଉଡ଼ି
ଫାଡ଼ିଦ୍ୟନ୍ତି ଦନ୍ତେ ହସ୍ତେ ପୋଥି କୌପୀନ,
ଯଜ୍ଞ ଉପଯୋଗୀ ପାତ୍ର     ସ୍ରୁବ ଓ ସ୍ରୁକ ସହିତ
ଭୂମି ପରେ ପିଟି ଭାଙ୍ଗନ୍ତି ତତକ୍ଷଣ,
ବହୁ ପରିଶ୍ରମେ ପ୍ରାପତ,
ବଲ୍କଲ ଚିରି ଫାଡ଼ନ୍ତି ଲଗାଇ ଦନ୍ତ ।୭ ।
ବ୍ରହ୍ମାଦି ଦେବଙ୍କ ବର      ହୋଇ ସରବେ ଗୋଚର
ବିବଶ ଋଷିଏ ସହନ୍ତି ନୀରବରେ,
କାହା ପାଇଁ ଯାହା ଖେଳ          ଅନ୍ୟରେ ପାଲଟେ କାଳ
କ୍ଲେଶ ଦିଏ ବେଳେ ବେଳେ କାଳ ବଶରେ,
ଋଷି ମୁନି ଯୋଗୀ ଯେତେକ,
ସହନ୍ତି କେଶରୀ ସୁତଙ୍କର ଆତଙ୍କ ।୮ ।
ବଢ଼ି ଯେହ୍ନେ ଶଶିକଳା     କେଶରୀ ଅଞ୍ଜନା ବଳା
ବିଦ୍ୟାଧ୍ୟୟନ ବୟସେ କଲେ ପ୍ରବେଶ,
ତଥାପି ତା' ଚଞ୍ଚଳତା      ହରାଏନା ପ୍ରବଳତା
ମାତା ପିତା ହୋଇଲେ ଚିନ୍ତିତ ମାନସ,
ପ୍ରାଣପ୍ରିୟ ସୁତେ ନିଜର,
ପ୍ରବୋଧିଲେ ସ୍ନେହରେ ବିଭିନ୍ନ ପ୍ରକାର ।୯ ।
ଅତି ସୌନ୍ଦର୍ଯ୍ୟରୁ ସୀତା    ଗର୍ବୁ ବିଭୀଷଣ ଭ୍ରାତା
ଅତିମାନରୁ କୌରବେ ବଳି ଦାନରୁ,
ଅତି ମିଠାଫଳେ କୀଟ     ଅତି ସୁନ୍ଦରୀଟି ବିଟ
ନଷ୍ଟ ହୁଅନ୍ତି ସରବେ ଅତି ଦାଉରୁ,
ବୁଝାଇଲେ ଯେତେ ଗେହ୍ଲାରେ,

ଚପଳତା ନ କମେ ହନୁମାନ ଠାରେ ।୧୦ ।
ଗାନ୍ଧାରୀ ପତି ମୋହରୁ   ପତଙ୍ଗେ ଅତି କାମରୁ
ଅତି ଜିହ୍ୱା ଆଗ୍ରହରୁ ମୀନ ମରଇ,
ଅତି ଶ୍ରବଣ ଲାଳସା   ମାରଇ ମୃଗେ ସହସା
ଅତିକୁ ତ୍ୟାଗ କରିଲେ ଯଶ ମିଳଇ,
ଅତି ଗେଲ ଆଦର ପାଇଁ,
ଅଞ୍ଜନା ସୁତ ଚାପଲ୍ୟ ନଷ୍ଟ ନୁହଁଇ ।୧୧ ।
ପୁତ୍ରର ଏହି ଚରିତ୍ର   ମାତାଙ୍କୁ କଲା ବ୍ୟଥିତ
ମାତା ପିତା ଦୁହେଁ ବସି କଲେ ବିଚାର,
ପଢ଼ିବା ବୟସ ହେଲା   ପଢ଼ିବା ନାମ ନ ନେଲା
ବନ ପର୍ବତେ ଭ୍ରମଇ ଆମ କୁମର,
କି କରିବା ବୁଦ୍ଧି ନ ଦିଶେ,
ଦିନକୁ ଦିନ ଅଝଟ ପଣ ପ୍ରକାଶେ ।୧୨ ।
ଦେବଙ୍କ ପ୍ରସାଦୁ ଜନ୍ମ   ଦେବ ବରେ ବଳବାନ
ନାଶିବ ବଂଶ ସୁନାମ ମୂର୍ଖ ହୋଇଲେ,
ମୂର୍ଖ ହୁଏ ଅହଙ୍କାରୀ   ଶୁଣେନା କଥା କାହାରି
ଜିଦି ବିଶାଦୀ ହୁଏ ଅପଶବ୍ଦ ବୋଲେ,
ମୂର୍ଖ ଶହେ ପୁତ୍ରେ କି ଲାଭ,
ଏକ ଗୁଣି ପୁତ୍ର ବଂଶେ ଆଣଇ ଶୁଭ ।୧୩ ।
ପୁତ୍ର ଚିନ୍ତା ଧରି ମନେ   କେଶରୀ ଅଞ୍ଜନା ବନେ
ଗମନ କରିଲେ ଋଷିଗଣଙ୍କ ପାଶ,
ଦୁଃଖେ କହିଲେ ବଚନ   ଯୋଗ ସିଦ୍ଧ ନିବେଦନ
କରୁଅଛୁ ଚରଣରେ ଛୁଆଇଁ ଶିଶ,
ଆମ୍ଭ ଆତ୍ମଜ ହନୁମାନ,
ଦୋଷ ତା'ର କ୍ଷମି ନାଶ ତା' ମୂର୍ଖପଣ ।୧୪ ।
ବିଦ୍ୟାଧ୍ୟୟନ ବୟସ   ହୋଇ ଯାଉଅଛି ଶେଷ
ବାତ୍ସଲ୍ୟ ସ୍ନେହେ ବହି ଯାଉଅଛି କାଳ,
ରୂପ ଯୌବନ ସଂପନ୍ନ   ପ୍ରସିଦ୍ଧ କୁଳରେ ଜନ୍ମ
ବିଦ୍ୟାହୀନ ତା ଅକାଳ କୁଷ୍ମାଣ୍ଡ ଫଳ,
ବିଦ୍ୟା ପ୍ରଦାନଇ ନମ୍ରତା,
ଧନରୁ ଧର୍ମ ବିନୟରୁ ସଜ୍ଜନତା ।୧୫ ।

ବିଦ୍ୟା ଅନୁପମ କୀର୍ତ୍ତି     ବିରହୀ ନିମନ୍ତେ ରତି
ଭାଗ୍ୟହୀନ ଜନର ଅଟଇ ଆଶ୍ରୟ,
ମହିମା ଅଟେ କୁଳର     ସତ୍କାରର ସେ ମନ୍ଦିର
ରତ୍ନହୀନ ଆଭୂଷଣ ନେତ୍ର ତୃତୀୟ,
ପରିତ୍ୟାଗ କରି ସମସ୍ତ,
ଏଣୁ ବିଦ୍ୟା ସଂଗ୍ରହେ ଚେଷ୍ଟିତ ପଣ୍ଡିତ ।୧୬ ।
ନାହିଁ ବିଦ୍ୟା ସମ ନେତ୍ର     ନାହିଁ ତପ ଯେହ୍ନେ ସତ୍ୟ
ଆସକ୍ତି ସମ ଦୁଃଖ ତ୍ୟାଗ ସମ ସୁଖ,
ଗୁରୁ ପଦେ କରି ସେବା     ଧନ ପ୍ରଦାନେ ଅଥବା
ବିଦ୍ୟା ଅର୍ଜିବ ବୁଦ୍ଧି କରିଣ ସଳଖ,
ବିଦ୍ୟା ଅଛି ପାଶେ ଯାହାର,
ଅନ୍ନ ଚିନ୍ତା କି କରିବ ଅବା ତାହାର ।୧୭ ।
ଆଚରି ତପ କଠୋର     ପାଇଛୁ ଏହି କୁମର
ଅନେକ ଦିନ ଅନ୍ତରେ ବିଶିକେଶନ,
ଅନୁଗ୍ରହ କରି ତାରେ     କୃପା ବରଷ ଉପରେ
ବିଦ୍ୟାଦାନ କରି ନାଶ ତା ମୂର୍ଖପଣ,
କରୁଣା ହୋଇଲେ ତୁମର,
ସ୍ୱଭାବ ପରିବର୍ତ୍ତନ ହୋଇବ ତାର ।୧୮ ।
ହୃଦେ ରଖି ନିଜ ବ୍ୟଥା     ଋଷିଏ ହୋଇଲେ କଥା
ଅମିତ ଶକ୍ତି ପରାକ୍ରମ ଅଭିମାନ,
ଅହଂକାରର କାରଣ     କଲେ ମୂଳୁ ନିବାରଣ
ଯଥାର୍ଥେ ହୋଇବ ତା'ର ହିତ ସାଧନ,
ନିଜ ପରାକ୍ରମ ଭୁଲିଲେ,
ଉତ୍ତମ ସ୍ୱଭାବ ପ୍ରାପ୍ତ କରିବ ଭଲେ ।୧୯ ।
ଏହି ହିଁ ସେହି ବାଳକ     ଦେବତା ହିତ ସାଧକ
ସିଦ୍ଧ ଋଷିଏ ଜାଣନ୍ତି ତା ଭବିଷ୍ୟତ,
ଶ୍ରୀରାମଙ୍କର ଭକତ     ହେବ ଅତି ଅନୁଗତ
ବଳ ବିକ୍ରମ ଅହଂକାର ନୁହେଁ ଉଚିତ,
ଦୀନଭାବ ଶୋଭା ପାଇବ,
ନିରହଂକାର ହୋଇଲେ ବିଶ୍ୱ ଜିଣିବ ।୨୦ ।
ଭୃଗୁ ଅଙ୍ଗିରା ବଂଶଜ     ହିତ ଚିନ୍ତି ଶାପେ ନିଜ

ଅଭିଶାପ ଦେଲେ ଚିତ୍ତେ ଚିନ୍ତି ମଙ୍ଗଳ,
ଶୁଣ ହେ ବାନର ବୀର   ଆଶ୍ରୟ ନେଇ ଯାହାର
କ୍ଳେଶ ଦେଇ ଆସୁଛି ଋଷିଙ୍କୁ ସକଳ,
ସେହି ବଳ ପାଶୋରି ଯିବ,
ଅନେକ କାଳ ଶାପେ ମୋହିତ ରହିବ ।୨୧ ।
ଶକ୍ତି ସାମର୍ଥ୍ୟ ଭୁଲିବ   କପି ଜୀବନ ବଞ୍ଚିବ
ସାଧାରଣ ରୂପେ ଦୈବୀ ବର ରହିତ,
ବାସ୍ତବିକତା ତୁମର   ଗୁପ୍ତେ ଥିବ ନିରନ୍ତର
ଶାପ ପ୍ରଭାବ ହୋଇଯିବ ତିରୋହିତ,
ବଳ ବିକ୍ରମ ଯଦି କେହି,
ତୁମ୍ଭ ସମ୍ମୁଖେ ମୁକ୍ତକଣ୍ଠେ ଦେବ କହି ।୨୨ ।
ଶାପ ପ୍ରଭାବେ ଋଷିଙ୍କ   ବିକ୍ରମ ହନୁମାନଙ୍କ
ତେଜ ଓଜ ତତକ୍ଷଣେ ହୋଇଲା ଊଣା,
ସୌମ୍ୟ ସ୍ୱଭାବିକ ରୂପ   ହୋଇଲା ତାଙ୍କ ସ୍ୱରୂପ
ସାଧାରଣ ବାନରରେ ହୋଇଲେ ଗଣା,
ଯେହ୍ନେ ଅନ୍ୟ କପି କୁମାର,
ଆଶ୍ରମେ ଶାନ୍ତିରେ ଭ୍ରମନ୍ତି କପିବର ।୨୩ ।
ଚାଲିଚଳନ ତାଙ୍କର   ଆଚରଣ ବ୍ୟବହାର
କ୍ଷଣକରେ ବଦଳି ହୋଇଲା ମାର୍ଜିତ,
ଋଷିଏ ହୋଇଲେ ଖୁସି   ଦେଖି ଅଞ୍ଜନାର ଶିଶି
ଆକର୍ଷଣୀୟ ଶାନ୍ତଶିଷ୍ଟ ଅଦଭୁତ,
ପ୍ରସନ୍ନ ହୋଇଲେ ସରବେ,
ମାତା ପିତା ଛାତି ଫୁଲି ଉଠିଲା ଗର୍ବେ ।୨୪ ।
ଅଷ୍ଟମ ଛାନ୍ଦ ବର୍ଣ୍ଣନ   ହୋଇଲା ଏଥେ ସଂପୂର୍ଣ୍ଣ
ହନୁମାନ ଶାପ କଥା ଅପୂର୍ବ ରସ,
ଶୁଣ ହେ ସର୍ବେ ବିଦୁଷ   ଘେନିବ ନ ବହି ରୋଷ
ଭକ୍ତି ରସର କଥା ଦୀନ ସୁରେଶ,
କରିବ କ୍ଷମା ଦୋଷାଦୋଷ,
ବର୍ଣ୍ଣେ ପ୍ରଭୁ ହୃଦେ ଯେହ୍ନେ କରେ ପ୍ରକାଶ ।୨୫ ।



# ନବମ ଛାନ୍ଦ

ରାଗ-ଚକ୍ରକେଳି

(ହନୁମାନଙ୍କୁ ଅଞ୍ଜନାଙ୍କ ବାଲ୍ୟଶିକ୍ଷା ପ୍ରଦାନ)

ଗଜାନନ ପଦ କରି ବନ୍ଦନ ।
କହୁଛି ହନୁମାନ କଥା ମାନ ।୧ ।
ଶୁଣ ସୁଜନେ ହୋଇ ତୋଷ ଚିତ୍ତ ।
ସୁଧାସମ ହନୁମାନ ଚରିତ ।୨ ।
କୁଞ୍ଜର କନ୍ୟାର ଗେହ୍ଲା କୁମର ।
ତପ ଆଚରଣ କରି କଠୋର ।୩ ।
ଗରଭେ ଧରି ପାଇଅଛି ଧନ ।
ସଦାଚାରୀଣୀ ସଦଗୁଣ ସଂପନ୍ନ ।୪ ।
ତପସ୍ୱିନୀ ରୂପ ଆଦର୍ଶ ମାତା ।
ପୁତ୍ର ତା ଭାଗବତ ତା'ର ଗୀତା ।୫ ।
ଶୟନ ସପନେ ଜାଗରଣରେ ।
ପୁତ୍ର କଥା ଅଞ୍ଜନା ସଦା ସ୍ମରେ ।୬ ।
ନଦେଖିଲେ କ୍ଷଣେ ହୁଏ ବାତୁଳୀ ।
ବାତ୍ସଲ୍ୟ ସେନେହ କେ ପାରେ କଳି ।୭ ।
ପୁତ୍ର ରୂପ ଭାବେ ଯେବେ ମନରେ ।
ଗାଭୀ ପହ୍ନାରୁ ଶିବ ଲିଙ୍ଗ ପରେ ।୮ ।
ଯେହ୍ନେ ସ୍ୱୟଂ ଅମୃତ ଥାଏ ଝରି ।
କେଶରୀ ସଙ୍ଗିନୀ କ୍ଷେତ୍ରେ ସେପରି ।୯ ।
କ୍ରୀଡ଼ା ସଙ୍ଗି ସଙ୍ଗେ ଥିଲେ ଦୂରରେ ।
ସମାନ୍ୟ ଶବ୍ଦରେ ଆସେ ଦୂଆରେ ।୧୦ ।
କାଳେ ମୋ ଧନ ଆସିଲା କି ଫେରି ।
କାଳେ କ୍ଷୁଧା ଜ୍ୱାଳେ ହେଲା କି ଘାରି ।୧୧ ।
ଧନକୁ ରୋଚକ ପଦାର୍ଥ ଯେତେ ।
ରଖିଥାଏ ବିଭିନ୍ନ ଦ୍ରବ୍ୟ କେତେ ।୧୨ ।
କଳାର ଟୋପା ଦିଅଇ କପାଳେ ।
ତୁଳସୀ ପତ୍ର ଖୋସେ କର୍ଣ୍ଣ ମୂଳେ ।୧୩ ।
କାଳେ ଦୃଷ୍ଟି ତାରେ ବାଧିବ କା'ର ।
ସୁକେଶୀ କେଶେ ଝାଡ଼େ ବାରବାର ।୧୪ ।

ବନ୍ଧୁ ସାଥି ମେଳେ ଆସିଲେ ଫେରି ।
ଜିହ୍ୱାରେ ଗୋ ଗୋବତ୍ସେ ଯେହ୍ନେ କରି ।୧୫ ।
ଅଞ୍ଜନା ବୋକ ଦିଏ ଦେହ ସାରା ।
ପୁତ୍ର ଦର୍ଶନେ ମନେ ହୋଇ ତ୍ୱରା ।୧୬ ।
ହନୁମାନ ଭୂମିରେ ଗଲେ ପଡ଼ି ।
ଅଞ୍ଜନା ପାଦକୁ ତଳେ କଚାଡ଼ି ।୧୭ ।
ଭୂମିକୁ ଦିଏ ଦଣ୍ଡ ମିଥ୍ୟା କ୍ରୋଧେ ।
ହନୁମାନ ଖୁସିରେ ଡିଏଁ ଉର୍ଦ୍ଧ୍ୱେ ।୧୮ ।
ଆନନ୍ଦ ଅତି ମାତାଙ୍କର ମନ ।
ପୁତ୍ରର ଖୁସିରେ ସିଏ ପ୍ରସନ୍ନ ।୧୯ ।
ପୁତ୍ର ଠାରେ ବାଲ୍ୟାବସ୍ଥା ନିଜର ।
ମାତା ଦେଖି ମନେ ଖୁସି ଅପାର ।୨୦ ।
ମାତାର ପଣତ ଛାଇ ସମାନ ।
ଆଶ୍ରୟ ମାତାର କୋଳ ଯେସନ ।୨୧ ।
ମାତା ସମାନ ସୁରକ୍ଷାର ଘେର ।
ବିରଳ ଅଟଇ ଏ ସଂସାରର ।୨୨ ।
ଜୀବନ ଦାତା ମାତା ସମ ନାହିଁ ।
ଅଞ୍ଜନା ସେନେହ ଦେଇ ପାଳଇ ।୨୩ ।
ମାତା ଜଗତରେ ସାତ ପ୍ରକାର ।
ସ୍ୱର୍ଗଠାରୁ ସର୍ବେ ଓଜନଦାର ।୨୪ ।
ଜନ୍ମଦାତ୍ରୀ ମାତା ଗୁରୁଙ୍କ ପତ୍ନୀ ।
ରାଜାଙ୍କର ପତ୍ନୀ ପୁଣି ବ୍ରାହ୍ମଣୀ ।୨୫ ।
ଧେନୁ ଧାତ୍ରୀ ସହ ମାତା ଧରିତ୍ରୀ ।
ସର୍ବେ ମାତା ପୁତ୍ର ମଙ୍ଗଳ କର୍ତ୍ତ୍ରୀ ।୨୬ ।
ମାତାର ଦୟାରେ ହୁଏ ପ୍ରାପତି ।
ଆୟୁ ଯଶ ସ୍ୱର୍ଗ ସୁଖ କୀରତି ।୨୭ ।
ବଳ ଜୀବନ ସାଥି ପଶୁ ପୁଣ୍ୟ ।
ମିଳଇ ଆତ୍ମଜକୁ ଧନ୍ୟଧାନ୍ୟ ।୨୮ ।
ମିତ୍ର ମାତା ପିତା କରନ୍ତି ହିତ ।
ଯାହା ଚିନ୍ତନ୍ତି ନୁହଁଇ ଅହିତ ।୨୯ ।
ଜନ୍ମୁ କେ ଜନ୍ମେ ନା ପଣ୍ଡିତ ହୋଇ ।

ପିତା ମାତା ପ୍ରଚେଷ୍ଟାରେ ହୁଅଇ ।୩୦ ।
ପ୍ରଥମ ଗୁରୁ ପୁତ୍ର ପାଇଁ ମାତା ।
ଛାୟା ବିନା ପୁତ୍ର ଜୀବନ ପିତା ।୩୧ ।
ପୁତ୍ର ସିନା ହୋଇ ପାରେ କୃତଘ୍ନ ।
ସର୍ବଦା ପବିତ୍ର ମାତାର ମନ ।୩୨ ।
ଶରୀର ଅପବିତ୍ର ହୋଇ ପାରେ ।
ମାତା ଅପବିତ୍ର ହୋଇ ନ ପାରେ ।୩୩ ।
ସର୍ବଦା ଚିନ୍ତେ ସେ ପୁତ୍ର ମଙ୍ଗଳ ।
ତା ବିନା ହୁଏ ସର୍ବ ଅମଙ୍ଗଳ ।୩୪ ।
ଶରୀର ମନ ଓ ବୁଦ୍ଧି ବିବେକ ।
ଦୃଢ଼ କରି ଗଢ଼େ ସେ ଏକ ଏକ ।୩୫ ।
ମାଆରେ ପୂର୍ଣ୍ଣତା ନାରୀ ଜୀବନ ।
ପୁତ୍ର ଅଟେ ତା ପୂର୍ଣ୍ଣତା ସାଧନ ।୩୬ ।
ସୁଧା ସମ ଅଟେ ମାଆ ନାମଟି ।
ମିଳେ ତାକୁ ଯିଏ ପାରେ ଆଉଟି ।୩୭ ।
ବୃଦ୍ଧାକାଳେ ଯେ କରେ ହତାଦର ।
ତା ପରି ନାହିଁ କେହି ଦୂରାଚାର ।୩୮ ।
ଏମିତି ବ୍ୟକ୍ତି କେ ଅଛି ସଂସାରେ ।
ମାତା ଋଣ ଜୀବନେ ସୁଝି ପାରେ ।୩୯ ।
ଦଶମାସ ଦଶଦିନ ଗରଭେ ।
କଷ୍ଟ ସହେ ସୁଖେ ଅତି ଗରବେ ।୪୦ ।
ଶିଶୁର ସର୍ବ ହରକତ ସହେ ।
ଦୁଃଖକୁ ସୁଖ ମଣଇ ସେନେହେ ।୪୧ ।
ସ୍ତ୍ରୀ ଆସିଲେ ପାଶେ ଭୁଲେ ଯେ ନର ।
ନର୍କରେ ବି ସ୍ଥାନ ନାହିଁ ତାହାର ।୪୨ ।
ମାତା ଅଞ୍ଜନା ନିଜର ପୁତ୍ରର ।
ନିର୍ମାଣିବାକୁ ଜୀବନ ସୁନ୍ଦର ।୪୩ ।
ତତ୍ପର ସଜାଗ ଓ ସାବଧାନ ।
ସଦା ନିୟୋଜି ଥାନ୍ତି ତନୁ ମନ ।୪୪ ।
ପୂଜନୋପରାନ୍ତେ ପୁଣି ରାତ୍ରିରେ ।
ଶୋଇବା ପୂର୍ବରୁ ଯାକି ଛାତିରେ ।୪୫ ।

ପୁରାଣ କଥା ଶୁଣାନ୍ତି ସଧିରେ ।
ମଜ୍ଜାନ୍ତି ପୁତ୍ର ମନକୁ ସେଥିରେ ।୪୬ ।
ମହାପୁରୁଷ ମାନଙ୍କ ଚରିତ୍ର ।
ତାଙ୍କ ପ୍ରତି କରନ୍ତି ଆକର୍ଷିତ ।୪୭ ।
କଥା କହି ପୁଣି କରନ୍ତି ପ୍ରଶ୍ନ ।
ଉତ୍ତର ଦିଅନ୍ତି ଶ୍ରୀହନୁମାନ ।୪୮ ।
ରୁଦ୍ର ଅବତାର କି ଗୋପ୍ୟ ତାରେ ।
ମନ କିନ୍ତୁ ମାତା କାହାଣୀ ଠାରେ ।୪୯ ।
ଜାଣି ଶୁଣି ଶୁଣିବା ପାଇଁ ପୁଣି ।
ବେଳେବେଳେ ବୋଲନ୍ତି ନାହିଁ ଜାଣି ।୫୦ ।
ମାତା କୁହନ୍ତି କଥା ପୁନର୍ବାର ।
କଣ୍ଠସ୍ଥ କରାନ୍ତି ପୁତ୍ରେ ନିଜର ।୫୧ ।
କରୁଣା ବରୁଣାଳୟାବତାର ।
ସମସ୍ତ କଥା ହନୁମାନଙ୍କର ।୫୨ ।
ଜିହ୍ୱାଗ୍ରେ ହୃଦୟେ ଦୃଢ଼େ ଭବରେ ।
ଆସିନ ହୋଇଲେ ସ୍ଥାୟୀ ଭାବରେ ।୫୩ ।
ସମ ବୟସ୍କ ବାନର କିଶୋରେ ।
ଶୁଣାନ୍ତି ପ୍ରେମେ ଉତ୍ସାହେ ଭକ୍ତିରେ ।୫୪ ।
ତଲ୍ଲୀନ ହୋଇ କରି ଭାବାବେଶେ ।
ଭୁଲି ଯାନ୍ତି ଦେହ ଜ୍ଞାନ ବିଶେଷେ ।୫୫ ।
ପ୍ରାତେ ଶଯ୍ୟା ତ୍ୟାଗ ଶୀଘ୍ର କରିଣ ।
କରନ୍ତି ମାତା ଚରଣ ବନ୍ଦନ ।୫୬ ।
ନମୋ ମାତେଶ୍ୱରୀ ମୋ ଜନ୍ମଦାତ୍ରୀ ।
କେତେ କ୍ଲେଶ ଲଭିଛୁ ସୁଖେ ଅତି ।୫୭ ।
ଗର୍ଭରେ ଧରି ହରାଇଛୁ ସ୍ୱାଦ ।
କଷ୍ଟ ମଧ୍ୟେ ସାଉଣ୍ଟିଛୁ ଆନନ୍ଦ ।୫୮ ।
ଦଶମାସ ଦଶଦିନ କୁକ୍ଷୀରେ ।
କେତେ ବେଦନା ଦେଇଛି ମୁଁ ତୋରେ ।୫୯ ।
ବର୍ଷେ ମୋର ମଳ ମୁତ୍ରେ ଶୋଇଛୁ ।
କ୍ରୋଧ ନ କରିଣ କୃପା କରିଛୁ ।୬୦ ।
ଏ ପରି ପୁତ୍ର କେ ଅଛି ସଂସାରେ ।

ମାତାର ଋଣ ପରିଶୋଧି ପାରେ ।୬୧ ।
ପ୍ରଣମ୍ୟ ସଂସାରେ ଅଛନ୍ତି ଯେତେ ।
ସର୍ବାଗ୍ରେ ପ୍ରଣମ୍ୟ ତୁହି ମୋ ମାତେ ।୬୨ ।
ତୋ ବିନା ଶବ୍ଦ ଉଚ୍ଚାରେ ଅକ୍ଷମ ।
ସଂସାର ବସ୍ତୁ ଚିହ୍ନଟେ ସକ୍ଷମ ।୬୩ ।
ଶିଖାଇଛୁ ତୁ ଉତ୍ତମ ଚରିତ୍ର ।
ନମୁଛି ଚରଣେ ତୋହର ମାତ ।୬୪ ।
ଉପକାରୀ କେ ଅଟେ କେ ଉଚିତ ।
ଅପକାରୀ କେ କାର୍ଯ୍ୟ ଅନୁଚିତ ।୬୫ ।
କିଏ ଖାଦ୍ୟ କିଏ ଅଟେ ଅଖାଦ୍ୟ ।
କରୁଣାର୍ଦ୍ର କିଏ ନିଷ୍ଠୁର କାର୍ଯ୍ୟ ।୬୬ ।
କେଉଁ କାର୍ଯ୍ୟ ଭଲ କିଏ ବା ମନ୍ଦ ।
ଶିଖାଇଛୁ ମାତା ନ ରଖି ଛନ୍ଦ ।୬୭ ।
ସଂସାରେ ବ୍ୟକ୍ତି କେ ଅଛି ଏପରି ।
ମାତା ଗୁଣକୁ ଯେ ଯାଏ ପାଶୋରି ।୬୮ ।
ଦେହ ଆତ୍ମ ଜ୍ଞାନ ସାଧନ ଯନ୍ତ୍ର ।
ଯନ୍ତ୍ରୀ ରୂପେ ଗଢ଼ି କରି ସ୍ୱତନ୍ତ୍ର ।୬୯ ।
ସୁରକ୍ଷା ଦେଇଛୁ ବ୍ୟାଧି ଦାଉରୁ ।
ଜନ୍ତୁ ସରୀସୃପ ଅଇରୀ ଠାରୁ ।୭୦ ।
ଖୁଆଇ ଗଢ଼ିଛୁ ଶରୀର ମୋର ।
ପ୍ରଥମ ଗୁରୁ ତୋତେ ନମସ୍କାର ।୭୧ ।
ହନୁମାନ ସ୍ତୁତି ଶୁଣି ଅଞ୍ଜନା ।
ଆତ୍ମହରା ହୃଦୟ ହୃଷ୍ଟମନା ।୭୨ ।
ରାମାବତାର କଥା ଯେତେବେଳେ ।
ହନୁମାନେ କହେ ବସାଇ କୋଳେ ।୭୩ ।
ମାତା ମୁକେ ଚାହିଁ ସାବଧାନରେ ।
ବସି ଶୁଣନ୍ତି ଏକାଗ୍ରଚିତ୍ତରେ ।୭୪ ।
ନିଦ୍ରାଦେବୀ ଆସନ୍ତି ନାହିଁ ପାଶେ ।
ହୃଦୟେ ଅତି ଆନନ୍ଦ ପ୍ରକାଶେ ।୭୫ ।
କ୍ଲାନ୍ତିରେ ମାତା ନେତ୍ରେ ତନ୍ଦ୍ରାଳୁତା ।
ଭାଙ୍ଗେ ହନୁମାନ କରି ପ୍ରଚେଷ୍ଟା ।୭୬ ।

ହଠ କରି ଶୁଣିବାକୁ କହଇ ।
ମାତା କହିଲେ ଖୁସି ପ୍ରକଟଇ ।୭୭ ।
କଥା ଶୁଣିଲେ ଯେତେ ରାମଙ୍କର ।
ତୃପ୍ତ ହୁଏନା ଅଞ୍ଜନା କୁମର ।୭୮ ।
ବାରମ୍ବାର ରାମ କଥା ଶ୍ରବଣେ ।
ଅନୁରୋଧ କରି ମାତାଙ୍କୁ ଭଣେ ।୭୯ ।
ଉଲ୍ଲାସ ପୂର୍ବକ କଥା ମାତାର ।
ଶ୍ରବଣେ ହୁଅଇ ଭାବ ବିଭୋର ।୮୦ ।
ନେତ୍ରରୁ ବହଇ ଆନନ୍ଦ ବାରି ।
ଅଙ୍ଗ ସ୍ଫୁରଣ ହୁଅଇ ତାହାରି ।୮୧ ।
ମନେ ଭାବଇ କେଶରୀ ନନ୍ଦନ ।
ମୁହିଁ ହେବି ହନୁମାନ ସମାନ ।୮୨ ।
କଥା ମଧ୍ୟେ ମାତା ଦିଏ ପଚାରି ।
ହନୁମାନ ପ୍ରାୟ ପୁତ୍ର ମୋହରି ।୮୩ ।
ହେବୁ କି ମୋହର ରଙ୍କୁଣି ଧନ ।
ଗରଭେ ଧରି ମୋ ଜୀବନ ଧନ୍ୟ ।୮୪ ।
ହନୁମାନ ମୁଖୁ ଆସ୍ତି ବଚନ ।
ମାତା ମନ ଶୁଣି ଅତି ପ୍ରସନ୍ନ ।୮୫ ।
ସଂପ୍ରତି ଲଙ୍କାରେ ରାଜା ରାବଣ ।
ଦଶରଥ କୋଳେ ରାମ ଜନମ ।୮୬ ।
ଶୀଘ୍ର ଧନ ମୋର ବଡ଼ ହୋଇ ଯା ।
ଶ୍ରୀରାମଙ୍କ ସହାୟତା କର ଯା ।୮୭ ।
ବଳବାନ ଓ ପରାକ୍ରମୀ ହୋଇ ।
ରାମକାର୍ଯ୍ୟ ତୁହି କରିବୁ ଯାଇ ।୮୮ ।
ମାତା ମୁହିଁ ନୁହଁଇ ଶକ୍ତିହୀନ ।
କହି ଶଯ୍ୟା କରେ ଲମ୍ଫ ଦେଇଣ ।୮୯ ।
ଭୁଜଦଣ୍ଡ ଦେଖାଅଇ ମାତାକୁ ।
ଶକ୍ତି ପରାକ୍ରମ ପ୍ରମାଣିବାକୁ ।୯୦ ।
ମାତା ପୁତ୍ରର ବାଳଲୀଳା ଦେଖି ।
ହୃଦେ ଆଉଜାଇ ହୁଅଇ ସୁଖି ।୯୧ ।
ଶୁଣାଇ ପ୍ରଭୁଙ୍କ ସ୍ତୁତି ସୁସ୍ୱରେ ।

ଶୁଣାନ୍ତି ହନୁମାନେ ସ୍ନେହଭରେ ।୯୨ ।
ସହଜ ଅନୁରାଗେ ହନୁମାନ ।
ରାମ କଥା କରି କରି ଶ୍ରବଣ ।୯୩ ।
ଭଗବାନଙ୍କ ପୟରରେ ମନ ।
ଉତ୍ତରୋତ୍ତର ବଢ଼େ ହୋଇ ଘନ ।୯୪ ।
ତାଙ୍କର ଅଧିକତର ସମୟ ।
ଶ୍ରୀରାମଙ୍କ ଧ୍ୟାନରେ ହେଲା କ୍ଷୟ ।୯୫।
କେବେ ଅରଣ୍ୟେ କେବେ କନ୍ଦରରେ ।
ଧ୍ୟାନେ ବସନ୍ତି କେବେ ନଦୀ ତୀରେ ।୯୬ ।
ମନ ମଧ୍ୟେ ରାମ ରାମ ହିଁ ରାମ ।
ନେତ୍ରୁ ନୀର ଝରେ ବଢ଼ନ୍ତେ ପ୍ରେମ ।୯୭ ।
ବିଭୁ ପ୍ରେମେ ହୋଇ ବାତୁଳ ପ୍ରାୟ ।
କ୍ଷୁଧା ତୃଷାରେ ନ ରହିଲା ଲୟ ।୯୮ ।
ଗୃହେ ଫେରିବା ଜ୍ଞାନ ନ ରହଇ ।
ମାତା ମନ ଛନ ଛନ ହୁଅଇ ।୯୯ ।
ମଧ୍ୟାହ୍ନ ସମୟେ ସାୟଂକାଳରେ ।
ସ୍ୱୟଂ ପ୍ରାଣଧନ ଖୋଜି ବାହାରେ ।୧୦୦ ।
ପର୍ବତ ନଦୀ ତଟେ ଖୋଜେ ବଣେ ।
ଖୋଜଇ ଝରଣା ପୁଣି ଅରଣ୍ୟେ ।୧୦୧ ।
ଆଣି ଗୃହେ ପୁତ୍ରେ ଖାଦ୍ୟ ଖୁଆନ୍ତି ।
ତେବେ ହନୁମାନ ଭୋଜନ ପାନ୍ତି ।୧୦୨ ।
ଶରୀର ଜ୍ଞାନ ଧିରେ ହେଲା କମ ।
ମୁଖେ ସଦା ରାମ ରାମ ହିଁ ରାମ ।୧୦୩ ।
ସୁରେଶ ଭଜି ହନୁମାନ ପଦ ।
ସଂପୂର୍ଣ୍ଣ କରଇ ନବମ ଛାନ୍ଦ ।୧୦୪ ।
ତୁମ୍ଭ ଦାସର ଦାସର ମୁଁ ଦାସ ।
ବିଦୁଷେ କ୍ଷମିବ ମୋ ଦୋଷାଦୋଷ ।୧୦୫ ।



# ଦଶମ ଛାନ୍ଦ

ରାଗ-ଆଷାଢ଼ଶୁକ୍ଳ ବାଣୀ

(ହନୁମାନଙ୍କୁ ଗୁରୁଗୃହକୁ ପ୍ରେରଣ)

ଅଗ୍ରପୂଜ୍ୟଙ୍କର ପାଦେ ବନ୍ଦଇ । ଦଶମ ଛାନ୍ଦକୁ ଦେବେ ବତାଇ ।
ରୁଦ୍ରାବତାର ପବନ ନନ୍ଦନ । ଗୁରୁ ଗୃହେ କେହ୍ନେ କଲେ ଗମନ ।
ବାରତା ତହିଁର,
ଶୁଣି ସୁଜନେ ହୋଇବେ ବିଭୋର ।୧ ।

ପୁତ୍ରର ମାନସିକ ସ୍ଥିତି ଦେଖି । କୁଞ୍ଜର ଆତ୍ମଜା ହୁଅଇ ଦୁଃଖି ।
ହନୁମାନ ହାବଭାବ ଦର୍ଶନେ । କେଶରୀ ଚିନ୍ତିତ ଅତ୍ୟନ୍ତ ମନେ ।
ବିଦ୍ୟା ଅଧ୍ୟୟନ,
ବୟସ ହୋଇଲା ନ ଦିଏ ମନ ।୨ ।

ହୃଦେ ଚିନ୍ତା କରନ୍ତି ମାତା ପିତା । ଅଛନ୍ତି କେ ଉତ୍ତମ ବିଦ୍ୟାଦାତା ।
ପାଶେ ତାଙ୍କ କଲେ ବିଦ୍ୟାଧ୍ୟୟନ । ଚାଲିଚଳନରେ ପରିବର୍ତ୍ତନ ।
ଅବଶ୍ୟ ଘଟିବ,
ବିଦ୍ୟା ହୀନେ ଜନ୍ମ ବ୍ୟର୍ଥ ନ ହେବ ।୩ ।

ପୁତ୍ର ବୁଦ୍ଧିବିଦ୍ୟା ତାହାଙ୍କୁ ଜ୍ଞାତ । ଅଟଇ ସ୍ୱୟଂ ସେ ରୁଦ୍ର ଦୈବତ ।
ଦେବତା ଦତ୍ତ ବରେ ବଳିୟାନ । ବଳ ପୌରୁଷାଦିରେ ତେଜିୟାନ ।
ଜ୍ଞାନ ପ୍ରତିମୂର୍ତ୍ତି,
ସଚରାଚର ସଂସାରର ପତି ।୪ ।

ମହାପୁରୁଷେ ଯାହା ଆଚରିବେ । ଇତର ଜନେ ତାହା ହିଁ କରିବେ ।
ମହାଜନେ ସ୍ୱତନ୍ତ୍ର ଆଚରଣ । ଏଣୁ କରନ୍ତି ନାହିଁ ପ୍ରଦର୍ଶନ ।
ସମାଜ ବ୍ୟବସ୍ଥା,
ଅବ୍ୟବସ୍ଥିତ ହୋଇବ ଅନ୍ୟଥା ।୫ ।

ସବୁ ନିୟମ ମାନି ସମାଜର । ସମାଜର କରିଥାନ୍ତି ସଂସ୍କାର ।
ସାଧାରଣ ବ୍ୟକ୍ତି ପ୍ରାୟେକ ରହି । ସାଧାରଣ ଜୀବନକୁ ନିର୍ବାହୀ ।
ହୁନ୍ତି ଆତଯାତ,
ମହାତ୍ମା ମାନଙ୍କ ଏ ବିଶେଷତ୍ୱ ।୬ ।

ଶାସ୍ତ୍ର ମର୍ଯ୍ୟାଦାକୁ ଦେଇ ସମ୍ମାନ । ନିୟମ ଅନୁକୁଳ ପ୍ରଦର୍ଶନ ।
କାର୍ଯ୍ୟେ ବ୍ୟବହାରରେ କରିଥାନ୍ତି । ପ୍ରଭୁ ଯେବେ ଅବତାର ନିଅନ୍ତି ।
ବିଦ୍ୟା ପ୍ରାପ୍ତି ପାଇଁ,
ଏଣୁ ଗୁରୁ ଗୃହେ ଥାଆନ୍ତି ଯାଇ ।୭ ।

ଗୁରୁ ଗୃହରେ ସେବା ସର୍ବବିଧ । କରିଣ ଲଭନ୍ତି ବିଦ୍ୟା ବିବିଧ ।
ସେବାରେ ଗୁରୁଙ୍କୁ କରି ସନ୍ତୁଷ୍ଟ । ମିଳଇ ଯେଉଁ ବିଦ୍ୟା କରି କଷ୍ଟ ।
ରଖି ଶ୍ରଦ୍ଧା ଭକ୍ତି,
ସେହି ବିଦ୍ୟା ହୁଅଇ ଫଳବତୀ ।୮ ।
ଯେଉଁ ପରି ଦୁଗ୍ଧହୀନା ଗୋମାତା । ସୁମନ ବିହୀନେ ଲାଗଇ ଲତା ।
ଶୀଳହୀନା ଭାର୍ଯ୍ୟା ଯେହ୍ନେ ଲାଗଇ । କମଳ ହୀନ ସର ନ ଶୋଭଇ ।
ନଗ୍ର ଜନ ବିନା,
ଲାଗେ ସେପରି ଶିଷ୍ୟ ଗୁରୁ ବିନା ।୯ ।
ଗୁରୁଙ୍କ ନିମନ୍ତେ ନାହିଁ ଉପମା । ପରଶମଣି ସେ ନୁହଁନ୍ତି ଜମା ।
ପରଶମଣି ସ୍ପର୍ଶେ ଲୁହା ସୁନା । ନିଜ ପରି କରି ଗଢ଼ି ପାରେନା ।
ଗୁରୁ ତାହା କରେ,
ଶିଷ୍ୟକୁ ନିଜ ପରି ଗଢ଼ି ପାରେ ।୧୦ ।
ଗୁ'କାରଟି ଅନ୍ଧକାର ଅଟଇ । ରୁ'କାରଟି ଆଲୋକକୁ ବୁଝାଇ ।
ଅନ୍ଧାରରୁ ଆଲୋକକୁ ଯେ ନିଏ । ସଂସାରେ ଯୋଗ୍ୟ ଗୁରୁ ସେ ବୋଲାଏ ।
କି ଲାଭ ଯୁକ୍ତିରେ,
ଗୁରୁ ବିନା ଶାନ୍ତି ରହଇ ଦୂରେ ।୧୧ ।
ଅଜ୍ଞାନ ଅନ୍ଧକାର ଦୂରିଭୂତ । ହୁଅଇ ଜ୍ଞାନେ ହେଲେ ଆଲୋକିତ ।
ସମର୍ଥ ଗୁରୁ ସେ ବଡ଼ କୃପାଳୁ । ଉଦ୍ଧାର କରନ୍ତି ଭବ କୂପରୁ ।
ଈଶ୍ୱର ପ୍ରାପ୍ତିର,
ପଥକ ସେ ଈଶ୍ୱରୁ ଶ୍ରେଷ୍ଠତର ।୧୨ ।
ଅଖଣ୍ଡ ବ୍ରହ୍ମାଣ୍ଡେ ଯେ ସର୍ବବ୍ୟାପୀ । ଦେଖାଏ ଯିଏ ସେ ବ୍ରହ୍ମ ସ୍ୱରୂପୀ ।
ସଦ୍ଗୁରୁ ସେ ଭାଗ୍ୟେ ହୁନ୍ତି ପ୍ରାପତ । ଦୟା କଲେ ସର୍ବ ହୁଅଇ ପ୍ରାପ୍ତ ।
ଗୁରୁ ପ୍ରସାଦରୁ,
ଅପ୍ରାପ୍ତେ ପ୍ରାପ୍ତ ବା ହେବ କାହିଁରୁ ।୧୩ ।
ଜ୍ଞାନୀ ଏ ତେଣୁ ଗୁରୁ ଗୃହେ ଯାଇ । ମନବୁଦ୍ଧି ଗୁରୁ ପାଦେ ଲଗାଇ ।
ସେବନ୍ତି ଶ୍ରଦ୍ଧା ବିଶ୍ୱାସ ସହିତ । ଦୟାରେ ବିଦ୍ୟା କରନ୍ତି ଆୟତ ।
ଗୁରୁ କୃପା ବିନା,
ସଂସାରେ ବଡ଼ କେ ହୋଇ ପାରେନା ।୧୪ ।
ଏମନ୍ତ ଚିନ୍ତି ଅଞ୍ଜନା କେଶରୀ । ମନ ମଧ୍ୟେ ଦୃଢ଼ ନିଶ୍ଚୟ କରି ।
ଗୁରୁ ଗୃହେ ଶିକ୍ଷା ପ୍ରାପ୍ତି ନିମନ୍ତେ । ପଠାଇବେ ବୋଲିଣ ହନୁମନ୍ତେ ।
ଉଲ୍ଲାସ ପୂର୍ବକ,

ଗୁରୁ ତୁଲେ ପଠାଇଲେ ସେବକ ।୧୫ ।
ରାଜଗୁରୁ ପରାମର୍ଶେ କେଶରୀ । ମାରୁତିର ଉପନୟନ ସାରି ।
ଗୁରୁ ଗୃହେ କରିବାକୁ ଗମନ । ମାତା ପିତା ଆଜ୍ଞା କଲେ ପ୍ରଦାନ ।
ପୁଚ୍ଛେ ହନୁମାନ,
କାହା ପାଶେ ଯିବି କୁହ ବହନ ।୧୬ ।
ସର୍ବଶାସ୍ତ୍ର ମର୍ମଜ୍ଞ ଦିନକର । ସାକ୍ଷୀ ସେ ଅଟନ୍ତି ତିନିଲୋକର ।
ବର ରୂପେ କରିଥିଲେ ପ୍ରଦାନ । ଉଚିତ ସମୟରେ ବିଦ୍ୟାଦାନ ।
ତୁମ୍ଭଙ୍କୁ କରିବେ,
ଅଜ୍ଞାନ ଅନ୍ଧାର ଦୂରେଇ ଦେବେ ।୧୭ ।
ସଂପ୍ରତି ଭାସ୍କର ପାଶରେ ଯାଅ । ଚରଣେ ପ୍ରଣାମି ଶରଣ ନିଅ ।
ଶ୍ରଦ୍ଧା ଭକ୍ତିରେ ସେବିବ ପୟରେ । ମନ ଚଇତନ ଦେବ ବିଦ୍ୟାରେ ।
ହୋଇବ ସଫଳ,
ଗୁରୁ କୃପାରୁ ଲଭିବ ସକଳ ।୧୮ ।
ମୁଞ୍ଜିର ପଇତା କାଛା କୌପୀନ । ପଲାଶ ଦଣ୍ଡ କରିଲେ ଧାରଣ ।
ମୃଗଚର୍ମ ପିନ୍ଧିଣ ହନୁମାନ୍ । ଦିଶୁଛନ୍ତି ଅତ୍ୟନ୍ତ ଶୋଭାବାନ ।
ଚାହିଁଲେ ମିହିରେ,
ବୁଡ଼ିଗଲେ ପୁଣି ଗାଢ଼ ଚିନ୍ତାରେ ।୧୯ ।
ହନୁମାନଙ୍କ ମୁଖମୁଦ୍ରା ଦେଖି । ଅଞ୍ଜନା ନେଲେ ତା ଭାବ ପରଖି ।
ବୋଲନ୍ତି ସ୍ନେହରେ ଆଉଁସି ଶିର । ଭାବୁଛୁ କେମନ୍ତେ ଯିବୁ ଏତେ ଦୂର ।
ଶକ୍ତି ତୋ ଅସୀମ,
ଏ କାର୍ଯ୍ୟ ତୋ ନିମନ୍ତେ କ୍ରୀଡ଼ାସମ ।୨୦ ।
ଶିଶୁ ଅବସ୍ଥାରେ ଥିଲୁ ତୁ ଯେବେ । ଅରୁଣ ଫଳ ମନେ କରି ସେବେ ।
ଏକା ଲମ୍ଫରେ ତପନ ରଥରେ । ପହଞ୍ଚି କ୍ରୀଡ଼ା କଲୁ ତା ସାଥିରେ ।
ଡରରେ ତୋହର,
ରାହୁ ହୃଦୟ ହେଲା ଥରହର ।୨୧ ।
ରଙ୍କୁଣୀ ଧନ ଏମନ୍ତେ କାର୍ଯ୍ୟ ନାହିଁ । ଯାହା କରଣେ ତୁ ସମର୍ଥ ନୋହି ।
ତୋ ବଳ ବିକ୍ରମ ସ୍ମରଣ କରି । ଅର୍କ ପାଶେ ଶୀଘ୍ର ଯାଅ ବାହାରି ।
ଲାଭ କରି ଜ୍ଞାନ,
କରିବୁ ସ୍ୱୟଂ ସ୍ୱୟଂର କଲ୍ୟାଣ ।୨୨ ।
ବଳ ସ୍ମରଣେ ସଂଚରିଲା ବଳ । ମାତା ପିତା ପାଦ ଛୁଇଁ ତତ୍କାଳ ।
ମହାକାଶ ଦିଗରେ ଲମ୍ଫଦେଇ । ପହଁଚିଲା ସୂର୍ଯ୍ୟ ମଣ୍ଡଳେ ଯାଇ ।

ସବିତା ସାରଥି,
ମିଳିଲେ ଅଞ୍ଜନା କୁମରେ ପଥି ।୨୩ ।
କେଶରୀ ନନ୍ଦନ ସନ୍ତୋଷ ମନେ । ତା'ରେ ପିତା ପରିଚୟ ବଖାଣେ ।
ଅରୁଣ ଖୁସି ପରିଚିତି ପାଇ । ଅଂଶୁମାଳୀଙ୍କୁ ସେ ଦେଲେ ଦେଖାଇ ।
ପବନ ନନ୍ଦନ,
ଶୀଘ୍ର କଲେ ରବି ପାଦ ବନ୍ଦନ ।୨୪ ।
ବିନମ୍ର ସରଳତା ପ୍ରତିମୂର୍ତ୍ତି । ନିଛଳ ହୃଦୟ ଶାନ୍ତ ମୂରତି ।
ବଦ୍ଧାଞ୍ଜଳୀ ହସ୍ତେ ଦଣ୍ଡାୟମାନ । ରୁଦ୍ରଙ୍କୁ କରି ଚଣ୍ଡାଂଶୁ ଦର୍ଶନ ।
ପୁଛିଲେ ଏସନ,
କେଉଁ କାରଣେ କୁହ ଆଗମନ ।୨୫ ।
ବିନୟ ମୁଦ୍ରାରେ ନମ୍ର ଭାବରେ । ପ୍ରଭଞ୍ଜନ ପୁତ୍ର ବୋଲଇ ଧିରେ ।
ହେ ପ୍ରଭୁ ଦ୍ୟୁମଣି କୃପା ନିଧାନ । ଉପରାନ୍ତେ ମମ ଉପନୟନ ।
ଚରଣେ ତୁମ୍ଭର,
ପଠାଇ ଅଛନ୍ତି ମାତା ପିଅର ।୨୬ ।
ଗୁରୁ ଶ୍ରେଷ୍ଠ ତୁମ୍ଭେ ପ୍ରଭୁ ସପ୍ତାଶ୍ୱ । ତେଜେ ଉଭାସିତ କରୁଛ ବିଶ୍ୱ ।
ହୃଦ କନ୍ଦର ମୋର ଆଲୋକିତ । କରରେ କର ପ୍ରଭୁ ବିବସ୍ୱତ ।
ବିଦ୍ୟା କର ଦାନ,
ଜ୍ଞାନେ ଆଲୋକିତ ହେଉ ମୋ ମନ ।୨୭ ।
ଛାୟାପତି ବୋଲନ୍ତି ଶୁଣ ପୁତ୍ର । ଦେଖ ମୋର ସ୍ଥିତି କେଡ଼େ ବିଚିତ୍ର ।
ଅହର୍ନିଶ ରଥ ଉପରେ ବସି । ନଡେ ଦୌଡୁଅଛି ନାହିଁ ମୋ ଖୁସି ।
ସାରଥି ଅରୁଣ,
ନ ଜାଣେ ରଥ ବେଗ ନିୟନ୍ତ୍ରଣ ।୨୮ ।
କ୍ଷୁଧା ପିପାସା ସବୁ ତ୍ୟାଗ କରି । ଅବିଶ୍ରାନ୍ତ ରଥ ବାହେ ମୋହରି ।
ସୃଷ୍ଟି କର୍ତ୍ତାଙ୍କ ପାଶେ ଅଭିଯୋଗ । କରଣେ ନାହିଁ ମୋହର ସୁଯୋଗ ।
ବିଚିତ୍ର ବିଧାନ,
ରଥୁ ଅସମ୍ଭବ ଅବତରଣ ।୨୯ ।
ଆଦର୍ଶ ବାଳକ ତୁମ୍ଭରି ପରି । ଶିଷ୍ୟ ରୂପେ ପାଇବା ଭାଗ୍ୟ ମୋରି ।
କୁହ ବିଚାରିଣ କରିବି କିସ । ରୁଦ୍ରାବତାର ଅଞ୍ଜନାର ଶିଶ ।
ଅସମର୍ଥ ମୁହିଁ,
ଶିଷ୍ୟ ରୂପେ ତୁମ୍ଭଙ୍କୁ ନେବା ପାଇଁ ।୩୦ ।
ଜାଣି ପ୍ରସ୍ତାବକୁ ଟାଳିବା ଲକ୍ଷ୍ୟେ । ଶିଷ୍ୟର ସଂକଳ୍ପ ରବି ପରଖେ ।

ସମୀରାତ୍ମଜ କହଇ ବଚନ । ହେ ପ୍ରଭୁ ମୋର ନିବେଦନ ଘେନ ।
ବାଧା ଏହି ମାତ୍ର,
ଫେଡ଼ି କହୁଅଛି ତାହାର ସୂତ୍ର ।୩୧ ।
ସ୍ୟନ୍ଦନେ ତୀବ୍ର ବେଗରେ ଆପଣ । ଗତି କଲେ ବି ପଠନ ପାଠନ ।
ବାଧିତ ହେବ ନାହିଁ ନ ବାଧିବ । ସମବେଗେ ମୋର ବେଗ ବଢ଼ିବ ।
ମୋତେ ବିଦ୍ୟାଦାନ,
ସହର୍ଷେ କରନ୍ତୁ ରଥେ ବସିଣ ।୩୨ ।
ଅଶ୍ୱନୀପତିଙ୍କୁ କରିଣ ମୁଖ । ପଦ୍ମାସନେ ବସି ରଥ ସମ୍ମୁଖ ।
ଚରଣ ବନ୍ଦନ କରି ମାରୁତି । ହାତଯୋଡ଼ି କହେ କରି ପ୍ରଣତି ।
ଆହେ ତିମିରାରୀ,
ଅଜ୍ଞାନ ତିମିର ନାଶ ମୋହରି ।୩୩ ।
ରଥ ଚଳଇ ଶୂନେ ଅତି ବେଗେ । ମାରୁତି ସ୍ୱାଭାବିକ ରୂପେ ଆଗେ ।
ରବି ଜାଣନ୍ତି ହନୁମାନ ଶକ୍ତି । କାର୍ଯ୍ୟେ ତା ହୋଇଲେ ପ୍ରସନ୍ନ ଅତି ।
ଧନ୍ୟ ତୋର ବୁଦ୍ଧି,
ବୋଲନ୍ତି ପାଇବୁ ନିଶ୍ଚେ ପ୍ରସିଦ୍ଧି ।୩୪ ।
ନିଜର ଗୁରୁଙ୍କୁ କରି ପ୍ରଣତି । ଅଧ୍ୟାପନା କରିଲେ ଛାୟାପତି ।
ବେଦ ବେଦାଙ୍ଗ ଦର୍ଶନ ପୁରାଣ । ଉପନିଷଦ ଆଦି ବିଦ୍ୟାମାନ ।
ଯେତେ ଶୀଘ୍ରତାରେ,
ହନୁମାନ ସାଇତନ୍ତି ସ୍ମୃତିରେ ।୩୫ ।
ପ୍ରଶ୍ନ ସଂଶୟ ଅଥବା ଉତ୍ତର । ସମାଧାନାଦି ନାହିଁ ଦରକାର ।
ଆଦିତ୍ୟ ନାରାୟଣ ହନୁମାନେ । ସବୁ ବିଦ୍ୟା ଦେଲେ କେତୋଟି ଦିନେ ।
ହେଲେ ପାରଙ୍ଗତ,
ବିଦ୍ୟାଏ ହନୁମାନ ହୃଦଗତ ।୩୬ ।
ସମୀର ନନ୍ଦନ ଶିବାବତାର । ସମସ୍ତ ଜ୍ଞାନର ସେ ଗନ୍ତାଘର ।
ଜ୍ଞାନ ବିଦ୍ୟାର ସେ ତେଜ ସ୍ୱରୂପ । ନିର୍ଦ୍ଦେଶେ ତାଙ୍କର ନିଅନ୍ତି ରୂପ ।
ବିଧି ରକ୍ଷା ପାଇଁ,
ଗୁରୁ ଗୃହେ ମାତ୍ର ଆସି ଅଛଇଁ ।୩୭ ।
ବିଦ୍ୟାଦାନ ସରିବା ଉପରାନ୍ତେ । ହନୁମାନ ଗୁରୁଦେବେ ଏକାନ୍ତେ ।
ସାଷ୍ଟାଙ୍ଗ ଦଣ୍ଡ ପ୍ରଣାମ କରିଣ । ହସ୍ତ ଯୋଡ଼ି କରିଲେ ନିବେଦନ ।
ଗୁରୁ ଦକ୍ଷିଣାରେ,
କିସ ଅର୍ପିବି କୁହ ଶ୍ରୀପୟରେ ।୩୮ ।

ପ୍ରତ୍ୟୁତ୍ତରେ ବୋଲନ୍ତି ପ୍ରଭାକର । ଗୁରୁ ଦକ୍ଷିଣା ଲୋଡ଼ା ନାହିଁ ମୋର ।
ଦକ୍ଷିଣା ଦେବାରେ ଯଦି ଚ ମନ । ଦିଅ ସୁଗ୍ରୀବ ସୁରକ୍ଷା ବଚନ ।
ମୋ ଅଂଶେ ଜନମ,
ତୁମ୍ଭେ ମହାବଳୀ ଅଟ ସକ୍ଷମ ।୩୯ ।
ଶିରୋଧାର୍ଯ୍ୟ କରି ଗୁରୁଙ୍କ ଆଜ୍ଞା । ତ୍ରିବାର ସତ୍ୟ ନ ହେବ ଅବଜ୍ଞା ।
ଉଦ୍‌ଘୋଷଣା କଲେ ଗମ୍ଭୀର ସ୍ୱରେ । ସୁରକ୍ଷା ଦେବେ ନିଶ୍ଚେ ସୁଗ୍ରୀବରେ ।
ଦେହେ ଥିଲେ ପ୍ରାଣ,
କେଶାଗ୍ର ସ୍ପର୍ଶ ହୋଇବ କଠିନ ।୪୦ ।
ହନୁ ନେଲେ ସୁଗ୍ରୀବ ରକ୍ଷା ବ୍ରତ । ବିଭାକର ମନେ ହୋଇଲେ ପ୍ରୀତ ।
ଆଶିଷ ଦେଲେ କେଶରୀ କିଶୋରେ । ହନୁମାନ ନମି ସୂର୍ଯ୍ୟ ପୟରେ ।
ଅଞ୍ଜନା ପାଶରେ,
ଆସିଣ ଚରଣେ ପ୍ରଣାମ କରେ ।୪୧ ।
ପୁତ୍ର ଦର୍ଶନେ ମାତା ପିତା ଖୁସି । ମୁଖୁ ଜ୍ଞାନ ଜ୍ୟୋତି ଆସେ ପ୍ରକାଶି ।
ରାଗା କେଶରୀ ହର୍ଷ ଉଲ୍ଲାସରେ । ଅଦ୍ଭୁତ ଉତ୍ସବ କଲେ ରାଜ୍ୟରେ ।
ସାରା ରାଜ୍ୟବାସୀ,
ରାଜାଙ୍କ ଖୁସିରେ ହୋଇଲେ ଖୁସି ।୪୨ ।
ବାଳବୃଦ୍ଧ ସର୍ବେ ହୋଇଲେ ମୋଦ । ବୟସ୍କ ଜନେ ଦେଲେ ଆଶୀର୍ବାଦ ।
ଦେଶେ ସର୍ବତ୍ର ବିରାଜେ ଆନନ୍ଦ । ସମୀରଣ ବହଇ ମନ୍ଦ ମନ୍ଦ ।
ଦେବେ ପୁଷ୍ପବୃଷ୍ଟି,
କରିଲେ ଆକାଶେ ହୋଇ ସମଷ୍ଟି ।୪୩ ।
ଦଶମ ଛାନ୍ଦ ହୋଇଲା ସଂପୂର୍ଣ୍ଣ । ସୁଧାରସ ଚରିତ ହନୁମାନ ।
ହୃଦେ କୃପାରେ ଜନମେ ଯେପରି । ସୁରେଶ ଭଣଇ ସ୍ମରି ସେପରି ।
ଥିଲେ ଦୋଷାଦୋଷ,
କ୍ଷମିବ ମାରୁତି ଭକ୍ତ ବିଦୁଷ ।୪୪ ।



# ଏକାଦଶ ଛାନ୍ଦ

ରାଗ-ବାହୁଡ଼ା ବସନ୍ତ

(ରାମଙ୍କ ସହ କପିରୂପରେ ହନୁମାନଙ୍କ ସାନିଧ୍ୟ)

ନମୋ ପ୍ରଭୁ ବିନାୟକ ହେରମ୍ଭ ବିଘ୍ନନାଶକ
ସାମର୍ଥ୍ୟ ଦିଅ ହେ ଗଜାନନ,
ବିଘ୍ନକୁ ମୋହର ନାଶ ପଦ ଦେଖାଅ ଅକ୍ଲେଶ
ହନୁମାନ ଚରିତ ବର୍ଣ୍ଣନ ଯେ,
ଅଗ୍ରପୂଜ୍ୟ,
ହୋଇବ ଭକ୍ତି ରସରେ ପୂର୍ଣ୍ଣ
ହରଷ ହେବେ ବିଦୁଷ ଜନ ଯେ ।୧ ।
କର୍ପୂରଗୌର ଶଙ୍କର ଘନନୀଳ ରଘୁବର
ଅଭେଦ୍ୟ ଦ୍ୱୟ ନୁହଁନ୍ତି ଭିନ୍ନ,
ରାମେ କଲେ ନମସ୍କାର ପାଆନ୍ତି ତା ମହେଶ୍ୱର
ହରି ପୂଜା ହିଁ ହର ପୂଜନ ହେ,
ପୁନର୍ଜନ୍ମ,
ହୁଏନା ତା ଯେ ଚିନ୍ତେ ଅଭିନ୍ନ
ନାମ ରୂପ ଦୁଇ ବ୍ରହ୍ମ ଏକ ଯେ ।୨ ।
ଲୀଳା କରିବାର ପାଇଁ ଅରୂପ ରୂପ ନିଅଇ
ରସମୟୀ ଲୀଳା ଆସ୍ୱାଦଇ,
ଆଶୁତୋଷ ପଞ୍ଚାନନ ରାମ ରାଜୀବ ଲୋଚନ
ଭକ୍ତ ମନ ହରଣ କରଇ ଯେ,
ସ୍ଥୂଳ ରୂପ,
ପରଂବ୍ରହ୍ମ ପୁଣି ନିରାକାର
ଲୀଳା ଦର୍ଶନେ ଭକ୍ତ ବିଭୋର ହେ ।୩ ।
ପାପ ତାପ ନିବାରଣ ମର୍ତ୍ତେ ଧର୍ମ ସଂସ୍ଥାପନ
ପ୍ରାଣୀଙ୍କର ଅଶେଷ ମଙ୍ଗଳ,
ପୃଥ୍ୱୀ ଭାରା ହରିବାକୁ ସାଧୁ ଜନେ ତାରିବାକୁ
ଶ୍ରୀରାମ ଏହି ଅବନୀ ତଳ ହେ,
ଅବତାର,
ଯେବେ ଯେବେ କରନ୍ତି ଗ୍ରହଣ
ଶିବଙ୍କ ହୁଏ ଅବତରଣ ଯେ ।୪ ।
ମଙ୍ଗଳମୟୀ ମଧୁର ଲୀଳା ଧରଣୀ ଉପର

ପ୍ରିୟତମ ଶ୍ରୀରାମ ରାଘବ,
ମୁନି ମାନସ ମୋହିନୀ ମାଧୁର୍ଯ୍ୟ ରସ ପ୍ଲାବିନୀ
ଭକ୍ତ ସୁଖଦାୟୀ ଅଭିନବ ସେ,
ଦର୍ଶନାର୍ଥ,
ଉମାପତି ହୁଅନ୍ତି ଉପସ୍ଥିତ
ଦର୍ଶନେ ମନ ହୁଏ ଉଷତ ଯେ ।୫ ।
ପେଶିଣ ଏକ ଅଂଶକୁ ସହଯୋଗ କରିବାକୁ
ପୂର୍ବରୁ ସୁବ୍ୟବସ୍ଥା କରନ୍ତି,
ଲୀଳା ଭୁବନ ପାବନୀ ନିଜେ ସଙ୍ଗେ ମାତା ଘେନି
ଦେଖି ମନେ ମୋଦିତ ହୁଅନ୍ତି ସେ,
ତ୍ରିଲୋଚନ,
ବିଷ୍ଣୁ ପଦରେ ତାଙ୍କର ମନ
ସର୍ବଦା ସେ କରନ୍ତି ବନ୍ଦନ ଯେ ।୬ ।
ଅଖିଳ ଭୁବନ ପତି କୌଶଲ୍ୟା ଗର୍ଭୁ ଉତ୍ପତ୍ତି
ଲଭି ତା ପୂର୍ଣ୍ଣ କଲେ ପଣତ,
ଦରଶନେ କରି ଆଶ କୈଳାସପତି ଗିରୀଶ
ପହଞ୍ଚନ୍ତି ଆସି ଅବିରତ ସେ,
ଅବଧିରେ,
ସାଧୁ ରୂପେ ଦଶରଥ ଦ୍ୱାରେ
କେବେ ପୁଣି ଭିକ୍ଷୁକ ବେଶରେ ସେ ।୭ ।
ପ୍ରବାଚକ ରୂପ ଧରି ଡମ୍ବରୁ ତ୍ରିଶୂଳଧାରୀ
ଅବତାର କଥା ବଖାଣଇ,
ତ୍ରିକାଳଦର୍ଶୀ ଦୈବଜ୍ଞ ରୂପଧରି କରି ବିଜ୍ଞ
ରାଜନେ ପୁତ୍ର ଫଳ ଶୁଣାଇ ଯେ,
ଶିଶୁ ରାମେ,
ହସ୍ତ ଦେଖନ୍ତି ଅଙ୍କେ ବସାଇ
ପଦ ଧୂଳି ଜଟାରେ ଝାଡ଼ଇ ସେ ।୮ ।
ଦିନେ ହନୁମାନେ ଧରି ଉମା ମନ ମୋହକାରୀ
ଡମ୍ବରୁ ହସ୍ତେଣ ଉପସ୍ଥିତ,
ଅଯୋଧ୍ୟା ରାଜ ଦୁଆରେ ମାରୁତି ନାଚେ ଖୁସିରେ
ସବୁ ବାଳକେ ହେଖି ହର୍ଷିତ ଯେ,
ରାଘବେନ୍ଦ୍ର,

ଭ୍ରାତା ସହ ହେଲେ ଉପଗତ
ବାନର ଦେଖି ଯୋଡ଼ଇ ହସ୍ତ ଯେ ।୯ ।
ବାନରଙ୍କୁ ଦେଖି ରାମ ହୃଦୟରେ ବହି ପ୍ରେମ
ସ୍ମିତ ହସିଲେ ଜାଣି ଏ ହର,
ଆସିଛନ୍ତି ବେଶ ଧରି ଦର୍ଶନ କରିବେ ହରି
ହନୁମାନଙ୍କୁ ଧରି ସଙ୍ଗର ଯେ,
ପ୍ରଭୁ ଭକ୍ତ,
ଏକ ସହିତ ଏକ ଆସକ୍ତ
ଚାରି ଚକ୍ଷୁ ହୋଇଲା ମିଳିତ ଯେ ।୧୦ ।
ନଚାଇବାବାଲା ଯିଏ ନାଚିବା ବାଲା ବି ସିଏ
ଦେଖଇ ସ୍ୱୟଂ ଦର୍ଶକ ହୋଇ,
ରୂପ ଇଏ ସଂସାରର ସର୍ବ ଘଟେ ବାସ ତା'ର
ଖେଳ କରଇ ଶରୀରେ ଥାଇ ଯେ,
ପରମାତ୍ମା,
ମୂଢ଼ ଜନ ତା'ରେ ନ ଜାଣଇ
ହର୍ଷ ବିଷାଦେ ହସି କାନ୍ଦଇ ଯେ ।୧୧ ।
ହର ନଚାବନ୍ତି ହରି ରାମ ମୋଦେ ତାଳି ମାରି
ପ୍ରକାଶନ୍ତି ନିଜ ଖୁସି ଭାବ,
ପ୍ରସନ୍ନ ପ୍ରସନ୍ନାନନ ମାଗିଲେ ଦିଅ ବହନ
ବାନର ଏ ଅଟଇ ଅପୂର୍ବ ଯେ,
ଦଶରଥ,
ଆଦେଶିଲେ ମନ୍ତ୍ରୀରେ ତ୍ୱରିତ
ଦିଅ ବାନର ଶ୍ରୀରାମ ହସ୍ତ ଯେ ।୧୨ ।
ହରି ନଚେଇବା ବାଲାତାହା ହିଁ ତ ଚାହୁଁଥିଲା
ଆନନ୍ଦେ ରାମେ ଦେଲା ବାନର,
ବାନର ରୂପେ ମାରୁତି ପାଦେ କରିଲା ପ୍ରଣତି
ଯୁଗ ଯୁଗ ଆଶା ପୂର୍ଣ୍ଣ ତା'ର ଯେ,
ଏ ପ୍ରକାରେ,
କପି ରହିଲେ ଶ୍ରୀରାମ ପାଶେ
ତା'ର ମନ ଉଡ଼ଇ ଆକାଶେ ଯେ ।୧୩ ।
ହନୁମାନ ପ୍ରତି ରାମ ଦେଖାନ୍ତି ଅଖଣ୍ଡ ପ୍ରେମ
ପ୍ରଭୁ ସହ ଭକ୍ତର ମିଳନ,

ଖେଳନ୍ତି ଏକ ସାଥିରେ ଖାଦ୍ୟ ଘେନନ୍ତି ସାଥିରେ
ଅଭେଦ୍ୟ ପ୍ରେମ ମନ ସମାନ ଯେ,
ପ୍ରଭୁ ରାମ,
ଆଜ୍ଞା କରନ୍ତି ସୁଖେ ଯେସନ
କପି କରେ ଆଦରେ ପାଳନ ଯେ ।୧୪ ।
ଅନେକ ବର୍ଷ ବିତିଲା କ୍ଷଣେ ପ୍ରାୟ ମନେ ହେଲା
ପ୍ରଭୁ ଭକ୍ତ ବନ୍ଧନ ବଢ଼ିଲା,
ମହାରଷି ବିଶ୍ୱାମିତ୍ର ମନ ତାଙ୍କର ପବିତ୍ର
ଦଶରଥେ କଲେ ନିବେଦନ ଯେ,
ବନେ ନେବେ,
ରାମ ଲକ୍ଷ୍ମଣ ଯତି ସାଥିରେ,
ଯାତୁ ନାଶିବେ ନିଶଂକୋଚରେ ଯେ ।୧୫ ।
ଦଶରଥ ଅନିଚ୍ଛାରେ ଯତିରେ ସ୍ୱୀକୃତ କରେ
ଅସୁର ନାଶ କରିବେ ବନେ,
ଯେ କାରଣେ ଅବତାର ସେ ଅର୍ଥେ ହେବେ ବାହାର
ହୋଇବେ ଜାଣିଣ ହନୁମାନେ ଯେ,
ଡାକି ପାଶେ,
କହନ୍ତି ଏକାନ୍ତରେ ବଚନ
ଅନ୍ତରଙ୍ଗ ସଖା ହନୁମାନ ଯେ ।୧୬ ।
ଏହି ଧରାଧାମ ପରେ ଅବତାର ଯେ ଅର୍ଥରେ
ପ୍ରମୁଖ କାର୍ଯ୍ୟ ଆରମ୍ଭ ଏବେ,
ଲଙ୍କାଧିପତି ରାବଣ କରଇ ଅନୀତି ମାନ
ନିଧନ କରି ଧରମ ଭବେ ଯେ,
ମୁଁ ସ୍ଥାପିବି,
ସହାୟତା ତୁମ ଅପେକ୍ଷିତ
ଚଳ ହେ ଋଷ୍ୟମୁକ ପର୍ବତ ଯେ ।୧୭ ।
କିଷ୍କିନ୍ଧ୍ୟାରେ ମହାବଳୀଶାସନ କରଇ ବାଳୀ
ଦଶାନନ ସହଯୋଗୀ ବନି,
ଅନୁଜ ସୁଗ୍ରୀବ ରକ୍ତ ପିଇବାକୁ ଫାଡ଼ି ନେତ୍ର
ରହିଛି ସୁଗ୍ରୀବ ପତ୍ନୀ ଫେନି ଯେ,
ମହାପାପୀ,
ନାଶନେ ସୁଗ୍ରୀବେ ମୈତ୍ରୀ କର

ତୁଲେ ତୁମ ହେବ ତା ଉଦ୍ଧାର ଯେ ।୧୮ ।
ବିଶ୍ୱାମିତ୍ରଙ୍କ ସାଥିରେ ଗମିବି ମୁଁହି ବନର
ଉଦ୍ଧାରିବି ଯେତେକ ଇନ୍ଦ୍ରାରୀ,
ସୁବାହୁ ମାରିଚାସୁର ତାଡ଼କା ଦୁଷଣ ଖର
ତ୍ରିଶିରା ସୂର୍ପଣଖାଦି ମାରି ଯେ,
ଋଷ୍ୟମୁକେ,
ଯାଇ ଭେଟିବି ତୁମକୁ ସେଠି
ସୁଗ୍ରୀବ ସହ ହେବା ଏକାଠି ଯେ ।୧୯ ।
ବାଳୀକୁ କରିବା ହତ ସୁଗ୍ରୀବେ କରି ମଇତ୍ର
ନେଇ କପି ଋକ୍ଷ ସୈନ୍ୟ ଦଳ,
ଅବତାରର କାର୍ଯ୍ୟରେ ସହାୟତା ଅନନ୍ଦରେ
କରାଇବ ଆସିଗଲେ ବେଳ ଯେ,
ମା' ଧରିତ୍ରୀ,
ଭାର କରିବାକୁ ଉଶୁଆସ
ଭ୍ରମଣ କରିବି ବନ ଦେଶ ଯେ ।୨୦ ।
ପ୍ରାଣପ୍ରିୟ ପ୍ରଭୁ ନିଜ ଭରତ ଲକ୍ଷ୍ମଣାଗ୍ରଜ
ସାନିଧ ତ୍ୟାଗିବା ଦୁଃଖ ଦାୟୀ,
ପ୍ରଭୁ ଆଦେଶ ପାଳନ ମୁଖ୍ୟ କର୍ତ୍ତବ୍ୟ ଭାବିଣ
ବୁଝାଅଇ କେଶରୀ ତନୟୀ ଯେ,
ନିଜ ମନେ,
ପ୍ରଣାମ କରି ପ୍ରଭୁ ଚରଣେ
ବିଦାୟ ନିଅଇ ତତକ୍ଷଣେ ଯେ ।୨୧ ।
ସୁମେରୁ ପର୍ବତେ ଯାଇ ପିତା ମାତାଙ୍କୁ ଭେଟଇ
ମାତାଙ୍କୁ କହେ ସର୍ବ ବୃତ୍ତାନ୍ତ,
ପୁତ୍ରକୁ ପାଇ ପାଖରେ ଅଞ୍ଜନା ସୁଖି ମନରେ
ନାନା ବ୍ୟଞ୍ଜନ କରେ ପ୍ରସ୍ତୁତ ଯେ,
ହନୁମାନ,
ମାତା ହସ୍ତୁ ଖାଇ ଅତି ପ୍ରିତ
ଗୀତେ ଭଣେ ସୁରେଶ ଚରିତ ଯେ ।୨୨ ।



# ଦ୍ୱାଦଶ ଛାନ୍ଦ

ରାଗ-କଳହଂସ କେଦାର

(ବାଲୀ, ସୁଗ୍ରୀବ ଶତ୍ରୁତା ଓ ପବନ ପୁତ୍ରଙ୍କର ସୁଗ୍ରୀବ ସହିତ ମୈତ୍ରୀ)

ହର ଆତ୍ମଜ ପଦ କରି ସ୍ମରଣ,
ହନୁମାନ ଚରିତ କରେ ବର୍ଣ୍ଣନ ।
ହସ୍ତଯୋଡ଼ି ଚରଣେ କରେ ଦୟିନୀ,
ହରି ବାହନ ସୁତ ପ୍ରାର୍ଥନା ଘେନି ।୧ ।
ପଦକୁ ପଦ କହି ଦେବ କର୍ଣ୍ଣରେ,
ଅମୃତ ରସ ଏହି ଦୁଃଖକୁ ହରେ ।
ବାନର ରାଜା ରକ୍ଷର ଦୁଇପୁତ୍ର,
ବାଲୀ ସୁଗ୍ରୀବ ଧୀର ବୀର ଅତ୍ୟନ୍ତ ।୨ ।
ବୁଦ୍ଧିମାନ ସୁନ୍ଦର ସାମର୍ଥ୍ୟବାନ,
ବାଳକ ଦୁଇ ବହୁତ ବଳବାନ ।
ରକ୍ଷ ରାଜ ତାହାର ଆତ୍ମଜ ଦୁଇ,
ହୃଦୟଖଣ୍ଡେ ଅତି ପ୍ରେମ କରଇ ।୩ ।
ଦୁଇ ଭାଇ ମଧ୍ୟରେ ଅଭେଦ୍ୟ ସ୍ନେହ,
ଏକ ମନ ଦୁହିଙ୍କ ଦୁଇଟି ଦେହ ।
ବିହରନ୍ତି ଏକାଠି କ୍ରୀଡ଼ା ଭୋଜନ,
କରନ୍ତି ଏକ ସାଥେ ଦୁହେଁ ଶୟନ ।୪ ।
ପିତାଙ୍କ ଅନ୍ତେ ଜ୍ୟେଷ୍ଠ ବାଲୀ ହସ୍ତରେ,
ରାଜପଦ ଅର୍ପିଲେ ସମାରୋହରେ ।
ମନ୍ତ୍ରୀ ପାତ୍ର ଓ ମିତ୍ର ସୈନ୍ୟ ସାମନ୍ତ,
କିଷ୍କିନ୍ଧ୍ୟାବାସୀମାନେ ହେଲେ ହର୍ଷିତ ।୫ ।
ବାନର ଜାତିର ଥିଲେ ପ୍ରାଣପ୍ରିୟ,
ପ୍ରଜାଗଣେ ଦେଖନ୍ତି ଆତ୍ମଜ ପ୍ରାୟ ।
ସୁଗ୍ରୀବ ଅଗ୍ରଜ ସେବାରେ ପ୍ରସ୍ତୁତ,
ଶ୍ରଦ୍ଧା ଭକ୍ତିରେ ରହିଥାନ୍ତି ବିନୀତ ।୬ ।
ବାଲୀ କିଷ୍କିନ୍ଧ୍ୟା ରାଜ୍ୟେ କରେ ଶାସନ,
ସୁଗ୍ରୀବ ଖଟେ ତାରେ ଦାସ ଯେସନ ।
ଦୁଇ ଭ୍ରାତା ମଧ୍ୟରେ ଅଭେଦ୍ୟ ପ୍ରୀତି,
ବିରଳ ଏ ଭାତୃତ୍ୱ ସମଗ୍ର କ୍ଷିତି ।୭ ।

ଏଣେ ଶୁଣ ବିଦୁଷେ ରାଜା କେଶରୀ,
ବିମର୍ଶ କରେ ସାଥେ ଅଞ୍ଜନା ନାରୀ ।
ବିରକ୍ତ ହନୁମାନ ଏକାନ୍ତବାସୀ,
ଆଚାର ବ୍ୟବହାରେ ଦୁହେଁ ଅଖୁସି ।୮ ।
ରାଜନୈତିକ ଜ୍ଞାନ ଅଟଇ ଶୂନ୍ୟ,
କେହ୍ନେ ସୁମେରୁରେ କରିବ ଶାସନ ।
ଋକ୍ଷରାଜ ଅଧିନେ ରାଜ୍ୟ ତାଙ୍କର,
ଦୁହେଁ ବସି ନିଶ୍ଚୟ କଲେ ମନର ।୯ ।
ରାଜ୍ୟାସନ ଜ୍ଞାନ ହାସଲ ପାଇଁ,
ପମ୍ପାପୁରେ ପୁତ୍ରକୁ ଦେବେ ପଠାଇ ।
ପିତୃମାତୃ ଭକତ ଶ୍ରୀହନୁମାନ,
ଭକତି ଭରେ ପାଦେ କଲେ ନମନ ।୧୦ ।
ପମ୍ପାପୁରକୁ ଯାତ୍ରା ଆରମ୍ଭ କଲେ,
ଆନନ୍ଦେ ପିତାମାତା ବିଦାୟଦେଲେ ।
ପବନ ସୁତ ଆଗମନ ବାରତା,
ଶୁଣି ସୁଗ୍ରୀବ ମନେ କଲେ ସୁଚିନ୍ତା ।୧୧ ।
ମହା ହରଷରେ କରିଲେ ସ୍ୱାଗତ,
ସମ ଆଦର କଲେ ବାଳୀ ବହୁତ ।
ଦେବ ଦୁର୍ଲଭ ଗୁଣରେ ପରିପୂର୍ଣ୍ଣ,
କେଶରୀ ନନ୍ଦନ ପ୍ରଭୁ ହନୁମାନ ।୧୨ ।
ସାମର୍ଥ୍ୟ ସହିତ ବାଳୀ ପରିଚିତ,
ପାଖରେ ରଖିଲେ କରି ସମ୍ମାନିତ ।
ବିଦ୍ୱାନ ବୁଦ୍ଧିମାନ ଓ ବଳବାନ,
ଧୈର୍ଯ୍ୟବାନ ସଦାଚାର ପରାୟଣ ।୧୩ ।
ସରଳତାର ସଜୀବ ପ୍ରତିମୂର୍ତ୍ତି,
ତେଣୁ ବଳୀ ଭଲପାଏ ତାଙ୍କୁ ଅତି ।
ପାଶେ ରଖିବାକୁ ଅନ୍ତରଙ୍ଗ କରି,
ହୃଦୟ ମନରେ ଥିଲେ ଆଶାକରି ।୧୪ ।
ବିଦ୍ୟାର ବାରିଧି କେଶରୀ କୁମର,
ଗୁରୁ ଦକ୍ଷିଣା କଥା ସ୍ମରି ମନର ।
ସୁଗ୍ରୀବଙ୍କ ପରମ ମିତ୍ର ରୂପରେ,

ଦିନରାତି ରୁହନ୍ତି ତାଙ୍କ ସାଥିରେ ।୧୫ ।
ଯେବେ ବଜ୍ର ଅଙ୍ଗ ବୀର ହନୁମାନ,
କିଷ୍କିନ୍ଧ୍ୟା ପମ୍ପାପୁରେ କଲେ ଗମନ ।
ସେତେବେଳେ ସେହି କ୍ଷେତ୍ର ଚତୁଃପାର୍ଶ୍ୱେ,
ତାଣ୍ଡବ କରୁଥିଲେ ଘେରି ରାକ୍ଷସେ ।୧୬ ।
ମହାଶକ୍ତିଶାଳୀ ସେ ଖର ଦୂଷଣ,
ବିରାଧ ଦ୍ୱିଜ ବିରୋଧି ଦଶାନନ ।
ନିଷ୍କଣ୍ଟକେ ରାଜ୍ୟ କରୁଥିଲେ ଭୋଗ,
ନ ଚାହାଁନ୍ତି ବୀରବାଳୀ ରାଜ୍ୟ ଦିଗ ।୧୭ ।
ବଳେ ଶୌର୍ଯ୍ୟେ ବୀର୍ଯ୍ୟେ ଅଗ୍ରଣୀ ଅତ୍ୟନ୍ତ,
ଅସୁରେ ତା ନାମେ ହୁଅନ୍ତି ଭୟଭୀତ ।
କିଷ୍କିନ୍ଧ୍ୟା ସୀମାରେ କେବେ ଉପଦ୍ରବ,
କରଣେ ନ ରଖିଥାନ୍ତି ଶତ୍ରୁ ଭାବ ।୧୮ ।
ରାକ୍ଷସ ମାନଙ୍କ ଦୁଷ୍ଟତାକୁ କଳି,
ଦୁଷ୍ଟ ଦଳନେ ନ ବାହରଇ ବାଳୀ ।
କେଶରୀ କିଶୋର ଯେଣୁ ପମ୍ପାପୁରେ,
ବାଳୀ ଚିନ୍ତା ପ୍ରାୟ ହୋଇଗଲା ଦୂର ।୧୯ ।
ବାଲ୍ୟକାଳୁ ରାକ୍ଷସଙ୍କ ପ୍ରତି ରୋଷ,
ହନୁମାନ ମନେ ଥିଲାଟି ବିଶେଷ ।
ଦୃଷ୍ଟି ପଡ଼ିଗଲେ ରାକ୍ଷସ ଉପରେ,
ବଂଚିବା ତାହାର ନ ଥିଲା ଭାଗ୍ୟରେ ।୨୦ ।
ଖୋଜି ଖୋଜି କରି ଅସୁର ନିଧନ,
କରୁଥିଲେ ଯେଣୁ ବୀର ହନୁମାନ ।
ନାମ ଶୁଣି କମ୍ପୁଥିଲେ ରକ୍ଷଗଣ,
ଘେନି ଲୁଚୁଥିଲେ ପ୍ରାଣ ଯାଇ ବନ ।୨୧ ।
ହନୁମାନଙ୍କର ଦେଖି ସରଳତା,
ବୀରତା ଧୀରତା ସହିତ ସାଧୁତା ।
ପରାକ୍ରମ ଦେଖି ହୁଅଇ ଚକିତ,
କିଷ୍କିନ୍ଧ୍ୟା ନରପତି ହୁଅଇ ପ୍ରୀତ ।୨୨ ।
ବାଳୀ ସୁଗ୍ରୀବଙ୍କ ଆଦର୍ଶ ଭ୍ରାତୃତ୍ୱ,
ସାରା ସଂସାରରେ ସର୍ବତ୍ର ପ୍ରଖ୍ୟାତ ।

ସୁଖରେ ବିତାନ୍ତି ଦୁଇଭ୍ରାତା ଦିନ,
ବିଧିର ବିଧାନ ଥିଲା କିଛି ଆନ ।୨୩।
କ୍ରୁର ନିୟତିର ନିର୍ଦ୍ଦୟତା ଦେଖ,
କ୍ଷଣକରେ କେହ୍ନେ ହରି ନିଏ ସୁଖ ।
କାଳର ସମ୍ମୁଖେ ମଣିଷ କି ଛାର,
ତା'ରେ ହେଣ୍ଟିବାକୁ ଅଛି ବଳ କା'ର ।୨୪।
କର୍ମଫଳର ରଜ୍ଜୁ ଧରି ଦଇବ,
ଓଟାରେ ଯେଣେ ତେଣେ ଯାଅଇ ଜୀବ ।
ମିଥ୍ୟା ଅହଂକାରେ ବଶ ଏ ମଣିଷ,
କାଳ ସମ୍ମୁଖରେ ମୂଲ୍ୟ ଯା'ର କିସ ।୨୫।
ଯାହାର ଶଗଡ଼ ସୁବିଧାରେ ଚାଲେ,
ଆନନ୍ଦେ ପଦେ ପଦେ ଗୀତ ସେ ବୋଲେ ।
ଶାରୀରିକ ବଳ ପୁଣି ଧନ ବଳ,
ବଢ଼ିଗଲେ ଲୋକ ଡିଅଁଇ ପ୍ରବଳ ।୨୬।
ସମୟ ସବୁକୁ ଦିଏ ମୋଡ଼ି ମାଡ଼ି,
ମହାବଳବାନ ପଡ଼େ ମୁହଁ ମାଡ଼ି ।
ଧନ ଯଉବନ ସବୁ କ୍ଷଣସ୍ଥାୟୀ,
କେଉଁଟି ନୁହଁଇ ଭବେ ଚିରସ୍ଥାୟୀ ।୨୭।
ବୁଦ୍ ବୁଦ୍ ପରାଏ କ୍ଷଣେ ଦେଖାଯାଇ,
ଅପର କ୍ଷଣରେ ଯାଅଇ ଉଭେଇ ।
ସୁଖ ଦୁଃଖ ଦୁଇ ପାଳି କରି ଆସେ,
ଏକ ପରେ ଏକ ଜୀବନେ ପ୍ରକାଶେ ।୨୮।
ସୁଖରେ ଅଧିର ଦୁଃଖରେ କାତର,
ନ ହେବା ପଣ୍ଡିତ ଲୋକଙ୍କ ବେଭାର ।
ବିଶ୍ୱର ନିଅନ୍ତା ସବୁ ନିୟନ୍ତ୍ରଣ,
ଶୂନ୍ୟେ ବସି ଦେଖି କରେ ଅନୁକ୍ଷଣ ।୨୯।
ବିଶ୍ୱ ବ୍ରହ୍ମାଣ୍ଡରେ ନିର୍ଦ୍ଦେଶରେ ତା'ର,
ଘଟଣାଘଟଣ ଘଟଇ ସୁନ୍ଦର ।
ସେଥିରେ କାହାର କିଞ୍ଚିତ ମାତର,
କିଛି ବି କ୍ଷମତା ନାହିଁ କରିବାର ।୩୦।
ଜଳସ୍ରୋତେ ଯେହ୍ନେ ଭାସଇ ପତର,

କାଳସ୍ରୋତେ ତେହ୍ନେ ଏ ମଣିଷ ଛାର ।
ମିଥ୍ୟା ଗର୍ବେ ହୁଏ ଛାଗଳ ପରାଏ,
ମେଁଏଁ ମେଁଏଁ କରି ରଡ଼ି ଛାଡୁ ଥାଏ ।୩୧ ।
ବିଭିନ୍ନ ସମୟେ ରଙ୍ଗ ଭିନ୍ନ ଭିନ୍ନ,
ରଙ୍ଗ ଛାଡ଼ିଯାଏ କାଳ ହେଲେ ଭିନ୍ନ ।
ମହାବଳ ବ୍ୟାଳ ହୁଅଇ ବିଡ଼ାଳ,
ସର୍ବଶକ୍ତିମାନ ଅଟେ ମହାକାଳ ।୩୨ ।
ଏପରି କେ ନାହିଁ ସଂସାରରେ ବୀର,
ରୋଧି ପାରେ ଯିଏ ଗତିକୁ କାଳର ।
କ୍ରୁର ନିୟତିର ଏପରି ବିଚାର,
ଗୋଲାପ ଜନ୍ମଇ କଣ୍ଟକ ଉପର ।୩୩ ।
ମଣିଷ ଚିନ୍ତାକୁ ଈଶ୍ୱରଙ୍କ ଚିନ୍ତା,
ଆଶା ଅନୁସାରେ ଚିନ୍ତେନା ନିୟନ୍ତା ।
ନିୟତିର ଖେଳ ଦେଖ ହେ ଏମନ୍ତ,
ମାୟାବୀ ନାମରେ ମୟ ଦୈତ୍ୟ ପୁତ୍ର ।୩୪ ।
ଶକ୍ତି ବୀରତା ଗର୍ବେ ହୋଇ ଉନ୍ମତ୍ତ,
କିଷ୍କିନ୍ଧ୍ୟା ଦ୍ୱାରରେ ହେଲା ଉପସ୍ଥିତ ।
ରଣ କରିବାକୁ କରିଲା ଆହ୍ୱାନ,
ଅର୍ଦ୍ଧ ରାତ୍ର କାଳେ ରଡ଼େ ଘନ ଘନ ।୩୫ ।
ଇନ୍ଦ୍ର ପୁତ୍ରବାଳୀ ଅପ୍ରତିମ ବୀର,
ଜବାବ ଦେବାକୁ ଦୁଷ୍ଟ ଅସୁରର ।
ଶଯ୍ୟା ତ୍ୟଗ କରି ଦଉଡ଼ିଲା ଦ୍ରୁତେ,
ସୁଗ୍ରୀବ ଦୌଡ଼ିଲା ଦେଖି କରି ଭ୍ରାତେ ।୩୬ ।
ଆଗ ପଛ ହୋଇ ଦେଖି ଦୁଇ ବୀର,
ଅସୁରର ବଳ ହୋଇ ଗଲା ଚୂର ।
ତୀବ୍ର ବେଗେ ଦୌଡ଼ି ଭୟଭୀତ ହୋଇ,
ଜୀବନ ବିକଳେ ଅତର୍ଚ୍ଛା ପଳାଇ ।୩୭ ।
ଆଗରେ ଅସୁର ପଛେ ଦୁଇ ଭାଇ,
ଭୟଙ୍କର ରୂପ ଝଡ଼ ବେଗ ବହି ।
ଅନେକ ଦୂରକୁ ଯାଇଣ ଅସୁର,
ଦେଖିଣ ପଶିଲା ଏକଇ ବିବର ।୩୮ ।

ସୁଗ୍ରୀବେ ଜଗାଇ ବିବର ଦ୍ୱାରରେ,
କ୍ରୋଧୋନ୍ମତ ବାଳୀ ପଶିଲା ଭିତରେ ।
ସୁଗ୍ରୀବ ସେଠାରେ ଦୁଇ ପକ୍ଷ ଧରି,
ଅତି ସାବଧାନେ ଆଜ୍ଞାକୁ ସୁମରି ।୩୯ ।
ସଜାଗେ ଜଗିଲା ବିବରର ଦ୍ୱାର,
ବିବରେ କର୍ଣ୍ଣ ଲଗାଇ ଶୁଣେ ସ୍ୱର ।
ବାଳୀ ସ୍ୱର ସ୍ଥାନେ ରାକ୍ଷସଙ୍କ ଗୋଳ,
ଶୁଭଇ ସୁଗ୍ରୀବେ ମାତ୍ର କୋଳାହଳ ।୪୦ ।
ଭ୍ରାତା ଗୁଣଗୁଣି ମନରେ ଚିନ୍ତିତ,
ଏ ସମୟେ ଗର୍ତ୍ତୁ ବାହାରିଲା ରକ୍ତ ।
ଫେଣ ସହିତରେ ବାହାରିବା ଦେଖି,
ଜଳପୂର୍ଣ୍ଣ ହେଲା ସୁଗ୍ରୀବର ଆଖି ।୪୧ ।
ଭ୍ରାତୃ ସ୍ନେହ ତା'ର ମନକୁ ଦହଇ,
ମନେ ଶଙ୍କା ସୃଷ୍ଟି ହେଲା ବାଳୀ ପାଇଁ ।
ବହୁତ ଧ୍ୟାନ ସହିତ ଦେଖେ ବୀର,
ସ୍ୱର ଯେବେ ନ ଶୁଭିଲା ତା ଭ୍ରାତାର ।୪୨ ।
ମନରେ ଭାବଇ ମିଳି ରକ୍ଷଗଣ,
ନେଲେ ପ୍ରାଣାଧିକ ଅଗ୍ରଜର ପ୍ରାଣ ।
ବାହାରକୁ ଆସି ମୋର ପ୍ରାଣ ନେବେ,
କିଷ୍କିନ୍ଧ୍ୟା ରାଜ୍ୟକୁ ଦୁଃଖେ ବୁଡ଼ାଇବେ ।୪୩ ।
ଦୁଃଖେ ଅଭିଭୂତ ହୋଇଣ ସୁଗ୍ରୀବ,
ମନକୁ ଆଣିଲା ଭୟ ନବ ନବ ।
ପର୍ବତ ଆକାର ବିଶାଳ ପଥର,
ଥୋଇ ବନ୍ଦ କଲା ବିବରର ଦ୍ୱାର ।୪୪ ।
ଉଦାସ ମନରେ ଜଳାଞ୍ଜଳୀ ଦେଇ,
କିଷ୍କିନ୍ଧ୍ୟା ରାଜ୍ୟେ କାନ୍ଦି କାନ୍ଦି ଫେରଇ ।
ମନ୍ତ୍ରୀମାନେ ଜାଣି ସମସ୍ତ ବୃତ୍ତାନ୍ତ,
ଶୋକ ମନାଇଲେ ହୋଇ ଏକତ୍ରିତ ।୪୫ ।
ବାଲ୍ୟ ବୟସ୍କ ଅଙ୍ଗଦ ଯୁବରାଜ,
ସୁଗ୍ରୀବେ ସମର୍ପିଲେ କିଷ୍କିନ୍ଧ୍ୟା ରାଜ୍ୟ ।
ସିଂହାସନେ ତାଙ୍କୁ କଲେ ଅଭିଷିକ୍ତ,

ଶାସନେ ସୁଗ୍ରୀବ ରହିଲେ ନିଯୁକ୍ତ ।୪୬ ।
ଏଣେ ଦେଖ ବିଧିର କି ଉପହାସ,
ବାଳୀ ଫେରି ଆସିଲେ ନାଶି ରାକ୍ଷସ ।
ସିଂହାସନେ ଦେଖି ଅନୁଜ ସୁଗ୍ରୀବେ,
କ୍ରୋଧେ ଉନ୍ମତ୍ତ ହୋଇ ଡ଼େଇଁଲା ତୀବ୍ରେ ।୪୭ ।
ମନେ ନିଶ୍ଚୟ କଲା ଏ ଦୁରାଚାର,
ଜାଣି ଦେଖାଇ ଅଛି ଏ ବ୍ୟବହାର ।
ରାଜ୍ୟ ଶାସନ ଲୋଭେ ମୋ ମୃତ୍ୟୁ ପାଞ୍ଚି,
ଶିଳା ବିବରେ ଦେଇ ଆସିଛି ଘୁଞ୍ଚି ।୪୮ ।
ଭାଇଙ୍କୁ କ୍ରୋଧିତ ଦେଖି ରୁମାପତି,
ସିଂହାସନୁ ଓହ୍ଲାଇ ଆସି ଝଟତି ।
ବାଳୀକୁ ନେଇ ସାଗ୍ରହେ ବସାଇଲା,
ସମସ୍ତ ବୃତ୍ତାନ୍ତ ସଠିକେ କହିଲା ।୪୯ ।
ବାଳୀ ନ କଲା ତିଳେ ହେଁ କର୍ଣ୍ଣପାତ,
ରୁମାକୁ ବଳେ ନେଲା ରାଜ୍ୟ ସହିତ ।
ବଧିବାକୁ ସୁଗ୍ରୀବେ ଧାଇଁଲା ବେଗେ,
ପ୍ରାଣ ଡରେ ଧାଇଁଲା ସୁଗ୍ରୀବ ଆଗେ ।୫୦ ।
ମନ୍ତ୍ରୀଗଣ ସହିତ ଶୀଘ୍ର ପଳାଏ,
ପଶ୍ଚାତେ ମୃତ୍ୟୁ ପ୍ରାୟେକ ବାଳୀ ଧାଏଁ ।
ନଦ ନଦୀ ବଣ ପର୍ବତ ସାଗର,
ସୁଗ୍ରୀବ ଗମଇ ନଗର ନଗର ।୫୧ ।
ହିମାଳୟ ପର୍ବତୁ ମେରୁ ପର୍ବତ,
ଯହିଁ ଗଲା ବାଳୀ ମିଳିଲା ସର୍ବତ୍ର ।
କାକ ପଛେ ଯେହ୍ନେ ଧାଆଁଇ ଖଞ୍ଜନ,
ଅଗ୍ନିମୁଖ ହୋଇ ଅତିବ କ୍ରୋଧେଣ ।୫୨ ।
ଆଘାତ ପ୍ରାପ୍ତ ନାଗ ଯେହ୍ନେ ତଡ଼ଇ,
ସାଥି ନିମନ୍ତେ ସିଂହ ଯେହ୍ନେ ଲଢ଼ଇ ।
ପ୍ରାଣ ଘାତକ ଶତ୍ରୁ ପ୍ରାୟ ଖୋଜଇ,
ବାଳୀ ସୁଗ୍ରୀବ ପଛେ ତେହ୍ନେ ଭ୍ରମଇ ।୫୩ ।
ସୁଗ୍ରୀବ ହୀନାବସ୍ଥା ଦେଖି ମାରୁତି,
ମନ ମଧ୍ୟରେ ଦୁଃଖିତ ହେଲା ଅତି ।

ବୋଲଇ ମାତୁଳ ଶୁଣ ମୋର ଗୀର,
ଦୁନ୍ଦୁଭି ବଧ କଥା ଆସେ ମନର ।୫୪ ।
ଥରେ ମହିଷ ରୂପରେ ଅହଂକାରେ,
ସମର ରକ୍ଷ ମାଗଇ ବାଳୀ ବୀରେ ।
କିଷ୍କିନ୍ଧ୍ୟା ପୁରୀ ଦ୍ୱାର ସମ୍ମୁଖେ ଗଲା,
ଦୁନ୍ଦୁଭି ନାଦ ସମାନ ଶବ୍ଦ କଲା ।୫୫ ।
ଖୁରାଘାତେ ପୃଥ୍ୱୀ ଛାତି ବିଦାରଇ,
ରାଜପୁରୀ ଦ୍ୱାର ଶିଙ୍ଗରେ ତାଡ଼ଇ ।
ସମର ଆହ୍ୱାନ ଶୁଣି ବାଳୀ ବୀର,
ବାହାରିଲା କ୍ରୋଧେ ହୋଇ ଜର ଜର ।୫୬ ।
ଦେବେନ୍ଦ୍ର ପ୍ରଦତ୍ତ ବିଜୟ ଦାୟିନୀ,
ସୁବର୍ଣ୍ଣ ମାଳାକୁ ନିଜ କଣ୍ଠେ ଘେନି ।
ଦୁନ୍ଦୁଭିକୁ ଦେଖି ସମରେ ଆତୁର,
ଧାଇଁଲା ରାକ୍ଷସ ଶିଙ୍ଗ କରି ସ୍ଥିର ।୫୭ ।
ଦୁଇ ଶିଙ୍ଗ ଦୁଇ ହସ୍ତେ ଦୃଢ଼େ ଧରି,
ଘୁରାଇଲା ତାକୁ ଚକ୍ରବାତ ପରି ।
ଭୀଷଣ ଆକାର ଧରି ବାଳୀ ରାଜା,
ଘୁରାଏ ମହିଷେ ଯେହ୍ନେ ଛୁଆ ଅଜା ।୫୮ ।
ଭୀଷଣ ଗର୍ଜନ ଛାଡ଼ି ପୃଥ୍ୱୀ ପରେ,
ଦୁନ୍ଦୁଭିକୁ ପିଟିଲା ଅତି କ୍ରୋଧରେ ।
କର୍ଣ୍ଣ ଦେଇ ତା'ର ବହିଲା ରୁଧିର,
ପୁଣି ଉଠି ପଡ଼ି ରଣ କଲା ଘୋର ।୫୯ ।
ଭିଡ଼ା ଭିଡ଼ି ପଡ଼ା ପଡ଼ି ଦୁହେଁ ହୋଇ,
ପରସ୍ପରେ ପ୍ରାଣ ହରିବା ନିଶ୍ଚୟୀ ।
ଖୁରା ଓ ସିଙ୍ଗରେ ଦୁନ୍ଦୁଭି ଅସୁର,
ବାଳୀ ପରେ ଆକ୍ରମଇ ବାରବାର ।୬୦ ।
ମୁଷ୍ଟି, ଲାତ, ଆଣ୍ଟୁ ଶିଳା ସାହାଯ୍ୟରେ,
ବାଳୀ ଆକ୍ରମଇ ଦୁନ୍ଦୁଭି ଉପରେ ।
ମହା ବଳବାନ ବାଳୀର ପ୍ରହାର,
ଶିଥିଳ ହୋଇଲା ଦୁନ୍ଦୁଭି ଅସୁର ।୬୧ ।
କ୍ଷଣେ ନ ବିଶ୍ରାମୀ ବାଳୀ ଲଗାତର,

ପାଗଳ ପରାୟେ କରିଲା ପ୍ରହାର ।
ଶେଷରେ ଗର୍ଜନ ଯେହ୍ନେ କଳା ମେଘ,
ଧରଣୀ ଉପରେ ଦେଲେ ପିଟି ଅଘ ।୬୨ ।
ଚଢ଼ି ଆଣ୍ଠୁ ବଳେ ଛାତି ପରେ ବସି,
ମୁହଁକୁ ମାରିଲେ ମୁଥ କସି କସି ।
ଅଙ୍ଗ ପ୍ରତ୍ୟଙ୍ଗରୁ ବହିଲା ରକତ,
ଶରୀରରୁ ପ୍ରାଣ ହୋଇଲା ମୁକତ ।୬୩ ।
କ୍ରୋଧ ନୁହେଁ ଶାନ୍ତି ତଥାପି ବାଳୀର,
ଉଠାଇ ଫୋପାଡ଼େ ଦୁନ୍ଦୁଭି ଶରୀର ।
ପଡ଼ିଲା ତା ଯାଇ ଯୋଜନ ଦୂରରେ,
ମାତଙ୍ଗ ଋଷିଙ୍କ ଆଶ୍ରମ ମଧ୍ୟରେ ।୬୪ ।
ଯୋଗକୁ ମାତଙ୍ଗ ଋଷିଙ୍କ ଶରୀର,
ଅସୁର ରକତେ ହେଲା ଜରଜର ।
ରକ୍ତ କାହୁଁ ଆସି ଆଶ୍ରମେ ପଡ଼ିଲା,
ଖୋଜୁଣୁ ମହିଷ ଶବ ଦେଖାଗଲା ।୬୫ ।
ଧ୍ୟାନେ ଜାଣି ଋଷି ଏ କୃତ୍ୟ କାହାର,
ଅଭିଶାପ ଦେଲେ କୋପେ ତପୀବର ।
ଯାହାର ଏ କୃତ୍ୟ ଆସିଲେ ଏ ସ୍ଥାନେ,
ଆଶ୍ରମ ମଣ୍ଡଳେ ଅବା ଏହି ବନେ ।୬୬ ।
ମସ୍ତକ ତାହାର ଖଣ୍ଡ ଖଣ୍ଡ ହେବ,
ଶମନ ସଦନେ ତା'ର ଆତ୍ମା ଯିବ ।
ଏଣୁ ଭୟେ ବାଳୀ ଏ ସ୍ଥାନେ ନ ଆସେ,
ଋଷ୍ୟମୁକ ପର୍ବତରେ ନ ପ୍ରବେଶେ ।୬୭ ।
ସେ ସ୍ଥଳେ ପ୍ରବେଶୀ ରହିବା ସୁଖରେ,
ବାଳୀ ପ୍ରଭାବରୁ ପୂର୍ଣ୍ଣ ନିର୍ଭୟରେ ।
ହନୁମାନଙ୍କର ପରାମର୍ଶ ମାନି,
ସୁଗ୍ରୀବ ଚଳିଲେ ପାତ୍ରମିତ୍ର ଘେନି ।୬୮ ।
ବିବଶ ହୋଇଣ ବାଳୀ ମହାବୀର,
ଫେରିଗଲା ଶାପ ଡରେ ନିଜ ପୁର ।
ପ୍ରକୃତ ମିତ୍ର ଥିଲେ ନିଜ ସାଥିରେ,
ବୁଦ୍ଧି ଜଟିଳତା ଚାଲିଯାଏ ଦୂରେ ।୬୯ ।

ସତ୍ୟ ପ୍ରତି ପ୍ରୀତି ମନରେ ବଢ଼ଇ,
ମାନ ଓ ଉନ୍ନତି ଅଚିରେ ମିଳଇ ।
କାର୍ଯ୍ୟ ଆଦେଶିଲେ ଭୃତ୍ୟକୁ ଜାଣିବ,
ଦୁଃଖ କାଳେ ଧରା ପଡ଼ନ୍ତି ବାନ୍ଧବ ।୭୦ ।
ବିପତ୍ତି ସମୟେ ଚିହ୍ନିବ ମିତ୍ରକୁ,
ଧନ ନଷ୍ଟ କାଳେ ଜାଣିବ ପତ୍ନୀକୁ ।
ବ୍ୟସନେ ମିତ୍ରର ଯୁଦ୍ଧେ ଶୂରବୀର,
ବିନୟରୁ ଭୃତ୍ୟ ଦୁର୍ଭିକ୍ଷେ ଦାନୀର ।୭୧ ।
ପରୀକ୍ଷା ହୁଅଇ ବ୍ୟକ୍ତିର ଏସନ,
ସମୟ ପରଖେ ବନ୍ଧୁ ଶତ୍ରୁ ଗୁଣ ।
ଉତ୍ସବେ ବ୍ୟସନେ ରାଷ୍ଟ୍ର ବିପ୍ଲବରେ,
ଦୁର୍ଭିକ୍ଷ ସମୟେ ପୁଣି ରାଜଦ୍ୱାରେ ।୭୨ ।
ଶ୍ମଶାନ ପର୍ଯ୍ୟନ୍ତ ସାଥେ ରହେ ଯିଏ,
ପ୍ରକୃତ ବନ୍ଧୁ ସେ ସଂସାରେ ବୋଲାଏ ।
ଆଞ୍ଜନେୟ ସୁଗ୍ରୀବଙ୍କ ସଚ୍ଚା ମିତ୍ର,
ସୁଖ ଦୁଃଖ କାଳେ ସାଙ୍ଗରେ ଏକତ୍ର ।୭୩ ।
ରହି ନ ଛାଡ଼ନ୍ତି କେବେ ହେଁ ସଙ୍ଗତି,
ସତ ପରାମର୍ଶ ଧଇର୍ଯ୍ୟ ଦିଅନ୍ତି ।
ମନ୍ତ୍ରୀପ୍ରାୟ ମନ୍ତ୍ରଣା ଦ୍ୟନ୍ତି ସୁଗ୍ରୀବେ,
କ୍ଷଣେ ଛାଡ଼ି ଦୂରେ ନ ଯାଆନ୍ତି କେବେ ।୭୪ ।
ଆଶ୍ୱାସନା ହନୁମାନ ଠାରୁ ପାଇ,
ଋଷ୍ୟମୁକ ପର୍ବତେ ସୁଖେ ବସଇ ।
ଦ୍ୱାଦଶ ଛନ୍ଦ ଏହ୍ନେ ହେଲା ସଂପୂର୍ଣ୍ଣ,
ସୁରେଶ ଭଣେ ସ୍ମରି ପ୍ରଭୁ ଚରଣ ।୭୫ ।



# ତ୍ରୟୋଦଶ ଛାନ୍ଦ

ରାଗ-ସିନ୍ଧୁଡ଼ା(ରାମ ହନୁମାନ ଭେଟ, ବାଳୀ ବଧ)

ପାର୍ବତୀ ନନ୍ଦନ ଚରଣ ବନ୍ଦନ କରି ମାରୁତି ଚରିତ
ଏ ଛାନ୍ଦରେ ଭଣେ ଶୁଣି ଭକ୍ତଜନେ ହୃଦୟେ ହୋଇବେ ପ୍ରିତ ହେ
ଭକ୍ତି ରସରେ ପୂର୍ଣ୍ଣ
ହନୁମାନ ଚରିତ ଆଖ୍ୟାନ ହେ
ଶ୍ରବଣରେ ଆନନ୍ଦିତ ମନ
କଟିବ ଯେତେ ଦୂରିତ ମାନ ହେ ।୧ ।
କୌଶଲ୍ୟା ନନ୍ଦନ ପିତ୍ରାଜ୍ଞା ପାଳନ ପାଇଁ ଜାନକୀଙ୍କ ସହ
ସୁମିତ୍ରା ନନ୍ଦନ ସାଥେ ନେଇ ବନ ଚଳିଲେ ଛାଡ଼ିଣ ମୋହ ହେ
ଜନକ ଜନନୀର
ସ୍ନେହ ରାଜ୍ୟ ରାଜ୍ୟବାସୀଙ୍କର ହେ
ଅନୁଜ ଭରତ ଶତ୍ରୁଘ୍ନର
ସର୍ବୋପରି ଅଯୋଧ୍ୟା ମାଟିର ହେ ।୨ ।
ଚିତ୍ରକୂଟ ବନେ ଦଣ୍ଡକ ଅରଣ୍ୟେ ରହି ତ୍ରୟୋଦଶ ବର୍ଷ
ଋଷି  ମହାଋଷି ମନକୁ ଆକର୍ଷି ଭରିଲେ ତହିଁ ହରଷ ହେ
କରିଣ ବିଚରଣ
କଲେ ବହୁ ଅସୁର ନିଧନ ହେ
ତପସ୍ୱୀରେ ଯେ ଦିଏ କଷଣ
ମୁନିଏ ହେଲେ ବିପଦ ଶୂନ୍ୟ ହେ ।୩।
ଚତୁର୍ଦ୍ଦଶ ବର୍ଷ ରହିଲେ ହରଷେ ପଞ୍ଚବଟୀ ଅରଣ୍ୟରେ
ପର୍ଣ୍ଣ କୁଟୀରେକ ଦିଶେ ଅଲୌକିକ ବିନିର୍ମାଣି ସୁଚାରୂରେ
ରାବଣ ପ୍ରେରଣାରେ
ଆସି କାଞ୍ଚନ ମୃଗ ବେଶରେ ହେ
ଅସୁର ମାରିଚ ସେ ବନରେ
କୁଟୀର ସମ୍ମୁଖେ ଛଦ୍ମେ ଘୂରେ ହେ ।୪ ।
ଜନକ ନନ୍ଦିନୀ ସୁବର୍ଣ୍ଣ ହରିଣୀ ଦରଶନେ ମୁଗ୍ଧ ହୋଇ
ରାଘବେ ପ୍ରାର୍ଥନା କରଇ ଲଳନା ଆଣିଦିଅ ଶୀଘ୍ର ଯାଇ ହେ
ଶ୍ରୀରାମ ଭଗବାନ
ଅନୁଧାବନ କଲେ ବହନ ହେ
ହସ୍ତେ ନେଇ ଧନୁଶର ବାଣ

ଧରା ନ ଦିଏ ମାୟା ହରିଣ ହେ ।୫ ।
ଧରି ଯତି ବେଶ ରାକ୍ଷସ ଲଙ୍କେଶ ଛଳରେ ସୀତା ହରିଣ
ପୁଷ୍ପକ ଯାନରେ ରଖିଲା ଲଙ୍କାରେ ଅଶୋକ ବନେ ନେଇଣ ହେ
ବୈଦେହୀ ଅନ୍ୱେଷଣ
ଶ୍ରୀରାମ କରନ୍ତି ଘୁରି ବନ ହେ
ସାଥିରେ ଘେନି ଭ୍ରାତା ଲକ୍ଷ୍ମଣ ହେ
ବିନାଶ କରି ରକ୍ଷ ବିଭିନ୍ନ ହେ ।୬ ।
ବିରାଧ କବନ୍ଧ ଆଦି କରି ବଧ ଋଷ୍ୟମୂକ ପର୍ବତରେ
ପହଞ୍ଚିଲେ ଯେବେ ଦେଖିଲେ ସୁଗ୍ରୀବେ ଥାଇ ପର୍ବତ ଶିଖରେ ହେ
ଧନୁଷବାଣଧାରୀ
ନୀଳ ଜୀମୂତ ଶରୀରଧାରୀ ହେ
ଦର୍ଶନେ ମନ ନିଅଇ ହରି
ଆଜାନୁ ଲମ୍ବିତ ବାହୁଧାରୀ ହେ ।୭ ।
ଶିରେ ଜଟାଭାର ଦିଶଇ ସୁନ୍ଦର ଯେମନ୍ତେ ଦେବ କୁମାର
କାନ୍ଧେ ଧନୁର୍ବାଣ କ୍ଷତ୍ରୀୟ ସମାନ ଦୁଇଭାଇ ମହାବୀର ହେ
ବାଲୀ ମନ୍ତ୍ରଣା ପାଇ
ଆସିଛନ୍ତି ମୋ ନିଧନ ପାଇଁ ହେ
ଶତ୍ରୁଙ୍କୁ ତିଳେ ବିଶ୍ୱାସ ନାହିଁ
ଭାବି ସୁଗ୍ରୀବ ହୃଦ କମ୍ପଇ ହେ ।୮ ।
କେଶରୀ ନନ୍ଦନ ମୋ ବଚନ ଘେନ ଯାଅ ସେ ଦୁହିଁଙ୍କ ପାଶ
ବଦଳାଇ ବେଶ ପଚାର ଉଦ୍ଦେଶ୍ୟ ପରିଚୟ ତାଙ୍କ କିସ ହେ
ଯଦି ବାଲୀର ଚର
ମନ୍ତ୍ରୀ ସହିତ ହେବି ଅନ୍ତର ହେ
ନ ରହିବି ଋଷ୍ୟମୂକ ପର
ପ୍ରାପ୍ତ କଲେ ସଙ୍କେତ ତୁମର ହେ ।୯ ।
ପବନ କୁମାର ମହାଧନୁର୍ଦ୍ଧର ଶ୍ୟାମଳ ଶୁକଳ ଦୁଇ
ଶ୍ରୀରାମ ଲକ୍ଷ୍ମଣ ହୃଦ ପ୍ରାଣଧନ ତିଳେ ଚିହ୍ନି ନ ପାରଇ ହେ
ସ୍ଫୁରେ ନେତ୍ର ଦକ୍ଷିଣ
ଦକ୍ଷିଣ ଅଙ୍ଗେ ହୁଏ ସ୍ଫୁରଣ ହେ
ପ୍ରେମାଶ୍ରୁ ବିନ୍ଦୁ ଖେଳେ ନୟନ
ହୃଦ ଅନୁଭବେ ଆକର୍ଷଣ ହେ ।୧୦ ।

ସୁଗ୍ରୀବ ଉଦ୍ଦେଶ୍ୟ ଜାଣି ବାୟୁ ଶିଶ ଋଷ୍ୟମୂକୁ ବାହାରିଲା
ବ୍ରାହ୍ମଣର ବେଶ ମାର୍ଗରେ କପୀଶ ନିକ୍ଷୁଣ ଭାବେ ଧରିଲା ହେ
ରାମ ସୁମିତ୍ରା ସୁତ
ଅଭୁତପୂର୍ବ ସୌନ୍ଦର୍ଯ୍ୟେ ଯୁକ୍ତ ହେ
ଅଶ୍ରୁତପୂର୍ବ ବିଭା ମଣ୍ଡିତ
ଦର୍ଶନେ କପି ଦଶା ବିଚିତ୍ର ହେ ।୧୧ ।
ମସ୍ତକ ନୁଆଁଇ ନମ୍ର ଭାବ ନେଇ ପ୍ରିୟ ବଚନ ବୋଲଇ
ଆହେ ବୀରବର ଶ୍ୟାମଳ ଗଉର ସୁନ୍ଦର ପୁରୁଷ ଦୁଇ ହେ
କୁହ କିଏ ଆପଣ
ବୀର ପୁଙ୍ଗବ କ୍ଷତ୍ରୀ ସନ୍ତାନ ହେ
ଅତି କୋମଳ ତନୁ ଚରଣ
ଭ୍ରମ ଏହି ଭୟାନକ ବନ ହେ ।୧୨ ।
ବ୍ୟାଘ୍ରାଦି ସର୍ବତ୍ର ହ୍ଵନ୍ତି ଆତଯାତ ହିଂସ୍ର ପଶୁ ଏ ବନରେ
କୋମଳ ପୟର ଭୂମି ଏ କଠୋର ଭରା ଶିଳା କଣ୍ଟକରେ ହେ
ଏହି ନିର୍ଜନ ବନେ
ବିଚରଣ କର କି କାରଣେ ହେ
ତେଜ ଦେଖିଣ ଚକିତ ମନେ
ଅଲଭ୍ୟ ଦୁର୍ଲଭ ତ୍ରିଭୁବନେ ହେ ।୧୩।
ତେଜସ୍ଵୀ ଏସନ କ୍ଷତ୍ରୀୟ ସନ୍ତାନ ମର୍ତ୍ତ୍ୟଲୋକରେ ନାହାନ୍ତି
କୁହ କୃପା କରି ପୁରୁଷ ଏପରି କେଉଁ ଲୋକୁ ଆସିଛନ୍ତି ହେ
ବ୍ରହ୍ମା ବିଷ୍ଣୁ ମହେଶ
ଧରି ଆସିଅଛ ଛଦ୍ମବେଶ ହେ
ନର ନାରାୟଣ ପରି ଦିଶ
ଅବା ନିଖିଳ ସୃଷ୍ଟିର ଈଶ ହେ ।୧୪ ।
ସ୍ଵୟଂ ପରଂବ୍ରହ୍ମ ଏହି ଧରାଧାମ ଭାର ହରଣ କରଣେ
ଯୁଗଳ ରୂପରେ ଦିବ୍ୟ ଅବତାରେ ଭ୍ରମୁଛ ଘୋର ଅରଣ୍ୟେ ହେ
କୃପା କରିଣ କୁହ
ଛିଣ୍ଣୁ ମୋର ମନର ସଂଶୟ ହେ
ଦୟାବହି ଦିଅ ପରିଚୟ
କିମ୍ବା କରିଛ ଏଥେ ବିଜୟ ହେ ।୧୫ ।
ମାରୁତିର ବାଣୀ କ୍ଷୀଣ ହେବା କ୍ଷଣି ଲକ୍ଷ୍ମଣେ ଭାଷିଲେ ରାମ

ସୋଦର ଲକ୍ଷ୍ମଣ ବିଦ୍ୱାନ ବ୍ରାହ୍ମଣ ବାଣୀ ଯାଙ୍କ ମନୋରମ ହେ
ବ୍ୟାକରଣ ଶାସ୍ତ୍ରରେ
ପ୍ରବେଶ ଅଛି ଦୃଢ଼ ଭାବରେ ହେ
ଶୁଦ୍ଧତା ଅଛି ଉଚ୍ଚାରଣରେ
ପାରଙ୍ଗତ ବେଦାଦି ଶାସ୍ତ୍ରରେ ହେ ।୧୬ ।
ଶାସ୍ତ୍ରର ସମସ୍ତ ଜ୍ଞାନକୁ ପ୍ରାପତ କରିଛନ୍ତି ଏ ବିଦ୍ୱାନ
ଶବ୍ଦ ସଂସ୍କାରିତ କ୍ରମ ବି ଅଦ୍ଭୁତ ବାଧାରହିତ ଭାଷଣ ହେ
କଲ୍ୟାଣମୟୀ ବାଣୀ
ହୃଦୟାହ୍ଲାଦିତ ବାକ୍ୟ ଶୁଣି ହେ
କଣ୍ଠ ମୂର୍ଦ୍ଧା ହୃଦୟର ଧ୍ୱନି
ସ୍ପଷ୍ଟ ଉଚ୍ଚାରଣରେ ଏ ଧନୀ ହେ ।୧୭ ।
ବାଣୀ ଏ ବିଚିତ୍ର ଶୁଣି କା'ର ଚିତ୍ତ ନ ହେବ ଅବା ପ୍ରସନ୍ନ
ଉଠାଇଣ ଅସ୍ତ୍ର ନିଧନେ ପ୍ରସ୍ତୁତ ତରଳିବ ଶତ୍ରୁ ମନ ହେ
ଚିତ୍ତ ମୋ ଆନନ୍ଦିତ
ବାଣୀ ଶ୍ରବଣ କରି ଅଦ୍ଭୁତ ହେ
ଲାଗେ ପରିଚିତ ପରିଚିତ
ମନ କହେ ଉଦ୍ଦେଶ୍ୟ ମହତ ହେ ।୧୮ ।
ଅଗ୍ରଜ ଆଜ୍ଞାରେ ହରଶ ମନରେ ବୋଲନ୍ତି ସୁମିତ୍ରା ସୁତ
ଅଯୋଧ୍ୟା ରାଜନ ଅଜଙ୍କ ନନ୍ଦନ ଦଶରଥଙ୍କର ପୁତ୍ର ହେ
ଆମେ ରାମ ଲକ୍ଷ୍ମଣ
ମାନି ପିତାଙ୍କ ସତ୍ୟ ବଚନ ହେ
ଚତୁର୍ଦ୍ଦଶ ବର୍ଷ ପାଇଁ ବନ
ଆସିଥିଲୁ ହୋଇ ତିନି ଜଣ ହେ ।୧୯ ।
ପଞ୍ଚବଟୀ ବନେ ଥିଲୁ ଖୁସିମନେ ଧାତାକୁ ସହ୍ୟ ନ ହେଲା
ଜ୍ୟେଷ୍ଠ ଭ୍ରାତା ପତ୍ନୀ ମା' ଜାନକୀ ରାଣୀ କେ ରାକ୍ଷସ ହରି ନେଲା ହେ
ସେ ଭକ୍ତି ମତି ସତୀ
କାନ୍ଦୁଥିବେ ଦୁଃଖେ ଦିନ ରାତି ହେ
ଖୋଜୁଛୁ ଅରଣ୍ୟେ ସେ ଅରାତି
ଦିଅ ଏବେ ତୁମ୍ଭ ପରିଚିତି ହେ ।୨୦ ।
ଶୁଣୁଥିଲା କର୍ଣ୍ଣ ଲକ୍ଷ୍ମଣ ବଚନ ଦେଖୁଥିଲା ମନ ଅନ୍ୟ
ଜଟା ସୁଶୋଭିତ ନବୀନ ଜୀମୂତ ବଦନରେ ଥିଲା ଧ୍ୟାନ ହେ

କମନୀୟ ଶରୀର
ପ୍ରବିଷ୍ଟ ହୁଏ ଲୋମ ଲୋମରେ ହେ
ଜଗନ୍ମୋହନ ରୂପ ସୁନ୍ଦର
ନେତ୍ରୁ ବହେ ଅବାରିତ ନୀର ହେ ।୨୧ ।
ନିଜ ପ୍ରାଣପ୍ରିୟ ପ୍ରଭୁ ପରିଚୟ ପାଇ ଭକ୍ତ ହନୁମାନ
ଅଙ୍ଗ ପୁଲ୍ଲକିତ ହୃଦୟ ହର୍ଷିତ ହଜିଗଲା ବୁଦ୍ଧି ଜ୍ଞାନ ହେ
ସାଷ୍ଟାଙ୍ଗ ଦଣ୍ଡବତ
ପାଦପଦ୍ମେ କଲା ହନୁମନ୍ତ ହେ
ପ୍ରେମାଶ୍ରୁରେ ହୋଇ ବ୍ୟାକୁଳିତ
ଧୁଏ ଚରଣ ଭବାବ୍ଧିପୋତ ହେ ।୨୨ ।
ଅଞ୍ଜଳି ଆବଦ୍ଧ ବାଣୀ ଅବରୁଦ୍ଧ ବହେ ଅଶ୍ରୁ ନିରନ୍ତର
ଝଡ଼ଝଞ୍ଜା ବାତେ ଯେହ୍ନେ ଶସ୍ୟ କ୍ଷେତେ ସେପରି ତା'ର ଶରୀର ହେ
ଦଣ୍ଡାୟମାନ ହୋଇ
ଅସମର୍ଥ କାନ୍ଦେ କଇଁ କଇଁ ହେ
ହୟ ନାସା ପ୍ରାୟ ଦଶା ହୋଇ
ସ୍ୱେଦ ନୀରଦୁ ଯେହ୍ନେ ବହଇ ହେ ।୨୩ ।
ଯୋଡ଼ି ଦୁଇ କର କୌଣସି ପ୍ରକାର ବହୁ କଷ୍ଟେ ଧୈର୍ଯ୍ୟ ଧରି
ଦୟାର ଆକର ମୁଁ ସିନା ପାମର ପ୍ରଭୁଙ୍କୁ ଚିହ୍ନି ନ ପାରି ହେ
କହେ କୋହ ସମ୍ଭାଳି
ବଦ୍ଧ ଜୀବ ଗଲି ସିନା ଭଳି ହେ
କଳି ଅଳିକି ଆସିଲି କଳି
କଳିକି ଭୁଲେକି କେବେ ଅଳି ହେ ।୨୪ ।
ଜନମ ଜନ୍ମର ବନ୍ଧନ ଆମର ତୁମେ ଅଂଶୀ ମୁହିଁ ଅଂଶ
ତୁମେ ମାୟାଧର ମାୟା ମୋ ଶରୀର ମାୟା ପରେ ତୁମ ବାସ ହେ
ମୁହିଁ ମାୟା ଆସକ୍ତ
ତୁମେ ଅଟ ପରା ନିରାସକ୍ତ ହେ
ସଂସାର ଜାଲେ ମୁଁ ସିନା କ୍ଷିପ୍ତ
ମାୟା ଗୁଣ ପରା ତୁମ ହସ୍ତ ହେ ।୨୫ ।
ଆହେ ପ୍ରଭୁ ମୋର ଜୀବନ ଆଧାର କେହ୍ନେ ମୋତେ ଗଲ ଭୁଲି
ସ୍ୱାଭାବିକ ଗୁଣ ଜୀବେ ଭୁଲାପଣ ମରତେ ଆସିଲେ ଚାଲି ହେ
ସଂସାର ରୂପେ ଭଳି

ଗୋବତ୍ସା ଦୂରରେ ଗଲେ ଚଳି ହେ
ଗୋମାତା ବତ୍ସା ବିନେ ବାତୁଳୀ
କରୁଣା ବାରିଧି ହେଲ ଛଳୀ ହେ ।୨୬ ।
ଆହେ କୃପାସିନ୍ଧୁ ଦୀନଜନ ବନ୍ଧୁ ପାଦପଦ୍ମ ପରାଗରୁ
ଉଚ୍ଛଳିତ ହୋଇ କରୁଣା ବହଇ ନୀର ଯେହ୍ନେ ହିମାଦ୍ରୀରୁ ହେ
ପ୍ରଭୁ ପଣେ ଛଳର
ଶୁଖିଗଲା କି କରୁଣା ଧାର ହେ
ତୁମେ ନିଶ୍ଚଳ ପରମୋଦାର
ନିଷ୍କପଟ ହୃଦୟେ ବିହାର ହେ ।୨୭ ।
ମୁହିଁ ମୋହଗ୍ରସ୍ତ ଅଜ୍ଞାନ ଆହତ କୁଟୀଳ କପଟି ଅତି
ସେ ପାଇଁ ଆପଣ କଲେ ବିସ୍ମରଣ ଉଦ୍ଧାର ହେବି କେମିତି ହେ
ଏବେ ସୁଦୟା କର
ଶିଶୁ ଭାବି କପଟ ନକର ହେ
ମନୁ କଲ୍ମଶ ସକଳ ହର
ସବୁ ଭୁଲି କର ଆପଣାର ହେ ।୨୮ ।
ଅଶାନ୍ତ ମନରେ ଦୁଃଖି ହୃଦୟରେ ନିଜର ସ୍ଥିତି ବିଚାରି
କରୁଣ ପ୍ରାର୍ଥନା କରଣେ କରୁଣା କରୁଣୁ ଗୁଣ ସୁମରି ହେ
ହେଲେ ଆତ୍ମ ବିସ୍ମୃତ
ଦ୍ୱିଜ ବେଶ ହେଲା ଅପହୃତ ହେ
କପି ରୂପ ହେଲା ପ୍ରକାଶିତ
ପ୍ରଭୁ ଚରଣେ ହେଲା ଲୁଣ୍ଠିତ ହେ ।୨୯ ।
ଭୂମିରେ ପତିତ ହୋଇ ମୁଁ ପତିତ ଉଦ୍ଧର କହି କାନ୍ଦଇ
ଲୁହ ସରସର କୋହେ ଜରଜର ବଦନ ତା'ର ଦିଶଇ ହେ
ଧରି ଦୁଇ ଚରଣ
ଅଶ୍ରୁ ଜଳେ ଧୁଏ ହନୁମାନ ହେ
ବାସ୍ତବିକ ବାନର ରୂପେଣ
ଉଠାଇଲେ ଶ୍ରୀରାମ ତତ୍‌କ୍ଷଣ ହେ ।୩୦ ।
ଦୁଇ ବାହୁ ଧରି ଆଲିଙ୍ଗନ କରି ଲଗାଇଲେ ହୃଦୟରେ
ଭକ୍ତ ଭଗବାନ ଅଦ୍ଭୁତ ମିଳନ ସୁରେ ଦେଖନ୍ତି ଶୂନ୍ୟରେ ହେ
ଝରଇ ଝରଝର
ଦୁହିଁଙ୍କର ନୟନରୁ ନୀର ହେ

କପି ଶିରରେ ଚଳାନ୍ତି କର
ସ୍ନେହେ ଶ୍ରୀରାମ କୋଦଣ୍ଡଧର ହେ ।୩୧ ।
କରି ଉଚ୍ଚ ସ୍ୱନ ଅବୋଧ ସନ୍ତାନ କ୍ଷୁଧାରେ କଲେ ରୋଦନ
ଛାତି ପରେ ଧରି ତା'ର ଗର୍ଭଧାରୀ କଲେ ଯେହ୍ନେ ସ୍ତନ୍ୟପାନ ହେ
ଦୁହେଁ ହୁଅନ୍ତି ଶାନ୍ତ
ସେହି ପରି ଭଗବାନ ଭକ୍ତ ହେ
ରାମ ବକ୍ଷେ ଜଡ଼ି ହନୁମନ୍ତ
ଯୁଗଳ ରୂପ ଆକର୍ଷେ ଚିତ୍ତ ହେ ।୩୨ ।
ଜିତି ନିଜ ପ୍ରାଣ କରୁଣାନିଧାନ ଶ୍ରୀରାମ ପ୍ରୀତି ବିଶ୍ୱାସ
ସାନୁଜ ଲକ୍ଷ୍ମଣ ପଦେ ହନୁମାନ ପ୍ରଣାମ କଲେ ସହର୍ଷ ହେ
ମାତା ସୁମିତ୍ରା ସୁତ
ଉଠାଇଲେ ଧରି ଦୁଇ ହସ୍ତ ହେ
ଇକ୍ଷରେ ଲଗାଇଲେ ତୁରନ୍ତ
ସ୍ଥାବର ଜଙ୍ଗମେ ହେଲେ ପ୍ରିତ ହେ ।୩୩ ।
ଜନନୀ ଧରିତ୍ରୀ ଆନନ୍ଦିତ ଅତି ପୁଷ୍ପେ ହସିଲେ ଖୁସିରେ
ମିଳନ ସଂଗୀତ ହୋଇ ହରଷିତ ଗାଇଲେ ଖଗେ ସ୍ୱରରେ ହେ
ପ୍ରଜାପତି ନାଚଇ
ପୀପଳ ଦଳ ତାଳି ବଜାଇ ହେ
ଗୁଳ୍ମେ ଝୁମନ୍ତି ଶିର ହଲାଇ
ସମୀରଣ ବାଏ ତାଳ ଦେଇ ହେ ।୩୪ ।
ନୀତିରେ ନିପୁଣ ପବନ ନନ୍ଦନ ନଳିନୀ ନୟନେ ଚାହିଁ
ନବ ଘନଶ୍ୟାମ ରଘୁପତି ରାମ ସମ୍ମୁଖେ ଧିରେ ଭଣଇ ହେ
ଅତି ନମ୍ର ମୁଦ୍ରାରେ
ଜ୍ୟେଷ୍ଠ ଭ୍ରାତା ବାଳୀର ଭୟରେ ହେ
ସୁଗ୍ରୀ ବସେ ଋଷ୍ୟମୁକ ପରେ
ଅତିଷ୍ଠ ହୋଇ ତା ଶତ୍ରୁତାରେ ହେ ।୩୫ ।
ମୁଖକୁ ପତ୍ନୀର କନିଷ୍ଠ ଭ୍ରାତାର ଜ୍ୟେଷ୍ଠ ନ ଦେଖିବା ବିଧି
ଏ ଅଧମ ବାଳୀ ହରିଛି ସେ ବାଳୀ କନିଷ୍ଠ ଭ୍ରାତାର ନିଧି ହେ
ପ୍ରାଣ ହରଣେ ତା'ର
ଦିବା ନିଶି ରହିଛଇ ତୟାର ହେ
ଚିନ୍ତେ କାଟିବ ସୁଗ୍ରୀବ ଶିର

ତିଳେ ହେଁ ଦୋଷ ନାହିଁ ଏହାର ହେ ।୩୬ ।
ଦେଶୁ ବହିଷ୍କୃତ ସ୍ତ୍ରୀ ସୁଖୁ ବଞ୍ଚିତ ବଞ୍ଚଇ ଦୁଃଖି ଜୀବନ
ବିପତ୍ତିର ଦିନ ଭ୍ରମଇ କାନନ ଧରି ସାଥେ ମନ୍ତ୍ରୀଗଣ ହେ
ସ୍ଥିତି ଯେହ୍ନେ ତୁମର
ତେମନ୍ତ ଅଟଇ ସୁଗ୍ରୀବର ହେ
ଦଶା ସମାନ ବେନି ଜନର
ସହଯୋଗ ହେ ଲୋଡ଼ା ତାହାର ହେ ।୩୭ ।
ସୁଗ୍ରୀବରେ ମୈତ୍ରୀ ଖୁସି ହୋଇ ଅତି କଲେ ସେ ହେବେ ପ୍ରସନ୍ନ
ରାଜ୍ୟ ସହ ପତ୍ନୀ ପ୍ରାପ୍ତ କଲେ ପୁଣି ଜାନକୀଙ୍କ ଅନ୍ୱେଷଣ ହେ
କରଣେ ଯୋଗଦାନ
ନିଶ୍ଚୟ କରିବେ ରଖି ମାନ ହେ
ପ୍ରଭୁ ଘେନ ମୋର ନିବେଦନ
କର ସୁଗ୍ରୀବେ ମୈତ୍ରୀ ବନ୍ଧନ ହେ ।୩୮ ।
ହନୁମାନ ବାଣୀ ଶୁଣି ରଘୁମଣି ସଂକେତ କଲେ ସ୍ୱୀକୃତ
କନ୍ଧେ ଦୁଇଭାଇ ଆନନ୍ଦେ ବସାଇ ଋଷ୍ୟମୂକେ ଉପସ୍ଥିତ ହେ
ସର୍ବେ ଦେଖି ସୁଗ୍ରୀବ
ମନେ ବହିଲେ ଆନନ୍ଦ ଭାବ ହେ
ପଦ ବନ୍ଦିଲେ ବହିଣ ଭାବ
ସତ୍କାରରେ ନ ରଖି ଅଭାବ ହେ ।୩୯ ।
ରାମଙ୍କ ସହିତେ ଋକ୍ଷରାଜ ସୁତେ ପରିଚୟ କରାଇଲେ
ଅଗ୍ନି ସମ୍ମୁଖରେ ଦୁହିଁଙ୍କ ମଧ୍ୟରେ ମିତ୍ରତା ସ୍ଥାପନ କଲେ ହେ
ଦୁହିଙ୍କର ମିଳନ
ଦେଖି ଖୁସି ଅଞ୍ଜନା ନନ୍ଦନ ହେ
ସର୍ବ ଜନ ହୋଇଲେ ପ୍ରସନ୍ନ
ଦେବେ ବର୍ଷିଲେ ନଭୁ ସୁମନ ହେ ।୪୦ ।
ସହର୍ଷେ ସୁଗ୍ରୀବ ସାଗ୍ରହେ ଅପୂର୍ବ ତାଳପତ୍ର ଆସନରେ
ଶ୍ରୀରାମେ ବସାଇ ପାଖରେ ବସଇ ଅତିଶୟ ଆନନ୍ଦରେ ହେ
ଆଞ୍ଜନେୟ ମାରୁତି
ଚନ୍ଦନ ତରୁ ଡାଳେ ବିଜନ୍ତି ହେ
ପାଶେ ଲକ୍ଷ୍ମଣ ଭ୍ରାତା ଶୋଭନ୍ତି
ସୁଗ୍ରୀବ ହର୍ଷୋତ୍ଫୁଲ୍ଲ ଦିଶନ୍ତି ହେ ।୪୧ ।

ଅତ୍ୟନ୍ତ ମଧୁର ରକ୍ଷର କୁମର ଶ୍ରୀରାମେ କହଇ ଗୀର
ହେ ରଘୁନନ୍ଦନ କିଷ୍କିନ୍ଧ୍ୟା ରାଜନ ବାଳୀ ଜ୍ୟେଷ୍ଠ ଭ୍ରାତା ମୋର ହେ
ପ୍ରାଣପ୍ରିୟା ମୋହରି
ବଳପୂର୍ବକ ନେଇଛି ହରି ହେ
ରାଜ୍ୟୁ ବାହାର ଦେଇଛି କରି
ପାଲଟିଛି ମୋ ପ୍ରାଣ ଅଇରୀ ହେ ।୪୨ ।
ଉଦ୍ଭ୍ରାନ୍ତ ମାନସରେ ତ୍ରାସ ଭୟରେ ପର୍ବତେ କରିଛି ବାସ
ଜ୍ୟେଷ୍ଠଭ୍ରାତା ହୋଇ ପତ୍ନୀକୁ ମୋ ନେଇ ଅନାଚାରେ କରେ ଆଶ ହେ
ପ୍ରଭୁ ହେ ପୀତବାସ
ଦୟାକରି ପୂରାଅ ମୋ ଆଶ ହେ
ତାକୁ କୋଦଣ୍ଡଧାରୀ ହେ ନାଶ
ଅଭୟ ପ୍ରଦାନ ରଘୁଈଶ ହେ ।୪୩ ।
ରଘୁକୁଳ ରୀତି ରହିଛି ଏ କ୍ଷିତି ଦେଇ ଦେବେ ପଛେ ପ୍ରାଣ
ରବି କାଳେ ଉଇଁ ପଶ୍ଚିମେ ପାରଇ ଦେଲେ ରଖିବେ ବଚନ ହେ
ଶ୍ରୀରାମ ଭଗବାନ
ମିତ୍ର ସୁଗ୍ରୀବେ ଦେଲେ ବଚନ ହେ
ବାଳୀ ନାଶିବି ପ୍ରହାରି ବାଣ
କିଷ୍କିନ୍ଧ୍ୟାରେ କରିବି ରାଜନ ହେ ।୪୪ ।
ନିଖିଳ ଭୁବନ ପାବନ କାରଣ ଶ୍ରୀରାମ କୋଦଣ୍ଡଧାରୀ
ବାଳୀର ପରାଣ ପେଶୀ ଏକ ବାଣ ହରିଲେ ସୁଦୟା କରି ହେ
ରାମ ତ୍ରୈଲୋକ୍ୟତ୍ରାତା
ସର୍ବ ଜୀବେ କର୍ମଫଳ ଦାତା ହେ
ଜୀବ ପାପଚୟର ହରତା
ସସାଗର ପୃଥ୍ୱୀର ଭରତା ହେ ।୪୫ ।
ଭର୍ତ୍ତା ମୁଖୁ ବାର୍ତ୍ତା ଅଙ୍ଗଦର ମାତା ଶୁଣି ଆସିଲେ ବହନ
ପତିର ଶରୀର ପରେ ପିଟି ଶିର କଲେ କରୁଣ କ୍ରନ୍ଦନ ହେ
ପ୍ରବୀଣ ହନୁମାନ
ତା'ରେ ବୋଲନ୍ତି ପରମ ଜ୍ଞାନ ହେ
ମାତେ ଊଣା କରନାହିଁ ମନ
ବଞ୍ଚି ଚାହିଁ ଅଙ୍ଗଦ ବଦନ ହେ ।୪୬ ।
ଏ ମାୟା ସଂସାର କେ ନୁହେଁ କାହାର ମିଥ୍ୟା ଏ ମର ଶରୀର

ପଥେ ବହୁ ସାଥି ମିଳିଥାନ୍ତି ପଥି ପଥ ଯେତିକି ଯାହାର ହେ
ପଥ ଯା'ର ସରଇ
ସିଏ ଛାଡ଼ି ସେଇଠୁ ଚଳଇ ହେ
ଅପେକ୍ଷା କେ କା'ର ନ କରଇ
ପଥିକ ସାଥି ପଥେ ବୋଲାଇ ହେ ।୪୭ ।
ହାଟର ପାଳିରେ ହାଟୁଆ ସେଠାରେ ବହୁ ଗ୍ରାମୁ ମେଳି ହୁଅନ୍ତି
ଚିହ୍ନା ପରିଚୟ ଭାବ ବିନିମୟ ଆତ୍ମୀୟତାରେ କରନ୍ତି ହେ
ହାଟ ସରିବା ପରେ
ଯିଏ ଯାଆନ୍ତି ଯେଝା ଗ୍ରାମରେ ହେ
କେ କାହାକୁ ତିଳେ ନ ସୁମରେ
ହାଟୁଆ ଆମେ ସର୍ବେ ମର୍ତ୍ତରେ ହେ ।୪୮ ।
ମର୍ତ୍ତ୍ୟଭୂମି ଇଏ ପାନ୍ଥଶାଳାଟିଏ କେତେ ଆସନ୍ତି ରୁହନ୍ତି
ଗୋଟିଏ ରାତିର ଗ୍ରାହାକ ତାହାର ସକାଳରେ ଛାଡ଼ି ଯାନ୍ତି ହେ
କେହି ନୁହେଁ ନିଜର
କାର୍ଯ୍ୟ ସରିଲେ ସରବେ ପର ହେ
ଛାଡ଼ି ଯାଆନ୍ତି ଯିଏ ଯାହାର
ପଥି ପୁଛେନା ହାଲ୍ ତାହାର ହେ ।୪୯ ।
କର୍ମର ଅଧିନ ଏ ମର୍ତ୍ତ୍ୟ ଭୁବନ ଭଲମନ୍ଦ ଜୀବ କରେ
ଭଲ ପାଇଁ ଶୁଭ ମନ୍ଦକୁ ଅଶୁଭ ଫଳ କର୍ମ ଅନୁସାରେ ହେ
କର୍ମ ଜୀବେ ଦିଅଇ
କର୍ମାନୁସାରେ ଜୀବ ଭୋଗଇ ହେ
କର୍ମଫଳ ନାଶ ନ ହୁଅଇ
ଭୋଗେ କେବଳ ହ୍ରାସ ପାଅଇ ହେ ।୫୦ ।
କର୍ମ ଦିଏ ଦୁଃଖ କର୍ମ ଦିଏ ସୁଖ କର୍ମଟି ଫଳ ନିଅନ୍ତା
ବିଶ୍ୱବ୍ରହ୍ମାଣ୍ଡରେ ସବୁରି ଉପରେ କର୍ମ ଅଟେ ବଳବନ୍ତା ହେ
କର୍ମ ଲୋକୁ ଲୋକରେ
ଜୀବେ ଭ୍ରମାଏ ତା ପ୍ରଭାବରେ ହେ
ଭୁତେ ଚୌରାଶି କୋଟି ଯୋନିରେ
ଜନ୍ମିବାକୁ ଜୀବେ ବାଧ୍ୟ କରେ ହେ ।୫୧ ।
ସ୍ୱୟଂ ଦୀନ ହୋଇ ଅନ୍ୟ ଦୀନ ପାଇଁ କିସ ଲାଭ ରୋଦନରେ
ଭବ ସାଗରରେ ବୁଡ଼ିବା ନାବରେ ଜଣେ ଅନ୍ୟ ଜଣକରେ ହେ

କେହ୍ନେ କରିବ ଦୟା
ଭ୍ରମେ ନ ପଡ଼ୁ ଏ ଅଟେ ମାୟା ହେ
ଭ୍ରମ ନାହିଁ ହୋଇ କରି ବାୟା
ପାଣି ଫୋଟକା ଏ ଆମ କାୟା ହେ ।୫୨ ।
ହେ ଅଙ୍ଗଦ ମାତ୍ତା ବ୍ରହ୍ମଜ୍ଞାନ ବେତ୍ତା ପ୍ରାଣୀଙ୍କ ଜନ୍ମ ମରଣ
କାହା ହାତେ ନାହିଁ ନିୟନ୍ତ୍ରଣେ କେହି ସମର୍ଥ ପୁହଁଇ ଜାଣ ହେ
ଶୋକକୁ ପରିହରି
ପ୍ରଭୁ ପଦରଜେ ଅନୁସରି ହେ
ଶୁଭ କର୍ମେ ମନ ଲିପ୍ତ କରି
ସଂସାରେ ବଞ୍ଚିବା ଜୀବ ଧରି ହେ ।୫୩ ।
ତୁମ୍ଭ ପ୍ରିୟପୁତ୍ର ଅଙ୍ଗଦ ଜୀବିତ ସେ ତୁମ ଅବଲମ୍ବନ
ତାହାର ଉନ୍ନତି ଭବିଷ୍ୟତ ଚିନ୍ତି ଶାନ୍ତ କର ନିଜ ମନ ହେ
ଯୁବରାଜ ଅଟଇ
ଯୋଗ୍ୟ କର ତା'ରେ ଶିକ୍ଷା ଦେଇ ହେ
ଉଚିତ ସଂସ୍କାର ଦିଅ ନେଇ
ଶୋକ କ୍ଷତ୍ରୀୟଙ୍କୁ ନ ଶୋଭଇ ହେ ।୫୪ ।
ଅନ୍ତ୍ୟେଷ୍ଟି ସଂସ୍କାର କରିଣ ବାଳୀର କିଷ୍କିନ୍ଧ୍ୟା ସିଂହାସନରେ
କପିରାଜ ଭାବେ ବନର ସୁଗ୍ରୀବେ ବସାଇଲେ ସବିଧିରେ ହେ
ଯୁବରାଜ ପଦରେ
ଅଧିଷ୍ଠିତ କଲେ ଅଙ୍ଗଦରେ ହେ
ତାରା ରୁମା ସପତ୍ନୀ ରୂପରେ
ଆନନ୍ଦ ହିଲ୍ଲୋଳେ କିଷ୍କିନ୍ଧ୍ୟାରେ ହେ ।୫୫ ।
ପିତା ସତ୍ୟ ମାନି ପ୍ରଭୁ ରଘୁମଣି ନଗର ମଧ୍ୟେ ନ ଯାଇ
ପ୍ରସ୍ରବଣଗିରି ପରେ କୁଟି କରି ଗଲେ ଚତୁର୍ମାସ୍ୟା ପାଇଁ ହେ
ମାରୁତି ସୁଗ୍ରୀବର
ରାମାଦେଶେ ରହିଲେ ପାଶର ହେ
ସୁରେଶ ଭଣିଲା ଛାନ୍ଦ ତେର
ପ୍ରଣାମି ଆଞ୍ଜନେୟ ପୟର ହେ ।୫୬ ।



# ଚତୁର୍ଦ୍ଦଶ ଛାନ୍ଦ

ରାଗ- କୁମ୍ଭ କାମୋଦି(ସୁଗ୍ରୀବ ଉପରେ ଲକ୍ଷ୍ମଣଙ୍କ ରୋଷ)

ଶୁଣ ସୁଜନ ଜନ, ଦେଇଣ ମନକର୍ଣ୍ଣ, ହନୁମାନ ଚରିତାମୃତ,
ପ୍ରାଣପ୍ରିୟାର ଚିନ୍ତା, ଜନକାତ୍ମଜା ସୀତା, କରି ପ୍ରସ୍ରବଣ ପର୍ବତ ରେ,
ପ୍ରଭୁ ରାମ,
ବିତାନ୍ତି ସାରା ବର୍ଷାଦିନ,
ସୁଗ୍ରୀବ ରାଜ୍ୟ ପତ୍ନୀ ଧନ,
ତାରା ରୁମା ସହିତ, ହୋଇଣ ପ୍ରମୁଦିତ, ନିର୍ଭୟେ କରଇ ଶାସନ ସେ ।୧।
ତନ୍ମୟ ହୋଇ ସୁଖେ, ଭୁଲିଲା ପୂର୍ବ ଦୁଃଖେ, ହିତୈଷୀ ହେଲେ ବିସ୍ମରଣ,
ପରମମିତ୍ର ମୈତ୍ରୀ, ମିତ୍ରର ମିତ୍ରପ୍ରୀତି, ଅନୁଗ୍ରହ ନ ଆସେ ମନ ରେ,
ସ୍ୱଦାୟିତ୍ୱ,
ପାସୋରେ ନାହିଁ ସେଥେ ଧ୍ୟାନ,
ସମ୍ପଦେ ହେଲା ମୋହାଛନ୍ନ,
ଭୁଲିଲା କେ କର୍ତ୍ତବ୍ୟ, ପୁଣି କେ ଅକର୍ତ୍ତବ୍ୟ, ହରାଇ ଯଥାଯଥ ଜ୍ଞାନ ସେ ।୨।
ନିକୃଷ୍ଟ ମିତ୍ରଙ୍କର, ଅଟଇ ଏ ବେଭାର, କୁକ୍କୁଟ ପରାୟ ସ୍ୱଭାବ,
ଦୁଃଖରେ ରଖରଖ, ଲୋଡେନା ଥିଲେ ସୁଖ, କୃତଜ୍ଞତା ତାଠି ଅଭାବ ସେ,
ଅକୃତଜ୍ଞ,
ଭୁଲଇ ଯେତେ ଉପକାର,
ସ୍ୱାର୍ଥିର ଅଟେ ଏ ବିଚାର,
ନିଜ କଥା ଭାବଇ, ସମ୍ପଦରେ ଭୁଲଇ, ବିପଦେ ଛାଡେନା ପୟର ସେ ।୩।
ଆଶାୟୀ ପାଇବାରେ, ପଦ ଲେହନ କରେ, ପ୍ରାପ୍ତି ହୋଇଲେ ଯାଏ ଛାଡି,
ପ୍ରାପ୍ତି ଆଶା ନଷ୍ଟରେ, ଚଢ଼େ ଶିର ଉପରେ, କୃତଘ୍ନ ଆଘାତଇ ବଢି ଯେ,
ଆଶା ଉର୍ଦ୍ଧେ,
ଚରିତ୍ର ତାର କିମାକାର,
କୁଟିଳ ନୀଚ ପ୍ରକୃତିର,
ବଳ ପ୍ରୟୋଗ କଲେ, ଚେତନା ତାର ଭଲେ, ଫେରଇ ଖାଇଲେ ଠୋକର ଯେ ।୪।
ପାଇ ଇନ୍ଦ୍ରିୟ ସୁଖ, ପ୍ରଭୁ ପଦ୍ମ ବିମୁଖ, ସୁଗ୍ରୀବ କ୍ଷଣିକ ଆବେଶେ,
ମରିଚିକା ପଛରେ, ଧାଅଁଇ ଖରତରେ, ଭୁଲି ନିଜର ପ୍ରାଣଈଶେ ରେ,
ମୂଢ଼ମତି,
ଅଜ୍ଞାନମାନଙ୍କ ଏ ଗତି,
ପଙ୍କ ମଧରେ ପାନ୍ତି ଶାନ୍ତି,

ଦର୍ଶନେ ସ୍ୱଚ୍ଛ ନୀର, ଗମନ୍ତି ତାଠୁ ଦୂର, ଆପଣାଙ୍କୁ ଚତୁର ଚିନ୍ତି ସେ ।୫।
ସଚୀବ ହନୁମାନ, ପବନର ନନ୍ଦନ, ଜାଣଇ ଶାସ୍ତ୍ରର ସିଦ୍ଧାନ୍ତ,
କେଉଁ କାର୍ଯ୍ୟ କର୍ତ୍ତବ୍ୟ, କିସ ବା ଅକର୍ତ୍ତବ୍ୟ, ଜ୍ଞାନର ଶକ୍ତି ସେ ସମସ୍ତ ରେ,
ସାବଧାନ,
ପଟୁ ବାର୍ତ୍ତାଳାପ କଳାରେ,
ସଜାଗ ସବୁ ସମୟରେ,
ପରମ ବୁଦ୍ଧିମାନ, ଶ୍ରୀରାମଙ୍କର ଧ୍ୟାନ, ରଖିଥାନ୍ତି ପ୍ରତିକ୍ଷଣରେ ସେ ।୬।
ଜଗଦମ୍ବା ମା ସୀତା, ଲଗାଇବାକୁ ପତା, ଆଞ୍ଜନେୟ ସଦା ଆତୁର,
ସଫା ହେଲା ଆକାଶ, ବରଷାକାଳ ଶେଷ, ନଦୀରେ ନିରିମଳ ନୀର ସେ,
ଚତୁର୍ମାସ୍ୟା,
ସରିବ ସରିବ ହୋଇଲା,
ମାର୍ଗେ ଗମିବା ଯୋଗ୍ୟ ହେଲା,
ଦେଖିଲେ ହନୁମାନ, ସୁଗ୍ରୀବ ରାଜା ମନ, ଭୋଗରୁ ବିରତ ନୋହିଲା ରେ ।୭।
ପ୍ରୟୋଜନ ନିଜର, ହେଲାପରେ ସାକାର, ଧର୍ମାର୍ଥୀ ହୋଇ ଉଦାସୀନ,
ଅଭିଳଷିତ ଦ୍ରବ୍ୟ, ପ୍ରାପ୍ତି ପରେ ସୁଗ୍ରୀବ, ସ୍ୱେଚ୍ଛାଚାରେ ହେଲା ନିମଗ୍ନ ସେ,
ହନୁମାନ,
ରାଜାର ସମୀପକୁ ଯାଇ,
ସତ୍ୟପ୍ରିୟ ବଚନ କହି,
ହିତ ପ୍ରଦାୟୀ ଯାହା, ସୁଧିରେ କହେ ତାହା, ସଂଯମ ବନ୍ଧୁ ତାକୁ ଧ୍ୟାୟୀ ଯେ ।୮।
ଋକ୍ଷ ରାଜର ପୁତ୍ର, ରାଜ୍ୟ ଓ ଯଶ ପ୍ରାପ୍ତ, କରଣେ  ସକ୍ଷମ ହୋଇଲ,
କୁଳ ପରମ୍ପରାରେ, ପ୍ରାପତ ଶ୍ରୀ ଲକ୍ଷ୍ମୀରେ, ବୃଦ୍ଧି ସୌଭାଗ୍ୟ କରାଇଲ ହେ,
ବାନରେଶ,
ଭୁଲିଲ କେହ୍ନେ ମିତ୍ର କାର୍ଯ୍ୟ,
ବିସ୍ମରିଲ ମିତ୍ର ଔଦାର୍ଯ୍ୟ,
ସମୟ ଥାଉଥାଉ, ପୂର୍ଣ୍ଣ କରିବା ହେଉ, ମିତ୍ର ଆଶାକୁ କରି ବର୍ଯ୍ୟ ହେ ।୯।
ସଦାଚାର ସମ୍ପନ୍ନ, ରୂମାନାଥ ଆପଣ, ସନାତନ ମାର୍ଗରେ ସ୍ଥିତ,
ମିତ୍ରକାର୍ଯ୍ୟ ସଫଳ, କରିବାର୍ଥେ ସଅଳ, ଆରମ୍ଭ କାର୍ଯ୍ୟ ଯଥୋଚିତ ହେ,
କପିସାଇଁ,
ମିତ୍ର ପାଶେ ପ୍ରତିଜ୍ଞା କରି,
କେହ୍ନେ ବା ପାରିବ ପାଶୋରି,
କାର୍ଯ୍ୟ କରିବା କ୍ଷଣ, ଦ୍ୱାରେ ଦଣ୍ଡାୟମାନ, ଡାକେ ଇଶାରେ ହାତ ଠାରି ସେ ।୧୦।

ଭଗବାନ ଶ୍ରୀରାମ, ସୁହୃଦ୍ ସେ ପରମ, ସମୟ ଯାଉଅଛି ବହି,
ବିଦେହର କୁମାରୀ, ସୀତାଙ୍କୁ ଖୋଜିକରି, ଆଣିବା କାଳର ଏ ଚାହିଁ ହେ,
ତାରାକାନ୍ତ,
ରାମ ପରମ ବୁଦ୍ଧିମାନ,
ରଖନ୍ତି ସମୟର ଜ୍ଞାନ,
କାର୍ଯ୍ୟ ସିଦ୍ଧି ସମୟ, ହେଲେ ମଧ ବିଜୟ, କୁଣ୍ଠିତ କରଣେ କଥନ ହେ ।୧୧।
ପ୍ରକାଶିବା ପୂର୍ବରୁ, ଯତ୍ନ ଆମ ପକ୍ଷରୁ, ଯଥାଯଥ ଯଦି କରିବା,
ସମୟ ଅତିକ୍ରାନ୍ତ, ହୋଇନାହିଁ ଅନ୍ତତଃ, ପ୍ରମାଣିତ କରିପାରିବା ହେ,
କରାଇବେ,
ଯଦି ସେ ଆମ୍ଭଙ୍କୁ ସ୍ମରଣ,
ବୁଝିବେ ସର୍ବ ଭୁତଗଣ,
ସମୟ ଅତିକ୍ରାନ୍ତ, ହୋଇଣ ଅନ୍ୟ ହସ୍ତ, ଗତ ବୋଲି ହେବ ପ୍ରମାଣ ହେ ।୧୨।
ଉତ୍ତମ ମିତ୍ରଗୁଣ, ମିତ୍ରର ଜାଣି ମନ, କରଇ ସିଏ କର୍ମମାନ,
ଦୁଃଖ ସୁଖ କାଳରେ, ଠିଆ ହୁଏ ପାଶରେ, ନ ରଖି ପ୍ରତ୍ୟାଶାରେ ମନ ରେ,
ଯେଉଁ ମିତ୍ର,
ମିତ୍ରଠୁଁ ହୋଇ ଉପକୃତ,
ଭୁଲଇ ଅକୃତଜ୍ଞ ସେତ,
କୃତଘ୍ନ ମିତ୍ର ଯିଏ, ନରକେ ସ୍ଥାନ ପାଏ, ହୁଅଇ ଯେବେ ମୃତ୍ୟୁ ପ୍ରାପ୍ତ ସେ ।୧୩।
ପରାକ୍ରମୀ ଆପଣ, ଅତୁଳ ବଳବାନ, ବାନର ଋକ୍ଷଗଣ ସ୍ୱାମୀ,
ଦଶରଥ ନନ୍ଦନ, ପ୍ରିୟ କାର୍ଯ୍ୟ ସମ୍ପନ୍ନ, କରଣେ ମାନସକୁ ରମି,
କି କାରଣେ,
ବାନରେ ନ ଦିଅ ଆଦେଶ,
ବିଳମ୍ବ କର ଅର୍ଥେ କିସ,
ଶ୍ରୀରଘୁନାଥ ରାମ, କରଣେ ତୁମ କାମ, କଲେ ନ ରଖି ପ୍ରାଣ ଆଶ ହେ ।୧୪।
ଆପଣଙ୍କର ପ୍ରିୟ, କାର୍ଯ୍ୟେ ଦେଲେ ବିଜୟ, ସ୍ୱାର୍ଥ ନ ଦେଖି ମିତ୍ର ପାଇଁ,
ତାଙ୍କ ପ୍ରିୟ ପତ୍ନୀକି, ବଇଦେହୀ ଜାନକୀ, ଠାବ କାର୍ଯ୍ୟ ଆମ୍ଭେ ଶୋଭଇ ହେ,
ଭୂତଳରେ,
ଅସୁର ଦେବତା ଦାନବ,
ମରୁଦ୍‌ଗଣ ଯକ୍ଷ ଗନ୍ଧର୍ବ,
ଥରନ୍ତି ଭୟେ ଯାର, ଅବସ୍ଥା ଦୈତ୍ୟଙ୍କର, ଚିନ୍ତ କିସ ଅବା ହୋଇବ ସେ ।୧୫।
ଶକ୍ତିଶାଳୀ ଏପରି, ପରମ ଉପକାରୀ, ବନ୍ଧୁର କାର୍ଯ୍ୟ ଆକାଂକ୍ଷିତ,

ପୂର୍ଣ୍ଣ ଶକ୍ତି ଲଗାଇ, କର୍ତ୍ତବ୍ୟ ଯେ ଯୋଗାଇ, ବନ୍ଧୁତ୍ୱର ଅଭିଳଷିତ ରେ,
କିଷ୍କିନ୍ଧେଶ,
ମନକୁ କର ନିଜ ବଶ,
ରାମ କାର୍ଯ୍ୟେ ମନ ନିବେଶ,
ସ୍ଥିର ମାନସ ହୋଇ, ଦୂତ ପଠାଇ ରାଇ, ଋକ୍ଷ ବାନରରେ ଆଦେଶ ହେ ।୧୬।
ସତ୍ତ୍ୱଗଣ ସଂପନ୍ନ, ଦିନମଣିନନ୍ଦନ, ଭୟଗ୍ରସ୍ତ ହୋଇଲେ ମନ,
ମିତ୍ର କାର୍ଯ୍ୟରେ ହେଳା, ଭାବେ ବୁଡିଲା ଭେଳା, ଚିନ୍ତା ମୋହ କରିଲା ଭଗ୍ନ ରେ,
ପରାମର୍ଶ,
ସର୍ବଦା କରନ୍ତି ଆଦର,
ସମୀରଣ କୁମାରଙ୍କର,
ସତ୍‌ପ୍ରେରଣା ଶୁଣି, ହୃଷ୍ଟ ବାନରମଣି, ପ୍ରୀତି ପୂର୍ବକ କର୍ତ୍ତବ୍ୟର ହେ ।୧୭।
ନୀଳ ବାନର ବୀରେ, ହକାରିଣ ପାଶରେ, ଆଦେଶ କରିଲେ ପ୍ରଦାନ,
ଏକ ପକ୍ଷ ମଧ୍ୟରେ, ଯେତେ ଉଦ୍ୟୋଗୀ ବୀରେ, ଯୁଥପତି ଓ ଗତିମାନ ଯେ,
କିଷ୍କିନ୍ଧ୍ୟାର,
ସମୀପେ କର ଉପସ୍ଥିତ,
ସଇନିକ ବୀର ସମସ୍ତ,
ବିଳମ୍ବ ଯେ କରିବ, ଅବିଳମ୍ବେ ମରିବ, ନିର୍ଣ୍ଣୟ ମୋର ସୁନିଶ୍ଚିତ ହେ ।୧୮।
ଏଣେ ଦେଖ ବିଦୁଷେ, ପ୍ରଚଣ୍ଡ ରୌଦ୍ର ଶେଷେ, ପ୍ରସ୍ରବଣ ପର୍ବତେ ରାମ,
ଆକାଶେ ନବଘନ, ଦେଖାଏ ରୂପ ଭିନ୍ନ, ସମୀର ବହେ ଅବିରାମ ଯେ,
ବର୍ଷାକାଳ,
ସୁଶ୍ରାବ୍ୟ ଘନଙ୍କ ଗର୍ଜନ,
ଘନେ ବର୍ଷନ୍ତି ଘନଘନ,
ଭେକେ ଭରା ଜଳରେ, ବେଦ ଗାଅନ୍ତି ସ୍ୱରେ, କଣ୍ଠେ ବାଦ୍ୟ ଯନ୍ତ୍ରର ତାନ ଯେ ।୧୯।
ବାଦ୍ୟ ଯନ୍ତ୍ର ବଜାଇ, ଯେହ୍ନେ ଘନ ମେଘ ଆସଇ, ବିବାହ ଶୋଭା ଯାତ୍ରା ନେଇ,
ଘନଘନ ବିଜୁଳି, ଜ୍ୟୋତି ସମ୍ଭାରୁ ବଳୀ, ଭୂମି ସହ ବିବାହ ପାଇଁ ହେ,
ନାଚେ କେକୀ,
ପୁଚ୍ଛ ବିସ୍ତାର କରି ତାର,
ଝିଙ୍କାରୀ ଝଙ୍କାରନ୍ତି ସ୍ୱର,
ରିମଝିମ ବରଷା, ଜଗାଏ ମନେ ଆଶା, କୃଷକ କୁଳର ମନର ଯେ ।୨୦।
ମାଟି ମା ପୁଷ୍ପବତୀ, ଦିଶେ ସାଗୁଆ ଅତି, ଜଳସ୍ଥଳ ଜଳେ ପୂରଇ,
ସାଧବ ବୋହୂ ନାଲି, ପିନ୍ଧିଣ ପାଟ ଚାଲି, ରସିକ ମନ ଆକର୍ଷଇ ରେ,

ଜଳେ ମୀନ,
ବଂଶ ବଢଇ ଅନୁକ୍ଷଣ,
ବଢନ୍ତି ଜଳ ଜୀବମାନ,
ସରିତେ ସଲିଳରେ, ଫୁଲନ୍ତି ହରଷରେ, ଗର୍ଭିଣୀ ଉଦର ଯେସନ ଯେ ।୨୧।
ଭାରି ବର୍ଷା କାରଣେ, ଜମିର ହୁଡା ରଣେ, ଭାଙ୍ଗି ଜଳ ବହଇ ହୁତେ,
ସ୍ୱତନ୍ତ୍ର ଯେହ୍ନେ ନାରୀ, ବିଗଡ଼ନ୍ତି ଯେପରି, ଅବସ୍ଥ ତେହ୍ନେ ସର୍ବ କ୍ଷେତେ ରେ,
ଚଷାପୁଅ,
ବିଦ୍ୱାନ ଯେହ୍ନେ ମୋହ ମଦ,
ତେଜଇ ଲୋଭ କାମ କ୍ରୋଧ,
କ୍ଷେତରୁ ତୃଣ ଯେତେ, ଉପାଡି ଶସ୍ୟ କ୍ଷେତ୍ରେ, ମୁକତ କରଇ ବିପଦ ହେ ।୨୨।
ଦୁଷ୍ଟଙ୍କର ବଚନ, ସାଧୁ ସହେ ଯେସନ, ବର୍ଷା ଘାତ ସହେ ପର୍ବତ,
ବିଦ୍ୟା ପ୍ରାପ୍ତ ବିଦ୍ୱାନ, ନମ୍ର ହୁଏ ଯେସନ, ମେଘେ ହ୍ୱନ୍ତି ଅବନମିତ ହେ,
ସଦ୍‌ଗୁଣ,
ଆସିଣ ସଜ୍ଜନର ପାଶ,
ଭରଇ ଯେହ୍ନେ ତାର ଆଶ,
ଜଳ ଏକତ୍ର ହୋଇ, ପୁଷ୍କରିଣୀ ଭରଇ, ବର୍ଷାରେ ଏ ଅଟେ ବିଶେଷ ହେ ।୨୩।
ବର୍ଷାର ପ୍ରକୋପରେ, ରାମ ଚତୁର୍ମାସ୍ୟାରେ, ସୀତା ବିଚ୍ଛେଦେ କୁଟୀରରେ,
ସଙ୍ଗେ ସୌମିତ୍ରି ନେଇ, ଜୀବନକୁ ବିତାଇ, ଦେଲେ ଜାନକୀଙ୍କ ସ୍ମୃତିରେ ହେ,
ତଦ ଅନ୍ତେ,
ଶରତ କଲା ଆଗମନ,
ନିର୍ମଳ ହୋଇଲା ଗଗନ,
ସ୍ୱଚ୍ଛ ନଦୀର ଜଳ, ସରୋବରେ କମଳ, ଖେଳିଲା ହୋଇ ଖୁସି ମନ ହେ ।୨୪।
ଥଣ୍ଡା ହୋଇଲା ରାତି, ଆକର୍ଷେ ଜହ୍ନ ରାତି, ପୃଥ୍ୱୀରେ ଶୋଭାର ଆକର,
ସୁଗ୍ରୀବଙ୍କୁ ନିଶ୍ଚିନ୍ତ, ନିଷ୍କ୍ରିୟ ସୀତାକାନ୍ତ, ଭାବି କ୍ଷୁବ୍ଧ ହୋଇ ମନର ହେ,
ଅନୁଜଙ୍କୁ,
ପାଶକୁ କହିଲେ ରାଇଣ,
ଶୁଣ ପ୍ରାଣପ୍ରିୟ ଲକ୍ଷ୍ମଣ,
ସୁଗ୍ରୀବ କଥାମାନି, ଚତୁର୍ମାସ୍ୟାରେ ତୁନି, ରହିଲେ ଆମ୍ଭେ ଦୁଇଜଣ ସେ ।୨୫।
ସୀତା ଠାବ ପାଇଁକି, ବଚନକୁ ଦେଇ କି, ସ୍ୱାର୍ଥ ସିଦ୍ଧି ହୋଇବା ପରେ,
ସେ ଦୁର୍ବୁଦ୍ଧି ବାନର, ଉପେକ୍ଷା କରି ମୋର, ନିଶ୍ଚିନ୍ତେ ଅଛି ରାଜପୁରେ ସେ,
ରାଜ୍ୟ ଭ୍ରଷ୍ଟ,

ଦୀନାନାଥ ଶରଣାଗତ,
ଭାବିଛି ବୋଧହୁଏ ଚିତ୍ତ,
କରେ ମୋ ତିରସ୍କାର, ତୁମ୍ଭେ ଶୀଘ୍ରତା କର, ଦଣ୍ଡ ଦେବା ତାରେ ଉଚିତ ହେ ।୨୬।
ଅଟେ ଯେ ବଳବାନ, ପରାକ୍ରମ ସଂପନ୍ନ, ଉପକାରୀକୁ କଥା ଦେଇ,
ପୂର୍ଣ୍ଣ ଯଦି ନ କରେ, ସେ ବ୍ୟକ୍ତି ସଂସାରରେ, ଅଧମରେ ଗଣା ହୁଅଇ ହେ,
ଯେଉଁ ବ୍ୟକ୍ତି,
ପ୍ରତିଜ୍ଞା ଯାହା କରି ଥାଇ,
ତାକୁ ସତ୍ୟ ମନେ କରଇ,
ବଚନକୁ ପାଳଇ, ଏହି ସଂସାରେ ସେହି, ଶ୍ରେଷ୍ଠ ପୁରୁଷ ବୋଲାଅଇ ହେ ।୨୭।
ଦଶରଥ ନନ୍ଦନ, ଦୁଃଖି ତ ହୋଇ ମନ, ଅନୁଜ ଆଗେ ପ୍ରକାଶନ୍ତି,
ଯାଅ ତୁମେରେ ବାବୁ, ସେ ଦୁରାତ୍ମେ କହିବୁ, ବାଳୀ ଯେ ପଥେ ଯାଇଛନ୍ତି ହେ,
ମୋ ଶରରେ,
ସେ ପଥେ ତାକୁ ପଠାଇବି,
ବାନ୍ଧବ ସହିତ ବଧିବି,
ଦେଇଥିବା ବଚନ, ନ କରିଲେ ପାଳନ, କାଳ ମୁଖେ ନିଶ୍ଚେ ପେଶିବି ହେ ।୨୮।
ଜ୍ୟେଷ୍ଠ ଭ୍ରାତା ବଚନ, ଶୁଣି ବୀର ଲକ୍ଷ୍ମଣ, ହୋଇଲେ ଅତ୍ୟନ୍ତ କ୍ରୋଧିତ,
ବୁଦ୍ଧିହୀନ ବାନର, ମତିଗତି ତାହାର, ହୋଇଛି ଏବେ ବିପରୀତ ହେ,
ସ୍ୱାର୍ଥ ସିଦ୍ଧି,
ହୋଇଲା ପରେ ସେ ମୂର୍ଖର,
ଭୁଲିଛି ପ୍ରତିଜ୍ଞା ତାହାର,
ମାରି ସେ ଭୋଗାସକ୍ତ, ଅଙ୍ଗଦେ ଅଭିଷିକ୍ତ, କରିଣ ଆସିବି ଛାମୁର ହେ ।୨୯।
ହସ୍ତେ ଧନୁଷ ବାଣ, ଧରି କ୍ରୁଦ୍ଧ ଲକ୍ଷ୍ମଣ, ଦେଖି କରିବାର ପସ୍ଥାନ,
ମର୍ଯ୍ୟାଦାବନ୍ତ ରାମ, ପ୍ରଭୁ ପୁରୁଷୋତ୍ତମ, ଧିରେ ଉଚ୍ଚାରିଲେ ବଚନ ହେ,
ସଉମିତ୍ରି,
ତୋ ପରାୟ ବୀର ଉତ୍ତମ,
ମିତ୍ର ବଦ୍ଧ ନିଷିଦ୍ଧ କର୍ମ,
କରିବା ନ ଶୋଭଇ, କ୍ରୋଧ ସମ୍ଭାଳ ତୁହି, ତାହାରେ କ୍ଷମା ଗୁଣେ କ୍ଷମ ହେ ।୩୦।
ସୁଗ୍ରୀବ ମୋର ମିତ୍ର, ତୋ ପାଇଁ ଅନୁଚିତ, ତା ମୃତ୍ୟୁ କାରଣ ହୋଇବା,
ବାଳୀ ସମାନ ତୁହି, ମରିବୁ ବୋଲି କହି, କେବଳ ପ୍ରାଣେ ଡ଼ରାଇବା ହେ,
ଏହାକରି,
ଶୀଘ୍ର ଆସ ହେ ତୁମେ ଫେରି,

ଶ୍ରୀରାମଙ୍କୁ ପ୍ରଣାମ କରି,
ସୁଗ୍ରୀବ ଭେଟିବାକୁ, ରାମ ବାର୍ତ୍ତା ଦେବାକୁ, ପହଞ୍ଚିଲେ ତା ରାଜପୁରୀ ହେ ।୩୧।
ସୁମିତ୍ରାଙ୍କ ନନ୍ଦନ, ଆକର୍ଣ୍ଣ ଟାଣି ଗୁଣ, ଧନୁରୁ ଛାଡିଲେ ଟଙ୍କାର,
କରି ଶବ୍ଦ ଶ୍ରବଣ, ସମସ୍ତ କପିଗଣ, ଆତଙ୍କେ ଛାଡିଲେ ହୁଂକାର ହେ,
ରୌଦ୍ର ରୂପ,
ଦେଖି ନଗରବାସୀଗଣ,
କମ୍ପିଲେ ପତର ସମାନ,
ଦେଖି ପ୍ରଳୟ ରୂପ, ଲକ୍ଷ୍ମଣଙ୍କ ସମୀପ, ଅଙ୍ଗଦ ନମିଲା ଆସିଣ ହେ ।୩୨।
ଅଙ୍ଗଦକୁ ଦେଖିଣ, ଭ୍ରାତୃଭକ୍ତ ଲକ୍ଷ୍ମଣ, କ୍ରୋଧ ତତ୍କ୍ଷଣେ ହେଲା ଶାନ୍ତ,
ହୃଦୟରେ ଲଗାଇ, କହିଲେ କୁହ ଯାଇ, ସୁଗ୍ରୀବେ ଶ୍ରୀରାମ କୁପିତ ହେ,
ତାଙ୍କ ପରେ,
ପ୍ରେରଣା କାରଣୁ ତାଙ୍କର,
ଆସିଛି ମୁହିଁ ଏ ଠାବର,
ଅଙ୍ଗଦ ବାର୍ତ୍ତା ନେଇ, ସୁଗ୍ରୀବେ ବୋଲେ ଯାଇ, କାରଣ ଲକ୍ଷ୍ମଣ ରୋଷର ହେ ।୩୩।
ରାମାନୁଜ କ୍ରୋଧର, ହେତୁ ଜାଣି ବାନର, ହକାରି ପବନ କୁମର,
ଅନୁକୂଳ କରଣେ, ପ୍ରଭଞ୍ଜନ ନନ୍ଦନେ, ପଠାଇଲା ହୋଇ ତତ୍ପର ହେ,
ହନୁମାନ,
ଲକ୍ଷ୍ମଣ ସମୀପରେ ଯାଇ,
ଭକ୍ତିରେ ଦଣ୍ଡବତ ହୋଇ,
ବିନୟର ସହିତ, ନମ୍ର ହୋଇ ଅତ୍ୟନ୍ତ, ପାଦେ ନିବେଦନ କରଇ ହେ ।୩୪।
ହେ ପ୍ରଭୁ ବୀରବର, ଆପଣଙ୍କ ଏ ପୁର, ନିଶଙ୍କ ହୋଇଣ ଆସନ୍ତୁ,
ଆସି ରାଜପୁରକୁ, ଭେଟି ରାଜାରାଣୀଙ୍କୁ, ଆଜ୍ଞା ଯା ପ୍ରଦାନ କରନ୍ତୁ ହେ,
ଯଥା ଆଜ୍ଞା,
କାର୍ଯ୍ୟ ସିଦ୍ଧ ନିଶ୍ଚିତ ହେବ,
ଏଥିରେ ଅନ୍ୟଥା ନୋହିବ,
ଧରି ଲକ୍ଷ୍ମଣ କର, ନେଲେ ରାଜ ନବର, ଦେଖାଇ ଅତି ଦୀନ ଭାବ ହେ ।୩୫।
ସମୀପେ କର ଯୋଡି, ଚରଣ ତଳେ ପଡି, ମଧୁଭାଷିଣୀ ରାଣୀ ତାରା,
କହେ ମଧୁ ବଚନ, ସ୍ୱୟଂ ସୁଗ୍ରୀ ରାଜନ, କାର୍ଯ୍ୟ ଆରମ୍ଭିଛନ୍ତି ତ୍ୱରା ହେ,
କପି ବୀରେ,
ରାଇଛନ୍ତି ସାରା ରାଜ୍ୟର,
ସ୍ୱୟଂ ଚିନ୍ତିତ ସେ ମନର,

ପ୍ରଭୁଙ୍କର କାର୍ଯ୍ୟକୁ, ସଯତ୍ନେ କରିବାକୁ, ସତତ ଜାଗ୍ରତ ଆତୁର ହେ ।୩୬।
କୃପା ପୂର୍ବକ ଆସ, ଅନ୍ତଃପୁରେ ପ୍ରବେଶ, ଅଭୟ ଦିଅ ସୁଗ୍ରୀବରେ,
କାର୍ଯ୍ୟ ସେହି ତୁମ୍ଭର, ଅବଶ୍ୟ ହୃଦୟର, କରିବେ କମ୍ପନ୍ତି ଡରରେ ହେ,
ସଉମିତ୍ରି,
ପ୍ରବେଶ କଲେ ଅନ୍ତଃପୁରେ,
ସୁଗ୍ରୀବ ଆସି ଚରଣରେ,
ପତ୍ନୀ ରୁମା ସହିତ, କରିଲେ ପ୍ରଣିପାତ, ଭୀତ ମନରେ ସଂକୋଚରେ ହେ ।୩୭ ।
ହନୁମାନ ପାଶରେ, ରହି କହେ ସଧିରେ, ଶୁଣ ହେ ସୁମିତ୍ରା ନନ୍ଦନ,
ପ୍ରଭୁ ରାମେ ତୁମର, ପରାକାଷ୍ଠା ଭକ୍ତିର, ତହୁଁ ଅଧିକ ଏ ରାଜନ ହେ,
ଭଗବାନ,
ରାମଙ୍କ କାର୍ଯ୍ୟେ ରାତ୍ରଦିନ,
ନିବିଷ୍ଟ ଏହାଙ୍କର ମନ,
ଦେଖ କୋଟି ସଂଖ୍ୟାରେ, ହକାରିଣ ବାନରେ, ଅଣାଯାଉଛି ନିତିଦିନ ।୩୮ ।
ଏ ସମସ୍ତ ବାନର, ଗତିମାନ ପ୍ରଖର, ସୀତା ଠାବ କାରଣେ ଯିବେ,
ସୁଗ୍ରୀବ ମହାରାଜ ପ୍ରଭୁ ରାମଙ୍କ କାର୍ଯ୍ୟ ସୁନ୍ଦରରେ ସିଦ୍ଧ କରିବେ ହେ,
ସଉମିତ୍ରି,
ଭୁଲି ନାହାଁନ୍ତି ସେ ପ୍ରଭୁଙ୍କୁ,
ଭକତ ଭୁଲେ କି ବିଭୁଙ୍କୁ,
ପ୍ରଭୁ କାର୍ଯ୍ୟରେ ଧ୍ୟାନ, ହଟିବ କେହ୍ନେ ମନ, ହୃଦେ ଯେ ବସାଏ ନାଥଙ୍କୁ ହେ ।୩୯ ।
ଲକ୍ଷ୍ମଣେ ଶାନ୍ତ ଦେଖି, ସିଂହାସନ ଉପେକ୍ଷୀ, ସୁଗ୍ରୀବ ପ୍ରଣମି ଚରଣେ,
ହୋଇ କରି ବିନୀତ, ନମ୍ର ଭାବେ ଅତ୍ୟନ୍ତ, କହଇ କରୁଣ ବଚନ ହେ,
ସଉମିତ୍ରି,
ମୁଁ ଅଟେ ଶ୍ରୀରାମଙ୍କ ଦାସ,
ପ୍ରାଣ ରକ୍ଷକ ମୋ ପ୍ରାଣେଶ,
ଯେତେ ଧନ ବୈଭବ, ରାଣୀ ରାଜ୍ୟ ସରବ, ଅଟଇ ତାଙ୍କର ଆଶିଶ ହେ ।୪୦ ।
ତ୍ରିଭୁବନ ପରାସ୍ତ, ଚୁଟୁକିରେ ସେ ମାତ୍ର, କରଣେ ସମର୍ଥ ଅଟନ୍ତି,
ସହାୟକ ପଣରେ, କରି ଦୟା ମୋ ପରେ, ସୀତା ଉଦ୍ଧାରଣେ ଲୋଡ଼ନ୍ତି ହେ,
କୃପାନିଧି,
ଅପରାଧ ମୋ କ୍ଷମା କର,
ବିଷୟୀ ପଶୁ ମୁଁ ପାମର,
ଅଇଶ୍ୱର୍ଯ୍ୟ ମଦରେ, ଥମିଲି କ୍ଷଣଭରେ, ଥକିବି ନାହିଁ କୃପାକର ହେ ।୪୧ ।

ଶୁଣି ସୁଗ୍ରୀ ପ୍ରାର୍ଥନା, ଲକ୍ଷ୍ମଣ ମହାମନା, କ୍ଷଣିକ କୋପ ପରିହରି,
ସୁଗ୍ରୀବ ଭୁଜ ଧରି, ଗାଢ଼ାଲିଙ୍ଗନ କରି, ପ୍ରେମରେ କହିଲେ ଏପରି ହେ,
କପିଈଶ,
କହିଲି ଯାହା କୋପ ବଶ,
ଧରିବ ନାହିଁ ପ୍ରେମବଶ,
ଜାନକୀ ବିରହରେ, ଦୁଃଖେଛନ୍ତି ବନରେ, ଶୀଘ୍ର ଭେଟନ୍ତୁ ରଘୁଈଶ ହେ ।୪୨ ।
ପ୍ରେମେ କରି ସ୍ୱୀକୃତ, ପୂଜି ସୁମିତ୍ରା ସୁତ, ଶ୍ରେଷ୍ଠ ରଥେ ହୋଇ ଆସୀନ
ଅଙ୍ଗଦାଦି ବାନର, ସାଥେ ବାତ କୁମର, ଚଳିଲେ ନେଇଣ ଲକ୍ଷ୍ମଣ ହେ,
ରଘୁନାଥ,
ସମ୍ମୁଖେ ହେବାକୁ ପ୍ରସ୍ତୁତ,
ପୂଜନ ଦ୍ରବ୍ୟ ଘେନି ହସ୍ତ,
ଭେରୀ ତୁରୀ ବଜାଇ, ବିଭିନ୍ନ ବାଦ୍ୟ ବାଇ, ପ୍ରସ୍ରବଣରେ ଉପଗତ ହେ ।୪୩ ।
ଅଧ୍ୟାୟ ଚତୁର୍ଦ୍ଦଶ, ଏହ୍ନେ ହୋଇଲା ଶେଷ, ସାନୁଜ ଶ୍ରୀରାମଙ୍କ ରୋଷ,
ସୁଗ୍ରୀବ ମୋହ ଭଗ୍ନ, ରାମକାର୍ଯ୍ୟେ ଲଗନ, ଇତ୍ୟାଦି ବିଷୟ ବିଶେଷ ହେ,
ଏ ଅଧ୍ୟାୟେ,
ପ୍ରଭୁ ପାଦେ ରଖିଣ ମନ,
ସୁରେଶ କରଇ ବର୍ଣ୍ଣନ,
ମୋ ପ୍ରଭୁ ହନୁମାନ, ତାଙ୍କ ଚରିତ ମାନ, କହିଲେ ଯେ ପ୍ରକାରେ କର୍ଣ୍ଣ ହେ ।୪୪ ।



# ପଞ୍ଚଦଶ ଛାନ୍ଦ

ରାଗ-ମୁନିବରବାଣୀ(ସୀତା ଠାବ ନିମନ୍ତେ ଦୂତ ପ୍ରେରଣ)

ମୃଗଚର୍ମ ପରିହିତ ଜଟାମୁକୁଟ ମଣ୍ଡିତ
ସଜଳ ଜଳଦ ବପୁ ବିରହ କୋପୁ ହେ ।୧ ।
ଦିଶନ୍ତି ଉଦାସ ମନ ବସି ରାମ ଭଗବାନ
ଗୁମ୍ଫାଦ୍ୱାରେ ଶିଳା ପରେ ଚାହିଁ ଖଗରେ ହେ ।୨ ।
ଶ୍ରୀରାମେ ଦୂରରୁ ଦେଖି ତତ୍‌କ୍ଷଣେ ରଥ ଉପେକ୍ଷୀ
ସୁଗୀବ ଲକ୍ଷ୍ମଣ ଦୁଇ ଗଲେ ଓହ୍ଲେଇ ହେ ।୩ ।
ତୀବ୍ର ଗତିରେ ସୁଗ୍ରୀବ ମନେ ବହି ଭକ୍ତି ଭାବ
ପ୍ରଭୁ ପାଦ ପଦ୍ମେ ପଡ଼ି ଗଲେ ସେ ଗଡ଼ି ହେ ।୪ ।
ଅବୋଧ ବାଳକ ପରି ରୋଦନ୍ତି ରାହାକୁ ଧରି
ବୋଲୁଥାନ୍ତି କ୍ଷମାକର ଶ୍ରୀରଘୁ ବୀର ହେ ।୫ ।
ଦୟାମୂର୍ତ୍ତି ସୀତାପତି ଉଠାଇ ଯେହ୍ନେ ସନ୍ତତି
ଲଗାଇଲେ ହୃଦୟରେ ବନ୍ଧୁ ପ୍ରେମରେ ହେ ।୬ ।
ସମ୍ମୁଖେ ଉପବେଶନ କରାଇ କୁଶଳ ପ୍ରଶ୍ନ
ପୁଛିଲେ ହୋଇ ଆନନ୍ଦ ପରମାନନ୍ଦ ହେ ।୭ ।
ସୁଗ୍ରୀବ ଯୋଡ଼ିଣ ହସ୍ତ ବୋଲେ ବିନୟେ ଅତ୍ୟନ୍ତ
ଦୋଷ କିଛି ନାହିଁ ମୋର ମାୟା ତୁମର ହେ ।୮ ।
ଅଟଇ ବଡ଼ ପ୍ରବଳ ପାରିବାରେ ମୁଁ ଦୁର୍ବଳ
କରୁଣା ବିନା ତୁମର କୃପା ସାଗର ହେ ।୯ ।
ଅତିଶୟ ଭୋଗାସକ୍ତ ଅଟଇ ବିଷୟାସକ୍ତ
ନୀଚ ପଶୁ ମୁଁ ପାମର ସୁଦୟା କର ହେ ।୧୦ ।
ସୁଗ୍ରୀବର ନିବେଦନ ଶୁଣିଣ କୃପା ନିଧାନ
ହୃଦୟେ ହୋଇ ହର୍ଷିତ ବଢ଼ାଇ ହସ୍ତ ହେ ।୧୧ ।
ତାହାର ଶିରକୁ ଧିରେ ଆଉଁସିଲେ ସ୍ୱହସ୍ତରେ
ବାତ୍ସଲ୍ୟ ସ୍ନେହ ଦେଖାଇ ମୋଦିତ ହୋଇ ହେ ।୧୨ ।
ସ୍ୱର୍ଗ ସୁଖ ସୁଗ୍ରୀବରେ ପାଇ ହାତ ପାଆନ୍ତାରେ
କୋଟି ନିଧିକୁ ହସ୍ତରେ ସାଉଁଟି ଧରେ ହେ ।୧୩ ।
ମହା ଭାଗ୍ୟବାନ ସେହି କିଷ୍କିନ୍ଧ୍ୟାପତି ଅଟଇ
ଯା'ଶିରରେ ପ୍ରଭୁ କର କି ସୁଖ ତା'ର ହେ ।୧୪ ।
ଏ ସମୟେ କପି ବୀରେ କୋଟି କୋଟିର ସଂଖ୍ୟାରେ
ଭଲ୍ଲୁକ ନେଇ ସଙ୍ଗରେ ଆସି ଦୃଷ୍ଟିରେ ହେ ।୧୫ ।

ସେ ସମସ୍ତଙ୍କୁ ଦେଖାଇ ଶ୍ରୀରାମେ ସୁଗ୍ରୀବ କହି
ପ୍ରଭୁ ଏ ବୀରେ ତୁମର ଆଜ୍ଞା ଚାକର ହେ ।୧୬ ।
କାର୍ଯ୍ୟ ସିଦ୍ଧ କରିବାକୁ ଜାନକୀଙ୍କୁ ଖୋଜିବାକୁ
ଏ ସର୍ବେ ହୋଇ ତୟାର ଏଠି ହାଜର ହେ ।୧୭ ।
ଫଳମୂଳ ଏ ଭକ୍ଷନ୍ତି ନିର୍ଦ୍ଦେଶକୁ ନିର୍ବାହନ୍ତି
ଦେଉଅଛି ପରିଚୟ ଦେବେ ବିଜୟ ହେ ।୧୮ ।
ଏ ଭଲ୍ଲୁକ ଅଧିପତି ଜାମ୍ବବାନ ବଳୀ ଅତି
ଯୋଦ୍ଧା ଏ ଅଦ୍ଭୁତ ପୁଣି ପରମ ଗୁଣୀ ହେ ।୧୯ ।
ଏକ କୋଟି ଭାଲୁଙ୍କର ଯୁଥପତି ମହାବୀର
ମନ୍ତ୍ରୀ ମଧ୍ୟେ ଅଗ୍ରଗଣ୍ୟ ବୁଦ୍ଧି ମହାନ ହେ ।୨୦ ।
ଗବୟ ଗବାକ୍ଷ ନଳ ପନସ ଶରଭ ନୀଳ
ମୈନ୍ଦ ଗଜ ଓ ସୁଷେଣ ଗନ୍ଧମାଦନ ହେ ।୨୧ ।
ତାର ସହ ବଳୀମୁଖ କେସରୀ ଓ ଦଧିମୁଖ
ମୋ ପ୍ରଧାନ ଯୁଥପତି ଅରାତି ଭୀତି ହେ ।୨୨ ।
ସେମାନଙ୍କ ଅଧିନରେ ପର୍ବତ ସମାନ ବୀରେ
ବିଶାଳକାୟ ବାନର ବୀର ପ୍ରବୀର ହେ ।୨୩ ।
କୋଟି କୋଟିର ସଂଖ୍ୟାରେ ସରବେ ଯୁଦ୍ଧ ଭୂମିରେ
ସହର୍ଷ ଦେବେ ପରାଣ ବୋଲେ ଆପଣ ହେ ।୨୪ ।
ଇଚ୍ଛାନୁସାରେ ଆପଣ ଆଦେଶ କରି ପ୍ରଦାନ
ସ୍ୱକାର୍ଯ୍ୟ ଅର୍ଥେ କରଣ କର ପ୍ରେରଣ ହେ ।୨୫ ।
ରଘୁନାଥ ଧିରେ ହସି ପ୍ରକାଶିଲେ ମୃଦୁ ଖୁସି
କପିଈଶ ମୋର କାର୍ଯ୍ୟ ଜାଣ ନିଧାର୍ଯ୍ୟ ହେ ।୨୬ ।
ଯଦି ମଣୁଛ ଉଚିତ କରାଅ ସର୍ବେ ନିଯୁକ୍ତ
ଜାନକୀ ବାର୍ତ୍ତା ଆଣିବେ ଯଥା ସମ୍ଭବେ ହେ ।୨୭ ।
ସମ୍ବୋଧି ସର୍ବେ ସୁଗ୍ରୀବ ବୋଲେ ସଂଯତରେ ଯିବ
ସୀତା ମାତାଙ୍କର ଠାବ ଗୁପ୍ତେ କରିବ ହେ ।୨୮ ।
ଯତ୍ନେ ପ୍ରଯତ୍ନ କରିବ ଦିଗ ବିଦିଗେ ଖୋଜିବ
କଷ୍ଟ କାଳ ଏକ ମାସ ରଖି ସାନସ ହେ ।୨୯ ।
ଆଣିବ ନିଶ୍ଚେ ସମ୍ବାଦ ନ ପାରିଲେ ଭାଗ୍ୟ ମନ୍ଦ
ହୋଇଲେ ଅଧିକ ଦିନ ଦେବ ପରାଣ ହେ ।୩୦ ।
ସ୍ମରଣ ରଖି ଆଦେଶ ବୁଲିବ ଗ୍ରାମ ପ୍ରଦେଶ
ଛାଡ଼ିବ ନାହିଁ କଟକ ରଖିବ ଟେକ ହେ ।୩୧ ।

ସୁଗ୍ରୀବ ଏହି ପ୍ରକାର ଭଲ୍ଲୁକ ଆଉ ବାନର
ଯୁଥପତିଙ୍କୁ ବିଶେଷ ଦେଲେ ଆଦେଶ ହେ ।୩୨ ।
ଅତିଶୀଘ୍ର ସୀତାଙ୍କର ଆଣିଦେବାକୁ ଖବର
ସମସ୍ତ ଦିଗକୁ ଦୂତ କଲେ ପ୍ରେରିତ ହେ ।୩୩ ।
ସ୍ୱତନ୍ତ୍ର କରି ପ୍ରଯତ୍ନ ସେଠାରୁ ଦିଗେ ଦକ୍ଷିଣ
ପଠାଇଲେ ଜାମ୍ବବାନ ନଳ ସୁଷେଣ ହେ ।୩୪ ।
ଶରଭ ମୈନ୍ଦ ଅଙ୍ଗଦ ହନୁମାନ ଓ ଦ୍ୱିବିନ୍ଦ
ସମର୍ଥ ବାନର ବୀର ଯେ ଆଗୁସାର ହେ ।୩୫ ।
ଆଞ୍ଜନେୟ ହନୁମାନେ ପାଶେ ରାଇ ଖୁସି ମନେ
ବୋଲନ୍ତି ହେ କପିଶ୍ରେଷ୍ଠ ତୁମେ ବରିଷ୍ଠ ହେ ।୩୬ ।
ଅନ୍ତରୀକ୍ଷ, ଏ ଭୂଲୋକ, ଆକାଶ ଓ ଦେବଲୋକ
ଜଳ ସ୍ଥଳ ସବୁ ସ୍ଥାନ ଯେହ୍ନେ ପବନ ହେ ।୩୭ ।
ତୁମେ କର ବିଚରଣ ଜୀବ ମଧ୍ୟେ ଯେହ୍ନେ ପ୍ରାଣ
ଅବରୋଧେ ତୁମ୍ଭ ଗତି ନାହିଁ କା ଶକ୍ତି ହେ ।୩୮ ।
ନାଗ ମନୁଷ୍ୟ ଅସୁର ଗନ୍ଧର୍ବ ସମୁଦ୍ର ସୁର
ସମ୍ପୂର୍ଣ୍ଣ ଲୋକ ସହିତ ଯେତେ ପର୍ବତ ହେ ।୩୯ ।
ଜ୍ଞାନୀ ମଧ୍ୟେ ଅଗ୍ରଗଣ୍ୟ ତୁମ୍ଭେ ଜ୍ଞାତ ସବୁଜ୍ଞାନ
ଯହିଁ ଇଚ୍ଛା ସ୍ୱଇଚ୍ଛାରେ ଯାଅ ସେଠାରେ ହେ ।୪୦ ।
ଅବାଧିତ ବେଗଗତି ଅମିତ ତେଜ ଓ ସ୍ଫୁର୍ତ୍ତି
ସମସ୍ତ ଗୁଣ ଆକର ହେ ମହାବୀର ହେ ।୪୧ ।
ମହାପରାକ୍ରମ ତୁମ୍ଭ ପିତା ପ୍ରଭଞ୍ଜନ ସମ
ତେଜରେ ସମାନ ନାହିଁ ଏ ସାରା ମହୀ ହେ ।୪୨ ।
ତୁମେ ତ ସର୍ବ ସମର୍ଥ ଜାଣନ୍ତି ସର୍ବେ ସାମର୍ଥ୍ୟ
ଉପାୟ କର ହେ ବୀର କାର୍ଯ୍ୟ ତୁମର ହେ ।୪୩ ।
ସୀତା ମାତା ଉପଲବ୍ଧି ଥାଉଣୁ କାଳ ଅବଧି
କେହ୍ନେ ହେବ ତୁମ୍ଭେ ଚିନ୍ତ ନିଜର ଚିତ୍ତ ହେ ।୪୪ ।
ଯେତେ ଅଛନ୍ତି ବାନର ତୁମ୍ଭେ ବିଶ୍ୱାସୀ ମୋହର
ବଳ ବୁଦ୍ଧି ପରାକ୍ରମ ତୁମ୍ଭ ବିକ୍ରମ ହେ ।୪୫ ।
ନୀତିରେ ତୁମେ ନିପୁଣ ଦେଶକାଳାନୁସରଣ
ବ୍ୟବହାର ଅନୁପମ ଅଚିନ୍ତ୍ୟ ତୁମ୍ଭ ହେ ।୪୬ ।
ବିଶ୍ୱାସ ମୋ ତୁମ୍ଭ ଠାରେ ଏ କାର୍ଯ୍ୟ ସମ୍ଭାଳିବାରେ
ସମର୍ଥ ହୋଇବ ନିଶ୍ଚେ ନରହି ପଛେ ହେ ।୪୭ ।

ହନୁମାନ ଗୁଣଗାନ କରି କିଷ୍କିନ୍ଧ୍ୟା ରାଜନ
ସୀତାନ୍ୱେଷଣ ଅର୍ଥରେ ବାନର ବୀରେ ହେ ।୪୮ ।
ଆଦେଶ କରି ପ୍ରଦାନ ଚିନ୍ତାପୂର୍ଣ୍ଣ ହୋଇ ମନ
ବସିଲେ ଯାଇ ହରଷେ ଶ୍ରୀରାମ ପାଶେ ହେ ।୪୯ ।
ଭଲ୍ଲୁକ ବାନର ବୀର ପ୍ରଣାମି ରାମ ପୟର
ଚଳିଲେ ଯେ ଯାହା ପଥେ ନିର୍ଦ୍ଦେଶ ମତେ ହେ ।୫୦ ।
ଶେଷେ ଆସି ହନୁମାନ ଧରିଲେ ଯେବେ ଚରଣ
ଭାବାବେଗେ ରଘୁରାଣ କହିଲେ ଶୁଣ ହେ ।୫୧ ।
ଧଇର୍ଯ୍ୟ ଉଦ୍ୟୋଗ ତୁମ ଅପରାଜିତ ବିକ୍ରମ
ସୁଗ୍ରୀବ ରାଜା ବିଶ୍ୱାସ ଦିଏ ସଂନ୍ଦେଶ ହେ ।୫୨ ।
ସୀତା ଠାବ କାର୍ଯ୍ୟ ସିଦ୍ଧି କରଣେ ତୁମ ପ୍ରସିଦ୍ଧି
ଅବଶ୍ୟ ନିଶ୍ଚୟ ହେବ ଏହା ସମ୍ଭବ ହେ ।୫୩ ।
ତୁମ୍ଭର ଯେ ବୁଦ୍ଧିବଳ ଜ୍ଞାତ ହେ ମୋତେ ସକଳ
କାର୍ଯ୍ୟେ ତୁମ୍ଭେ ସଫଳତା ବହନେ ଦାତା ହେ ।୫୪ ।
ମୁଦ୍ରିକା ଏ ନାମାଙ୍କିତ ନିଅ ହୋଇଣ ସଂଯତ
ପରିଚୟେ ସୀତା ମାତେ ଦେବ ଏକାନ୍ତେ ହେ ।୫୫ ।
ଆଶୀର୍ବାଦ ମୋର ନିଅ ନିରାପଦେ ତୁମେ ଯାଅ
ସଫଳତା ବାର୍ତ୍ତା ନେଇ ଆସ ହେ ଯାଇ ହେ ।୫୬ ।
ପ୍ରଭୁ ମୁଦ୍ରିକା ଆଦରେ ରଖି ଯତନେ ପାଶରେ
ଚରଣ ଉପରେ ଶିର ଥୋଇଲେ ବୀର ହେ ।୫୭ ।
ସସ୍ନେହରେ ରଘୁବୀର ଶିରେ ସଂଚାଳିଲେ କର
ହନୁମାନଙ୍କର ମନ ହେଲା ପ୍ରସନ୍ନ ହେ ।୫୮ ।
ପ୍ରଭୁଙ୍କ ଚରଣ ଧୂଳି ଭାବେ ଚଢ଼ାଇ ମଉଳି
ରାମନାମ ଜୀହ୍ୱାଗ୍ରରେ ଥୋଇ ଭକ୍ତିରେ ହେ ।୫୯ ।
ହୃଦୟରେ ପ୍ରଭୁ ମୂର୍ତ୍ତି ଧରି ସାଗ୍ରହରେ ଅତି
ଚଳିଲେ ପବନପୁତ୍ର ହୋଇ ଉଷତ ହେ ।୬୦ ।
ପଞ୍ଚଦଶ ଛାନ୍ଦ ଗୀତ ପବନସୁତ ଚରିତ
ସୁରେଶ ସରସେ ଭଣେ ବିଦୁଷ ଜନେ ହେ ।୬୧ ।
ଦୋଷାଦୋଷ ମୋ କ୍ଷମିବ କ୍ଷମାଗୁଣେ କ୍ଷମା ଦେବ
ଭକତି ରସ ଯେ ଏହି ହୃଦୟେ ବହି ହେ ।୬୨ ।



# ଷୋଡ଼ଶ ଅଧ୍ୟାୟ

ରାଗ-କାମୋଦୀ(ସ୍ୱୟଂପ୍ରଭା ଯୋଗିନୀ ଓ ସମ୍ପାତି ସହ ଭେଟ)

ବକ୍ରତୁଣ୍ଡ ପଦରେ କରି ବନ୍ଦନ
ହନୁମାନ ଚରିତ କରେ ବର୍ଣ୍ଣନ ଯେ ।୧ ।
ପାର୍ବତୀ ନନ୍ଦନ ସୁଦୟା କର
ପଦଚୟ ହୃଦେ ସ୍ଫୁରାଅ ମୋର ଯେ ।୨ ।
ହନୁମାନ ଧରି ବାନର ଦଳ
ଦକ୍ଷିଣ ଦିଗରେ ଚଳିଲେ ସକଳ ଯେ ।୩ ।
ଜାନକୀ ମାତାଙ୍କ ଅନ୍ୱେଷଣ କରି
ପହଞ୍ଚିଲେକ ଯାଇଣ ବିନ୍ଧ୍ୟଗିରି ଯେ ।୪ ।
କଣ୍ଟକାକୀର୍ଣ୍ଣ ଶୁଷ୍କ ବୃକ୍ଷରେ ପୂର୍ଣ୍ଣ
ଜଳର କେଉଁ ଠାରେ ନ ଥିଲା ଚିହ୍ନ ଯେ ।୫ ।
ପିପାସା ପ୍ରତାରିତ ଭାଲୁ ବାନର
ଇତସ୍ତତେ ଖୋଜନ୍ତି ଆତୁରେ ନୀର ଯେ ।୬ ।
ଜଳ ବିହୁନେ ମୀନ ଅବସ୍ଥା ଯାହା
ଜଳ ବିହୁନେ କପି ଅବସ୍ଥା ତାହା ଯେ ।୭ ।
ଜଳର ଉତ୍ସ କାହିଁ କା'ରେ ନ ଦିଶେ
ତୃଷାରେ ବୁଦ୍ଧି ନ ଆସଇ ମାନସେ ଯେ ।୮ ।
କଣ୍ଠ ଶୁଖି ହେଲା ଶରୀର ଅବଶ
ନୟନେ ନାଚେ ଶମନ ଚାରୁ ବେଶ ଯେ ।୯ ।
ଧଇର୍ଯ୍ୟ ବନ୍ଧ ଭାଙ୍ଗି ବହେ ଉଜାଣି
ଧାୟିଲେ ଶ୍ରୀରାମେ ମୃତ୍ୟୁ ନିଶ୍ଚେ ଜାଣି ଯେ ।୧୦ ।
ସଙ୍କଟ ମୋଚନ କେଶରୀ ନନ୍ଦନ
ଧୈର୍ଯ୍ୟ ଅପରିସୀମ ସେ ବଳବାନ ଯେ ।୧୧ ।
ସୁଦୃଢ଼େ ଜପିଣ ପ୍ରଭୁଙ୍କର ନାମ
ଆତୁରେ ଡାକିଲେ ଉଦ୍ଧାର ଶ୍ରୀରାମ ଯେ ।୧୨ ।
ମରିବା ପାଇଁ ମନରେ ନାହିଁ ଡର
ଦୁଃଖ ନ ପାରୁ କରି କାର୍ଯ୍ୟ ତୁମର ଯେ ।୧୩ ।
ନୀଳ ଜଳଦ ତନୁ କର କରୁଣା
କରୁଣା ବାରିଧି ନ ହୋଇବ ଊଣା ଯେ ।୧୪ ।
ଶରଣ ରକ୍ଷଣ ହେ ଦେଖାଅ ପଥ

ତୁମ୍ଭେ ଥାଉଣୁ ଆମ୍ଭେ ହେବୁ ଅନାଥ ଯେ ।୧୫ ।
ଭକତ ଡାକ କର୍ଣ୍ଣେ ପ୍ରଭୁ ଶୁଣିଲେ
ବାୟୁ କୁମର ହୃଦେ ଶକ୍ତି ଭରିଲେ ଯେ ।୧୬ ।
କିଛି ଦୂରେ ମାରୁତି ଦେଖିଲା ଚାହିଁ
ତୃଣ ଗୁଳ୍ମ ଲତାଦି ରହିଛି ତହିଁ ଯେ ।୧୭ ।
ତା ମଧ୍ୟେ ଗୁମ୍ଫା ଏକ ରହିଛି ଲୁଚି
ଅଲଗା ଅଲଗା ସେ ସ୍ଥାନ ଲାଗୁଛି ଯେ ।୧୮ ।
ସର୍ବେ ସାଥିରେ ନେଇ ଅଞ୍ଜନା ସୁତ
ଦେଖିଲେ ସେ ସ୍ଥାନ ଅନ୍ୟ ବିପରୀତ ଯେ ।୧୯ ।
ହଂସ କ୍ରୌଞ୍ଚ ଚକ୍ରବାକ ସାରସ
ଚଳ ପ୍ରଚଳ ହୁଅନ୍ତି ଆସପାଶ ଯେ ।୨୦ ।
ପକ୍ଷମାନ ତାଙ୍କର ଭିଜିଛି ଜଳେ
ଭାବନ୍ତି ଜଳ ନିଶ୍ଚେ ଅଛି ଏ ସ୍ଥଳେ ଯେ ।୨୧ ।
ହସ୍ତ ହୋଇ ଧରାଧରି ପରସ୍ପର
କପି ଭାଲୁ ପଶିଲେ ଗୁମ୍ଫା ଭିତର ଯେ ।୨୨ ।
ଅନ୍ଧକାରରେ ଗୁମ୍ଫା ଥିଲା ଆଛନ୍ନ
ତିମିରେ ଭୟାଛନ୍ନ ସବୁରି ମନ ଯେ ।୨୩ ।
ହୃଦୟେ ସ୍ମରି ସର୍ବେ ଶ୍ରୀରାମ ପଦ
ଅଗ୍ରସର ହୋଇଲେ ପଦକୁ ପଦ ଯେ ।୨୪ ।
କିଛି ଦୂର ଆସନ୍ତେ ଦେଖି ଆନନ୍ଦ
ଲାଗଇ ମିଳିଗଲା ସଚ୍ଚିଦାନନ୍ଦ ଯେ ।୨୫ ।
ନିର୍ମଳ ଜଳେ ଭରା ସରସୀ ଦିଶେ
କମଳ କୁମୁଦିନୀ ସୁରମ୍ୟେ ହସେ ଯେ ।୨୬ ।
ଅଶୋକ ଚମ୍ପା ନାଗ କେଶର ଶାଳ
କଦମ୍ବ ନାଗଚମ୍ପା ତାଳ ତମାଳ ଯେ ।୨୭ ।
ଅର୍ଜ୍ଜୁନ ପୁନାଗ ଚୂତ କନିଅର
ପାଟଳ ବିଲ୍ୱ ପ୍ରାଚୀନ କୋବିଦାର ଯେ ।୨୮ ।
ନାରଙ୍ଗି ଅମଳକୀ ଧବ ବକୁଳ
ଚତୁଃପାର୍ଶ୍ୱରେ ଶୋଭନ୍ତି ମାଳମାଳ ଯେ ।୨୯ ।
ପୁଷ୍ପ ଫଳେ ନମିତ୍ର ବୃକ୍ଷ ଲତାଏ
ବସି ଗୀତ ଗାଆନ୍ତି ତହିଁ ପକ୍ଷୀଏ ଯେ ।୩୦ ।

ସୁଗନ୍ଧେ ଚତୁର୍ଦ୍ଦିଗ ଉଠେ ମହକି
ଲାଗଇ ସ୍ୱର୍ଗ ନନ୍ଦନ କାନନ କି ଯେ ।୩୧ ।
କୁଳୁକୁଳୁ ସ୍ୱରେ ଗାଇ ବହେ ନିର୍ଝର
ପ୍ରଜାପତି ଚୁମ୍ବଇ ମୁଖେ ପୁଷ୍କର ଯେ ।୩୨ ।
ଅଦ୍ଭୁତ ବସ୍ତ୍ର ଅଳଙ୍କାରେ ଶୋଭିତ
ଭବନ ତହିଁ ଥିଲା ସୌମ୍ୟ ଅତ୍ୟନ୍ତ ଯେ ।୩୩ ।
ଥିଲା ବହୁ ବସ୍ତୁ ଭକ୍ଷ୍ୟ ଭୋଜ୍ୟ ଦିବ୍ୟ
ଜାଗେ ମନରେ ପବିତ୍ର ପୂତ ଭାବ ଯେ ।୩୪ ।
ସେ ଭବନେ ଏକ ସ୍ୱର୍ଣ୍ଣ ସିଂହାସନେ
ସୁନ୍ଦରୀ ଲଳନା ବସିଥିଲା ଧ୍ୟାନେ ଯେ ।୩୫ ।
ଲାବଣ୍ୟମୟୀ ବଳ୍କଳ ପରିହିତା
କୃଷ୍ଣ ମୃଗଚର୍ମେ ହୋଇ ଶୋଭିତା ଯେ ।୩୬ ।
ଦରଶନେ ତାଙ୍କର ବାନର ବୀରେ
ଦୃଷ୍ଟି ନିକ୍ଷେପିଲେ ମୁଖେ ପରସ୍ପରେ ଯେ ।୩୭ ।
ଧ୍ୟାନମଗ୍ନା ଯୋଗିନୀ ଶରୀର ତେଜ
ଦର୍ଶନେ ବିସ୍ମିତ ଅଞ୍ଜନା ଆତ୍ମଜ ଯେ ।୩୮ ।
ଭୟାକ୍ରାନ୍ତ କପିବଳ ପାଶେ ଗଲେ
ଅତ୍ୟନ୍ତ ଶ୍ରଦ୍ଧାଭରେ ପ୍ରଣାମ କଲେ ଯେ ।୩୯ ।
ଅତିଶାନ୍ତ ଚିତ୍ତରେ ମଧୁର ସ୍ୱରେ
ପୁଚ୍ଛାକଲେ ଯୋଗିନୀ ଧିରେ ବାନରେ ଯେ ।୪୦ ।
କିଏ ହୋ ତୁମ୍ଭେମାନେ କାହୁଁ ଆସିଲ
କି ଉଦ୍ଦେଶ୍ୟେ ଏଠାରେ ପ୍ରବେଶ କଲ ଯେ ।୪୧ ।
ଏ ଅଟଇ ଦୁର୍ଗମ ବନ ପ୍ରଦେଶ
କି କାରଣେ ବିଚର ଚାହୁଁଛ କିସ ଯେ ।୪୨ ।
ରମ୍ୟ ଏହି ମୋହର ଆଶ୍ରମ ସ୍ଥାନ
ନଷ୍ଟ କରୁଛ କିମ୍ବା କି ଚିନ୍ତି ମନ ଯେ ।୪୩ ।
ବିନମ୍ରତାର ସହ ଅଞ୍ଜନା ସୁତ
କହେ ଆମ୍ଭେ ସରବେ ଶ୍ରୀରାମ ଦୂତ ଯେ ।୪୪ ।
ଅଯୋଧ୍ୟା ରାଜା ଦଶରଥ ନନ୍ଦନ
ପିତା ଆଜ୍ଞା ପାଳିଣ ଆସିଲେ ବନ ଯେ ।୪୫ ।
ସାଙ୍ଗରେ ବିଦେହ ନନ୍ଦିନୀଙ୍କୁ ନେଇ

ସଉମିତ୍ରି ଲକ୍ଷ୍ମଣ କନିଷ୍ଠ ଭାଇ ଯେ ।୪୬ ।
ବନରୁ ସତୀସାଧ୍ୱୀ ପତ୍ନୀ ତାଙ୍କର
ଚୋରାଇ ନେଲା ଲଙ୍କେଶ୍ୱର ଅସୁର ଯେ ।୪୭ ।
କପିରାଜ ସୁଗ୍ରୀବ ହେଲେ ମଇତ୍ର
ଆଜ୍ଞାରେ ଖୋଜୁ ଆମେ ସାରା ଜଗତ ଯେ ।୪୮ ।
ଏ ଶୁଭ କାର୍ଯ୍ୟ ସମାପନ ଉଦ୍ଦେଶ୍ୟେ
ଆସିଲୁ ମାତେ ଆମ୍ଭେ ବନ ପ୍ରଦେଶେ ଯେ ।୪୯ ।
କ୍ଷୁଧା ତୃଷାରେ ସର୍ବେ ହୋଇ ଆତୁର
ଭାଗ୍ୟ ବଳୁ ଆସିଲୁ ଗୁମ୍ଫା ଭିତର ଯେ ।୫୦ ।
କୃପା କରି ମାତେ ଦିଅ ପରିଚୟ
କି କାରଣେ ଏଥେ କରିଛ ବିଜୟ ଯେ ।୫୧ ।
ଆନନ୍ଦ ଗଦ୍‌ଗଦେ ବୋଲେ ତପସ୍ୱିନୀ
ଅହୋଭାଗ୍ୟ ମୋର ମୁଁ ସଉଭାଗିନୀ ଯେ ।୫୨ ।
ତପଶ୍ଚର୍ଯ୍ୟା ମୋର ତୁମ୍ଭ ଦରଶନେ
ସଫଳ ହୋଇଲା ଆଜି ଏତେ ଦିନେ ଯେ ।୫୩ ।
ମୋ ମନ ଝରଣା ଅତି ଆନନ୍ଦିତ
ବନ୍ଧବାଡ଼ ଆଜି ମାନୁ ନାହିଁ ସେତ ଯେ ।୫୪ ।
ମୋ ମନ ବିହଙ୍ଗେ ମୋର ନିୟନ୍ତ୍ରଣ
ହରାଇବା ସୁଖ ପ୍ରାପ୍ତ ଆଜ ଦିନ ଯେ ।୫୫ ।
ସର୍ବେ ପ୍ରଥମେ ଏବେ ମୋ ବୋଲ କର
ଯଥେଚ୍ଛା ମିଷ୍ଟ ଫଳ କର ଆହାର ଯେ ।୫୬ ।
ଅମୃତମୟ ଜୀବନ କରି ପାନ
ବିଶ୍ରାମ କର ବସି ମୋ ସନ୍ନିଧାନ ଯେ ।୫୭ ।
ତା'ପରେ ମୋର ବୃତ୍ତାନ୍ତ ଶୁଣାଇବି
ତୁମ୍ଭର ମନରୁ ସଂଶୟ ହରିବି ଯେ ।୫୮ ।
ଅନୁମତି ପ୍ରାପ୍ତେ ଭଲ୍ଲୁକ ମର୍କଟ
ହନୁମାନ ସହ ଦୂତଙ୍କର ଥାଟ ଯେ ।୫୯ ।
ବୃକ୍ଷେ ଚଢ଼ି ମଧୁର ଫଳ ଭୋଜନ
ସୁଶୀତଳ ଜଳେ ତୃପ୍ତ କରି ମନ ଯେ ।୬୦ ।
ବିନୟ ପୂର୍ବକ ଯୋଗିନୀଙ୍କ ପାଶ
ବସିଲେ ଶାନ୍ତିରେ ହୋଇ ପ୍ରେମେ ବଶ ଯେ ।୬୧ ।

ଭକ୍ତିମତି ଦେବୀ ବାନରଙ୍କୁ ଚାହିଁ
ବୋଲନ୍ତି ଶୁଣ ଧିରେ ଯା' ବୋଲେ ମୁହିଁ ଯେ ।୬୨ ।
ବିଶ୍ୱକର୍ମାଙ୍କର ଏକଇ ଦୁଲାରୀ
ହେମାନାମେ କନ୍ୟା ଅତ୍ୟନ୍ତ ସୁନ୍ଦରୀ ଯେ ।୬୩ ।
ନୃତ୍ୟରେ ପ୍ରବୀଣା ଅଟଇ ମୋହିନୀ
ନୃତ୍ୟେ ଆଶୁତୋଷେ ତୋଷ କଲା ନନୀ* ଯେ ।୬୪ । *-ରାଜଜେମା,ଝିଅ
ପ୍ରଭୁ ନଟରାଜ ହୋଇଣ ପ୍ରସନ୍ନ
ଏ ଦିବ୍ୟ ନଗର କରିଲେ ପ୍ରଦାନ ଯେ ।୬୫ ।
ସହସ୍ର ବର୍ଷ ପର୍ଯ୍ୟନ୍ତ ଏହିଠାରେ
ବାସ କଲା ସଖି ଏଥେ ମୋ ସାଥିରେ ଯେ ।୬୬ ।
ବ୍ରହ୍ମଲୋକେ ଯେବେ କରିଲା ପ୍ରୟାଣ
ମୁମୁକ୍ଷୁ ବିଷ୍ଣୁ ଭକତ ଭାବି ମନ ଯେ ।୬୭ ।
ବୋଇଲା ସଖି ସ୍ୱୟଂପ୍ରଭା ମୋହର
ବାକ୍ୟକୁ ସଂଯତେ ଧ୍ୟାନେ ହେତୁ କର ଯେ ।୬୮ ।
ଏକାନ୍ତେ ଏ ସ୍ଥାନେ ରହି ତପ କର
ହରିବାକୁ ତ୍ରେତା ଯୁଗରେ ଭୂଭାର ଯେ ।୬୯ ।
ସ୍ୱୟଂ ନାରାୟଣ ଦଶରଥ ସୁତ
ଭାଗ୍ୟବତୀ କୌଶଲ୍ୟା ଗର୍ଭୁ ସମ୍ଭୂତ ଯେ ।୭୦ ।
ଧର୍ମ ସଂସ୍ଥାପନ ଦୁଷ୍ଟ ବିନାଶନ
କରଣେ ବନେ କରିବେ ଆଗମନ ଯେ ।୭୧ ।
ପତ୍ନୀ ସତୀ ସୀତା ଖୋଜି ତୃଷାବଶ
କିଛି ବାନର ଆସିବେ ତୁମ୍ଭ ପାଶ ଯେ ।୭୨ ।
ଭକ୍ଷ୍ୟ ଭୋଜ୍ୟ ଶୀତଳ ଜଳ ସହିତ
କରିବୁ ସଭିଙ୍କୁ ପ୍ରେମରେ ସ୍ୱାଗତ ଯେ ।୭୩ ।
ପରମ ପ୍ରଭୁ ଶ୍ରୀରାମ ପାଶେ ଯିବୁ
ପ୍ରୀତିପୂର୍ବକ ତୁ ଦର୍ଶନ କରିବୁ ଯେ ।୭୪ ।
ବିମଳ ଭକ୍ତିରେ କରିବୁ ପ୍ରାର୍ଥନା
ବିଗଳିତ ହୋଇ କରିବେ କରୁଣା ଯେ ।୭୫ ।
ଦୟାରେ ବିଷ୍ଣୁଙ୍କ ନିତ୍ୟଧାମେ ଯିବୁ
ଶ୍ରୀରାମ ଦର୍ଶନେ ମୁକତି ଲଭିବୁ ଯେ ।୭୬ ।
ଦିବ୍ୟ ନାମକ ଗନ୍ଧର୍ବଙ୍କ ନନ୍ଦିନୀ

ସ୍ୱୟଂପ୍ରଭା ନାମ ଅଟେ ମୁଁ ଯୋଗିନୀ ଯେ ।୭୭ ।
ମୋ ଜୀବନ ଭାଗ୍ୟ ଭାସ୍କର ଉଦିତ
ଏ ସ୍ଥାନେ ହେବାରୁ ତୁମ ପାଦପାତ ଯେ ।୭୮ ।
ଏବେ ସମୟ ଆସି ଉପଗତ
ନୟନାଭିରାମ ଦେଖିବ ମୋ ନେତ୍ର ଯେ ।୭୯ ।
ମନ ମୋ ଆତୁର ବିକ୍ଷିପ୍ତ ହୃଦୟ
ପ୍ରଭୁଙ୍କ କୃପାରୁ ଲଭିବି ବିଜୟ ଯେ ।୮୦ ।
ନିଜ ନିଜ ଚକ୍ଷୁ କରନ୍ତୁ ମୁଦ୍ରିତ
ପହଞ୍ଚିବ ଗୁମ୍ଫା ବାହାରେ ତୁରନ୍ତ ଯେ ।୮୧ ।
ନିରାଶ ନ କର ମନକୁ ତୁମର
ଶୀଘ୍ର ପ୍ରାପ୍ତ ହେବ ସୀତାଙ୍କ ଖବର ଯେ ।୮୨ ।
ସ୍ୱୟଂପ୍ରଭାଙ୍କ ଆଦେଶ ଅନୁସାରେ
ନୟନ ମୁଦିଲେ ଭଲ୍ଲୁକ ବାନରେ ଯେ ।୮୩ ।
ନୟନ ଖୋଲନ୍ତେ ପାଇଲେ ଅରଣ୍ୟେ
ହନୁମାନ ଆନନ୍ଦିତ ହେଲେ ମନେ ଯେ ।୮୪ ।
ଷୋଡ଼ଶ ଛାନ୍ଦଟି ହୋଇଲା ସଂପୂର୍ଣ୍ଣ
ସୁରେଶ ବର୍ଣ୍ଣଇ ଚିନ୍ତି ହନୁମାନ ଯେ ।୮୫ ।



# ସପ୍ତଦଶ ଛାନ୍ଦ

ରାଗ-କାଳୀ(ସମ୍ପାତି ସହ ଭେଟ)

ଗୌରୀ ନନ୍ଦନ ପାଦ ବନ୍ଦନ କରି ମସ୍ତକ ନତ
ଅମୃତ ରସ ଶୁଣ ବିଦୁଷ ହନୁମାନ ଚରିତ ।୧ ।
ଭାଲୁ ବାନର ମିଳି ବନର ସୀତା ଖୋଜନ୍ତି ପୁଣି
ଯେତେ ଖୋଜିଲେ କାହିଁ ପାଇଲେ ନାହିଁ ଜାନକୀ ରାଣୀ ।୨ ।
ଥକି ବସିଣ ଭାବନ୍ତି ମନ ଭାଲୁ ଆଉ ବାନର
କ'ଣ କରିବା କେଣିକି ଯିବା କଲେ ବସି ବିଚାର ।୩ ।
ହୋଇ ଦୁଃଖିତ ବାଳୀର ସୁତ ବ୍ୟଥିତ ହୃଦୟରେ
ମାସ ଏକଇ ବ୍ୟତୀତ ହୋଇ ଗଲା ଏ କନ୍ଦରରେ ।୪ ।
ରାଜା ସୁଗ୍ରୀବ ଜୀବନ ନେବ କଷ୍ଟ ତା' ଗଲା ସରି
ମା' ଭଗବତୀ ଜାନକୀ ସତୀ ଠାବ ନ ହେଲା କରି ।୫ ।
ମୁଁ ଶତ୍ରୁପୁତ୍ର ମାରିବା ସତ ଛାଡ଼ିବ ନାହିଁ କେବେ
ବାହାନା କରି ଦେବଟି ମାରି କିସ୍କିନ୍ଧ୍ୟା ଯିବି ଯେବେ ।୬ ।
ପ୍ରଭୁଙ୍କ କାର୍ଯ୍ୟ ଅଟେ ନିଧାର୍ଯ୍ୟ ନ କରି ଆମ୍ଭେ ପୂର୍ଣ୍ଣ
କିସ୍କିନ୍ଧ୍ୟା ଯାଇ ବିଫଳ ହୋଇ ବଂଚିବା କେହ୍ନେ ଦିନ ।୭ ।
ଫେରିବି ନାହିଁ ଏଇଠି ମୁହିଁ ତ୍ୟାଗିବି ମୋ ଶରୀର
ସାଶ୍ରୁନୟନ ବାନରଗଣ ବିଳାପେ ତାହାଙ୍କର ।୮ ।
ସହାନୁଭୂତି ଦେଖାଇ ଅତି କପିଗଣ କହିଲେ
ଚିନ୍ତା ନ କର ଧଇର୍ଯ୍ୟ ଧର ମରିବୁ ତୁମ୍ଭ ତୁଲେ ।୯ ।
ଏହି ଗୁମ୍ଫାରେ ବଡ଼ ସୁଖରେ ମିଳି ସର୍ବେ ରହିବା
ସରଗ ସୁଖ ଏଠି ପ୍ରତ୍ୟକ୍ଷ ନିତ୍ୟ ଭୋଗ କରିବା ।୧୦ ।
ବାନରେ ଯାହା କହିଲେ ତାହା ଶୁଣିଣ ହନୁମାନ
ପାଖକୁ ଯାଇ ସାହସ ଦେଇ କହିଲେ ବାବୁ ଶୁଣ ।୧୧ ।
ତାରା ରାଣୀର ଅତି ସ୍ନେହର ଆତ୍ମଜ ଅଟ ତୁମ୍ଭେ
କପୀଶଙ୍କର ତୁମେ ନିଜର ପଡୁଛ କିମ୍ପା ଭ୍ରମେ ।୧୨ ।
ଅଙ୍ଗଦ ତୁମେ ପ୍ରଭୁ ଶ୍ରୀରାମେ ପ୍ରିୟ ଲାଗୁଛ ବେଶି
ବ୍ୟର୍ଥ ବିଚାର ଛାଡ଼ି ଏଥର ମନକୁ କର ଖୁସି ।୧୩ ।
ବାନର ଜାତି ତୁମ୍ଭର କତି ଗୁମ୍ଫାରେ ତୁମ ସାଥେ
ପାରିବେ ନାହିଁ ଏଠାରେ ରହି ଚଳିବେ ଯେ ଯା ପଥେ ।୧୪ ।
ମିଥ୍ୟାରେ ଖାଲି କରନ୍ତି ବୋଲି ବ୍ୟର୍ଥ ଏ ପରାମର୍ଶ

ରାମଙ୍କ ବାଣ ଜ୍ୟୋତି ସମାନ ଲକ୍ଷ୍ୟ ଭେଦେ ଅବଶ୍ୟ ।୧୫ ।
ଶୁଣ ଅଙ୍ଗଦ ଗୁପତ ଭେଦ ହୋଇଣ ସାବଧାନ
କୌଶଲ୍ୟା ସୁତ ରାମ ସାକ୍ଷାତ ପ୍ରଭୁ ଶ୍ରୀ ନାରାୟଣ ।୧୬ ।
ଜଗନ୍ମୋହିନୀ ଜାନକୀ ରାଣୀ ଯୋଗମାୟା ସ୍ୱରୂପ
ଭ୍ରାତା ଲକ୍ଷ୍ମଣ ଅନନ୍ତ ପୁଣ ନାଗରାଜଙ୍କ ରୂପ ।୧୭ ।
କମଳାସନ ଶୁଣି ଜଣାଣ ପ୍ରଭୁ କମଳାକାନ୍ତ
ହୋଇ ଉତ୍ପନ୍ନ ମର୍ତ୍ତ୍ୟ ଭୁବନ ନାଶିବା ପାଇଁ ଦୈତ୍ୟ ।୧୮ ।
ସାମର୍ଥ୍ୟବାନ ରଘୁନନ୍ଦନ ରକ୍ଷଣେ ତ୍ରିଲୋକର
ପ୍ରଭୁଲୀଳାରେ ଅଂଶ ରୂପରେ ଅଛେ ଭାଗ୍ୟ ଆମର ।୧୯ ।
ନିମିତ୍ତ କରି ପ୍ରଭୁ ଶ୍ରୀହରି କାର୍ଯ୍ୟ ଅରପି ଛନ୍ତି
ତହୁଁ ଅଧିକ ଆଉ ସାର୍ଥକ ଭାଗ୍ୟେ କି ହେବ ପ୍ରାପ୍ତି ।୨୦ ।
ଏହି ପ୍ରକାରେ ଅଙ୍ଗଦ ବୀରେ ବୁଝାଇ ହନୁମାନ
ସଭିଙ୍କୁ ନେଇ ସୀତା ଖୋଜଇ ସାଥିରେ ଜାମ୍ବବାନ ।୨୧ ।
ଦକ୍ଷିଣୋତ୍ତର ଗଲେ କୂଳର ମହେନ୍ଦ୍ରାଚଳ ତଳ
ରୂପ ତା ଦେଖି ହୋଇଲେ ଦୁଃଖି ନ ପାଇ ଥଳ କୂଳ ।୨୨ ।
ସୀତାନ୍ୱେଷଣ ଅବଧିପୂର୍ଣ୍ଣ ସାଙ୍ଗକୁ ମହୋଦଧି
ଭାଲୁ ବାନର ହେଲେ ଆତୁର କାମ ନ କରେ ବୁଦ୍ଧି ।୨୩ ।
ସର୍ବେ ମନର କଲେ ବିଚାର ରାଜା ବଡ଼ ଦୁର୍ଦ୍ଦଣ୍ଡ
ସନ୍ଦେହ ନାହିଁ ମାରିବେ ତହିଁ ଦେବେ ସେ ମୃତ୍ୟୁଦଣ୍ଡ ।୨୪ ।
ଛାଡ଼ି ଭୋଜନ ଆତ୍ମା ହନନ ସୁଗ୍ରୀବ ଦଣ୍ଡୁ ଶ୍ରେୟ
କୁଶ ଆସନେ ବାନର ମାନେ ବସି ନେଲେ ନିର୍ଣ୍ଣୟ ।୨୫ ।
ବାନର ଦଳ ମାନଙ୍କ ଗୋଳ ଶୁଣି ଗୃଧ୍ର ସଂପାତି
ବିନ୍ଧ୍ୟ ଗିରିର ଥିଲା କନ୍ଦର ବାହାରିଲା ଝଟତି ।୨୬ ।
ମରିବା ପାଇଁ ନିଷ୍ପତି ନେଇ ଦେଖି ବାନର ସ୍ଥିତି
ଭାଗ୍ୟ ଉତ୍ତମ ବିଧିର କାମ ସଲଖ ମୋର ଅତି ।୨୭ ।
ପୂର୍ବ ଜନ୍ମର କାର୍ଯ୍ୟାନୁସାର ଫଳ ମିଳେ ଯେମନ୍ତ
ଅନେକ ଦିନ ପରେ ଭୋଜନ ମିଳିଲା ମୋତେ ସ୍ୱତଃ ।୨୮ ।
ପୂର୍ବ କର୍ମର ଫଳ ଏ ମୋର ଖାଇବି ଏକ ଏକ
ମୃତ ବାନର ହେବେ ଆହାର କ୍ରମଶରେ ପ୍ରତ୍ୟେକ ।୨୯ ।
ଭୋଜନ ପାଇଁ ଆଗ୍ରହୀ ହୋଇ ଥିବା ଗୃଧ୍ରେ ଦେଖିଣ
ଭୟେ ଥରନ୍ତି ବାନର ପନ୍ତି ଚିନ୍ତିଲେ ହୃଦ ମନ ।୩୦ ।

ସେବିଲୁ ନାହିଁ ଶ୍ରୀରାମେ କାହିଁ ଆଜ୍ଞା ବି ରାଜାଙ୍କର
ନ ହେଲା ପାଳି ମରିବା ପାଳି ହେଲା ଆସି ହାଜର ।୩୧ ।
ଉଚ୍ଚ ସ୍ୱରରେ ସର୍ବେ ବାନରେ ସମ୍ପାତିକୁ ଶୁଣାଇ
ହେ ବୁଦ୍ଧିମାନ ଜଟାୟୁ ଧନ୍ୟ କହିଲେ ଧନ୍ୟ ସେଇ ।୩୨ ।
ଦେଲ ପରାଣ ଧୈର୍ଯ୍ୟେ କରିଣ ଶ୍ରୀରାମଙ୍କର କାମ
ଯୋଗୀ ବାଂଛିତ ମୋକ୍ଷ ପ୍ରାପତ କରିଲ ଧନ୍ୟ ଜନ୍ମ ।୩୩ ।
ସମ୍ପାତି ଶୁଣି ନାମକୁ ଗୁଣି ଜଟାୟୁ ମୋର ଭାଇ
କହେ ଆସିଣ କାହୁଁ ଏ ସ୍ଥାନ ନାମ ଦେଲ ଶୁଣାଇ ।୩୪ ।
କୁହ ବୃତ୍ତାନ୍ତ ନ ହୋଇ ଭୀତ ହେ କପିଶିରୋମଣି
ଅମୃତ ମୟ ଯାଉ ସଂଶୟ ଶୁଣି ମଧୁର ବାଣୀ ।୩୫ ।
କରି ବିଚାର ଅଙ୍ଗଦ ବୀର ସମ୍ପାତି ଆଗେ ଗଲେ
ରାମବୃତ୍ତାନ୍ତ ଆଦିରୁ ଅନ୍ତ ବିସ୍ତାରରେ କହିଲେ ।୩୬ ।
ସୀତା ହରଣ ଜଟାୟୁ ରଣ ରାମ କୋଳେ ମରଣ
କରିଣ ଦୟା ଅନ୍ତିମ କ୍ରିୟା କେହ୍ନେ କଲେ ସମ୍ପନ୍ନ ।୩୭ ।
ଶ୍ରୀରାମ ମିତ୍ର ଭାସ୍କର ସୁତ ବୋଲେ ସୀତାନ୍ୱେଷଣେ
ଆସି ଏ ସ୍ଥାନେ ତୁମ ସାମନେ ବସିଛୁ ଦୁଃଖ ମନେ ।୩୮ ।
ମାସଏ ଗଲା ଦେଖା ନ ହେଲା ମିଳିଲା ନାହିଁ ପତ୍ତା
ଦୁଃଖେ ବିକଳ କପି ସକଳ ଜାଣିଛ ଯଦି ବତା ।୩୯ ।
ଭାଇ ସଦ୍ଗତି ଶୁଣି ସମ୍ପାତି ହେଲା ଅତି ହର୍ଷିତ
ଚନ୍ଦ୍ରମା ମୁନି ଯେ କଥା ଭଣି ଭାବେ ହୋଇଲା ସତ ।୪୦ ।
ଧନ୍ୟ ଅଙ୍ଗଦ ଭରିଲ ମୋଦ ଭ୍ରାତା କଥା ଶୁଣାଇ
ତୁମ୍ଭର ପ୍ରିୟ ଯେଉଁ ବିଷୟ ଦେବି ନିଶ୍ଚେ ବତାଇ ।୪୧ ।
ଶ୍ରୀରାମ କାର୍ଯ୍ୟ ମୋହର କାର୍ଯ୍ୟ ସେ ଆମ ଧର୍ମ ବନ୍ଧୁ
ସାରା ସଂସାର ଜାଣେ ଯେ ଗୀର ସିଏ କରୁଣା ସିନ୍ଧୁ ।୪୨ ।
ମୋ ଡ଼େଣା ନାହିଁ ନିଅ ହେ ବୋହି ମୋତେ ସଲିଳ ପାସ
ଭାଇକୁ ମୋର ପ୍ରଦାନି ନୀର ଭରିବି ତୁମ ଆଶ ।୪୩ ।
ଶ୍ରୀହନୁମାନ ତାକୁ ହସ୍ତେଣ ସଙ୍ଗରେ ନେଇ ଗଲେ
ସନ୍ତୋଷ ମନ ସେହି ଶକୁନ ଜଳ ଅଞ୍ଜଳି ଦେଲେ ।୪୪ ।
ତନୁର କଷ୍ଟ ମନର କଷ୍ଟ ଦୂରେଇ ଗଲା ତା'ର
ଶ୍ରୀରାମ ଭକ୍ତ ଯେ ଉପସ୍ଥିତ ବାନରେ ବୋଲେ ଗୀର ।୪୫ ।
ସାଗର ପାରି ଲଙ୍କା ନଗରୀ ତ୍ରିକୁଟ ପର୍ବତରେ

ନିଶଃଙ୍କ ହୋଇ ରାବଣ ତହିଁ ରକ୍ଷେ ଶାସନ କରେ ।୪୬ ।
ତା' ଉପବନ ଶୋକ ବିହୀନ ଅଶୋକ ନାମ ତା'ର
ସୀତା ତହିଁରେ ଶୋକ ମନରେ ବିଜେ ବୃକ୍ଷ ମୂଳର ।୪୭ ।
ପାରୁଛି ଦେଖି ମୋ ଗୁଧ୍ର ଆଖି ଅଧିକ ସହାୟତା
ପାରୁନି ଦେଇ ସାଥିରେ ନେଇ ଏ ମୋ ଅସହାୟତା ।୪୮ ।
ପୁତ୍ର ମୋହର ପକ୍ଷୀ ପ୍ରବର ସୁପାର୍ଶ୍ୱ ବଳବାନ
ବୃଦ୍ଧ ଜୀବନ ଅବଲମ୍ବନ ଉତ୍ତମ ପୁତ୍ରେ ସ୍ଥାନ ।୪୯ ।
ମନକୁ ଜାଣି ସେବଇ ପୁଣି ଖଟଇ ଭୃତ୍ୟ ପଣେ
ବୃଦ୍ଧ ଅବସ୍ଥା ସମସ୍ତ ବ୍ୟଥା ମନ ଦିଏ ହରଣେ ।୫୦ ।
ପିତୃ ଆଦେଶ ଶୁଣି ଯେ ଶିଶ ପାଳଇ ଭକ୍ତି ମନେ
ସଂସାର ତା'ରେ ପୁତ୍ର ମଧ୍ୟରେ ମଧ୍ୟମ ପୁତ୍ରେ ଗଣେ ।୫୧ ।
ପିତା ଅନୁଜ୍ଞା କରି ଅବଜ୍ଞା ଯେ ପୁତ୍ର ନ ଶୁଣଇ
ସଂସାର ତା'ରେ ପୁତ୍ର ମଧ୍ୟରେ ଅଧମରେ ଗଣଇ ।୫୨ ।
ପୁତ୍ର ମୋହର ଅତି ଗୁଣର ବୁଝେ ମୋ ଭଲ ମନ୍ଦ
ଖାଦ୍ୟ ଯୋଗାଏ କ୍ଷୁଧା ମେଣ୍ଟାଏ ନ ଜାଣେ ଛନ୍ଦାଛନ୍ଦ ।୫୩ ।
ଏକଦା ତା'ର ଡେରି ହେବାର ପୁଛିଲି ମୁଁ କାରଣ
କହୁଛି ତାହା ବୋଲିଲା ଯାହା ଦେଲା ସେ ବିବରଣ ।୫୪ ।
ମୋର ନନ୍ଦନ ବୋଲେ ବଚନ ଦେଖିଲି ଆଚମ୍ବିତ
ମହେନ୍ଦ୍ର ଗିରି ଯେବେ ଶିଖରି ଥିଲି ମୁଁ ଅବସ୍ଥିତ ।୫୫ ।
କଜଳ ଗିରି ଶରୀର ଧାରି ପରାୟେ ପୁରୁଷେକ
ବଳରେ ହରି ନେଉଛି ଧରି ସୁନ୍ଦରୀ ନାରୀ ଏକ ।୫୬ ।
ବିସ୍ମିତ ହୋଇ ପାଶକୁ ଯାଇ ଯେବେ କରିଲି ପ୍ରଶ୍ନ
ଋଷି ମୁନିଏ କହିଲେ ସିଏ ଅଟଇ ଦଶାନନ ।୫୭ ।
ସେ ଯେଉଁ ନାରୀ ନେଉଛି ଧରି ଶ୍ରୀରାମ ଅର୍ଦ୍ଧାଙ୍ଗିନୀ
ବିଳାପ କରି ନାମକୁ ଧରି ଡାକଇ ଭାଇ ବେନି ।୫୮ ।
ରାମ ଲକ୍ଷ୍ମଣ ବଚନ ଘେନ ମୋତେ ଉଦ୍ଧାର କର
ଲଙ୍କାଧିପତି ହୋଇଣ ଯତି ନେଉଛି ଧରି କର ।୫୯ ।
ତା' ଆଭୁଷଣ ଦୂରେ ଫିଙ୍ଗିଣ ବିଳାପ କରୁଥାନ୍ତି
ଡେରିର ଏହି କାରଣ ତହିଁ ମୁଁ ବା କି କରିଥାନ୍ତି ।୬୦ ।
ମୁଖୁ ତାହାର ଶୁଣି ଏ ଗୀର କ୍ରୋଧିତ ଅତି ହେଲି
କଟୁ ବଚନ କହି ବିଭିନ୍ନ ବହୁତ ଗାଳି ଦେଲି ।୬୧ ।

ଶୁଣ ହେ ମୋର ବାନର ବୀର ତୁମେ ସମର୍ଥ କର୍ତ୍ତା
ଲଙ୍ଘି ସାଗର ଯାଇ ସେ ପାର ଆଣ ଜାନକୀ ବାର୍ତ୍ତା ।୬୨ ।
ରାମ ଲକ୍ଷ୍ମଣ ତୀକ୍ଷଣ ବାଣ ଆଘାତରେ ରାବଣ
ନିଷ୍ଟେ ମରିବ କଷଣ ଯିବ ଭରିବ ସୀତା ମନ ।୬୩ ।
ଏ କଥା ମାନ ଯେବେ ଶକୁନ ବଖାଣେ ଡେଣା ତା'ର
ନୂତନ ଭାବେ କଅଁଳି ତେବେ ବଢ଼ିଲା ବଳ ଖର ।୬୪ ।
ଶୁଣ ବାନରେ ସୀତା ଠାବରେ ସଫଳ ଆମେ ହେବା
ପ୍ରମାଣ ତା'ର ଶରୀରେ ମୋର ଡେଣା କଅଁଳି ଯିବା ।୬୫ ।
ନାମ ଯାହାର ନେଲେ ମନର ନିକୃଷ୍ଟ ଦୁଷ୍ଟ ଜନ
ଭବ ସାଗର ହୁଅଇ ପାର ପାଇ କରୁଣା କଣ ।୬୬ ।
ସେ ଭଗବାନ ଭକତଗଣ ତୁମେ ଅଟ ମହାନ
ଛାର ସାଗର ଆଗେ ତୁମର ପାର କିବା କଠିନ ।୬୭ ।
ସମ୍ପାତି କଥା ହରିଲା ବ୍ୟଥା ମାରୁତି ଆନନ୍ଦିତ
ପ୍ରତିଟି ଶବ୍ଦ ପ୍ରତିଟି ପଦ ଶୁଣିଣ ରୋମାଞ୍ଚିତ ।୬୮ ।
ସୁସ୍ପଷ୍ଟ ବାର୍ତ୍ତା ପାଇଣ ସୀତା ମାତାଙ୍କ ସମ୍ପର୍କରେ
ଶ୍ରୀରାମ ଦୂତ ଶ୍ରୀ ହନୁମନ୍ତ ଉଲ୍ଲସିତ ମନରେ ।୬୯ ।
ସପତଦଶ ଛାନ୍ଦ ବିଶେଷ ହେଲା ଏଥେ ସମ୍ପୂର୍ଣ୍ଣ
ଭଣେ ସୁରେଶ ସ୍ମରି କପୀଶ ବାନର ଅଗ୍ରଗଣ୍ୟ ।୭୦ ।



# ଅଷ୍ଟାଦଶ ଛାନ୍ଦ

ରାଗ-ପାହାଡ଼ିଆ କେଦାର(ହନୁମାନଙ୍କର ସାଗର ଅତିକ୍ରମଣ)

ବକ୍ରତୁଣ୍ଡ ହେ ଉମା ନନ୍ଦନ ବକ୍ର ଶରୀରେ ନମୁଛି ଘେନ
କରି ବଦନ କର୍ଣ୍ଣରେ ପଦ ଦିଅ ମୋ କହି ଯେ,
ଭକତି ରସରେ ପରିପ୍ଳୁତ ହନୁମାନ ଚରିତ ଅମୃତ
କରେ ବର୍ଣ୍ଣନ ବିଦୁଷେ ଅପୂର୍ବ ରସ ଏହି ଯେ,
ଗୃଧ୍ରରାଜ ସମ୍ପାତି ଠାରୁ ବାରତା ଯେ,
ପାଇ ତଥ୍ୟ ଯହିଁ ଛନ୍ତି ସୀତା ମାତା ଯେ,
ହର୍ଷୋଲ୍ଲସିତ ଭାଲୁ ବାନର ଲମ୍ଫ ପ୍ରଦାନ କରି ଉପର
ଭୀମ ଜଳଧି ସ୍ୱରୂପ ହେରୀ* ମନରେ ଚିନ୍ତା ଯେ ।୧ । *ହେରୀ-ଦେଖି
ଆତଙ୍କ ସୃଷ୍ଟିକାରୀ ଗର୍ଜନ ଭୟେ ହୃଦୟ କରେ ମନ୍ଥନ
କରିବା କେହ୍ନେ ସାଗର ପାରି ଭାବନ୍ତି ମନ ଯେ,
ଭାଲୁ ବାନର ମନକୁ ଜାଣି ବାଲୀ ନନ୍ଦନ ବାନରମଣି
ଆଶ୍ୱସ୍ତ କଲେ ଯୁକ୍ତି ଅନେକ କରି ପ୍ରଦାନ ଯେ,
ବାସ୍ତବେ ତାରା ନନ୍ଦନ, ହନୁମାନ ଯେ,
ରଖି ସୁସ୍ଥିର କରଣେ ନିୟନ୍ତ୍ରଣ ଯେ,
ମହା ସାଗର ସମାନ ସେନା କରନ୍ତି ତା'ର ପରିଚାଳନା
ମହାନ ବୀର ଅସାମାନ୍ୟ ଦୁଇ ବଳବାନ ଯେ ।୨ ।
କପି ଅଙ୍ଗଦ ବାଳୀ କୁମାର ଭାଲୁ ବାନରେ ଯେତେକ ବୀର
ଉଦ୍‌ବୋଧନ ଦେଇ କହନ୍ତି ସାଧୁବଚନ ଯେ,
ଉତ୍ତମ ଯୋଦ୍ଧା ତୁମେ ପ୍ରତ୍ୟେକ ମନହୁଁ ଗତି ତୁମ ଅଧିକ
ଗତିକୁ ବଳେ ପ୍ରତିରୋଧିବା ଅତି କଠିନ ଯେ,
ଅଛି ତୁମ ମଧ୍ୟୁ କେ ପ୍ରବୀର ଯିବ ଯେ,
କରିବ ଜନକ ନନ୍ଦିନୀର ଠାବ ଯେ,
ସୀମାହୀନ ଏ ସାଗର ଡେଇଁ ଲଙ୍କା ନଗରେ ପ୍ରବେଶି ଯାଇ
ମନେ ବିଚାର ନେଇ ଖବର ଏଥେ ଆସିବ ଯେ ।୩ ।
ଯୁବରାଜଙ୍କ ଶୁଣି ବଚନ ବାନର ଗଣ ରହିଲେ ମୌନ
ନିଜ ଶକତି ତୌଲି ନ ପାରି ମନ ଅଶାନ୍ତ ଯେ,
ଗଜ ନାମକ ଏକ ବାନର ସାମନେ ଆସି ବୋଲଇ ଗୀର
ଦଶ ଯୋଜନ ଡେଇଁ ପାରିବି ଏ ମୋର ମତ ଯେ,
ଗବାକ୍ଷ କୋଡ଼ିଏ ଶରଭ ତିରିଶ ଯେ

ଋଷଭ ଲଙ୍ଘିବ ଯୋଜନ ଚାଳିଶ ଯେ,
ପଚାଶ ଡିଏଁ ଗନ୍ଧମାଦନ ମନ୍ଦ ଷାଠିଏ ଡିଏଁ ଯୋଜନ
ଦ୍ୱିବିନ୍ଦ ଡିଏଁ ସତୁରି ପୁଣି ଅଶି ସୁଷେଣ ଯେ ।୪ ।
ବୟୋବୃଦ୍ଧ ମନ୍ତ୍ରୀ ଜାମ୍ବବାନ କହିଲେ ଥିଲା ଯେବେ ଯୌବନ
ବହୁତ ଲମ୍ବା ଲମ୍ଫ କ୍ଷମତା ଥିଲା ମୋହର ଯେ,
ପୂର୍ବ କାଳରେ ପ୍ରଭୁ ବାମନ ପୃଥିବୀ ସମ ତାଙ୍କ ଚରଣ
ପରିକ୍ରମଣ କରିଥିଲି ଏକୋଇଶ ବାର ଯେ,
ବଳହୀନ ବୃଦ୍ଧାବସ୍ଥା ଏବେ ମୁଁ ବଳହୀନ ଯେ,
ମୋ ବଶରେ ନାହିଁ ସାଗର ଲଙ୍ଘନ ଯେ,
ଅଧୂନା ମୁହିଁ ଚଳିବି ଡେଇଁ ନବେ ଯୋଜନ ବାଧିବ ନାହିଁ
କୌଶଲ୍ୟା ସୁତ କାର୍ଯ୍ୟ ପାଳନେ ଆଷ୍ଟ ମୋ ମନ ଯେ ।୫ ।
ଅଙ୍ଗଦ କହେ ମନ ଦୁଃଖରେ ଜଳଧି ମୁଁ ଡେଇଁ ଯାଇ ପାରେ
ଫେରି ଆସିବା କହି ପାରୁନି ହେବ ସମ୍ଭବ ଯେ,
କାର୍ଯ୍ୟ କରଣେ ସମର୍ଥ ତୁମେ ଏହି ବିଶ୍ୱାସ ରଖୁଛୁ ଆମେ
କିଏ ଆମର ହେ ଯୁବରାଜ ନେତୃତ୍ୱ ନେବ ଯେ,
ଭାଷେ ଜାମ୍ବବାନ ଆପଣ ନାୟକ ଯେ,
ନେତୃତ୍ୱ କେ ନେବ କେହି ନାହିଁ ଏକ ଯେ,
ବ୍ୟସ୍ତ ହୁଅନା ଉପାୟ ଅଛି ଅଞ୍ଜନା ପୁତ୍ର ସେଠି ବସିଛି
କରିବେ ସିଏ ରାମଙ୍କ କାମ ମହାନାୟକ ଯେ ।୬ ।
ଶ୍ରୀଜାମ୍ବବାନ ଏହା ଜାଣନ୍ତି ଋଷିଶାପରୁ ହଜିଛି ସ୍ମୃତି
ଅପରିମେୟ ସେ ଶକ୍ତିଧର ସାମର୍ଥ୍ୟବାନ ଯେ,
ହେ ଯୁବରାଜ ଚିନ୍ତାକୁ ତେଜ ସ୍ମରଣ ଦେଲେ ବଢ଼ିବ ତେଜ
ଲମ୍ଫକେ ପକ୍ୱ ଫଳ ଭାବି ଯେ ଧୃତ ତପନ ଯେ,
ସୁପ୍ତ ମୃଗାଶନେ* ଜାଗ୍ରତ କରିଣ ଯେ, *ମୃଗାଶନ-ସିଂହ
ରଘୁକୁଳନାଥ କାର୍ଯ୍ୟ ସମାପନ ଯେ,
କରିଣ କ୍ଳେଶ ନିଶ୍ଚେ ହରିବା ସୁଗ୍ରୀବ କୋପୁ ସର୍ବେ ବଂଚିବା
କହି ଅଞ୍ଜନା ସୁତ ସମ୍ମୁଖେ କଲେ ଗମନ ଯେ ।୭ ।
କାରୁଣିକ ହେ ପବନ ସୁତ ଦୁଃଖ ନାଶନ ରାମ ଭକତ
ଭଲ୍ଲୁକ ବୀର କହନ୍ତି ଗୀର ତୁମ୍ଭେ ମହାନ ଯେ,
ଶ୍ରୀରାମ କାର୍ଯ୍ୟେ ଜନ୍ମ ତୁମର ନେଇଛ ହେ ପ୍ରଭୁ ଅବତାର
ସବୁ ଶୁଣିଣ ବସିଛ କିମ୍ପା ଉଠ ବହନ ଯେ,

ତୁମେ ପରା ପ୍ରଭୁ ସମୀର ନନ୍ଦନ ଯେ,
କରିଛ ତୁମେ ଅଞ୍ଜନା ସ୍ତନ୍ୟପାନ ଯେ,
ବାଲ୍ୟକାଳରେ ସୂର୍ଯ୍ୟଦେବଙ୍କୁ   ଅରୁଣ ଫଳ ଭାବିଣ ତାଙ୍କୁ
ଗଲ ଭକ୍ଷଣେ ଏକ ଲମ୍ଫକେ ପାଶେ ଅରୁଣ ଯେ ।୮ ।
ବ୍ରହ୍ମାଦି ଦେବେ ବରପ୍ରଦାନ   କରିଣ ଦେଲେ ଶକତିମାନ
ଦେବ ଶକ୍ତିରେ ସାମର୍ଥ୍ୟବାନ ହେ ବଜ୍ରଅଙ୍ଗି ଯେ,
କେଶରୀ କିଶୋର ମହାବୀର ଅପରିମିତ ଶକ୍ତି ତୁମର
ପବନ ସମ ଗତି ପ୍ରବଳ ଭକତ ସଙ୍ଗୀ ଯେ,
ଅତୁଳିତ ବଳଧାରୀ ଶୌର୍ଯ୍ୟବାନ ଯେ,
କେତେକ ମାତ୍ର ଏ ଉଦଧି ସାମାନ୍ୟ ଯେ,
ଜାଗ୍ରତ ହୁଅ ମୋହ ତେଜିଣ  ହେ ମହାବଳୀ ଉଠ ତତ୍‌କ୍ଷଣ
ଶ୍ରୀରାମ ଲକ୍ଷ୍ୟ କର ସାଧନ ଅଞ୍ଜନା ସୁନ ଯେ ।୯ ।
କୁଣ୍ଡଳିନୀ ଶକତି ଜଗାଅ   ସିନ୍ଧୁ ଲଙ୍ଘି ଆରପାର ଯାଅ
ଲଙ୍କା ପହଞ୍ଚି ମାତାଙ୍କୁ ଦେଖି ଫେର ତୁରନ୍ତ ଯେ,
ସଙ୍କଟ ମୋଚନ ହନୁମାନ   ଆମ ସଙ୍କଟ କର ହରଣ
ଭାଲୁ ବାନର ଜୀବନ ରଖ ହେ ହନୁମନ୍ତ ଯେ,
ଜ୍ଞାନ ବିବେକ ନିଧାନ ବାୟୁପୁତ୍ର ଯେ,
ଦେଖ କପି ଭାଲୁ ଉଦାସ ଚିନ୍ତିତ ଯେ,
ଆତ୍ମ ଶକତି ଜଗାଇ କରି   ଆତ୍ମ ବିଶ୍ୱାସ ସାହସ ଧରି
ବଂଚାଅ ସର୍ବେ କର ଉଦ୍ଧାର ତୁମ ଆଶ୍ରିତ ଯେ ।୧୦ ।
ଜାମ୍ବବାନଙ୍କ ଶୁଣି ବଚନ   ପ୍ରଭୁ ସ୍ତୁତିରେ ସଦା ତଲ୍ଲୀନ
ଶ୍ରୀହନୁମାନ ବଳ ବିକ୍ରମ ହେଲା ସ୍ମରଣ ଯେ,
ଅପାର ଶକ୍ତିର ଅନୁଭବ   କରି ଛାଡ଼ିଲେ ଭୀଷଣ ରବ
ଗର୍ଜନେ ଭୂମି ଦିଗ ବିଦିଗ ଥରେ ଗଗନ ଯେ,
ଶରୀର ହେଲା ମେରୁ ପର୍ବତାକାର ଯେ,
ଆଞ୍ଜନେୟ ଦିଶନ୍ତି ଅତି ସୁନ୍ଦର ଯେ,
ତଟସ୍ଥ ହୋଇ ଭାଲୁ ବାନର   ଦେଖନ୍ତି ପ୍ରେମେ ରୁଦ୍ରାବତାର
ଶ୍ରଦ୍ଧା ସୁମନେ ପୁଜିଲେ ମନେ ବାତ କୁମର ଯେ ।୧୧ ।
ଧରି କନକଭୂଧରାକାର   ଗରଜନ୍ତି ପବନ କୁମାର
ଶୁଣ ବାନର ଚିନ୍ତା ନକର ପ୍ରଭୁ କୃପାରେ ଯେ,
ଆକାଶଚାରୀ ଗ୍ରହନକ୍ଷତ୍ର   ଖଗ ଜ୍ୟୋତିଷ୍କ ଯେତେ ସମସ୍ତ

ଲଙ୍ଘିବା ପାଇଁ ପ୍ରସ୍ତୁତ ମୁହିଁ ପ୍ରଭୁ କାର୍ଯ୍ୟରେ ଯେ,
ଚାହିଁଲେ ମହୋଦଧିକୁ ଶୋଷୀ ଦେବି ଯେ,
ଏହି ଧରିତ୍ରୀକୁ ବିଦୀର୍ଣ୍ଣ କରିବି ଯେ,
ଲମ୍ଫ ମାରି ମାରି ଦେବି ପେଶିପର୍ବତ ଯେତେ ଅଛନ୍ତି ବସି
ସମୁଦ୍ର ଛାର କିବା କରିବ କିବା କରିବି ଯେ ।୧୨ ।
କହିବ ଯେବେ ଲଙ୍କାକୁ ଯିବି ଉପାଡ଼ି ସାଗରେ ବୁଡ଼େଇବି
ମାତା ସୀତାଙ୍କୁ ନେଇ ଆସିବି ଏକ କ୍ଷଣରେ ଯେ,
ଦେଲେ ଇଶାରା ରାବଣ ସହ ଲଙ୍କା ନଗରୀ ସୁବର୍ଣ୍ଣ ଗୃହ
ଦେବି ଜଳାଇ କରିବି ଜୁଇ ପ୍ରଭୁ ସ୍ତୁତିରେ ଯେ,
ଗଳେ ରଶି ବାନ୍ଧି ଧରି ଦଶଶିର ଯେ,
ଆଣିବି ଘୋଷାରି ଯେମନ୍ତେ କୁକୁର ଯେ,
ପ୍ରଭୁ ଶ୍ରୀରାମ ପଦ କମଳେ ଦେବି ଫୋପାଡ଼ି ଓଟାରି ତଳେ
ଅବା ଫେରିବି ଜନନୀ ସୀତା ଦେଖି ନେତ୍ରର ଯେ ।୧୩ ।
ଶୁଣିଣ ହନୁମାନ ବଚନ ଉଷତ ଜାମ୍ବବାନଙ୍କ ମନ
ବୋଲନ୍ତି ତୁମେ ସର୍ବ ସମର୍ଥ ପ୍ରଭୁଙ୍କ ଦୂତ ଯେ,
ସୀତା ମାତାଙ୍କ ଦର୍ଶନ କରି ତୁମେ କେବଳ ଆସିବ ଫେରି
ଧରିଣ ରାମହୃଦ ଶୀତଳ କାରିଣୀ ବାର୍ତ୍ତା ଯେ,
ଦଶରଥ ନନ୍ଦନ ତଦନନ୍ତରେ ଯେ,
ପହଞ୍ଚି ରାବଣ ସୁବର୍ଣ୍ଣ ଲଙ୍କାରେ ଯେ,
ଅସୁର କୁଳ କରି ଉଦ୍ଧାର ପବିତ୍ର କୀର୍ତ୍ତି କଲେ ବିସ୍ତାର
କୃତାର୍ଥ ହେବ ଆମ ଜୀବନ ତାଙ୍କ ଦୟାରେ ଯେ ।୧୪ ।
କେଶରୀ ନନ୍ଦନ ହନୁମାନ ଆମର ପ୍ରାଣ ତୁମ ଅଧିନ
ଆତୁରତାରେ ପଥକୁ ଚାହିଁ ରହିଲୁ ଏଠି ଯେ,
ତ୍ୱରିତେ ଯାଅ ସମ୍ବାଦ ଆଣ ଶରୀରେ ଆମ ଭର ପରାଣ
ଆଶିଷ ଆମ ସାଥିରେ ତୁମ ପହଞ୍ଚ ସେଠି ଯେ,
ମୃତ୍ୟୁଞ୍ଜୟ ତୁମେ ପ୍ରଭଞ୍ଜନ ଶିଶ ଯେ,
ମୃତ୍ୟୁଞ୍ଜୟ ଜପି ତୋଷ ଆଶୁତୋଷ ଯେ,
ଖ'ମାର୍ଗରେ ଯାଅ ନିଷ୍କଣ୍ଟକେ ସୁଖେ ପହଞ୍ଚ ଲଙ୍କା କଟକେ
ସାହା ହୁଅନ୍ତୁ ତୁମକୁ ପଥେ ଜାନକୀ ଈଶ ଯେ ।୧୫ ।
ବାନର ରକ୍ଷ ବୟସ୍କ ବୃଦ୍ଧ ପ୍ରସନ୍ନ ପାଇଣ ଆଶୀର୍ବାଦ
ଲମ୍ଫ ଦେଇଣ ଯାଇ ଚଢ଼ିଲେ ମହେନ୍ଦ୍ର ଶିରେ ଯେ,

ମହା ବିକ୍ରମୀ ଶତ୍ରୁ ଦମନ     ଶ୍ରୀରାମ ଦୂତ ଶ୍ରୀହନୁମାନ
ଚରଣାଘାତେ ପର୍ବତେ ନୀଚେ ଧସିଲେ ଖରେ ଯେ,
ପର୍ବତ ସହିତ ଉଭିଦ ପାଷାଣ ଯେ,
ହୋଇ ଖଣ୍ଡ ଖଣ୍ଡ ହୋଇଲା ପତନ ଯେ,
ପର୍ବତ ସମ ବିଶାଳକାୟ     ସୁବର୍ଣ୍ଣ ବର୍ଣ୍ଣ ଅରୁଣ ପ୍ରାୟ
ଭୟଙ୍କର ରୂପେ ଶୋଭଇ ମାରୁତି ବଦନ ଯେ ।୧୬ ।
ସିନ୍ଧୁ ଲଙ୍ଘନ ଉଦ୍ଦେଶ୍ୟ ନେଇ ବାୟୁ ନନ୍ଦନ ପ୍ରସ୍ତୁତ ହୋଇ
ପୂର୍ବାଭିମୁଖ ହୋଇ ପିତାଙ୍କୁ କଲା ପ୍ରଣାମ ଯେ,
ପୁଣି ଶ୍ରୀରାମ ନାମ ସ୍ମରଣ     କରି କହଇ ବାନରେ ଶୁଣ
ତେଇଁ କରିବି ଶ୍ରୀରାମ ବାଣ ବେଗେ ଗମନ ଯେ,
ଯାଇ ଲଙ୍କା ଜଗଜ୍ଜନନୀ ଦର୍ଶନ ଯେ,
ପ୍ରାପ୍ତେ କରିବି ଶୀଘ୍ର ପ୍ରତ୍ୟାବର୍ତ୍ତନ ଯେ,
ପ୍ରାଣାନ୍ତକାଳେ ନାମ ସ୍ମରଣ     ଭବବାରିଧିକୁ ପ୍ରାଣୀଗଣ
ପ୍ରଭୁ ଦୟାରେ ହୁଅନ୍ତି ପାରି, ସେ ମୋ ଜୀବନ ଯେ ।୧୭ ।
ମୁହିଁ ତାଙ୍କର ଅଟଇ ଦୂତ     ଦିବ୍ୟ ମୁଦ୍ରିକା ଛନ୍ତି ମୋ ହସ୍ତ
ହୃଦୟେ ଅଛି ତାଙ୍କର ମୂର୍ତ୍ତି ନାମ ଓଷ୍ଠରେ ଯେ,
କୃତକାର୍ଯ୍ୟ ମୁଁ ହେବି ନିଶ୍ଚିତ     ସମୁଦ୍ର ଲଙ୍ଘି ଫେରିବି ସତ୍ୟ
ଇଏକି ବଡ଼ କାର୍ଯ୍ୟ ଅଟେ ତା' କୃପା ଆଗରେ ଯେ,
କନ୍ଦମୂଳ ଥାଅ କରିଣ ଆହାର ଯେ,
ମୋର ଏହି ସ୍ଥାନରେ ପ୍ରତୀକ୍ଷା କର ଯେ,
ପ୍ରଭୁଙ୍କ ଦୟା ହୋଇଲେ କଣେ     ସଫଳ ହୋଇ ତୁମ ସାମନେ
ଶୁଭ ଖବର ଧରି ଆସିବି ପ୍ରତିଜ୍ଞା ମୋର ଯେ ।୧୮ ।
ବାୟୁ ନନ୍ଦନ ତନୁ ପ୍ରଦେଶ     ତେଜ ବଳ ଅଦ୍ଭୁତ ଆବେଶ
ପରାକ୍ରମ ମିଶିଣ ତହିଁରେ ଜ୍ୟୋତି ପ୍ରକାଶ ଯେ,
ଦେବତା ଗଣେ ଥାଇ ଆକାଶେ     ଜୟ ଜୟକାର କରି ଘୋଷେ
ଋଷି ମୁନିଏ ବେଦ ପଢ଼ନ୍ତି ମନ ହରଷେ ଯେ,
ଦକ୍ଷିଣ ଦିଗରେ ଭୁଜକୁ ବଢ଼ାଇ ଯେ,
ଉଡ଼ିଲେ ଆକାଶ ଦିଗରେ ସେ ତେଇଁ ଯେ,
ଗରୁଡ଼ ବେଗେ ଯାଆନ୍ତି ଉଡ଼ି ପୁଷ୍ପିତ ବୃକ୍ଷେ ଉଡ଼ିଲେ ଛିଡ଼ି
ବାତ ନନ୍ଦନ ଉପରେ ପଡ଼ି ତା'ରେ ପୂଜଇ ଯେ ।୧୯ ।
ପବନ ପୁତ୍ର ଶ୍ରୀହନୁମାନ     ପବନ ଗତିରେ ଧାବମାନ

ଶ୍ରୀରାମ କାର୍ଯ୍ୟ କରିବା ପାଇଁ ଦେଖି ସାଗର ଯେ,
ଚିନ୍ତଇ ମନେ ଇକ୍ଷ୍ୱାକୁ ବଂଶ କୁଳ ଉତ୍ପନ୍ନ ଯେ,
ପ୍ରଭୁ ଶ୍ରୀରାମ ଶ୍ରୀଦଶରଥ ନନ୍ଦନ ଯେ
କାର୍ଯ୍ୟ ଉଦ୍ଦେଶ୍ୟେ ଅଞ୍ଜନା ସୁତ      ବିଶ୍ରାମ ପାଇଁ ଏକଇ କ୍ଷେତ୍ର
ମାର୍ଗେ କରିଣ ସୁବନ୍ଦୋବସ୍ତ ତୋଷିବି ମନ ଯେ ।୨୦ ।
ମୈନାକ ପର୍ବତକୁ ରାଇଲେ      ସମସ୍ତ କଥା ତାଙ୍କୁ କହିଲେ
କପି କେଶରୀ ଶ୍ରୀହନୁମାନ ତୀବ୍ର ବେଗରେ ଯେ,
ରାମକାର୍ଯ୍ୟରେ ଯାଉ ଅଛନ୍ତି      ମୋର ପ୍ରଣମ୍ୟ ସିଏ ଅଟନ୍ତି
ଇକ୍ଷ୍ୱାକୁ ବଂଶୀ କାର୍ଯ୍ୟ ସାଧନେ ଦେଖ ନେତ୍ରରେ ଯେ,
ସେହି ବଂଶ ମୋହର ପ୍ରିୟ ଅଟଇ ଯେ,
ତୁମର ମଧ୍ୟ ସେ ପ୍ରଣମ୍ୟ ବୋଲାଇ ଯେ,
ଉପରେ ଉଠ ଦିଅ ବିଶ୍ରାମ      କରିଣ ପଥେ କ୍ଷଣେ ଆରାମ
ଯିବେ ନିଜର ଗନ୍ତବ୍ୟ ପଥେ ଆନନ୍ଦ ହୋଇ ଯେ ।୨୧ ।
ମୈନାକ ସାଗର ବୋଲ ମାନିଶିଖରେ ଖଞ୍ଜା ସୁବର୍ଣ୍ଣ ମଣି
ସମୁଦ୍ର ପରେ ବଢ଼ି ଉପରେ ସଜ ହୋଇଣ ଯେ,
ମନୁଷ୍ୟ ବେଶେ ଦଣ୍ଡାୟମାନ ପ୍ରାର୍ଥନା କଲା ନମି ଚରଣ
ହେ କପୀ ଶ୍ରେଷ୍ଠ ବାୟୁଙ୍କ ପୁତ୍ର ମୋ ନିବେଦନ ଯେ,
ତୁମେ ଅପରିମିତ ଶକ୍ତି ସମ୍ପର୍ଣ୍ଣ ଯେ,
ତୁମେ ଧର୍ମର ଜ୍ଞାତା ଘେନ ବନ୍ଦନ ଯେ,
ଶିଖରେ ମୋର ବିଶ୍ରାମ କର ଫଳ ମଧୁର କର ଆହାର
ମାନ୍ୟବରହେ ନ ଭାବି ଅନ୍ୟ ବଚନ ଘେନ ଯେ ।୨୨ ।
ମୈନାକ ବଚନ ଆଞ୍ଜନେୟ      ଶୁଣି ସୁଖି ହେଲେ ଅତିଶୟ
କହିଲେ ମୁହିଁ ବହୁ ପ୍ରସନ୍ନ ପ୍ରାର୍ଥନା ଶୁଣି ଯେ,
ଆତିଥ୍ୟ ମୋର ହେଲା ସଂପନ୍ନ      ଅନ୍ୟଥା ମନେ ଯାକୁ ନ ଘେନ
ପ୍ରଭୁ କାର୍ଯ୍ୟରେ ହେବ ବିଳମ୍ବ ମୋର ମାଗୁଣି ଯେ,
ସ୍ମିତ ହସି ସ୍ନେହେ କରିଗଲେ ସ୍ପର୍ଶ ଯେ,
ସାଗର, ମୈନାକ ହୋଇଲେ ହରଷ ଯେ,
ପ୍ରୀତି ପୂର୍ବକ ରହିଣ ଚାହିଁ      ଶୁଭାଶୀର୍ବାଦ ହୃଦୟୁ ଦେଇ
ସଫଳତା କରିଲେ କାମନା ସେନେହ ବଶ ଯେ ।୨୩ ।
କେଶରୀ ପୁତ୍ର ତୀବ୍ର ବେଗରେ      ଉଡ଼ିବା ଦେଖି ଲଙ୍କା ଦିଗରେ
ବଳ ତାଙ୍କର ପରଖିବାକୁ ଦେବତାଗଣ ଯେ,

ଦେବୀ ସୁରସା ନାଗଙ୍କ ମାତା ରାଇ କହିଲେ ଶୁଣ ଗୋ ମାତା
ଯାଇ ପରଖ ହନୁମାନର ସାମାର୍ଥ୍ୟମାନ ଯେ,
ସୁରାଦେଶେ ବିକଟ ରୂପକୁ ଧରି ଯେ,
ରଖିଲା ମୁଖ ଆକାଶ ସ୍ପର୍ଶ କରି ଯେ,
ହନୁମାନ ମାର୍ଗରେ ସେ ଖୋଲି        କହଇ ମୁହିଁ ଭୋକିଲା ବୋଲି
ମୁଖକୁ ପଶ ହେବ ଆହାର ଭାଗ୍ୟ ମୋହରି ଯେ ।୨୪ ।
ଅଞ୍ଜନା ସୁତ ଦେଲେ ଉତ୍ତର  ମାତା ସୁରସା ପ୍ରଣାମ ମୋର
ଶ୍ରୀରଘୁନାଥ କାର୍ଯ୍ୟେ ଯାଉଛି ମୁଁ ଲଙ୍କା ପୁର ଯେ,
ମାତା ସୀତାଙ୍କ ପତା ଲଗାଇ  ପ୍ରଭୁ ରାମଙ୍କୁ ଖବର ଦେଇ
ମୁଖରେ ଆସି ପ୍ରବେଶ କରି ହେବି ଆହାର ଯେ,
ସଂପ୍ରତି ଯିବାକୁ ମୋତେ ଦିଅ ମାତା ଯେ,
ବ୍ୟସ୍ତତାରେ ଅଛି ନ ବଢ଼ାଅ ଚିନ୍ତା ଯେ,
ବଚନ ମୋହର ସମାନ ବଜ୍ରର        ପ୍ରଭୁଙ୍କ କାର୍ଯ୍ୟକୁ ଭଣ୍ଡୁର ନ କର
ଶ୍ରୀରାମ ଭକତ କର ମୋ ବିଶ୍ୱାସ ଛାଡ଼ି ମୋ ରାସ୍ତା ଯେ ।୨୫ ।
ତାଙ୍କର କଥା ସେହି ନ ମାନେ        ନ ଛାଡ଼େ ରାସ୍ତା ଅଝଟ ପଣେ
ଶ୍ରୀ ହନୁମାନ କହନ୍ତି ତେବେ କର ଆହାର ଯେ,
ସୁରସା ନିଜ ମୁଖର ବ୍ୟାପ୍ତି        ଏକ ଯୋଜନ କରି ବିସ୍ତୃତି
ଭୁଂଜିବା ପାଇଁ ହୋଇ ଉଦ୍ୟତ ହେଲା ବାହାର ଯେ,
ତତ୍‌କ୍ଷଣେ ଶରୀରକୁ ଆଠ ଯୋଜନ ଯେ,
ବଢ଼େଇ ବିଶାଳ କଲେ ହନୁମାନ ଯେ,
ସୁରସା ପୁଣି ତା'ର ଶରୀର        ବଢ଼ାଇ କରେ ଦ୍ୱିଗୁଣା ତା'ର
ଶରୀର ବୃଦ୍ଧି ପ୍ରତିଯୋଗୀତା କଲେ ଦ୍ୱିଜଣ ଯେ ।୨୬ ।
ସୁରସା ଯେବେ ମୁହଁ ନିଜର        ଶହେ ଯୋଜନ କଲା ତାହାର
ଶ୍ରୀ ବାୟୁ ପୁତ୍ର ଅଙ୍ଗୁଳି ପ୍ରାୟ କ୍ଷୁଦ୍ର ରୂପରେ ଯେ,
ମୁଖରେ ପଶି ଆସି ବାହାରି        କହିଲେ ମାତା କଥା ତୋହରି
ରଖିଛି ମୁଖେ ପଶି ଆସିଛି ତୋର ଦୟାରେ ଯେ,
ଯିବାକୁ ଦିଅ ପ୍ରଭୁ କାର୍ଯ୍ୟରେ ଡେରି ହେଉଛି ଯେ,
ସୁରସା ବୋଲେ ପିତା ଓ ମାତା ଧନ୍ୟ ତୁମରି ଯେ,
ନିଶ୍ଚୟ ତୁମେ ଜ୍ଞାନର ନିଧି        ଜୀବନେ ବହୁ ପାଇବ ସିଦ୍ଧି
ଦେବ ନିର୍ଦ୍ଦେଶେ ମୁଁ ଛାର ମାତ୍ର ପରୀକ୍ଷା କରି ଯେ ।୨୭ ।
ଚଳିଲେ ସୁରସା ଦେବଲୋକେ        କପି ଗମିଲେ ଆଗେ ପଲକେ

ସିଂହିକାସୁରୀ ସାଗର ମଧ୍ୟେ ପଥେ ମିଳଇ ଯେ,
ନଭେ ଉଡ୍ଡୀୟମାନ ପ୍ରାଣୀଙ୍କୁ ଟାଣି ଆଣେ ସେ ଜଳ ମଧ୍ୟକୁ
ଛାୟାଗ୍ରହଣୀ ରାକ୍ଷସୀ ସିଏ ଓଟାରେ ଛାଇ ଯେ,
ପ୍ରତିବିମ୍ବକୁ ଧରିଲା ହନୁଙ୍କର ଯେ,
ଗତି ଅବରୁଦ୍ଧ ଶକ୍ତିରେ ତାହାର ଯେ,
ନିମ୍ନେ ଚାହିଁଣ ଦେଖି ସିଂହିକା ସ୍ଥୂଳ ଶରୀର ଚାହିଛି ଏକା
ତା'ପରେ କୁଦି ବଧିଣ ତା'ରେ ଚଳିଲେ ବୀର ଯେ ।୨୮ ।
ଖେଚରେ କାର୍ଯ୍ୟ ଦେଖି ତାଙ୍କର ସ୍ତବ କରି ମାରୁତି ପୟର
ବୋଇଲେ ଧନ୍ୟ ଅଦ୍ଭୁତକର୍ମା ବାୟୁ ନନ୍ଦନ ଯେ,
ସିନ୍ଧୁରେ ରହି ଖଗଙ୍କୁ ଟାଣି ଭକ୍ଷଇ ନିତି ଛାତିକୁ ଝୁଣି
ଭୟରେ ତା'ର ଥରେ ଶରୀର କମ୍ପଇ ପ୍ରାଣ ଯେ,
ତୁମ୍ଭର ଦୟାରୁ ରହିବୁ ଶାନ୍ତିରେ ଯେ,
ସଫଳ ହୋଇବ ଆମ୍ଭ ଆଶିଷରେ ଯେ,
ଧୈର୍ଯ୍ୟ ସମଝ ତୁମ ସମାନ କୁଶଳୀ ସହିତ ବୁଦ୍ଧିମାନ
ଅସଫଳତା ଆସିବ କେହ୍ନେ ତାହା ପାଖରେ ଯେ ।୨୯ ।
ନିର୍ଭୟ ଦାନ କରି ଖେଚରେ ଗମି ତୀବ୍ରେ ଦକ୍ଷିଣ ଦିଶାରେ
ନିର୍ବିଘ୍ନେ ଲଙ୍କା ସମୁଦ୍ର ତଟେ ଯାଇ ହାଜର ଯେ,
ସୁଗନ୍ଧ ଯୁକ୍ତ ସୁମନ ଫଳ ପୁରି ଅଛନ୍ତି ବୃକ୍ଷ ସକଳ
ଉପବନର ସୌନ୍ଦର୍ଯ୍ୟ ଦେଖି ମନ ବିଭୋର ଯେ,
ଭ୍ରମର ଗଣେ ତହିଁ କରି ଗୁଞ୍ଜନ ଯେ,
ମନ ଆକର୍ଷେ ଖଗଙ୍କର କୂଜନ ଯେ,
ମୃଗ ଶାବକେ କ୍ରୀଡ଼ା କରନ୍ତି ପ୍ରସନ୍ନତାରେ ଦୌଡ଼ି ଘୂରନ୍ତି
ଶୀତଳ ବାଆ ହରଇ ମନ ରମ୍ୟ ସେ ସ୍ଥାନ ଯେ ।୩୦ ।
ଅଞ୍ଜନୀ ପୁତ୍ର ଚାରି ପାରୁଶ ଚାହିଁ ଦେଖଇ ହୋଇ ହରଷ
ଦେଖିଲା ତ୍ରିକୁଟ ପର୍ବତରେ ଲଙ୍କା ନଗରୀ ଯେ,
ଦୂରୁ ଦିଶଇ ରମ୍ୟ ସୁନ୍ଦର ସୁରମ୍ୟ ଅଟ୍ଟାଳିକା ତାହାର
ବିଚାର କରେ ପ୍ରବିଷ୍ଟ ହେବ ତହିଁ କିପରି ଯେ,
ଦୁର୍ଦ୍ଧର୍ଷ ରାକ୍ଷସ ରାଜା ଦଶାନନ ଯେ,
ସମର ତା ସାଥେ ହେବ ଘମାସନ ଯେ,
ରକ୍ଷ ବାନର ପ୍ରଭୁ ସହିତ ରହିବେ କାହିଁ ହୋଇ ନିଶ୍ଚିନ୍ତ
ମିଳିବ ଖାଦ୍ୟ ପାନ କେଉଁଠି କେବଣ ସ୍ଥାନ ଯେ ।୩୧ ।

ଚିନ୍ତଇ ମନେ ଅଗମ୍ୟ ଦୁର୍ଗ ଦେଖିବି ପ୍ରବେଶ ପଥ ବର୍ଗ
ବିଶାଳ ବେଶେ ଦିନ ପ୍ରକାଶେ କିପରି ଯିବି ଯେ,
ଅସୁରଗଣ ମୋ ଆଗମନ ବିଦିତ ହେଲେ ଭିଡ଼ିବେ ରଣ
ସୂକ୍ଷ୍ମ ବେଶରେ ନିଶାରେ ଯିବି ଦୁର୍ଗ ଦେଖିବି ଯେ,
ରାତ୍ରି ଗମନ ମୋ ପାଇଁ ହିତକାରୀ ଯେ,
ଧୈର୍ଯ୍ୟ ଧରି ରହିବି ଅପେକ୍ଷା କରି ଯେ,
ତରତର ହେଲେ ହରବର ଅଧୈର୍ଯ୍ୟ ପଣଟି ହାନିକର
ଧଇର୍ଯ୍ୟ ଫଳ ଅଟଇ ମିଠା ସର୍ବ ଉପରି ଯେ ।୩୨ ।
ଉଛୁଳି ଉର୍ଦ୍ଧ୍ୱେ ପବନ ସୁତ ଚଢ଼ିଲେ ଏକ ଉଚ୍ଚ ପର୍ବତ
ଶିଖରେ ବସି ଦେଖନ୍ତି ଲଙ୍କା କି ମନୋହର ଯେ,
ସୁବର୍ଣ୍ଣ ବର୍ଣ୍ଣ ଝଟକେ ରଙ୍ଗ ଲହଡ଼ି ମାରେ ରଙ୍ଗ ତରଙ୍ଗ
କାରୁକାର୍ଯ୍ୟ ଅବର୍ଣ୍ଣନୀୟ ଦିଶେ ସୁନ୍ଦର ଯେ,
ସୁଦୃଢ଼ ଦୁର୍ଗେ ସେହିପୁର ଘେରିତ ଯେ,
ଚତୁର୍ଦ୍ଦିଗେ ମହୋଦଧି ଅବସ୍ଥିତ ଯେ,
ଦୁର୍ଗ ପ୍ରାଚୀର ପ୍ରବେଶ ଦ୍ୱାର ସୁନା ଜଡ଼ିତ ସମସ୍ତ ପୁର
ନୀଲମ ରତ୍ନ ଚଉତରାଟି ଦ୍ୱାରରେ ସ୍ଥିତ ଯେ ।୩୩ ।
ପଥ ସମୁଚୟ ସୁବିସ୍ତୃତ ସୁସ୍ୱଚ୍ଛ ଆକର୍ଷକ ଅତ୍ୟନ୍ତ
ସ୍ଥାନ ସ୍ଥାନରେ ରହିଛି ବନ ତଡ଼ାଗମାନ ଯେ,
ମନ ରସଇ ବିଶ୍ୱକର୍ମାର ନିର୍ମାଣ ଶୈଳୀ ଦେଖି ନଗର
ସତେକି ସବୁ କରିଛି ସାରି ଜ୍ଞାନ ନିର୍ମାଣ ଯେ,
କଠୋର ସୁରକ୍ଷା ବ୍ୟବସ୍ଥା ସର୍ବତ୍ର ଯେ,
ବିକରାଳ ରାକ୍ଷସ ଛନ୍ତି ସଶସ୍ତ୍ର ଯେ,
ଧନୁର୍ବାଣ ନେଇଣ ରାକ୍ଷସେ ସଜାଗ ହୋଇ ଘୂମିବା ଦିଶେ
ଦେଖୁ ଦେଖୁଣୁ ଲଙ୍କାର ଦୃଶ୍ୟ ସନ୍ଧ୍ୟା ଆଗତ ଯେ ।୩୪ ।
ପ୍ରକାଶ ଧିରେ ଧିରେ କମିଲା ପୂରୁବ ଦିଗେ ଶଶୀ ଦିଶିଲା
ବଣର ଜୀବେ ରହିବା ସ୍ଥାନେ ତୀବ୍ରେ ଗମିଲେ ଯେ,
ଶୃଗାଳ ଦୂର ବନ ପ୍ରଦେଶେ ରଡ଼ିଲା ଯିବ ଖାଦ୍ୟ ଲାଳସେ
ବଣିକେ ନିଜ ପସରା ଧରି ଗୃହେ ଫେରିଲେ ଯେ,
ଶୁଭେ ଗୁରୁକୁଳରୁ ବେଦର ଧ୍ୱନି ଯେ,
ବ୍ରାହ୍ମଣେ ସନ୍ଧ୍ୟା କଲେ ସମୟ ଜାଣି ଯେ,
ରହି ରହିକା ମାଆ କୋଳରେ ଛୁଆର କାନ୍ଦ ଶୁଭେ କର୍ଣ୍ଣରେ

ବୃଦ୍ଧା ମାଆଟି କାମୁଡ଼ି ମାଟି କାନ୍ଦେ ବାହୁନି ଯେ ।୩୫ ।
ଚଳିଲେ ରବି ପ୍ରତୀଚୀ କୋଳେ ଖଗେ ଫେରିଲେ ପାଦପ ଡାଳେ
କୃଷକ ଗୃହେ ଶ୍ରୀଭଗବତ ଫେରି ପଢ଼ଇ ଯେ,
ଘର ଘରଣୀ ତୁଳସୀ ମୂଳେ ସଞ୍ଜବତୀଟି ଶ୍ରଦ୍ଧାରେ ଜାଳେ
ଦୂର ମନ୍ଦିରୁ ଘଣ୍ଟ ଘଣ୍ଟିର ଶବ୍ଦ ଶୁଭଇ ଯେ,
ଶଙ୍ଖ ଫୁଙ୍କେ ବାଳା ପୂଜା ଗୃହେ ତାର ଯେ,
ଗାଈଆଳ ଆଣେ ଗୋଗୋଷ୍ଠ ତାହାର ଯେ,
ବିଦ୍ୟାର୍ଥୀ ସର୍ବେ ପୁସ୍ତକ ଧରି ଗୁରୁ ଗୃହକୁ ଗମନ କରି
ଆଲୋକ ଜାଳି ପଢ଼ିଲେ ନମି ଉମା କୁମର ଯେ ।୩୬ ।
ଜାଣି ସମୟ ମରୁତ ସୁତ ଶରୀର କରି ଲଘୁ ଅତ୍ୟନ୍ତ
କଲା ପ୍ରବେଶ ଲଙ୍କା ନଗରେ ରାମ ସ୍ମରିଣ ଯେ,
ଅଧିଷ୍ଠାତ୍ରୀ ଦେବୀ ସେ ଲଙ୍କାର ଲଙ୍କିନୀ ଦେଖି ବାୟୁ କୁମର
କିଏରେ ତୁହି ପଚାରେ ଜଗି ଧମକେଇଣ ଯେ,
ହନୁମାନ କଲେ ମୁଷ୍ଟିକା ପ୍ରହାର ଯେ
ଲଙ୍କିନୀ ମୂର୍ଚ୍ଛିତ ଉଗାଳେ ରୁଧିର ଯେ,
ଉଠି ବସିଲା କିଛି କ୍ଷଣରେ ସମ୍ଭାଳି ନମି ପ୍ରାର୍ଥନା କରେ
ତୁମେ ନିଶ୍ଚିତ ଶ୍ରୀରାମ ଦୁତ ସୁତ ବାତର ଯେ ।୩୭ ।
ବହୁତ ପୂର୍ବେ ଚତୁରାନନ ଶୁଣାଇ ଥିଲେ ମୋତେ ବଚନ
ତ୍ରେତୟା ଯୁଗେ ଇକ୍ଷ୍ୱାକୁ ବଂଶେ ରାମ ଜନ୍ମିଣ ଯେ,
ପିତାଙ୍କ ସତ୍ୟ କରି ପାଳନ ଚଉଦ ବର୍ଷ ବୁଲିବେ ବନ
ସହଧର୍ମିଣୀ ମାୟାରୂପେଣ ହରି ରାବଣ ଯେ,
ଆଣିବ ଲଙ୍କାରେ ଖୋଜିଣ ନିଶାରେ ଯେ,
ବାନର ଏକଇ ମୁଷ୍ଟି ପ୍ରହାରରେ ଯେ,
ଜାଣିବୁ ଯେବେ ହେବୁ ବ୍ୟାକୁଳ ଧ୍ୱଂସ ପାଇବ ଅସୁର କୁଳ
ଧନ୍ୟ ହୋଇଲି ଆଜି ଭେଟିଲି ଭକ୍ତ ଶ୍ରେଷ୍ଠରେ ଯେ ।୩୮ ।
ବାନର ମଣି ବାୟୁ ନନ୍ଦନ ଅତ୍ୟନ୍ତ କ୍ଷୁଦ୍ର ରୂପ ଧରିଣ
ଚଳିଲେ ଖରେ ଲଙ୍କା ନଗରେ ପ୍ରଭୁ ସ୍ମରିଣ ଯେ,
କେଶରୀ ସୁତ ସିନ୍ଧୁ ଲଙ୍ଘନ ଲଙ୍କିନୀ ବାଧା ଦୂରୀକରଣ
ଲଙ୍କା ପ୍ରବେଶ ଆଦି ଯେତେକ ଘଟଣା ମାନ ଯେ,
ସୀତା ମାତା ସହ ରାକ୍ଷସ ରାଜନ ଯେ,
ସଂକେତ ରୂପରେ ପହଞ୍ଚି ଯାଇଣ ଯେ,

ବାହୁ ନୟନ କମ୍ପିଲା ଦୁଇ ବାମ ଦକ୍ଷିଣ ଅଙ୍ଗ ଡିଅଁଇ
ଯିଏ ଯେମନ୍ତ ପାଇ ସଂକେତ ଜାଣିଲେ ମନ ଯେ ।୩୯ ।
ଦୁଃଖ ସମ୍ବାଦ ଆସିବ ବୋଲି ଦଶାନନର ହୃଦ ଚହଲି
ମନକୁ ତା'ର ଦହିଲା ଦୃଢ଼େ ସେ ବିଚଳିତ ଯେ,
ସୁଖ ଖବର ଆସିବ ବୋଲି ରାଘବ ସୀତା ଶୋଇବା ଭୁଲି
ମନ ଆନନ୍ଦେ ତାଙ୍କ ଅଧିର ହୃଦ ମୋହିତ ଯେ,
ମୋ ପରି ଯେତେକ ଭାଗ୍ୟହୀନ ଜନ ଯେ,
ପ୍ରଭୁଙ୍କ ଖୁସିରେ ହେଲେ ଖୁସିମନ ଯେ,
ପ୍ରଭୁକୃପାରୁ ମୁରୁଖ ହୋଇ ରୂଖାରେ ଚଢ଼ି ପିମ୍ପୁଡ଼ି ହୋଇ
ତାଙ୍କ ଚରିତ ଭାଷେ ସୁରେଶ ବିଦୁଷେ ଶୁଣ ଯେ ।୪୦ ।



# ଊନବିଂଶ ଛାନ୍ଦ

(ବିଭୀଷଣ ମିଳନ)

ରାଗ-ଆହାରୀ, ଦୂତାଇ ବାରମାସୀ ବାଣୀ

ତ୍ରୈଲୋକ୍ୟ ବନ୍ଦନୀ ଜନକ ନନ୍ଦିନୀ ଦର୍ଶନେ ବ୍ୟାକୁଳ ଚିନ୍ତିତ
ଲଙ୍କା ନଗରୀରେ ଲୁଚି ଲୁଚି ବୁଲେ ଶ୍ରୀରାମ ଭକ୍ତ ହନୁମନ୍ତ
ଲଙ୍କାରେ, ସାବଧାନ ହୋଇ ଖୋଜଇ,
ବିଚିତ୍ର ସୁମନ ଆଭରଣ ଯୁକ୍ତ ସର୍ବ ପ୍ରମୁଖ ସ୍ଥଳେ ଯାଇ ।୧ ।
ଲଙ୍କା ରାଜନର ବହୁ ଗୁପ୍ତଚର ନଗରୀ ମଧ୍ୟରେ ଦିଶନ୍ତି
ଲକ୍ଷରର ଅଧିକ ସଶସ୍ତ୍ର ରକ୍ଷକ ଅନ୍ତଃପୁର ଘେରି ଅଛନ୍ତି
ମାରୁତି, ଧ୍ୟାନ ପୂର୍ବକ ଅଶ୍ୱଶାଳା,
ସୈନ୍ୟଙ୍କ ଛାଉଣୀ ଅସ୍ତ୍ରାଗାର ଦେଖେ ମନ୍ତ୍ରଣା କକ୍ଷ ଗଜଶାଳା ।୨ ।
ଜାନକୀଙ୍କୁ ଖୋଜି ପବନ କୁମର ଗମେ ଅସୁର ପୁରେ ପୁରେ,
ଅଟ୍ଟାଳିକା ମଧ୍ୟେ ଆହାର ବିହାର ଶୟନ କରନ୍ତି ଅସୁରେ,
ମାରୁତି, ଦେଖେ ମନୋରଂଜନ ସ୍ଥଳ,
ମଦମତ୍ତ ଐଶ୍ୱର୍ଯ୍ୟ ମଦରେ ମତ୍ତ ନିଶାଚର ଥିଲେ ପ୍ରବଳ ।୩ ।
ଉଚ୍ଚବୁଦ୍ଧି ଥିବା ସୁନ୍ଦର ବାଚକ ସମ୍ୟକ ଶ୍ରଦ୍ଧାବାନ ଦୈତ୍ୟ
ବହୁରୂପଧାରୀ ଶୁଭନାମଧାରୀ ଦିତି ସୁତ ଥିଲେ ପ୍ରଖ୍ୟାତ
ମାରୁତି, କାହିଁ ନ ଦେଖିଲା ସୀତାଙ୍କୁ,
କିମ୍ବା ବାର୍ତ୍ତାଳାପୁ ସାମାନ୍ୟ ସଙ୍କେତ ପ୍ରାପ୍ତ ହେଲା ନାହିଁ ତାହାକୁ ।୪ ।
ପ୍ରାପ୍ତ ନ ହେବାରୁ ଜାନକୀ ସନ୍ଧାନ ରାକ୍ଷସ ରାଜନ ମହଲେ
ପ୍ରବେଶ ହୋଇଣ ସୁନ୍ଦର ଭବନ ଦର୍ଶନେ ଚକିତ ହୋଇଲେ
ମାରୁତି, ସୁବର୍ଣ୍ଣ ଛାଉଣୀ ଦୁଆର,
ରୌପ୍ୟରେ ଛାଉଣୀ ଆକର୍ଷକ ଚିତ୍ର ଶୋଭା ଦିଶଇ ମନୋହର ।୫ ।
ଅସ୍ତ୍ରଶସ୍ତ୍ର ସହ ଲକ୍ଷ୍ୟାଧିକ ବୀର ଅସୁରେ ସୁରକ୍ଷା କାର୍ଯ୍ୟରେ
ନିୟୋଜିତ ତହିଁ ଅଭେଦ୍ୟ କବଚ ଧରିଛନ୍ତି ନିଜ ଶରୀରେ
ମାରୁତି, ମହଲ ଦର୍ଶନେ ବିସ୍ମିତ,
ବାଜି କରି ରଥେ ପୂର୍ଣ୍ଣ ହୋଇ ସର୍ବେ ଦର୍ଶକେ କରେ ଆଶ୍ଚର୍ଯ୍ୟିତ ।୬ ।
ସର୍ବବିଦ୍ୟା ବିଶାରଦ ହନୁମାନ ଖୋଜନ୍ତି ଆସପାଶ ଗୃହ
କୁମ୍ଭକର୍ଣ୍ଣ, ମହୋଦର ବିରୂପାକ୍ଷ ବିଦ୍ୟୁନ୍ମାଳୀ ବିଦ୍ୟୁତଜିହ୍ୱ
ମାରୁତି, ଖୋଜନ୍ତି ପ୍ରତ୍ୟେକ ପ୍ରାସାଦ,
ହୁଅନ୍ତି ବିମୋହିତ ମହାନ ବୈଭବ ଦେଖିଣ ଅମିତ ସମ୍ପଦ ।୭ ।

ତହୁଁ ଡେଇଁ କରି ବଜ୍ରଦ୍ରଂଷ୍ଟ୍ର ଶୁକ ସାରଣ ଗୃହେ ପ୍ରବେଶିଲେ
ଇନ୍ଦ୍ରଜିତ ଜମ୍ବୁମାଳୀ ସୁମାଳୀର ଅନ୍ତଃପୁର ସବୁ ଖୋଜିଲେ
ମାରୁତି, ବିଦ୍ୟୁତରୂପ ରଶ୍ମିକେତୁ,
ବଜ୍ରକାୟ ଭୀମ ଚକ୍ର ହୟକର୍ଣ୍ଣ ଧୁମାକ୍ଷ ମତ୍ତ ସୂର୍ଯ୍ୟଶତ୍ରୁ ।୮ ।
ସମ୍ପାତି ବିଧନ କପଟ ଲୋମଶ ହସ୍ତିମୁଖ କରାଳ ଘନ
ଶୋଣିତାକ୍ଷ ଧ୍ୱଜ ଗ୍ରୀବ ଦ୍ରଂଷ୍ଟ୍ର ଆଦି ସବୁ ଅସୁରଙ୍କ ଭବନ
ମାରୁତି, ଦେଖିଲା ସାବଧାନତାରେ,
ଜନକ ଦୁଲାରୀ ରାମପ୍ରାଣପ୍ରିୟା ନ ଦିଶଲେ କାହିଁ ନେତ୍ରରେ ।୯ ।
ତହୁଁ ରାବଣର ମହଲରେ ଯାଇ ବାତ ନନ୍ଦନ ପ୍ରବେଶିଲେ
ଶୁଳ ଶକ୍ତି ଗଦା କୋଦଣ୍ଡ ମୁଦ୍ଗର ହସ୍ତେ ରକ୍ଷକେ ତହିଁଥିଲେ
ମାରୁତି, ଏକ ଏକ ପୁର ଖୋଜିଲେ,
ସ୍ୱର୍ଣ୍ଣ କାନ୍ତିଧାରି ରତ୍ନରେ ଜଡ଼ିତ ପୁଷ୍ପକ ବିମାନ ଦେଖିଲେ ।୧୦ ।
ପୁଷ୍ପରେ ମଣ୍ଡିତ ପର୍ବତ ଶିଖର ପରାୟେ ସୁନ୍ଦର ଅତ୍ୟନ୍ତ
ଅଦ୍ଭୁତ ପରମ ମନୋହର ସେହି ବିମାନକୁ ଦେଖି ବିସ୍ମିତ
ମାରୁତି, କରେ ଆଖପାଖ ସନ୍ଧାନ,
ନ ପାଇ ଦର୍ଶନ ପ୍ରବେଶ କରଇ ରାବଣର ନିଜ ସଦନ ।୧୧ ।
ଲଙ୍କପତି ନିଜ ନିବାସ ମଧ୍ୟରେ ରାଣୀଏ ରାକ୍ଷସ ଜାତିର
ହରଣ କରିଣ ଯେତେ ରାଜକନ୍ୟା ଆଣି ରଖିଛି ସେହି ପୁର
ତହିଁରେ, ସୁବର୍ଣ୍ଣ ଦୀପକ ଜଳଇ,
ଚଟାଣ ପାବଛ ରତନ ଖଚିତ ସୁବର୍ଣ୍ଣ ଝରକା ଶୋଭଇ ।୧୨ ।
ବାସବ ସଦନୁ ବଳି ଶୋଭମାନ ଦେଖୁ ଦେଖୁ ରାବଣ ଘର
ରାତ୍ର ଆସି ଅର୍ଦ୍ଧ ହୋଇବାର ଜାଣି ଅଞ୍ଜନା ସୁତ ତରତର
ଦେଖଇ, ସହସ୍ର ପୁଷ୍ପ ବିମଣ୍ଡିତା,
ବଭିନ୍ନ ରଙ୍ଗ ବସ୍ତ୍ର ଧାରି ସୁନ୍ଦରୀ ବିଭିନ୍ନ ବେଶେ ବିଭୂଷିତା ।୧୩ ।
ରାତ୍ରୀ ଜାଗରଣ ସାଥେ ସୁରାପାନ କାରଣୁ ଅବିନ୍ୟସ୍ତ ଭାବେ
ବସନ ସଂଯତେ ଶରୀରେ ନ ଥାଇ ପଡ଼ିଛନ୍ତି ଚେତା ଅଭାବେ
ମାରୁତି, ପୂର୍ବୁ ଦେଖିନି ଜନକୀଙ୍କୁ,
ସାତ୍ତ୍ୱିକ ତେଜରୁ ଜ୍ଞାତ କରିବାକୁ ଦେଖଇ ତରୁଣୀ ମାନଙ୍କୁ ।୧୪ ।
ସାମାନ୍ୟ ଆଗରେ ସ୍ଫଟିକ ମଣିର ଦିବ୍ୟ ବେଦୀ ଏକ ରହିଛି
ତାପରେ ରତ୍ନ ପର୍ଯ୍ୟଙ୍କର ଉପରେ ଲଙ୍କାପତି ନିଦ୍ରା ଯାଇଛି
ମାରୁତି, ଦେଖିଲା ତା' ଶୟନ ଦୃଶ୍ୟ,

ବ୍ୟଜନ ଚାଳନା କରନ୍ତି ଲଳନା ଠିଆ ହୋଇ ଚାରି ପାରୁଶ ।୧୫ ।
ଚରଣ ପାସରେ ପତ୍ନୀମାନେ ତା'ର ପଡ଼ିଥିଲେ ସୁପ୍ତ ଭାବରେ
ଅନେକ ସୁନ୍ଦରୀ ହସ୍ତେ ବୀଣା ଧରି ବିଭୋର ଅଛନ୍ତି ନିଦ୍ରାରେ
ମାରୁତି, ପୃଥକ ସୁନ୍ଦର ପର୍ଯ୍ୟଙ୍କେ,
ଅନୁପମା ରୂପ ଲାବଣ୍ୟ ସଂପନ୍ନା ଦେଖିଲେ ଶୋଇଛି ନିଶଙ୍କେ ।୧୬ ।
ସୁକୋମଳ ସୁନ୍ଦର ଅଙ୍ଗ ତାହାର ସୁଶୋଭିତ ଆଭୁଷଣରେ
ଅଙ୍ଗକାନ୍ତି ତା'ର ଦିପ୍ତୀ ପ୍ରକାଶଇ ସୁବର୍ଣ୍ଣ ଯେସନ ଅଗ୍ନିରେ
ମାରୁତି, ଚିନ୍ତେ ଏ କି ମାତା ଜାନକୀ,
ଚିନ୍ତୁ ଚିନ୍ତୁ ମନେ ଭରିଗଲା ହର୍ଷ ଡିଅନ୍ତି ପୁଚ୍ଛ ଉଚ୍ଚେ ଟେକି ।୧୭ ।
କିଛି କ୍ଷଣ ମଧ୍ୟେ ପୁଣି ସେ ଭାବିଲେ ପରମା ସତୀ ମାତା ସୀତା
ପରମ ପ୍ରଭୁ ଶ୍ରୀ ରାମଙ୍କ ବିୟୋଗେ ସୁପ୍ତ କେହ୍ନେ ହୋଇ ଅଚିନ୍ତା
ମାରୁତି, ଚିତ୍ତ ଚିନ୍ତାରେ ଭାରାକ୍ରାନ୍ତ,
ବସ୍ତ୍ରାଭରଣରେ ଶୃଙ୍ଗାର ରଚିଣ କେହ୍ନେ ହୋଇବେ ସୁରାସକ୍ତ ।୧୮ ।
ମାତା ସୀତା ପରି ପତିବ୍ରତା ନାରୀ ଯିବ ପରପୁରୁଷ ପାଶେ
ପରମ ପ୍ରଭୁ ଶ୍ରୀରଗୁନାଥ ଠାରୁ ଅଧିକ ସୁନ୍ଦର କିଏ ସେ
ମାରୁତି, ଭାବଇ ଏ ସୀତା ନୁହଁନ୍ତି,
ଜନକ କିଶୋରୀ ଏହି ନାରୀ ବୋଲି ଚିନ୍ତିବା ଅଟଇ ମୋ ଭ୍ରାନ୍ତି ।୧୯ ।
ପୁଣି ମହାମତି ରାବଣ ସଦନେ ସୁପ୍ତ ଯେତେ ଯେତେ ସୁନ୍ଦରୀ
ଜଣ ଜଣ କରି ଅଞ୍ଜନା କୁମର ଦେଖିଲେ ନିରୀକ୍ଷଣ କରି
ମାରୁତି, ମନରେ କରନ୍ତି ବିଚାର,
ବାଳ ବ୍ରହ୍ମଚାରୀ ରାମ ଦୂତ ପର ନାରୀ ଦର୍ଶନ ପାପ ମୋର ।୨୦ ।
ନିଜ ମାତ୍ରା ବିନା ଅନ୍ୟ ନାରୀ ପରେ ଆଜି ଯାଏଁ ଦୃଷ୍ଟି ମୋହର
ପଡ଼ିନାହିଁ କେବେ ଆଜି ଏହି ଠାବେ ଧର୍ମଚ୍ୟୁତ ହେଲା ଶରୀର
ମାରୁତି, ମନରେ ହୋଇଲା ଶଙ୍କିତ,
ତନୁ ମନ ପ୍ରାଣ ମଧ୍ୟେ ବିଦ୍ୟମାନ ରାମ ଯା'ର ସେ ହନୁମନ୍ତ ।୨୧ ।
ଭାବଇ ମନରେ ସମସ୍ତ ପାପର ମୂଳ ଅଟେ ଜୀବର ମନ
ସୁପ୍ତ ରମଣୀଙ୍କୁ ଦେଖିଛି ସିନା ମୁଁ ବିକାରିତ ହୋଇନି ଧ୍ୟାନ
ମାରୁତି, ସ୍ୱେଚ୍ଛାରେ ଦେଖିନାହିଁ ନାରୀ,
ପ୍ରଭୁ କାର୍ଯ୍ୟ ପାଇଁ ରାବଣ ସଦନେ ଦେଖିଲି ଏତେକ ସୁନ୍ଦରୀ ।୨୨ ।
ମାତା ଜାନକୀଙ୍କ ଠାବ ଓ ଚିହ୍ନଟ ନିମନ୍ତେ କରିଛି ଦର୍ଶନ
ଏଣୁ ଏ କାର୍ଯ୍ୟରେ ସର୍ବଥା ନିର୍ଦ୍ଦୋଷ କଳୁଷିତ ନୁହେଁ ମୋ ମନ

ମାରୁତି, ଜାନକୀ ଖୋଜଇ ନିମନ୍ତେ,
ବନ ଉପବନ ବାଟିକା ମନ୍ଦିର ସଭା ଭବନ ସୈନ୍ୟ କ୍ଷେତ୍ରେ ।୨୩।
ସମ୍ପୂର୍ଣ୍ଣ ସଜଗ ହୋଇ କପିବର ରାତ୍ରିସାରା ଖୋଜେ ସର୍ବତ୍ର
କାହିଁ ନ ମିଳନ୍ତି ଉଦାସୀ ଘାରଇ ପହଞ୍ଚିଲା ବ୍ରାହ୍ମ ମୁହୂର୍ତ୍ତ
ମାରୁତି, ସହସା ଭବନ ପବିତ୍ର,
ସୌଭାଗ୍ୟେ ବଳରେ ଦୃଷ୍ଟିକୁ ଆସିଲା ମନ୍ଦିର ପାଶରେ ଶୋଭିତ ।୨୪।
ଗୃହ କାନ୍ଥ ପରେ ଅବତାର ଲୀଳା ଚିତ୍ରେ ହୋଇଛି ପ୍ରଦର୍ଶିତ
ରାମ ନାମ ଲିପିବଦ୍ଧ ହୋଇଅଛି ଦ୍ୱାରେ ଧନୁର୍ବାଣ ଅଙ୍କିତ
ମାରୁତି, ରାମାୟୁଧ ଦେଖି ଚକିତ,
ମଣି ପ୍ରକାଶରେ ପାଶେ ପଟାଳୀରେ ଦିଶେ ପୁଷ୍ପ ତୁଳସୀ କ୍ଷେତ ।୨୫।
ସହଜେ ରାକ୍ଷସେ ଧର୍ମକର୍ମ ବେଦ ଯାଗଯଜ୍ଞ ଦେବ ବ୍ରାହ୍ମଣ
ଗୋମାତା ଆଦିଙ୍କ କରନ୍ତି ସେମାନେ ଦୃଢ଼େ ଶତ୍ରୁତା ଆଚରଣ
ମାରୁତି, ରାକ୍ଷସ ପୁରୀରେ ମନ୍ଦିର,
ଆଶ୍ଚର୍ଯ୍ୟ ଚକିତ ହୋଇଣ ସଂଶୟ ମୋଚେନେ ହୋଇଲେ ବାହାର ।୨୬।
ଏ କାଳେ ରାବଣ ଅନୁଜ ମହାତ୍ମା ବିଭୀଷଣ ଶଯ୍ୟା ତେଜିଣ
ଭଗବାନ ଶ୍ରୀରାମଙ୍କର ନାମକୁ ଶ୍ରଦ୍ଧାରେ କଲେ ଉଚ୍ଚାରଣ
ମାରୁତି, ଶ୍ରୀରାମଙ୍କ ନାମ ଶୁଣିଣ,
ଭଗବତ ଭକ୍ତ ପୁରୁଷ ଏ ଜାଣି ଦ୍ୱିଜବେଶ କଲେ ଧାରଣ ।୨୭।
ଦ୍ୱିଜ ହନୁମାନ ଅତି ଉଚ୍ଚସ୍ୱରେ ଗାଇଲେ ନାମ ପ୍ରଭୁଙ୍କର
ରାମନାମ ଶୁଣି ଶୀଘ୍ର ବିଭୀଷଣ ବାହାରକୁ ହେଲେ ବାହାର
ମାରୁତି, ଚରଣେ କରିଣ ପ୍ରଣାମ,
ପଚାରିଲେ ପ୍ରଭୁ କିଏ ସେ ଆପଣ ପଠାଇଲେ କି ଶ୍ରୀରାମ ।୨୮।
ଭଗବାନ ଭକ୍ତ ନିଶ୍ଚୟ ଆପଣ ଦର୍ଶନେ ହୃଦୟ ପ୍ରସନ୍ନ
ଅଥବା ହୃଦୟ ବନ୍ଧୁ କୃପାସିନ୍ଧୁ ଆପଣ ସ୍ୱୟଂ ଭଗବାନ
ବ୍ରାହ୍ମଣ, ପରିଚୟ କର ପ୍ରଦାନ,
ବ୍ରାହ୍ମଣ ବେଶରେ ଆତୁରତା ଶୁଣି ଦେଇଅଛ ସତେ ଦର୍ଶନ ।୨୯।
ବିଭୀଷଣଙ୍କର ସରଳ ପ୍ରଶ୍ନର ହନୁମାନ ଦେଲେ ଉତ୍ତର
ପବନ କୁମର ନାମ ହନୁମାନ ଦୂତ ପ୍ରଭୁ ଶ୍ରୀରାମଙ୍କର
ଭକ୍ତ ହେ, ସୀତା ଠାବ କରିବା ପାଇଁ,
ତାଙ୍କରି ନିର୍ଦ୍ଦେଶେ ଆସିଛି ଲଙ୍କାରେ ପ୍ରସନ୍ନ ଦରଶନ ପାଇ ।୩୦।
କୁହ ଭକ୍ତବର ଏ ଲଙ୍କା ନଗ୍ରରେ ବୋଲଇ ହରି ନାମ ଯିଏ

ରାକ୍ଷସ ପୁରୀରେ ଅରାକ୍ଷସ କାର୍ଯ୍ୟ କରଣେ ସାମର୍ଥ୍ୟ ଯୁଟାଏ
ଭକ୍ତ ହେ, ପରିଚୟ ଦିଅ ତୁମର,
ଶ୍ରବଣେ ଶୁଣିଣ ଆତ୍ମା ତୃପ୍ତ ହେଉ ଶୁଭ ନାମ ଗୋଟି ତୁମ୍ଭର ।୩୧ ।
ଶ୍ରୀରାମଙ୍କ ସ୍ମୃତି ଶ୍ରୀରାମଙ୍କ ଦୂତ ହନୁମାନେ ଦେଖି ସମ୍ମୁଖେ
ବିଭୀଷଣଙ୍କର ବିଚିତ୍ର ଯେ ସ୍ଥିତି ବଚନ ନ ସ୍ଫୁରଇ ମୁଖେ
ନେତ୍ରରୁ, ପ୍ରେମାଶ୍ରୁ ବହେ ଝରଝର,
ଲୋମ ପୁଲକିତ ଅଙ୍ଗ ଶ୍ରୀହରିତ ସ୍ୱେଦ ସ୍ୱେଦ ସାରା ଶରୀର ।୩୨ ।
ନିଜକୁ ସମ୍ଭାଳି ବୋଲେ ବିଭୀଷଣ ପ୍ରଭୁ ଶ୍ରୀରାମ ଦୂତ ଶୁଣ
ରାକ୍ଷସ ରାଜନ ରାବଣ ଅନୁଜ ଅଧମ ନାମ ବିଭୀଷଣ
ଦର୍ଶନ, ପ୍ରାପ୍ତେ ହେଲି ସୌଭାଗ୍ୟବାନ,
ଦୁଇ ଦନ୍ତପନ୍ତି ମଧ୍ୟେ ଜିହ୍ୱା ସ୍ଥିତି ଯେମନ୍ତ ତେମନ୍ତ ଜୀବନ ।୩୩ ।
ରାକ୍ଷସ କୁଳରେ ଜନମ ମୋହର ତାମସିକ ପ୍ରାଣୀଟେ ମୁହିଁ
ଭଜନ ଜଣାଣ ଅନଭିଜ୍ଞ ମୁଁ ଯେ ପ୍ରଭୁ ଚରଣେ ପ୍ରୀତି ନାହିଁ
ଶ୍ରୀରାମ, କରିବେ କରୁଣା ନିଶ୍ଚୟ,
ସର୍ବଥା ଅନାଥ ଜାଣି ନିରୁପାୟ ଦୀନ ହୀନ ଓ ଅସହାୟ ।୩୪ ।
ଭାବିଥିଲି କେବେ ପ୍ରଭୁକୃପା ହେବ ସଂଶୟ ମନେ ଥିଲି ରହି
ପ୍ରଭୁ କୃପା ବିନା ସନ୍ଥ ଦରଶନ ଶୁଣି ଜାଣିଛି ହୁଏ ନାହିଁ
ବିଶ୍ୱାସ, ଦୃଢ଼ ଏବେ ହେଲା ମୋହର,
ଅନୁଗ୍ରହ କରି ମୋ ପ୍ରଭୁ ଶ୍ରୀରାମ ପେଶି ଅଛନ୍ତି ଦ୍ୱିଜବର ।୩୫ ।
ଭକ୍ତ ଅନୁକମ୍ପୀ ଶ୍ରୀପବନ ପୁତ୍ର ଦେଖି ଭକ୍ତ ବିଭୀଷଣର
ଭଗବତ ପ୍ରୀତି ଅତିପୁଲକିତ ମନେ ମନେ ହେଲେ ନିଜର
ମାରୁତି, ବଚନ ବୋଲନ୍ତି ମଧୁର,
ଆହେ ବିଭୀଷଣ ବଡ଼ ଭାଗ୍ୟବାନ ଧନ୍ୟ ଏ ଜୀବନ ତୁମର ।୩୬ ।
ଯେ ପ୍ରଭୁ ଭକତି ଯୋଗୀନ୍ଦ୍ରେ ମୁନୀନ୍ଦ୍ରେ ଅଟଇ ଅତ୍ୟନ୍ତ ଦୁର୍ଲଭ
ସେ ପ୍ରଭୁ ଚରଣେ ଅଦ୍ଭୁତ ଭକତି ସହଜେ ହୋଇଛି ସୁଲଭ
ଶ୍ରୀରାମ, ଜାତି, କୁଳ, ମାନ ବଡ଼ାଇ,
କିଛି ଦେଖନ୍ତିନି, ନିଶ୍ଚଳ ହୃଦୟ ପ୍ରୀତି ଶୁଦ୍ଧ ପ୍ରୀତି ଇଚ୍ଛଇ ।୩୭ ।
ଯେଉଁ ଭକତର ନିସର୍ତ୍ତ ଭକତି ବିକ୍ରି ହୋଇ ତା ହସ୍ତେ ଯାନ୍ତି
ବଂଶ ବା ଗୌରବ ଧନ ନ ଦେଖନ୍ତି ତା'ର ପଛେ ପଛେ ଧାମନ୍ତି
ଶ୍ରୀରାମ, ଦେଖ ମୋହପରି ବାନର,
ନୀଚ ଓ ଚଞ୍ଚଳ ଅଧମ ନାଚାର ପ୍ରଭୁ କରିଛନ୍ତି ନିଜର ।୩୮ ।

ପ୍ରାତଃକାଳେ ନାମ ମୁଖରେ ଧରିଲେ ପ୍ରାପ୍ତ ହୁଏ ନାହିଁ ଆହାର
ଭକତ ବତ୍ସଳ ସ୍ୱଜନ ସେବକ କରି ଅଛନ୍ତି ଅନୁଚର
କରୁଣା, କରନ୍ତି କରୁଣା ସାଗର,
ଚରାଚର ସୃଷ୍ଟି ପାଳନ କର୍ତ୍ତା ସେ ଭୁତ ମାନେ ତା' ଅନୁଚର ।୩୯ ।
ଅଦଭୁତ କୃପା ତୁମ ପରେ ଅଛି ତୁମେ ବାସ୍ତବେ ଭାଗ୍ୟବାନ
ପ୍ରଭୁଙ୍କୁ ନିଜର ସର୍ବସ୍ୱ ମଣିବା ମହାନ ଭକତ ଆପଣ
ଭକ୍ତ ହେ, ଏ ଅଟେ ପ୍ରଭୁ କୃପା ଫଳ,
ରାବଣ ରାଜ୍ୟରେ ଏ ଅସୁର ପୁରେ ଦର୍ଶନେ ଯାତ୍ରା ମୋ ସଫଳ ।୪୦ ।
ଶ୍ରୀରାଘବେନ୍ଦ୍ରଙ୍କ ଶୀଳ ସ୍ୱଭାବର ଗୁଣଗାନେ ଦୁହେଁ ତଲ୍ଲୀନ
ସମୟ ଶରୀର ଜ୍ଞାନକୁ ହରାଇ ଭକ୍ତି ସରେ ଥିଲେ ବୁଡିଣ
ଦୁହିଁଙ୍କ, ନେତ୍ରୁ ବହୁଥିଲା ସରିତା,
ଅଙ୍ଗ ପୁଲକିତ ମନ ଉଲ୍ଲସିତ ଡର ଭୟ ଶୂନ୍ୟ ଅଚିନ୍ତା ।୪୧ ।
କର୍ତ୍ତବ୍ୟ ତାଡ଼ନା କାରଣୁ ମାରୁତି କହଲେ ହୋଇ ସାବଧାନ
ପ୍ରଭୁଙ୍କ ନିର୍ଦ୍ଦେଶେ ମାତା ସୀତା ଠାବେ ଆସିଅଛି ହେ ବିଭୀଷଣ
ଶର୍ବରୀ, ସରି ସରି ଦେଖ ଆସଇ,
ସୂରୁଜ ଉଇଁଲେ ଦିନ ପ୍ରକାଶରେ କାର୍ଯ୍ୟ କଠିନ ଯିବ ହୋଇ ।୪୨ ।
ତେଣେ ଜଳଧିର ସେପାରେ ବସିଣ କୋଟି କୋଟି ଭାଲୁ ବାନର
ଉତ୍ସୁକତା ସହ ରହିଛନ୍ତି ଚାହିଁ ସଫଳତା ଚିନ୍ତି ମୋହର
ମାତାଙ୍କ, ଦରଶନେ ଅତି ଆତୁର,
ଜନନୀ ଠିକଣା ଦିଅ ହେ ବତାଇ ଅସୁର ଶ୍ରେଷ୍ଠ ଭକ୍ତବର ।୪୩ ।
ଆନନ୍ଦ ବିହ୍ୱଳ ହୋଇ ବିଭୀଷଣ ଶୁଣ ହନୁମାନ ବୋଇଲେ
ଅଶୋକ ବାଟିକା ରାଜପୁର ଆଗେ ରହିଛି କିଛି ଦୂର ଗଲେ
ବିବଧ, ସୁଗନ୍ଧିତ ପୁଷ୍ପ ବୃକ୍ଷରେ,
ରହିଅଛି ପୂର୍ଣ୍ଣ ଫଳ ବୃକ୍ଷମାନ ସହସ୍ର ସହସ୍ର ସଂଖ୍ୟାରେ ।୪୪ ।
ପକ୍ଷୀ କଳରବ ଭ୍ରମର ମାନଙ୍କ ଗୁଞ୍ଜରଣ ଶୁଭେ ସର୍ବତ୍ର
ବାଟିକା ମଧ୍ୟରେ ନିର୍ମଳ ଜଳରେ ସରୋବର ଛନ୍ତି ପୂରିତ
ତଟରେ, ଅଛି ଶଙ୍କରଙ୍କ ମନ୍ଦିର,
ପ୍ରଖ୍ୟାତ ସଶସ୍ତ୍ର ଅସୁର ଅସୁରୀ ଯୋଦ୍ଧା ଜଗିଛନ୍ତି ସେଠାରେ ।୪୫ ।
ଏିବ ମନ୍ଦିରରୁ କିଛି ଦୂରେ ସ୍ଥିତ ଅଶୋକ ବୃକ୍ଷର ମୂଳରେ
ମାତା ସୀତା ବସି ରୋଦନ କରନ୍ତି ପ୍ରଭୁ ରାମଙ୍କ ବିୟୋଗରେ
ମାତାଙ୍କ, କୃଷ୍ଣ କେଶ ହୋଇଛି ଜଟା,

ଅନ୍ନ ଜଳ ତ୍ୟାଗ କରିବା କାରଣେ ଶରୀର ଯେହ୍ନେ ଶୁଷ୍କ ଲତା[୧] ।୪୬ । ୧-ଲୁହମ ଫଳ
ଶରତର ଚାନ୍ଦ ମୁଖଟି ଦିଶଇ ଯେହ୍ନେ ଗ୍ରୀଷ୍ମ କାଳ ଶଶାଙ୍କ
ଚମ୍ପକ ବରନୀ ମାତାଙ୍କ ଶରୀର ଦିଶେ ରାହୁଗ୍ରସ୍ତ ଶଶାଙ୍କ
ଶରୀର, ଶୁଷ୍କ ଯେହ୍ନେ ଶୈତ୍ୟ ସରିତ,
ଶୃଙ୍ଗାର ବିହୀନ ଏକଇ ବସନ ପରିହୀତା ଦୁଃଖି ଅତ୍ୟନ୍ତ ।୪୭ ।
କ୍ରୁର ରାକ୍ଷସିଏ ଜଗି ବସିଛନ୍ତି ଭୟ କରନ୍ତି ପ୍ରଦର୍ଶନ
ରକ୍ଷକ ଶ୍ରେଣୀଙ୍କୁ କରିଣ ଲଙ୍ଘନ ପହୁଁଚିବା ପାଶେ କଠିନ
ମାରୁତି, ପତ୍ନୀ ପୁତ୍ରୀ ଦୁହେଁ ମୋହର,
ସମୟେ ସମୟେ ଦର୍ଶନ କରନ୍ତି ବୋଲିଣ ଆଶ୍ୱସନା ଗୀର ।୪୮ ।
ମାତାଙ୍କ କରୁଣ ଦଶାର ସ୍ମୃତିରେ ଶ୍ରୀହରି ଯାଏ ମୋର ମନ
ସଶସ୍ତ୍ର ପ୍ରହରୀ ସଜାଗ ଅଛନ୍ତି ଗମିବ ହୋଇ ସାବଧାନ
ମାରୁତି, ଅତି ଦୁଃଖି ହୋଇଲେ ଶୁଣି,
ବିଭୀଷଣେ ବୋଲେ, ଚିନ୍ତା କରନାହିଁ, ଭେଟିବି ଜନକ ନନ୍ଦିନୀ ।୪୯ ।
ଲଘୁ ରୂପ ପୁନଃ ଧରି ହନୁମାନ ବିଭୀଷଣ ତଥ୍ୟାନୁସାରେ
ଅଶୋକ ବାଟିକା ଦିଗେ ବାୟୁବେଗେ ଚଳେ ପ୍ରଭୁ ନାମ ହୃଦରେ
ମାରୁତି, ଚିତ୍ତେ ଚିନ୍ତେ ମାତା ସ୍ୱରୂପ,
ସୁରେଶ ଭାଷଇ ହୃଦେ ହେତୁ କରି ଜଗଜ୍ଜନନୀ ସୌମ୍ୟ ରୂପ ।୫୦



# ବିଂଶ ଛାନ୍ଦ

ରାଗ-କେଦାର

(ମାତା ସୀତାଙ୍କ ସହ ଭେଟ)

ଆଦ୍ୟ ପୂଜ୍ୟ ଗଜାନନ ଚରଣେ କରି ନମନ
ପବନ ନନ୍ଦନ ଚରିତ ବର୍ଣ୍ଣନ କରୁଛି ଶ୍ରବଣେ ଘେନ ।୧ ।
ଭକ୍ତି ରସିକ ଭକତ ଭକତ ଶ୍ରେଷ୍ଠ ଚରିତ
କର୍ଣ୍ଣ ପୁଟେ ଘେନ ଆହେ ସୁଧିଜନ ଖଣ୍ଡିବ ସର୍ବ ଦୂରିତ ।୨ ।
ବ୍ରହ୍ମ ବେଳାରେ ଅସୁର ନିଶାରେ ହୋଇଣ ଚୁର
ଇତସ୍ତତ ପଡ଼ି ହୁନ୍ତି ଗଡ଼ାଗଡ଼ି ନିଦ୍ରାରେ ସର୍ବେ ବିଭୋର ।୩ ।
ପ୍ରଭୁଙ୍କ କୃପା ଫଳରେ ବାତ ସୁତ ନିର୍ବିଘ୍ନରେ
ଅଶୋକ ବାଟିକା ପ୍ରବେଶିଣ ଏକା ଚଢ଼ିଲା ଏକ ବୃକ୍ଷରେ ।୪ ।
ପତ୍ର ଗହଳରୁ ତଳେ, ଦେଖିଲା ମାରୁତି ଡୋଳେ
କରୁଣାର ମୂର୍ତ୍ତି ତେଜସ୍ୱିନୀ ସତୀ ଜାନକୀ ପାଦ କମଳେ ।୫ ।
ଶିରକୁ ନୁଆଇଁ ତଳେ, ନେତ୍ରରୁ ବହେ ବିକଳେ,
ଝରଝର ଲୁହ, ଉଠୁଥାଇ କୋହ ଦୁଃ ଯାକି ବୁକୁତଳେ ।୬ ।
ଜଗଜ୍ଜନନୀ ଜାନକୀ ଦର୍ଶନେ କୋଟି ନିଧିକି
ପ୍ରାପ୍ତ କଲା ପରି କପି ମନେ କରି ଚିନ୍ତଇ ଦୁଃଖ ଅରିକି ।୭ ।
ଭାଗ୍ୟକୁ କରେ ପ୍ରଶଂସା ପ୍ରଭୁଙ୍କ କୃପା ବରଷା
ମୋ ପରେ ହେବାରୁ ତାଙ୍କ ପ୍ରସାଦରୁ ପୁରିଲା ମୋହର ଆଶା ।୮ ।
କୃତାର୍ଥ ହୋଇଲି ମୁହିଁ ପ୍ରଭୁ କାର୍ଯ୍ୟ ସିଦ୍ଧି ପାଇଁ
ନିମିତ୍ତ ରୂପରେ ଲାଗିଲି କାର୍ଯ୍ୟରେ ଧନ୍ୟ ପ୍ରଭୁ ରଘୁ ସାଇଁ ।୯ ।
ମାତା ଦୟନୀୟ ଦଶା ଦେଖି ଛାଇଲା ନିରାଶା
ଚଷା ପୁଅ ଯେହ୍ନେ ହୁଅଇ ଶ୍ରାବଣେ ଯେବେ ନ ହୁଏ ବରଷା ।୧୦ ।
କୋଳାହଳ ଦୂରୁ ଶୁଣି ଏ ସମୟେ କପିମଣି
ଅଶୋକ ବୃକ୍ଷରେ ପତ୍ର ଗହଳରେ ଲୁଚିଲେ ବିପଦ ଜାଣି ।୧୧ ।
ମାତା ଜାନକୀ ଡରରେ ଭୀତତ୍ରସ୍ତ ମାନସରେ
ସଂକୁଚିତ ହୋଇ ଶ୍ରୀରାମଙ୍କୁ ଧାୟୀ ବସିଲେକ ସଂଯମରେ ।୧୨ ।
କଜ୍ଜଳ ଗିରି ସମାନ ଦଶମସ୍ତକ ରାବଣ
ଅନେକ ସୁନ୍ଦରୀ ଦ୍ୱାରା ହୋଇ ଘେରି ପହଞ୍ଚିଲା ସେହି ସ୍ଥାନ ।୧୩ ।
କ୍ରୌଞ୍ଚ ଦଳଙ୍କ ମଧ୍ୟରେ ରାଜହଂସିନୀ ପରାୟେ
ତାର ମହାରାଣୀ ମୟର ନନ୍ଦିନୀ ଆକର୍ଷଇ ନେତ୍ର ଦ୍ୱୟେ ।୧୪ ।

ଗର୍ବରେ ସେ ଦଶଗ୍ରୀବ ବହି ମନେ ଅଂହଭାବ
ଜାନକୀଙ୍କ ପାଶେ ଆସି ଧିରେ ଭାଷେ ମନେ ଘେନି ପ୍ରୀତି ଭାବ ।୧୫ ।
ମୋତେ କିମ୍ପାଇଁ ଡ଼ରୁଛ ବ୍ୟର୍ଥେ ଯାତନା ପାଉଛ
ଦୟନୀୟ ସ୍ଥିତି କରତେ ମୋ ଛାତି କିମ୍ପାଇଁ ଆପଣାଇଛ ।୧୬ ।
ବନବାସୀ ସେହି ରାମ ସର୍ବଥା ଅଟେ ଅକ୍ଷମ
ଟିକିଏ ମାତର ଥିଲେ ବଳ ତା'ର କରନ୍ତା ଉଦ୍ଧାର ତୁମ ।୧୭ ।
ତ୍ରୈଲୋକ୍ୟ ବିଜୟୀ ମୁହିଁ ତ୍ରୈଲୋକ୍ୟ ମୋତେ ନମଇଁ
ମନୁଷ୍ୟ ଅସୁର ଯକ୍ଷ ନାଗ ସୁର ଦର୍ଶନେ ହୃଦ କମ୍ପଇ ।୧୮ ।
ମୋ ଲଙ୍କା ତ୍ରିକୁଟ ସ୍ଥିତ ଦୁର୍ଭେଦ୍ୟ ଓ ସୁରକ୍ଷିତ
ପକ୍ଷୀଟିଏ ଛାର ନ ମାରଇ ପର ରାମର ବା କି କର୍ତ୍ତୃତ୍ୱ ।୧୯ ।
ଶତ ଯୋଜନ ସାଗର ହୋଇବ ସେ କେନ୍ହେ ପାର
ଅଭିମାନୀ ମୁଢ଼ ଭାବେ ବଡ଼ବଡ଼ କରିବ କି ବା ଉଦ୍ଧାର ।୨୦ ।
ଛାଡ଼ି ଚିନ୍ତା ଶ୍ରୀରାମର ଚିନ୍ତ ବଳବୀର୍ଯ୍ୟ ମୋର
ଶୁଣ ଚାନ୍ଦ ମୁହିଁ ବର୍ତ୍ତମାନ ମୁହିଁ ଅତୀତ ସ୍ମୃତି ରାମର ।୨୧ ।
ରୁହ ତୁମେ ମୋର ହୋଇ ଶ୍ରୀରାମେ ମନ ଫେରାଇ
ଗନ୍ଧର୍ବ କିନ୍ନର ନାଗ ଯକ୍ଷ ସୁର ବାଳା ଦେବି ପାଦେ ରାଇ ।୨୨ ।
ବଳ ପୂର୍ବକ ଗ୍ରହଣ କରି ରମି ପାରେ ତନ
ହୃଦେ ଚାହେଁ ଯେଣୁ କ୍ଳେଶ ଦାନେ ତେଣୁ ଅନିଚ୍ଛୁକ ମୋର ମନ ।୨୩ ।
ମାନ ମୋହର ବଚନ ତେଜି ମାନ ଅଭିମାନ
ମୋ ଅଭିସାରିଣୀ ମୋ ଅଙ୍କଶାୟିନୀ ହେବାରେ ତୁମ କଲ୍ୟାଣ ।୨୪ ।
ଶର ରାବଣ ବଚନ ଜାନକୀ ଧାତବ କର୍ଣ୍ଣ
ସମର୍ଥ ଭେଦନେ ନ ହେବାରୁ ମନେ ଉତ୍‌କ୍ଷିପ୍ତ ବିଶ୍ରବା ସୁନ ।୨୫ ।
ବୋଲଇ ହୋଇ କ୍ରୋଧିତ କୈକେସୀ ରାକ୍ଷସୀ ସୁତ
ବଢ଼ାନା ମୋ ରୋଷ କର ମୋତେ ତୋଷ ଆନୁକୁଲ୍ୟ ଦେଇ ମତ ।୨୬ ।
କ୍ରୋଧ ହୋଇଲେ ଉପର୍ଣ୍ଣ ମୋ ଚନ୍ଦ୍ରହାସ କୃପାଣ
କୃପଣ ନ ହେବ ମସ୍ତକ ଛେଦିବ ହରି ନେବ ନିଶ୍ଚେ ପ୍ରାଣ ।୨୭ ।
ଶାଗୁଣା କାକ ଶୃଗାଳ କିମ୍ବା ମୋ ରାକ୍ଷସ ବଳ
ଶରୀରର ମାଂସ ଭକ୍ଷିବେ ଅବଶ୍ୟ ପରଖନା ଧୈର୍ଯ୍ୟ ବଳ ।୨୮ ।
ବିଚଳିତ ନ ହୋଇଣ ଦନ୍ତେ ଧରି ଏକ ତୃଣ
ନୁଆଇଁ ଶିରକୁ ଚାହିଁଣ କ୍ଷିତିକୁ ବୋଲନ୍ତି ଜାନକୀ ଶୁଣ ।୨୯ ।
ଆରେ ଅଧମ ରାକ୍ଷସ କର ଯାହା ତୋର ବଶ

ପାପାଚାରୀ ଠାରୁ ପ୍ରାପ୍ତ କଷ୍ଟ ଠାରୁ ମୃତ୍ୟୁରେ ବେଶି ସନ୍ତୋଷ ।୩୦ ।
ତ୍ରୈଲୋକ୍ୟ ବିଜୟୀ ବୋଲି କହୁ ସଂସାରରେ ବୁଲି
ପ୍ରାଣନାଥ ମୋର ନ ଥିବାରୁ ଘର ହରି ଦେଖାଉଛୁ ବେଲି ।୩୧ ।
ଗାଆ କୁତ୍ତା ଗ୍ରାମେ ନିଜ ଟାଣରେ ଦେଖାଏ ଓଜ
ଅନ୍ୟ ଗ୍ରାମେ ଗଲେ ଲାଙ୍ଗୁଳକୁ ଭଲେ ଜାକି ଦୌଡ଼େ ଦେଖି ସଜ ।୩୨ ।
ଯେତେ ଯାଏଁ ପ୍ରଭୁ ରାମ ଆସି ନାହାନ୍ତି ତୋ ଯମ
ଏ ଲଙ୍କା ନଗରେ ଲଙ୍ଘି ସାଗରରେ ଦେଖାଉ ଥାଆ ବିକ୍ରମ ।୩୩ ।
ଆରେ ଦୁଷ୍ଟ ରଖ ମନ ଆସି କୌଶଲ୍ୟା ନନ୍ଦନ
ତୋ ସ୍ୱର୍ଣ୍ଣ ନଗରୀ ଜାଳି ପୋଡ଼ି କରି କରି ଦେବେ ଶମଶାନ ।୩୪ ।
ବନ୍ଧୁବାନ୍ଧବ ସହିତ ଶ୍ରୀରାମ ଶର ସହିତ
ହେବ ଭେଟାଭେଟ ଘୋଟିବ ସଙ୍କଟ ନେବେ ସର୍ବେ ଯମଦୂତ ।୩୫ ।
ପ୍ରତାପେ ମୋ ପ୍ରଭୁଙ୍କର ଯେବେ ଯିବୁ ଯମ ପୁର
ଜାଣିବୁ ସେଦିନ ଖୋଜିବୁ ଜୀବନ* ଶକତି ସତୀ ଲୁହର ।୩୬ । *ଜଳ
ଯେତେ ଯାଏଁ ପ୍ରଭୁ ମୋର ଅଛନ୍ତି ଲଙ୍କାରୁ ଦୂର
ପ୍ରଳାପ ତୁ କର ଇଛାଅନୁସାର ଯୋଗ ଉପଯୋଗ କର ।୩୭ ।
ଶୁଣି କଠୋର ବଚନ ହୋଇ କ୍ରୁଦ୍ଧ ଦଶାନନ
ଉନ୍ମତ୍ତ ହୋଇଣ କାଢ଼ିଣ କୃପାଣ ଧାଏଁ କରଣେ ନିଧନ ।୩୮ ।
ଧରି ପ୍ରେମେ ମନ୍ଦୋଦରୀ ବୁଝାଇ କହେ ସୁନ୍ଦରୀ
ଦୁଃଖି, କ୍ଷୀଣା, ଦୀନ, କାତର ଓ ହୀନ ଅବଳା କି ଲାଭ ମାରି ।୩୯ ।
କାହିଁରେ ଗଣା ଏ ନାରୀ ଖଗେ ଅସରପା ପରି
ଶତ ଶତ କନ୍ୟା ଏକୈକ ଅନନ୍ୟା ଛନ୍ତି ଇଙ୍ଗିତେ ସୁମରି ।୪୦ ।
ଏ ଅଟେ ଗନ୍ଧ ନକୁଳ କିମ୍ପାଇ ବଧେ ଆକୁଳ
ତେଜ ଯାର ଚିନ୍ତା ହୁଅ ହେ ଅଚିନ୍ତା ଦିଅ ତା'ରେ କିଛି କାଳ ।୪୧ ।
ମନ୍ଦୋଦରୀର ବଚନ ଲଙ୍କେଶ୍ୱର ଦଶାନନ
ଜନକ ସୁତାରେ ବୋଲେ କ୍ରୋଧଭରେ ଛାଡ଼ି ଦେଲି ଆଜ ଦିନ ।୪୨ ।
କଣ୍ଟ ଦେଲି ଏକ ମାସ ସ୍ଥିର କରିଣ ମାନସ
ମୋ ବଚନ ମାନି ହୁଅ ମୋ କାମିନୀ କାଟିବି ନ ହେଲେ ଶିଶ ।୪୩ ।
ରକ୍ଷିକାଗଣଙ୍କୁ ରାଇ ବୋଲେ ଲଙ୍କା ନରସାଇଁ
ଭୟ କଳ ବଳ ପ୍ରଲୋଭନ ଛଳ ମନାଅ ଯାରେ ଲଗାଇ ।୪୪ ।
ତ୍ରିଂଶ ଦିବସ ମଧ୍ୟରେ ରାଜି ହେଲେ ପ୍ରସ୍ତାବରେ
ପାଟରାଣୀ ହେବ ସୌଭାଗ୍ୟ ଭୋଗିବ ଭାସିବ ଘିଅ ମହୁରେ ।୪୫ ।

ଅନ୍ୟଥା କଲେ ବଚନ ଚନ୍ଦ୍ରହାସରେ ନିଧନ
ତାହାଙ୍କୁ କରିବି ଶରୀର ଭୁଞ୍ଜିବି ଏ ବାକ୍ୟ ମୋର ନିଦାନ ।୪୬ ।
ରାବଣର ନିର୍ଦ୍ଦେଶରେ ରାକ୍ଷସୀଏ ନିର୍ଦ୍ୱନ୍ଦ୍ୱରେ
ବିଭିନ୍ନ ପ୍ରକାର କଲେ ହରବର ଯେ ଯାହା ବୁଦ୍ଧି ବିଚାରେ ।୪୭ ।
ହନୁମାନ ବୃକ୍ଷେ ଥାଇ କ୍ରୋଧରେ ଗାତ୍ର ଥରଇ
ମାରିବାକୁ ଭାବେ ପୁଣି ପ୍ରଭୁ ଭାବେ ସ୍ୱୟଂ ସଂଯତ ରୁହଇ ।୪୮ ।
ବୃଦ୍ଧା ତ୍ରିଜଟା ଏ କାଳେ ଉଠି ନିଦ୍ରୁ ରଡ଼ି ବଳେ
ବୋଲଇ ରାକ୍ଷସୀ ଶନିଦଶା ଆସି ପଡ଼ିଲା ଶୁଣ ସକଳେ ।୪୯ ।
ରାମ ଦୁର୍ଭାଗ୍ୟ ନାଶନ ପତ୍ନୀ ଏ କଳଙ୍କ ହୀନ
ସମ୍ମୁଖେ ତାହାର ଏହି ପରକାର କରନ୍ତନି ଆଚରଣ ।୫୦ ।
ସ୍ୱପ୍ନ ଅତି ଭୟଙ୍କର ଦେଖିଲି ରୋମାଞ୍ଚକର
ଲଙ୍କେଶ ସହିତ ରାକ୍ଷସ ସମସ୍ତ ଯାଉଛନ୍ତି ଯମ ପୁର ।୫୧ ।
ଲଙ୍କେଶର ଅଧୋଗତି ସୀତା ମାତାଙ୍କ ଉନ୍ନତି
ସୂଚାଏ ସପନ ଫଳ ଯା ଭୀଷଣ ଭୋଗିବ ଲଙ୍କାଧିପତି ।୫୨ ।
ଭୟତ୍ରସ୍ତ ସର୍ବେ ହୋଇ ତ୍ରିଜଟା ସମ୍ମୁଖେ ଯାଇ
ସ୍ୱପ୍ନ ସମ୍ପର୍କରେ ଅତି ଆଗ୍ରହରେ ପୁଛିଲେ ସାହସ ପାଇ ।୫୩।
ତ୍ରିଜଟା କହଇ ଶୁଣ ଦେଖିଲି ଯାହା ସପନ
ଓପନେ ରାବଣ ହୋଇଣ ମୁଣ୍ଡନ ପିନ୍ଧିଛି ରକ୍ତ ବସନ ।୫୪ ।
ତୈଳରେ କରିଛି ସ୍ନାନ ମନ୍ଦାର ମାଳା ପିନ୍ଧିଣ
ହୋଇ ନିଶାଭୋଳ ପଡ଼େ ଖସି ତଳ ତେଜି ପୁଷ୍ପକ ବିମାନ ।୫୫ ।
ହୋଇଛି ମୁଣ୍ଡ ଲଣ୍ଡିତ ମୁଖ ଦିଶଇ ଲାଂଛିତ
ନାରୀ ଏକ ତାରେ ଆଗକୁ ଓଟାରେ ପଶୁକୁ ଯେହ୍ନେ ସାକ୍ଷାତ ।୫୬ ।
ଲାଲ ଚନ୍ଦନ ଲେପିତ ଦିଶଇ ରକ୍ତ ଲୋହିତ
ଖର* ପରେ ବସି ବାଜି ପ୍ରାୟ ହସି ଗମେ ଉତ୍ତର ପଶ୍ଚାତ ।୫୭ । *ଗଧ
ରାବଣର ପୁତ୍ରଗଣ କରି ତଇଳରେ ସ୍ନାନ
ଲଣ୍ଡିତ ମସ୍ତକ ମାତ୍ର ଜଣେ ଏକ ତହୁଁ ଭିନ୍ନ ବିଭୀଷଣ ।୫୮ ।
ରାବଣ ଘୁଷୁରୀ ପରେ ମେଘନାଦ ମଇଁଷିରେ
ଓଟେ କୁମ୍ଭକର୍ଣ୍ଣ ଗମନ୍ତି ବସିଣ ସର୍ବେ ଦକ୍ଷିଣ ଦିଗରେ ।୫୯ ।
ପୁଣି ଦେଖିଲି ସପନେ ଲାଲମୁଖ କପି ଜଣେ
ଲଙ୍କାକୁ ଦହନ କରୁଛି ଡେଇଁଣ ଅତି ଆନନ୍ଦିତ ମନେ ।୬୦ ।
ସଂପୂର୍ଣ୍ଣ ଲଙ୍କା ନଗର ଜଳି ପାଲଟିଲା ଖାର

ପାହାନ୍ତି ସପନ କହୁଛି ମୋ ମନ ବାସ୍ତବେ ଘଟିବା ସାର ।୬୧ ।
ତ୍ରିଜଟା ସେ ବୁଦ୍ଧିମତୀ ଆଶାବାଦୀ ହୋଇ ଅତି
କହେ ନିଶାଚରୀ ବଚନ ମୋହରି ଧର ହୃଦେ ଗୁପ୍ତ କରି ।୬୨ ।
ଚକ୍ରବର୍ତ୍ତୀ ସମ୍ରାଟର ପୁତ୍ରବଧୂ ରାଜପୁର
ତ୍ୟାଗ କରି ବନେ ଆସିଖୁସି ମନେ ଭ୍ରମଇ ସ୍ୱାମୀ ସଙ୍ଗର ।୬୩ ।
ସୁଖ ବୈଭବ ସମସ୍ତ ତେଜି କରି ବିଷବତ
ବଣ ଜଙ୍ଗଲରେ ବୁଲେ ଯେ ସାଥିରେ ତା' ପ୍ରୀତିରେ କେତେ ପ୍ରୀତ ।୬୪ ।
ଭାର୍ଯ୍ୟା ତା'ର ପତିବ୍ରତା ଜନକ ନନ୍ଦିନୀ ସୀତା
ତା'ର କଷ୍ଟ ସହି ପାରିବ କି ରହି ଘାରୁଥିବ ପତ୍ନୀ ଚିନ୍ତା ।୬୫ ।
ଆସିଣ ଯେବେ ଲଙ୍କାରେ ନାଶିଣ ରାବଣ ବୀରେ
ଏ ସ୍ଥାନେ ଆସିବ ସଙ୍ଗେ ସୀତା ନେବ ଚାହିଁଥିବ ସର୍ବେ ତା'ରେ ।୬୬ ।
ତୁମ କର୍ମମାନ ଜାଣି ଦୋଷାଦୋଷ ପରିମାଣି
ଭୋଗିବ ଦୁର୍ଦ୍ଦଶା ହଜିଯିବ ଆଶା ଅନ୍ତେ ନ ମିଳିବ ପାଣି ।୬୭ ।
ମିଳିବ ନାହିଁ ଶରଣ ଦଣ୍ଡିବେ ରଘୁ ନନ୍ଦନ
ଅଶ୍ରାବ୍ୟ କଠୋର କରି ପରିହାର କୁହ ମଧୁର ବଚନ ।୬୮ ।
ଇଛା କର ଯଦି ହିତ ନ ପାଅ ସୀତା ଅହିତ
ଚରଣ ବନ୍ଦିଣ କୃପା ନିବେଦନ କର ଧର୍ମେ ହୋଇ ଭୀତ ।୬୯ ।
ତ୍ରିଜଟାର କଥା ଶୁଣି ହୋଇଲା ପିଳେହୀ ପାଣି
ଜାନକୀ ଚରଣ କରିଲେ ବନ୍ଦନ ଯେତେ ଥିଲେ ରାକ୍ଷସୁଣୀ ।୭୦ ।
କୃପାଭିକ୍ଷା ସୀତେ କରି ଶିତ* ପତି ମନେ ସ୍ମରି *ବୃଷଭ
ଶିତପୁଟ* ପରି ସେ ସ୍ଥାନୁ ବାହାରି ଗଲେ ରାକ୍ଷସଙ୍କ ନାରୀ ।୭୧ । *ବିରାଡ଼ି
ହୋଇ ଦୁଃଖେ ମ୍ରିୟମାଣ ସୀତା ବୋଲନ୍ତି ବଚନ
ତ୍ରିଜଟାକୁ ଚାହିଁ ଆଗୋ ମାତା ମୁହିଁ ସୁଝି ପାରିବିନି ଋଣ ।୭୨ ।
ସହାୟିକା ସିଦ୍ଧ ହେଲ ପୂଣ୍ୟବାଣୀ ଶୁଣାଇଲ
ସଜାଡ଼ ମୋ ଚିତା କର ସହାୟତା ଛିଣ୍ଡୁ ସବୁ କଳବଳ ।୭୩ ।
ଶରୀର ଦେବି ଜଳାଇ କଷ୍ଟ ସହି ନ ହୁଅଇ
ତୁମ ଉପକାର ନୁହେଁ ଭୁଲିବାର ବିପତ୍ତିର ବନ୍ଧୁ ତୁହି ।୭୪ ।
ଦେଖି ଜାନକୀ କ୍ରନ୍ଦନ ତ୍ରିଜଟା ବେନି ନୟନ
ହୋଇଲା ସଜଳ ମନ ତା' ବିକଳ ସ୍ନେହେ ଦିଏ ପ୍ରବୋଧନ ।୭୫ ।
ବୁଝାଇ ଗଲା ତ୍ରିଜଟା ହନୁମାନ ହୃଦୟଟା
ଦୁଃଖେ ଆନ୍ଦୋଳିତ କଷ୍ଟେ ଉଦ୍‌ବେଳିତ ଉତ୍ସାହେ ପଡ଼ିଲା ଭଟ୍ଟା ।୭୬ ।

ନୟନ ନୀରେ ଉତୁରେ ଶରୀର କ୍ରୋଧରେ ଥରେ
ମାତାଙ୍କ ସାମନେ ଯିବ ଭାବେ ମନେ ପୁଣି ଭାବଇ ମନରେ ।୭୭ ।
ମାତା ଆଗେ ଯିବ ଯେବେ ଜାନକୀ ଭୟ ପାଇବେ
ଏ ଦୁଃଖୁ ସେ ଦୁଃଖ  ବଳିବ ପ୍ରତ୍ୟକ୍ଷ ବିଶ୍ୱାସେ କେବେ ନ ନେବେ ।୭୮ ।
ଆସି ଦୁଃଖର ଆବେଶେ ଶରୀର ତ୍ୟାଗିବା ଆଶେ
କେଶ ପାଶ ହସ୍ତେ ନେଇ ଉଠି ଆସ୍ତେ ଗଲେ ବୃକ୍ଷ ଶାଖା ପାଶେ ।୭୯ ।
କେଶ ପାଶେ ଦେବେ ଫାସୀ ଜୀବନେ ହୋଇ ନିଆଶି
ନୟନରୁ ନୀର ବହେ ଝର ଝର ଶୁଷ୍କ ଦିଶେ ମୁଖ ଶଶି ।୮୦ ।
ଦେଖି ଏ ଦଶା ମାରୁତି ଗାଇଲା ମଧୁରେ ଅତି
ଶ୍ରୀରାମ ଚରିତ ହୋଇ ହରଷିତ ପ୍ରଭୁଙ୍କ ଚରଣ ଚିନ୍ତି ।୮୧ ।
ଇକ୍ଷ୍ୱାକୁ ବଂଶେ ଉତ୍ପନ୍ନ ଦଶରଥ ନରରାଣ
ପ୍ରତାପୀ ପ୍ରଖ୍ୟାତ ଜନହିତେ ରତ କରନ୍ତି ସୁଖେ ଶାସନ ।୮୨ ।
ତାଙ୍କର ବିଶ୍ୱ ବିଖ୍ୟାତ ରାମ ଲକ୍ଷ୍ମଣ ଭରତ
ଦେବତା ସମାନ ସମେତ ଶତ୍ରୁଘ୍ନ ଚାରି ପୁତ୍ର ଗୁଣ ଯୁକ୍ତ ।୮୩ ।
ସବୁଠାରୁ ବଡ଼ ଭାଇ ଶ୍ରୀରାମ ନାମ ବୋଲାଇ
ପିତୃସତ୍ୟ ମାନି ଭ୍ରାତା ଜାୟା ଘେନି ବନରେ ବିଜେ କରଇ ।୮୪ ।
ବହୁ ଋଷି ମୁନି ବନେ ଦର୍ଶନ କରି ସୁମନେ
ଗୌତମୀ ତୀରରେ ପଞ୍ଚବଟୀ ଠାରେ ରହିଲେ ଦଣ୍ଡକାରଣ୍ୟେ ।୮୫
ରାମଙ୍କ ଅନୁପସ୍ଥିତି ଜାଣି ଦୁଷ୍ଟ ଲଙ୍କାପତି
ଯତି ବେଶ ଧରି ସୀତା ମାତେ ହରି ନେଲା ସନ୍ତର୍ପରେ ଅତି ।୮୬ ।
ସୀତା ନ ଦେଖି କୁଟୀରେ ବ୍ୟାକୁଳିତ ହୃଦୟରେ
ଖୋଜନ୍ତି ସୀତାଙ୍କୁ ନେଇ ଲକ୍ଷ୍ମଣଙ୍କୁ ଶୋକାକୁଳେ କାନନରେ ।୮୭ ।
ମାର୍ଗେ ଜଟାୟୁକୁ ପାଇ ବୈକୁଣ୍ଠେ ତା'ରେ ପଠାଇ
ସୁଗ୍ରୀବ ସହିତ କରିଲେ ବନ୍ଧୁତ୍ୱ ଋଷ୍ୟମୁକ ବନେ ଯାଇ ।୮୮ ।
ବଡ଼ଭ୍ରାତା ସୁଗ୍ରୀବର ବାଳୀ ନାମେ ଦୁରାଚାର
କରି ତା' ନିଧନ ସୁଗ୍ରୀବେ ରାଜନ କଲେ କିଷ୍କିନ୍ଧ୍ୟା ରାଜ୍ୟର ।୮୯ ।
କିଷ୍କିନ୍ଧ୍ୟା ରାଜ ସୁଗ୍ରୀବ କରିବାକୁ ସୀତା ଠାବ
ଭିଭିନ୍ନ ଦିଗରେ ପଠାଇଲେ ବୀରେ ବାନର ଭାଲୁ ପୁଙ୍ଗବ ।୯୦ ।
ସୁଗ୍ରୀବ ରାଜ ପ୍ରେରିତ କୋଟି କୋଟି ସଂଖ୍ୟା ଦୂତ
ବୀରଙ୍କ ମଧ୍ୟରୁ ଶ୍ରୀରାମ କୃପାରୁ ମୁଁ ଏଠାରେ ଉପସ୍ଥିତ ।୯୧ ।
ମାର୍ଗରେ ଜଟାୟୁ ଭାଇ ସମ୍ପାତି ନାମ ଯେ ବହି

ଜନକ ନନ୍ଦିନୀ ଅବସ୍ଥାନ ଜାଣି ପତା ଦେଇଛି ବତାଇ ।୯୨ ।
ଗୃଧ୍ର ନିର୍ଦ୍ଦେଶାନୁସାର ଖୋଜି ପତା ମାତାଙ୍କର
ଲଙ୍କା ନଗରୀରେ ବିଭୀଷଣ ପୁରେ ଭେଟ ହୋଇଲା ଭକ୍ତର ।୯୩ ।
ସୂଚନା ବଳେ ତାହାର ବିଦେହ ନନ୍ଦିନୀଙ୍କର
ପାଇଲି ଦର୍ଶନ ତୃପ୍ତ ହେଲା ମନ ତୃଷାର୍ତ୍ତେ ମିଳିଲା ନୀର ।୯୪ ।
ମାତାଙ୍କର ଦେଖି ଦୁଃଖ ମନ ହୁଅଇ ବିମୁଖ
ଜୀବନ ବିହୁନେ ଯେହ୍ନେ ଦଶା ମୀନେ ଦୀନ ମୁଁ ହେଲି ନିରେଖ ।୯୫ ।
ଅକ୍ଷମ ଦାନେ ସାନ୍ତ୍ୱନା ଏକଇ ମୋର ସାନ୍ତ୍ୱନା
ଯାତ୍ରା ମୋ ସଫଳ ଦେଖିଲି କମଳ ପଦ ଦୁଇ ଭାଗ୍ୟ ସିନା ।୯୬ ।
ପ୍ରାଣାରାଧ୍ୟ ରାମଙ୍କର ବୃତ୍ତାନ୍ତ ଶୁଣି କର୍ଣ୍ଣର
ଚାତକ ରେ ଘନ ସଲିଳ ସମାନ ଶରୀରେ ମନ୍ଦ ସମୀର ।୯୭ ।
ହସ୍ତେ କରି ନଖାଘାତ ପରଖି ସୁପ୍ତ ଜାଗ୍ରତ
ସ୍ୱପ୍ନ ନୁହେଁ ଜାଣି ସୀତା ମହାରାଣୀ ବୋଲିଲେ ହୋଇ ଉଷତ ।୯୮ ।
ମହାନୁଭବ କିଏସେ ଆସି ନାସ୍ତିକଙ୍କ ଦେଶେ
ଶ୍ରବଣେ ଢାଳିଲ ଶୀତଳ କରିଲ ଦେଇ ସ୍ୱାମୀଙ୍କ ସନ୍ଦେଶ ।୯୯ ।
ସମ୍ମୁଖେ ଆସ ମୋହର ଭକ୍ତ କିଏ ପ୍ରଭୁଙ୍କର
ହୃଦୟକୁ ଶାନ୍ତି ଦିଅ ମହାମତି ଯାଉ ଭିତି ଅରାତିର ।୧୦୦ ।
ଶୁଣି ମାତାଙ୍କର ଗୀର ମହାଭକ୍ତ ମହାବୀର
ବୃକ୍ଷପରୁ ଧିରେ ମାତା ଚରଣରେ ପ୍ରଣାମେ ଆସି ତଳରେ ।୧୦୧ ।
ପତି ବିୟୋଗେ ଦୁଃଖିନୀ ଜନକ ରାଜ ନନ୍ଦିନୀ
ଦେଖନ୍ତି ବାନର ସମ୍ମୁଖେ ତାଙ୍କର ଜଳେ ଯା ନୟନ ବେନୀ ।୧୦୨ ।
ବର୍ଣ୍ଣ ବିଦ୍ୟୁତ୍‌ପୁଞ୍ଜ ସମ କ୍ଷୁଦ୍ର ଯେହ୍ନେ ବିହଙ୍ଗମ
ଶୋଚନ୍ତି ମନରେ ରାବଣ ମାୟାରେ ପେଶିଛି ନିଶ୍ଚେ ଅଧମ ।୧୦୩ ।
ସଂଶୟପୂର୍ଣ୍ଣ ବଦନ ଦେଖି ମରୁତ ନନ୍ଦନ
ବୋଲଇ ସଧିରେ ବିଶ୍ୱାସ ମୋପରେ ରଖ ସ୍ଥିର କରି ମନ ।୧୦୪ ।
ଶ୍ରୀରାମ ନାମେ ଶପଥ କରୁଛି ସେ ମୋର ନାଥ
ସୁଗ୍ରୀବ ସଚିବ କରି ସୀତା ଠାବ ଆସିଛି ସମୁଦ୍ର ପଥ ।୧୦୫ ।
ପିତା ମୋର ସମୀରଣ ପ୍ରଭୁଙ୍କ ନାମ ସ୍ମରିଣ
ପବନ ସମାନ ମୁହିଁ ଗତିବାନ ରହିଛି କ୍ଷୁଦ୍ର ରୂପେଣ ।୧୦୬ ।
ଦେଖ ଏହି ମୁଦ୍ରିକାକୁ ତୁମକୁ ସମର୍ପିବାକୁ
ପ୍ରଭୁ ଛନ୍ତି ଦେଇ ନିଅ ଦୟାବହି ନାଶ ମନୁ ସଂଶୟକୁ ।୧୦୭ ।

ମୁଦି ରାମନାମାଙ୍କିତ ପ୍ରଭୁ ତେଜେ ପ୍ରକାଶିତ
ଦର୍ଶନେ ତାହାର ସ୍ପର୍ଶ ରାମଙ୍କର ବୈଦେହୀ ହେଲେ ପ୍ରାପତ ।୧୦୮ ।
ଆନନ୍ଦ କୂଳ ଲଙ୍ଘିଲା ଧୈର୍ଯ୍ୟବନ୍ଧ ଭାଙ୍ଗିଗଲା
ବନ୍ୟା ପ୍ରେମାଶ୍ରୁର ନୟନୁ ବାହାର ହୋଇ ପ୍ରବାହିତ ହେଲା ।୧୦୯ ।
ହନୁମାନଙ୍କ ଉପରେ ବିଶ୍ୱାସ ହୋଇବା ପରେ
ଜାନକୀ ବୋଲନ୍ତି ଧନ୍ୟ ତୁମ ଭକ୍ତି ଜୀବନ ଦେଲ ଶରୀରରେ ।୧୧୦ ।
ପ୍ରଭୁ ତୁମକୁ ବିଶ୍ୱାସ କରନ୍ତି ଏ ମୋ ବିଶ୍ୱାସ
ଅନ୍ୟଥା ମୋ ପାଶେ ପଠାନ୍ତେ କିବା ସେ ଏକଇ ପର ପୁରୁଷ ।୧୧୧ ।
ଦେଖିଲ ମୋର ବିପତ୍ତି ଯାଇ କହି ରଘୁପତି
ଅବଧି ରହୁଣୁ ଏ ରାକ୍ଷସଗଣୁ ଉଦ୍ଧାରିବେ ସେ ଝଟତି ।୧୧୨ ।
ବୁଡୁଥିଲା ମୋର ପୋତ ଆସି ଯେହ୍ନେ ଦେବଦୂତ
ଆଶାର କିରଣ କଲ ପ୍ରଦର୍ଶନ ପ୍ରାଣ ହୋଇଲା ତୃପତ ।୧୧୩ ।
ଭୁଁ ଶରୀର ସିଏ ପ୍ରାଣ ମୁଁ ଜୀବ ସିଏ ଜୀବନ
ପ୍ରଭୁ ଦୟାନିଧି ନଦୀକୁ ବାରିଧି ଚିନ୍ତନ୍ତି କି ମୋତେ ମନ ।୧୧୪ ।
ହାତ ଯୋଡ଼ି ହନୁମାନ କହିଲେ ଗୋ ମାତା ଶୁଣ
ତୁମ ବିୟୋଗରେ ଶ୍ରୀରାମ ଦୁଃଖରେ ଦୁଃଖ ବର୍ଣ୍ଣିବି କେସନ ।୧୧୫ ।
ବିରହ ଜ୍ୱାଳାରେ ଜଳି ଅବସ୍ଥା ଯାଇଛି ବଳି
ସଦା ହୃଦୟରେ ତୁମ ଚିନ୍ତା ଘାରେ କଷ୍ଟ ନ ହୁଅଇ କଳି ।୧୧୬ ।
ତୁମ ବିନା ଅତିରିକ୍ତ ଭାବନ୍ତିନି କେବେ ଚିତ୍ତ
ନିଦ୍ରା ଆସେ ନାହିଁ ଛଟପଟ ହୋଇ ବିତଇ ତାଙ୍କର ରାତ୍ର ।୧୧୭ ।
ନିଦ କେବେ ଗଲେ ଆସି କିଛି କ୍ଷଣେ ଉଠି ବସି
ସୀତା ସୀତା କହି ଲୁହ ଯାଏ ବହି ଖୋଜନ୍ତି ସ୍ୱପ୍ନେ ଭରସି ।୧୧୮ ।
ସଂଶୟ ପ୍ରଭୁଙ୍କୁ ନେଇ ଆଗୋ ମାତେ ନ ଯୋଗାଇ
ପ୍ରଭୁ ପ୍ରେମ ମୂର୍ତ୍ତି ମାତା ତୁମ୍ଭ ମୂର୍ତ୍ତି ହୃଦୟେ ଅଛନ୍ତି ଥୋଇ ।୧୧୯ ।
ପ୍ରେମ ତାଙ୍କର ନିର୍ମଳ ସ୍ୱଚ୍ଛ ନିର୍ଝରିଣୀ ଜଳ
ନୁହଁଇ ଆବିଳ ବହେ କଳକଳ ସୀତା ନାମ ତା ସମ୍ବଳ ।୧୨୦ ।
ପ୍ରଭୁ କରୁଣା ନିଧାନ ବହି ସଜଳ ନୟନ
ତୁମରି ଉଦ୍ଦେଶ୍ୟେ ନିଜର ସଂଦେଶେ ପେଶିଛନ୍ତି ଏ ବଚନ ।୧୨୧ ।
ଗୋ ସୀତେ ତୁମ୍ଭରି ବିନା ଏ ସୃଷ୍ଟି ଭଲ ଲାଗେନା
ବସ୍ତୁଏ ସମସ୍ତ ଦୁଃଖ ଅପ୍ରମିତ ଦିଅନ୍ତି ପ୍ରକାରେ ନାନା ।୧୨୨ ।
ଅନ୍ୟ ଆଗେ ଦେଲେ କହି ଦୁଃଖ ଉଶ୍ୱାସ ହୁଅଇ

କହିବି କାହାକୁ ବୁଝିବ କେ ତାକୁ ପାରେ କି କା'ରେ ଶୁଣାଇ ।୧୨୩।
ସହଭାବିନୀ ତୁ ମୋର ସହଯାୟିନୀ ମୋହର
ତୁହି ସହଯାତ୍ରୀ ସାହଚର୍ଯ୍ୟଦାତ୍ରୀ ସାହଭାଗି ମୋ ଦୁଃଖର ।୧୨୪।
ମନ ମୋ ତୋହରି ପାଶେ ଶରୀର ଏଠାରେ ବସେ
ପ୍ରେମ ତତ୍ତ୍ୱ ମୋର ତୁମ୍ଭଙ୍କୁ ଗୋଚର ପ୍ରକାଶେ ତୁମ୍ଭ ପ୍ରକାଶେ ।୧୨୫।
ମୋ ପ୍ରେମର ଏହା ସାର[୧] ସାର[୨] ନେଲୁ ସାଥେ ସାର[୩]
ସାର[୪] ମୋର ପ୍ରେମ ସାର[୫] ଯେ ଉତ୍ତମ ନେତ୍ର ସାର[୬] ତୁ ନ ସାର[୭] ।୧୨୬।
ଜାନକୀ ଜୀବନ ଧନ ସଂଦେଶ କରି ଶ୍ରବଣ
ଶରୀରେ ଚନ୍ଦନ ଲାଗଇ ଯେସନ ସେପରି ହୋଇଲା ମନ ।୧୨୭।
ପହିଲି ଆଷାଢ଼ ବର୍ଷା ସତେ ବର୍ଷିଲା ସହସା
ତପନ ତାପରେ ତାପିତ ଧରାରେ ଜଗାଏ ଯେସନ ଆଶା ।୧୨୮।
ଘନ ଘନେ ଦେଖି କେକୀ ମୀନ ପକ୍ତି ଦେଖି ବକୀ
ମାନସ ଯେସନ ସୀତାଙ୍କର ମନ ଖାଦ୍ୟ ପାଇ ଯେହ୍ନେ ରଙ୍କି ।୧୨୯।
ବୋଇଲେ ପବନ ସୁନ କର ତୁମ୍ଭେ ହେ ପ୍ରଯତ୍ନ
ପ୍ରଭୁ ଶୀଘ୍ରତର ପହଞ୍ଚି ଏଠାର ଉଦ୍ଧାରି ରଖନ୍ତୁ ପ୍ରାଣ ।୧୩୦।
ମାରୁତି ଦେଲେ ଉତ୍ତର ମାତା ତୁମ୍ଭେ ଥୟ ଧର
ଫେରିବା ପାଇଁକି ସମୟ ଯେତିକି ସେତିକି ଅପେକ୍ଷା କର ।୧୩୧।
ଠିକଣା କରୁଣୁ ପ୍ରାପ୍ତ ପ୍ରଭୁ ରାମ ଦୟାବନ୍ତ
ଏ ଲଙ୍କାକୁ ଆସି ଅସୁରଙ୍କୁ ନାଶି ନେଇଯିବେ ହୋଇ ପ୍ରୀତ ।୧୩୨।
ମୋ ନିମନ୍ତେ ଆଜ୍ଞା ନାହିଁ ଅନ୍ୟଥା ପୃଷ୍ଟେ ବସାଇ
ପହଞ୍ଚାନ୍ତି ନେଇ ରାମପାଶେ ଯାଇ ତତକ୍ଷଣେ ମାତ ମୁହିଁ ।୧୩୩।
ମୁଖୁ କ୍ଷୁଦ୍ର ବାନରର ଶୁଣିଣ ଏସନ ଗୀର
କମଳ ମୁଖରୁ ଧିରେ ହସିବାରୁ ସୌରଭ ହେଲା ପ୍ରସାର ।୧୩୪।
ସ୍ମିତ ହାସ୍ୟ ସହ ମାତା ପୁଛିଲେ ବାନରେ ବାର୍ତ୍ତା
ବିଶାଳ ଅସୁର ଦେଖିଲୁ ଏଠାର ଜଣୁ ଜଣେ ଭୀମକର୍ତ୍ତା ।୧୩୫।
ସୁଗ୍ରୀବ ରାଜାର ସୈନ୍ୟ ତୁମ ସମ କ୍ଷୁଦ୍ର ତନ
ମନେ ମୋ ସଂଦେହ ଫେଡ଼ ମୋ ସଂଶୟ କରିବେ କିପରି ରଣ ।୧୩୬।
ସଂଶୟ ମୋଚନ ପାଇଁ ବାନର ରାଜା ତନୟୀ
ସୁମେରୁ ସମାନ ଶରୀର ତତ୍କ୍ଷଣ ବିରାଟ କଲେ ବଢ଼ାଇ ।୧୩୭।
ତେଜସ୍ୱୀ ଅଗ୍ନି ସମାନ ଗିରି ସମ ସଂହନନ*
ଦିଶେ ମୁଖ ଲାଲ ଚମକଇ ଭାଲ ଦନ୍ତ ନଖ ଅତି ତୀକ୍ଷ୍ଣ ।୧୩୮।

୧-ନିର୍ଯାସ, ୨-ପ୍ରାଣ, ୩-ସାରା, ୪-ଦୃଢ଼, ୫-ଫଳ, ୬-ଭଲ, ୭-ଶେଷ କରିବା

*-ଶରୀର

ଭାଷଇ ଯୋଡ଼ିଣ ହସ୍ତ ଲଙ୍କା ନଗରୀ ସହିତ
ଅଟ୍ଟାଳିକା ବନ ଅସୁର ରାବଣ ଉଠାଇଣ ପରବତ ।୧୩୯ ।
ସବୁ ଏକ ସଙ୍ଗେ ଧରି ସାଗରେ ବୁଡ଼ାଇ ମାରି
ଶ୍ରୀରାମ କୃପାରେ ଏକ ଚୁଟୁକିରେ ଜଳଧି ହୋଇବି ପାରି ।୧୪୦ ।
ସଂଶୟ ମାତା ନ କର କି ବୁଦ୍ଧି ଆମେ ବାନର
ପ୍ରଭୁ କୃପା କଲେ ଲଙ୍କେଶ୍ୱର ତୁଲେ ଲଢ଼ିବାକୁ ଆଗୁସାର ।୧୪୧ ।
କପିରାଜ ସୁଗ୍ରୀବର ମୁଁ ତୁଚ୍ଛ ସେବକ ଛାର
ମହାଶକ୍ତିବାନ ସମରେ ପ୍ରବୀଣ ବହୁଯୋଦ୍ଧା ଛନ୍ତି ତା'ର ।୧୪୨ ।
ଜାନକୀ ଶୁଣି ସନ୍ତୋଷ ବୋଲନ୍ତି କେଶରୀ ଶିଶ
ହୁଅ ଅଜାମର ଗୁଣର ଆକର ପାଅ ଶ୍ରୀରାମ ଆଶିଷ ।୧୪୩ ।
କୃପା କରନ୍ତୁ ଶ୍ରୀରାମ ଶୁଣି ଭୁଲି ପଥଶ୍ରମ
କୃତାର୍ଥ ହୋଇଲି ମୁହିଁ ମାତା ବୋଲି ବୋଲି କରିଲେ ପ୍ରଣାମ ।୧୪୪ ।
ବାଳକେ କ୍ରୀଡ଼ା ପଦାର୍ଥ ପ୍ରାପ୍ତରେ ଯେହ୍ନେ କୃତାର୍ଥ
ଶ୍ରୀପବନପୁତ୍ର ତେହ୍ନେ ଉଲ୍ଲସିତ ଦରିଦ୍ରେ ଯେସନ ଅର୍ଥ ।୧୪୫ ।
ଅଙ୍ଗ ଅଙ୍ଗ ପୁଲ୍ଲକିତ ଅଶ୍ରୁ ବହେ ଅବାରିତ
ଜାନକୀ ଚରଣ ରଜକୁ ଧାରଣ ଶିରେ କଲେ ବାତସୁତ ।୧୪୬ ।
ନିସ୍ତରିଲି ମାତେ ମୁହିଁ ତବ ଆଶୀର୍ବାଦ ପାଇ
କ୍ଷୁଧାରେ ଆତୁର ଜଠରାଗ୍ନି ମୋର ପ୍ରଜ୍ୱଳିତ ଦୟାମୟୀ ।୧୪୭ ।
ବିବିଧ ପ୍ରକାର ଫଳ ବୃକ୍ଷେ ଶୋଭଇ ସକଳ
ଆଜ୍ଞା ଦିଅ ମାତେ ଭକ୍ଷି ତହୁଁ କେତେ ପୁନଃ ପ୍ରାପ୍ତ ହେବି ବଳ ।୧୪୮ ।
ବୈଦେହୀ ହୋଇଣ ପ୍ରୀତ ଶୁଣ ପୁତ୍ର ହନୁମନ୍ତ
ହୃଦେ ମୁଁ ଇଛଇ ଫଳ ଏଥୁଁ ଖାଇ ହୁଅ ବତ୍ସ ତୁମେ ତୃପ୍ତ ।୧୪୯ ।
ସଂଶୟ ମୋହର ମନ ବଡ଼ ବଡ଼ ବଳବାନ
ସଶସ୍ତ୍ର ଅସୁର ଅଛନ୍ତି ଏଠାର ସୁରକ୍ଷା କରନ୍ତି ବନ ।୧୫୦ ।
ସ୍ମିତ ହସି ହନୁମାନ ବୋଲନ୍ତି ହୋଇ ପ୍ରସନ୍ନ
ଆଜ୍ଞା ଦିଅ ମାତା ନ କରିଣ ଚିନ୍ତା କି କରିବେ ରକ୍ଷ ଗଣ ।୧୫୧ ।
ବଳ ଓ ବୁଦ୍ଧି ସଂପନ୍ନ ଦେଖି ଅଞ୍ଜନା ନନ୍ଦନ
ମାତା ଭଗବତୀ ଦେଲେ ଅନୁମତି ସୁଖେ ଭୁଞ୍ଜ ଫଳମାନ ।୧୫୨ ।
ଏହିପରି ଅଧ୍ୟା ବିଂଶ ପ୍ରଭୁଙ୍କ କୃପାରେ ଶେଷ
ମାରୁତି କୃପାରେ ସନ୍ତୋଷ ମନରେ ବର୍ଣ୍ଣଇ ମୂଢ଼ ସୁରେଶ ।୧୫୩ ।



# ଏକ ବିଂଶ ଛାନ୍ଦ

ରାଗ-ଦେଶାକ୍ଷ(ମଧୁପ ଚଉତିଶା)

(ଅଶୋକ ବାଟିକା ବିଧ୍ୱଂସ)

ଶୁଣ ସୁଜନେ ଏଥୁ ଅନ୍ତରେ ହନୁମାନ ଚରିତ ଶ୍ରୁତିରେ
ପାର୍ବତୀ ନନ୍ଦନ ଚରଣ ବନ୍ଦିଣ,
ଭଣେ ଯା ପୂର୍ଣ୍ଣ ଭାବଭକ୍ତିରେ ହେ, ବିଦୁଷେ ।୧ ।
ମାତା ସୀତାଙ୍କ ଅନୁଜ୍ଞା ପାଇ ହନୁମାନ ଚିତ୍ତରେ ଚିନ୍ତଇ
ବାର୍ତ୍ତାବହ କାର୍ଯ୍ୟ ସ୍ୱାମୀ ହିତ ମାର୍ଗ
ସୁପ୍ରଶସ୍ତ ଯେଉଁପରି ହୋଇ ହେ, ବିଦୁଷେ ।୨ ।
ରାକ୍ଷସ ରାଜ ଦଶାନନର ଦୁର୍ଗ ଦୃଢ଼ ଅଭେଦ୍ୟ ସୁନ୍ଦର
ଦିବ୍ୟ ଅଦଭୁତ ଯନ୍ତ୍ରେ ସୁରକ୍ଷିତ
ହୋଇଅଛି ପ୍ରତ୍ୟେକ ଦୁଆର ହେ, ବିଦୁଷେ ।୩ ।
ଶକ୍ତିଶାଳୀ ଏହି ବ୍ୟବସ୍ଥାକୁ ଭେଦି ସମର୍ଥ କେବା ଯିବାକୁ
ବୀର ଅନୁଭବି ଯୋଦ୍ଧା ଯେ ହେଲେବି
କେବେ ନ ପାରିବେ କେହି ତାକୁ ହେ, ବିଦୁଷେ ।୪ ।
ପୁଣି ଚିନ୍ତେ ହନୁମାନ ମନେ ଆସି ନାହିଁ ଏଥେ ପୂର୍ବୁ ଦିନେ
ନିଶାର୍ଦ୍ଧେ ଦେଖିଛି ଜାଣି ନାହିଁ କିଛି
ସ୍ୱୟଂ ଜାଣିବି ଦେଖି ନୟନେ ହେ, ବିଦୁଷେ ।୫ ।
ଦଶଗ୍ରୀବ ରାବଣ ବ୍ୟକ୍ତିତ୍ୱ ତା'ର ବୀର ଯୋଦ୍ଧାଙ୍କ ବୀରତ୍ୱ
ଶତ୍ରୁ ସୈନ୍ୟ ବଳ ସାମର୍ଥ୍ୟ ସକଳ
ପ୍ରଭୁ ପାଇଁ ଜାଣିବା ଉଚିତ ହେ, ବିଦୁଷେ ।୬ ।
ରାବଣକୁ କରି ଆତଙ୍କିତ ମନୋବଳକୁ କଲେ ଖଣ୍ଡିତ
ସମର କାଳରେ ବିଶ୍ୱାସ ସ୍ୱୟଂରେ
ନଷ୍ଟ ହୋଇବ ତା'ର ନିଶ୍ଚିତ ହେ, ବିଦୁଷେ ।୭ ।
ମାତା ସୀତାଙ୍କୁ ଯେ ଆଶ୍ୱସନ ସିଦ୍ଧ କରଣେ ଦତ୍ତ ବଚନ
ବିଶ୍ୱାସକୁ ଦୃଢ଼କଲେ ଅବଶିଷ୍ଟ
ଦିବସ ସେ ରହିବେ ଦୃଢ଼େଣ ହେ, ବିଦୁଷେ ।୮ ।
ଉତ୍ତମ ରୂପରେ ଲଙ୍କା ନଗ୍ର ପରଖି ଯିବାକୁ ମନ ବ୍ୟଗ୍ର
ଦଶାନନ ସଙ୍ଗେ ମୁହାଁ ମୁହିଁ ଭେଟି
ହାବ ଭାବ ଦେଖିବେ ସମଗ୍ର ହେ, ବିଦୁଷେ ।୯ ।
ରକ୍ଷଗଣେ କଲେ ଉତ୍ତେଜିତ ନେବେ ନିଶ୍ଚିତ ତା'ର ଅଗ୍ରତ

ବୃକ୍ଷ ପରେ ଡ଼େଇଁ ଆନନ୍ଦରେ ଗଲେ
ମନେ ଯୋଜନା କରି ପ୍ରସ୍ତୁତ ହେ, ମାରୁତି ।୧୦ ।
ବୃକ୍ଷୁଁ ଭକ୍ଷିଲେ ଫଳ ମଧୁର କିଛି ଫୋପାଡ଼ିଲେ ଭୂମି ପର
ଅର୍ଦ୍ଧଭାଗ ଖାଇ କିଛିକୁ ନ ଖାଇ
ଶାଖା ଭାଙ୍ଗିଲେ କିଛି ବୃକ୍ଷର ହେ, ମାରୁତି ।୧୧ ।
କିଛି ବୃକ୍ଷ ଉପାଡ଼ି ମୁଳରୁ କିଛି ବୃକ୍ଷକୁ ଭାଙ୍ଗି ଅଧାରୁ
ଅଶୋକ ବାଟିକା ହତଶିରି କଲେ
ଲମ୍ଫ ପ୍ରଦାନେ ବୃକ୍ଷେ ବୃକ୍ଷରୁ ହେ, ମାରୁତି ।୧୨ ।
ଯେଉଁ ବୃକ୍ଷ ମୁଳେ ଥିଲେ ସୀତା ରଖି କେବଳ ତା'ରେ ଅକ୍ଷତା
ଫଳ ପୁଷ୍ପ ବୃକ୍ଷ ସବୁ ବିଧ୍ୱଂସିଲେ
ମନୁ ଭୁଲି ଅସୁରଙ୍କ ଚିନ୍ତା ହେ, ମାରୁତି ।୧୩ ।
ରମ୍ୟ ବାଟିକା କିଛି କ୍ଷଣରେ ସଦ୍ୟ ବିଧବା ଦିଶେ ନେତ୍ରରେ
ବାତ୍ୟାରେ ବିଧ୍ୱସ୍ତ ପ୍ରାୟ ବାତାତ୍ମଜ
କରିଲେ ସେହି ଉପବନରେ ହେ, ମାରୁତି ।୧୪ ।
ଧରି ବିଶାଳକାୟ ଶରୀର ଚଢ଼ି ଚୈତ୍ୟ ପ୍ରସାଦ ଉପର
ଘୋର ରଡ଼ି ଦେଇ ଭାଙ୍ଗି ଧୂଳିସାତ
କରିଲେ ସେ ତାହାର ଶିଖର ହେ, ମାରୁତି ।୧୫ ।
ବିଶାଳ ମରୁତ ନନ୍ଦନର ଶୁଣି ଗର୍ଜନ ସର୍ବ ଅସୁର
ଧଡ଼ପଡ଼ ଉଠି ପଡ଼ିଉଠି ଧାଇଁ
ଭୟେ ଅସ୍ତ୍ରଶସ୍ତ୍ର ନେଇ କର ହେ, ମାରୁତି ।୧୬ ।
ଚୈତ୍ୟ ପ୍ରସାଦ ପାଖରେ ଗଲେ କୁଳ ଦେବତା ଦଶା ଦେଖିଲେ
ଅଶୋକ ବାଟିକା ଦୁର୍ଦ୍ଦଶା ଦେଖିଣ
ମନେ ଅତି ଚକିତ ହୋଇଲେ ହେ, ଅସୁରେ ।୧୭ ।
ଅସୁର ବଳେ ହୋଇ କୋପିତ ନଖଦନ୍ତାୟୁଧ ବାତସୁତ
ଉପରେ ଆୟୁଧେ ଆକ୍ରମଣ କଲେ
ସର୍ବେ ମିଳି ସେଠାବେ ଏକତ୍ର ହେ, ଅସୁରେ ।୧୮ ।
ବୃକ୍ଷ ଭିଡ଼ି ତହିଁରେ ପିଟିଲେ କ୍ଷଣକେ ବହୁ ମରି ଶୋଇଲେ
ପ୍ରସାଦ ଶିଖର ଉଠାଇ ସେଥିରେ
ଥୋକେ ନିଶାଚରଙ୍କୁ ମାରିଲେ ହେ, ମାରୁତି ।୧୯ ।
କିଛି ସୀତାଙ୍କ ପାଖକୁ ଯାଇ ପଚାରନ୍ତି କୁହ ଆଗୋ ମାୟୀ
ବାନର ଆକାର ଏ ବିକଟ ବୀର

କିଏ କହିବ କି ଦୟାବହି ହେ, ଜାନକୀ ।୨୦ ।
ମାତା ସୀତା ଆନନ୍ଦ ଲୁଚାଇ ଭୟ ମନରେ ଭୟକୁ ପାଇ
ବୋଲନ୍ତି ଦୁଃଖିନୀ ମୁଁ କି ଜାଣେ ଏହା
ଅସୁର ମାୟା ମୋତେ ଲାଗଇ ହେ, ଅସୁରେ ।୨୧ ।
ଜୀବନ ବଞ୍ଚାଇ ଦୁଇ ଚାରି ନିଶାଚରୀ ଅସୁରୀ ପ୍ରହରୀ
ରାବଣ ସମ୍ମୁଖେ ଜଣାଇଲେ ଯାଇ
ଭୟେ ଡରି ଡରି ଥରି ଥରି ସେ, ଅସୁରେ ।୨୨ ।
ପ୍ରଭୁ ! ଜୀବେକ ବାନରାକାର ଅଶୋକ ଉପବନେ ଆମର
ପ୍ରବିଷ୍ଟ ହୋଇଣ ସୀତା ସହ ମିଳି
ନଷ୍ଟ କରିଛି ଗଛ ପତର ସେ, ବାନର ।୨୩ ।
ଏକ ବୃକ୍ଷ ନାହିଁ ସୁରକ୍ଷିତ ଚୈତ୍ୟ ପ୍ରସାଦଟି ଭୂଲୁଣ୍ଠିତ
କରିଣ ନାଶିଛି ସମସ୍ତ ରକ୍ଷକ
ବସିଅଛି ନିର୍ଭୟ ନିଶ୍ଚିନ୍ତ ସେ, ବାନର ।୨୪ ।
ଶୁଣି ବୃତ୍ତାନ୍ତ ଲଙ୍କାଧିପତି ଦୁଃସ୍ୱପ୍ନ ଦେଖିଥିଲି ଯା' ରାତି
ସତେ କି ଫଳିଲା କାହୁଁ ପହୁଞ୍ଚିଲା
ଦୁଷ୍ଟ ବାନର ହୋଇ ଅରାତି ହେ, ଚିନ୍ତଇ ।୨୫ ।
ଅତିଶୀଘ୍ର ସଶସ୍ତ୍ର ସୈନିକ ବଛାବଛା ଯୋଦ୍ଧା ଅସୁରଙ୍କ
ବିଶାଳ ବାହିନୀ ପଠାଏ ରାବଣ
ଧରିବାକୁ କପି ଭୟାନକ ହେ, ରାବଣ ।୨୬ ।
ଲୌହ ସ୍ତମ୍ଭ ଏକ ହସ୍ତେ ଧରି ଅସୁରଗଣେ ପ୍ରତୀକ୍ଷା କରି
ମହାନ ତେଜସ୍ୱୀ ବୀର ହନୁମାନ
ବସିଥିଲେ ଶ୍ରୀରାମ ସୁମରି ହେ, ମାରୁତି ।୨୭ ।
ମୁଖ ଅରୁଣ ବରନ ଦିଶେ ଆକୃତି ଭୟାନକ ପ୍ରକାଶେ
ଅସୁର ଗଣଙ୍କ ବିଶାଳ ବାହିନୀ
ଆସି ପହଞ୍ଚିଲେ ସେ ପ୍ରଦେଶେ ହେ, ମାରୁତି ।୨୮ ।
ଦର୍ଶନେ ଭୟାନକ ଗର୍ଜନ କେଶରୀ ପ୍ରାୟ କେଶରୀ ସୁନ
ଛାଡ଼ନ୍ତେ ଅସୁର ବୀରଙ୍କ ହୃଦୟ
ହେଲା ଭୀତତ୍ରସ୍ତ କମ୍ପମାନ ହେ, ମାରୁତି ।୨୯ ।
ସର୍ବ ଅସୁର ମିଳି ଏକତ୍ର ଉଠାଇ ନିଜର ଅସ୍ତ୍ର ଶସ୍ତ୍ର
ଆରମ୍ଭି ସମର କରିଲେ ପ୍ରହାର
ନାଶିବେ ବୋଲିଣ ବାୟୁସୁତ ହେ, ଅସୁରେ ।୩୦ ।

ଅମିତ ବିକ୍ରମ ହନୁମାନ ଧୂଳି ପରାୟେ ତା'ରେ ଝାଡ଼ିଣ
ଲୌହ ସ୍ତମ୍ଭ ନେଇ ପିଟିଲେ ଅସୁରେ
ପଠାଇଲେ ଶମନ ସଦନ ହେ, ମାରୁତି ।୩୧ ।
ଶୁଣି ରକ୍ଷଗଣଙ୍କ ନିଧନ ଅତିଚକିତ ହେଲା ରାବଣ
ମନ୍ତ୍ରୀ ପ୍ରହସ୍ତର ପୁତ୍ର ଜମ୍ବୁମାଳୀ
ରକ୍ଷବୀରକୁ କଲା ପ୍ରେରଣ ହେ, ରାବଣ ।୩୨ ।
ଜମ୍ବୁମାଳୀ ସେ ବିଶାଳକାୟ କ୍ରୋଧି ସଂଗ୍ରାମେ ଅଟେ ଦୁର୍ଜ୍ଜୟ
ଜୀବନ୍ତ ବା ମୃତ ଧରି ଆଣିବାକୁ
ଦେଇ ପେଶିଲା ତହିଁ ନିର୍ଭୟ ହେ, ରାବଣ ।୩୩ ।
କ୍ରୋଧେ ଉନ୍ମତ୍ତ ହୋଇ ରାକ୍ଷସ ଦେଖିଲା ବାଟିକା ଦ୍ୱାର ଦେଶ
ଫାଟକ ତୋରଣ ଉପରେ ମାରୁତି
ଠିଆ ଧରି କରି ବୀର ବେଶ ହେ, ମାରୁତି ।୩୪ ।
ସଶସ୍ତ୍ର ଅସୁର ଆସିବାର ଦେଖି ସୁନ କେଶରୀ ରାଜାର
ପ୍ରସନ୍ନତା ସହ ଗର୍ଜିଲା ପ୍ରବଳ
ଭୟେ ଥରିଲେ ଅସୁର ବୀର ହେ, ମାରୁତି ।୩୫ ।
ଧୈର୍ଯ୍ୟ ରକ୍ଷେ ଦେଇ ଜମ୍ବୁମାଳୀ ହନୁମାନର ଶକତି କଳି
ତୀକ୍ଷ୍ଣତମ ଶର କଲା ବରଷଣ
କଷ୍ଟ ଦେଲା କପି ଦେହେ ଗଳି ହେ, ମାରୁତି ।୩୬ ।
ହନୁମାନ ହୋଇଣ କ୍ଷତାକ୍ତ ଚକ୍ଷୁ ମୁଖ ତା ଦେଲା ଆରକ୍ତ
ଗର୍ବ କରି ଖର୍ବ ଧରିଣ ପିଟିଲା
ଜମ୍ବୁମାଳୀ ଦୈତ୍ୟ ହେଲା ମୃତ ହେ, ମାରୁତି ।୩୭ ।
ପ୍ରହସ୍ତ ପୁତ୍ର ମୃତ୍ୟୁ ଖବର ଶୁଣି ଆଶ୍ଚର୍ଯ୍ୟିତ ଲଙ୍କେଶ୍ୱର
ଅମିତ ତେଜସ୍ୱୀ ଅତି ବଳବାନ
ଶ୍ରେଷ୍ଠ ଅସ୍ତ୍ରବେତ୍ତା ଧନୁର୍ଦ୍ଧର ସେ, ରାବଣ ।୩୮ ।
ସାତ ମନ୍ତ୍ରୀଙ୍କ ସାତ କୁମର ଅଦଭୁତ ବୀର ବଳିଆର
ହକାରି ପାଶକୁ ହନୁମାନ ସାଥେ
ପେଶିଲା କରିବାକୁ ସମର ହେ, ରାବଣ ।୩୯ ।
ନିଜ ନିଜ ସଶସ୍ତ୍ର ବାହିନୀ ସାତ ବୀର ନିଜ ସାଥେ ଘେନି
ସୁବର୍ଣ୍ଣ ଚିତ୍ରିତ ଧନୁର୍ବାଣ ଧରି
ଗଲେ ବ୍ୟଗ୍ରେ କରି ହର୍ଷଧ୍ୱନି ହେ, ରାକ୍ଷସେ ।୪୦ ।
ମେରୁ ପର୍ବତ ପ୍ରାୟ ଅଟଳ ସମର ପ୍ରିୟ ଅଞ୍ଜନୀ ବାଳ

ଲୌହ ସ୍ତମ୍ଭ ଧରି ପ୍ରତୀକ୍ଷାରେ ଥିଲେ
ଆସିବେ ବୋଲି ଅସୁର ବଳ ହେ, ମାରୁତି ।୪୧ ।
ନିଶାଚରେ ଦେଖି ହନୁମାନ ଏକା ଏକ ଭୟାନକ ବାଣ
କରିଲେ ବର୍ଷଣ ଶ୍ରାବଣେ ଯେସନ
ବରଷଇ ଘନ ଘନ ଘନ ହେ, ମାରୁତି ।୪୨ ।
ତୀକ୍ଷ୍ଣ ଶର ଠାରୁ ତାହାଙ୍କର ରକ୍ଷା କରୁ କରୁ ସ୍ୱ ଶରୀର
ଚଇତ୍ର ବାଦଲ ପରି ଗରଜିଣ
ଆକ୍ରମିଲେ ଅସୁର ଉପର ହେ, ମାରୁତି ।୪୩ ।
ତୃଣ ଧାନ୍ୟ କ୍ଷେତ୍ରୁ ଉପାଡ଼ଇ ଯେହ୍ନେ କୃଷକ କ୍ଷେତକୁ ଯାଇ
ହନୁମାନ ଏକ ଏକ ରାକ୍ଷସଙ୍କୁ
ଉପାଡ଼ି ବେଣ୍ଟି ମାରଇ ନେଇ ହେ, ମାରୁତି ।୪୪ ।
ଏକ ଏକ ମନ୍ତ୍ରୀଙ୍କ କୁମର ମରି ଶୋଇଲେ ସାତ ଅସୁର
ବଞ୍ଚିଲେ ଯେତକ ଛାଡ଼ି ରଣକ୍ଷେତ୍ର
ଜଣାଇଲେ ଯାଇ ଲଙ୍କେଶ୍ୱର ହେ, ରାକ୍ଷସେ ।୪୫ ।
ସଂବାଦ ଶ୍ରବଣେ ଭୟଭୀତ ହେଲା ଚିତ୍ତେ ବିଶ୍ରବାର ସୁତ
କିଛି କ୍ଷଣ ମଧ୍ୟେ କର୍ତ୍ତବ୍ୟ ନିର୍ଣ୍ଣୟି
ଶିର ମନ କଲା ସଂଯମିତ ହେ, ରାବଣ ।୪୬ ।
ବିରୁପାକ୍ଷ ଯୁପାକ୍ଷ ଦୁର୍ଧର ପ୍ରଘସ ଭାସକର୍ଣ୍ଣାଦି ବୀର
ପାଞ୍ଚ ସେନାପତି ପେଶିଲା ବାନ୍ଧିଣ
ଆଣିବାକୁ ସେ ଦୁଷ୍ଟ ବାନର ସେ, ରାବଣ ।୪୭ ।
ଲଙ୍କେଶର ପାଞ୍ଚ ସେନାପତି ବିଶାଳ ସେନା ନେଇ ଝଟତି
ଅଶୋକ ବାଟିକା ପହଞ୍ଚୁ ପହଞ୍ଚୁ
ଆରମ୍ଭିଲେ ରଣ କ୍ରୋଧେ ଅତି ସେ, ରାକ୍ଷସେ ।୪୮ ।
ଉଗ୍ରନେତ୍ର ଶ୍ରୀରାମ ଭକତ ତନୁ ବଢ଼ାଇ କଲେ ପର୍ବତ
ଆକାଶ ବିଦୀର୍ଣ୍ଣକାରୀ ଗରଜନେ
ଅସୁରଙ୍କ ବଳ ହେଲା ହତ ହେ, ମାରୁତି ।୪୯ ।
ଯେତେ ଅସୁରଙ୍କ ଅସ୍ତ୍ର ଶସ୍ତ୍ର ହେଲା ଖେଳନା ପ୍ରାୟ ପ୍ରତୀତ
କ୍ଷଣକେ ମାରୁତି ରଣେ ସେନା ସହ
ପାଞ୍ଚ ସେନାପତି ହେଲେ ହତ ହେ, ମାରୁତି ।୫୦ ।
ବାନରାଧୀଶ ପବନ ସୁତ ଲୌହ ସ୍ତମ୍ଭଟି ଧରିଣ ହସ୍ତ
ରାକ୍ଷସ ସଂହାର କରଣେ ଉଦ୍ୟତ

ପ୍ରବେଶ ପଥେ ହୋଇ ପ୍ରସ୍ତୁତ ହେ, ମାରୁତି ।୫୧ ।
ଶ୍ରବଣ କରିଣ ଦୁଃସମ୍ବାଦ ପାଞ୍ଚ ସେନାପତିଙ୍କର ବଧ
ନିଜ ବୀର ପୁତ୍ର ଅକ୍ଷୟ କୁମାର
ପଠାଇଲା କରିବାକୁ ଯୁଦ୍ଧ ସେ, ରାବଣ ।୫୨ ।
ସମର ନିମନ୍ତେ ଉତ୍କଣ୍ଠିତ ଉଠି ଉତ୍ସାହ ନେଇ ଅତ୍ୟନ୍ତ
ଅକ୍ଷୟ କୁମାର ଚଢ଼ି ରଥପରେ
ଗଲା ଭେଟି ଯୁଦ୍ଧେ ହନୁମନ୍ତ ହେ, ସୁଜନେ ।୫୩ ।
ଧନୁବାଣ ଦିବ୍ୟ ତଲବାର ତରକସ ଶକ୍ତି ଓ ତୋମର
ସବୁ ଅସ୍ତ୍ର ଶସ୍ତ୍ର ରଥ ପରେ ଧରି
ପହଞ୍ଚିଲା ଅଶୋକ ବନର ହେ, ସୁଜନେ ।୫୪ ।
ଆକ୍ରମଣ ପ୍ରଚଣ୍ଡ ବେଗରେ କରେ ଚାଣ୍ଡେ ହନୁମାନ ପରେ
ସିଧା ରଥ ପରେ ଡେଇଁଣ ମାରୁତି
ଅଶ୍ୱ ନାଶିଲେ ରଥ ସାଥିରେ ହେ, ମାରୁତି ।୫୫ ।
ସାରଥି ଗଲା ସମନ ପୁର ରଥୁ ଡେଇଁ ଅକ୍ଷୟ କୁମାର
ଅସ୍ତ୍ରରେ ପ୍ରହାର କରିବ ଭାବୁଛି
ଆକାଶେ ଉଡ଼ିଲେ ହନୁବୀର ହେ, ମାରୁତି ।୫୬ ।
ଅନୁଧାବନ କଲା ଅସୁର ଦୁଇ ପୟର ଧରି ବାନର
ଅତ୍ୟନ୍ତ ଫୁର୍ତ୍ତିରେ ଆକାଶେ ଘୁରାଇ
ପିଟିଲେ ନେଇ ଭୂମି ଉପର ହେ, ମାରୁତି ।୫୭ ।
ଉଚ୍ଚାକାଶରୁ ରାକ୍ଷସ ସୁତ ଭୂମିରେ ହେବାରୁ ପତିତ
ଖଣ୍ଡ ଖଣ୍ଡ ହୋଇ ମାଂସ ହାଡ଼ ତା'ର
କ୍ଷିପ୍ତ ହୋଇବାରୁ ଇତସ୍ତତ ହେ, ମାରୁତି ।୫୮ ।
ତା'ର ଶରୀରର ଚିହ୍ନବର୍ଣ୍ଣ ନ ଥାଇ ଦିଶେ ରକତ ଚିହ୍ନ
ଅକ୍ଷୟର ମୃତ୍ୟୁ ଜାଣି ସୁରଗଣ
ଗଗନୁ ବରଷିଲେ ସୁମନ ହେ, ସୁଜନେ ।୫୯ ।
ଶୁଣି ପୁତ୍ର ମୃତ୍ୟୁ ସମାଚାର ରୋଷାନଳେ ଜଳି ଲଙ୍କେଶ୍ୱର
କପି ଧରିବାକୁ ସ୍ୱୟଂ ଦଶାନନ
ବୁଦ୍ଧି ହଜାଇ ହେଲା ବାହାର ହେ, ସୁଜନେ ।୬୦ ।
ତା'ରେ ରୋକି ପୁତ୍ର ଇନ୍ଦ୍ରଜିତ ବୋଲେ ଆମ୍ଭେ ଥାଉଣୁ ଜିବିତ
ସାମାନ୍ୟ ବାନର ଚଞ୍ଚଳତା ପାଇଁ
ହୁଅ ନାହିଁ ଭୋ ପିତା ଦୁଃଖିତ ହେ, ସୁଜନେ ।୬୧ ।

ଯୁଦ୍ଧେ ଇନ୍ଦ୍ରଜିତ ଯିବା ପାଇଁ ଯେବେ ବାହାରିଲା ସଜ ହୋଇ
ସାବଧାନ କରି ରାବଣ କୁହଇ
ବାନର ସାଧାରଣ ନୁହଁଇ ହେ ସୁଜନେ ।୬୨ ।
ଅଗ୍ନିତୁଲ୍ୟ ଅଟେ ଏ ବାନର କୌଣସି ସାଧନରେ ତାହାର
ନିୟନ୍ତ୍ରଣ କରି ନିଧନ କରିବା
ଅଟଇ ସବୁଠୁ କାଠିକର ହେ, ସୁଜନେ ।୬୩ ।
ପ୍ରତିପକ୍ଷେ ସମ ମନେ କରି ଦିବ୍ୟ ଅସ୍ତ୍ରର ସନ୍ଧାନ କରି
କରୀକୁ ଯେପରି ହରି ବଶ କରେ
ଅବଶ୍ୟ ବଧିବ ତେହ୍ନେ ହରି ହେ, ସୁଜନେ ।୬୪ ।
ନିଜ ପିତାର ଶୁଣି ବଚନ ପିତା ଚତୁଃପାର୍ଶ୍ୱରେ ଭ୍ରମଣ
କରି ମେଘନାଦ ଛାଡ଼ି ଘୋର ନାଦ
କଲା ନିଜ ରଥ ଆରୋହଣ ହେ, ସୁଜନେ ।୬୫ ।
ରଥେ ଚଢ଼ି ଅସୁରର ବାଳ ଯାଇ ପହଞ୍ଚିଲା ଯୁଦ୍ଧ ସ୍ଥଳ
କରି ସିଂହ ନାଦ ଦେଖାଇଣ ତେଜ
ବିନ୍ଧିଲା ବାଣ ସେହୁ ପ୍ରବଳ ହେ, ସୁଜନେ ।୬୬ ।
ସିଂହନାଦ ଶୁଣି ହନୁମାନ ଆକାଶକୁ ହେଲେ ବେଗବାନ
ତୀକ୍ଷ୍ଣ ନାରାଚରେ କ୍ଷତାକ୍ତ କରିଲା
କପିଙ୍କୁ ମନ୍ଦୋଦରୀ ନନ୍ଦନ ହେ, ସୁଜନେ ।୬୭ ।
କୁପିତ ହୋଇଣ ହନୁମନ୍ତ ଲୌହ ସ୍ତମ୍ଭରେ କରି ଆଘାତ
ସାରଥି ରଥକୁ କରିଲେ ବିଧ୍ୱଂସ
ଡେଇଁ ବଞ୍ଚିଗଲା ଇନ୍ଦ୍ରଜିତ ହେ, ସୁଜନେ ।୬୮ ।
କପୀଶ୍ୱରଙ୍କର ସମ୍ମୁଖରେ ସମ ନ ହେବାରୁ ସମରରେ
ବ୍ରହ୍ମପାଶ ଛାଡ଼ି ବାନ୍ଧିଲା ବାନରେ
କପୀ ସହିଲେ ମର୍ଯ୍ୟାଦା ଡରେ ହେ, ସୁଜନେ ।୬୯ ।
ବ୍ରହ୍ମ ପାଶରେ ହୋଇ ବନ୍ଧନ ଭୂମିରେ ଲୋଟି ପବନ ସୁନ
ବନ୍ଧିତ ହେବାର ମିଥ୍ୟା ଅଭିନୟ
ରକ୍ଷଗଣେ କଲେ ପ୍ରଦର୍ଶନ ହେ, ମାରୁତି ।୭୦ ।
ଅପଶବ୍ଦ କହି ରକ୍ଷଗଣ ରସି ନେଇ କସିଲେ ବନ୍ଧନ
ବ୍ରହ୍ମବର ଯୋଗୁଁ ପାଶରୁ ମୁକତ
ହୋଇ ଗଲେ ମରୁତ ନନ୍ଦନ ହେ, ମାରୁତି ।୭୧ ।
ବ୍ରହ୍ମ ପାଶୁ ମୁକତ ବାନର ଦେଖି କରି ଇନ୍ଦ୍ରଜିତ ବୀର

ମନ ମଧ୍ୟେ ତା'ର ଉଦାସ ଚିନ୍ତିତ
ମନ୍ତ୍ର ଶକ୍ତି ତା' ହେଲା ବେକାର ହେ, ସୁଜନେ ।୭୨ ।
ଏକ ବାର ମନ୍ତ୍ରାସ୍ତ୍ର ବିଫଳ ହେଲେ ଦ୍ୱିତୀୟ ବାର ସଫଳ
ହୁଏ ନାହିଁ ବୋଲି ଭଲେ ସେ ଜାଣଇ
ଭାବେ ବ୍ୟର୍ଥ ହେଲା ମୋର ବଳ ହେ, ସୁଜନେ ।୭୩ ।
ହନୁମାନ ଅଜ୍ଞାନଙ୍କ ପ୍ରାୟ ବନ୍ଧା ହୋଇ କଲେ ଅଭିନୟ
ଅଙ୍ଗଭଙ୍ଗି ତାଙ୍କ କଲେ ପ୍ରଦର୍ଶନ
ଯେହ୍ନେ ହେଲା ତାଙ୍କ ପରାଜୟ ହେ, ସୁଜନେ ।୭୪ ।
ହନୁମାନଙ୍କୁ ନେଇ ସାଥିରେ ରକ୍ଷେ ଗଲେ ଦେବେ ରାବଣରେ
ମାର୍ଗେ ପୁରବାସୀ ଦେଖିବା ନିମନ୍ତେ
ଆସି ଗମିଲେ ତାଙ୍କ ପଛରେ ହେ, ସୁଜନେ ।୭୫ ।
ରକ୍ଷେ ଶଢ ବାଣ ଚଳାଇଣ ଥୋକେ ଦୈହିକ କଷ୍ଟ ଦେଇଣ
ଭିନ୍ନ ଭିନ୍ନ ରୂପେ କଷ୍ଟ ଦେଉଥାନ୍ତି
ନିଶବ୍ଦେ ସହନ୍ତି ହନୁମାନ ହେ, ସୁଜନେ ।୭୬ ।
ପ୍ରଭୁ କାର୍ଯ୍ୟ ସାଧନ ଲକ୍ଷ୍ୟରେ ମାରୁତି ଚାଲେ ଲଙ୍କା ଦାଣ୍ଡରେ
ମହତ୍ତ୍ୱପୂର୍ଣ୍ଣ ଯେ ସ୍ଥଳ ସବୁ ଧ୍ୟାନେ
ଦେଖି ମନେ ରଖନ୍ତି ସ୍ମୃତିରେ ହେ, ସୁଜନେ ।୭୭ ।
ମେଘନାଦ ନେଇ ବାତ ସୁନ ଭେଟିଦେଲା ପିତା ସନ୍ନିଧାନ
ଏକବିଂଶ ଛାନ୍ଦ କରଇ ସଂପୂର୍ଣ୍ଣ
ସୁରେଶ ସ୍ମରିଣ ହନୁମାନ ହେ, ସୁଜନେ ।୭୮ ।



# ଦ୍ୱାବିଂଶ ଛାନ୍ଦ

(ରାବଣ ସଭାରେ ପ୍ରଭୁ ହନୁମାନ)

ରାଗ-ମଙ୍ଗଳ ଗୁଜ୍ଜରୀ

ଶୈଳ ସୁତା ସୁତ ପଦ କରି ବନ୍ଦନ
ଶୈଳସୁତା ଈଶ ଆତ୍ମଜ ଗୁଣମାନ ଯେ ।୧ ।
କରଣେ ଶ୍ରୀହନୁମାନ ଚରିତ ଏହି
ଶୁଣ ସୁଜନେ ଭକ୍ତି ରସ ଏ ବହଇ ଯେ ।୨ ।
ପିତା ସମ୍ମୁଖେ ପହଞ୍ଚିଣ ମେଘନାଦ
ଧିରେ ବୋଲଇ ମନେ ହୋଇଣ ଆନନ୍ଦ ଯେ ।୩ ।
ବ୍ରହ୍ମପାଶରେ ବାନ୍ଧି ବାନର ଆଣିଛି
ବୀର ବରଗ ଆମର ଅନେକ ବଧିଛି ଯେ ।୪ ।
ମନ୍ତ୍ରୀ ମଣ୍ଡଳେ ମନ୍ତ୍ରଣା ମାନ କରିଣ
ମନ ମାନିଲା ପ୍ରାୟେକ ଦଣ୍ଡ ପ୍ରଦାନ ଯେ ।୫ ।
ହରୀଶ ହରି ପରାୟେ ବସି ସଭାରେ
ହୃଦହରା ଅଦଭୁତ ସଭା ଶୋଭାରେ ଯେ ।୬ ।
ବିମୁଗ୍ଧ ନୟନେ ଦେଖେ ଲଙ୍କା ରାଜନ
ବିମୁଗ୍ଧ କରେ ତା' ରତ୍ନସିଂହାସନ ଯେ ।୭ ।
ରତ୍ନ ଚିତ୍ରିତ ସ୍ଫଟିକ ମଣି ଗଠିତ
ବିଶାଳତା ସୁନ୍ଦରତା ଉଦଭାଷିତ ଯେ ।୮ ।
ତପ୍ତ ସୁବର୍ଣ୍ଣ ତେଜ ଶରୀରୁ ପ୍ରକାଶେ
ବଳ ବିକ୍ରମ ତା' ବଦନେ ସ୍ପଷ୍ଟ ଦିଶେ ଯେ ।୯ ।
ନାନା ମଣି ଖଚିତ ସୁବର୍ଣ୍ଣ ମୁକୁଟ
ତା'ର ମସ୍ତକେ ଦୀପ୍ତି କରଇ ପ୍ରକଟ ଯେ ।୧୦ ।
ମନ୍ତ୍ର ତତ୍ତ୍ୱକୁ ଜାଣିଥିବା ଚାରି ମନ୍ତ୍ରୀ
ରହିଛନ୍ତି ରାବଣେ ଚତୁଃପାର୍ଶ୍ୱ ଘେରି ଯେ ।୧୧ ।
ମହାପାର୍ଶ୍ୱ ନିକୁମ୍ଭ ଦୁର୍ଦ୍ଧର ପ୍ରହସ୍ତ
ମନ୍ତ୍ରଣା ସେହୁ ଦିଅନ୍ତି ସମୟୋଚିତ ଯେ ।୧୨ ।
ରାକ୍ଷସପୀଡ଼ିତ ଶ୍ରୀ ପବନ ନନ୍ଦନ
ଆଶ୍ଚର୍ଯ୍ୟେ ଦେଖନ୍ତି ଦଶଗ୍ରୀବ ରାଜନ ଯେ ।୧୩ ।
ସ୍ୱଗତୋକ୍ତି କରନ୍ତି ନିଜ ମନେ ମନେ
ମର୍ତ୍ତ୍ୟେ ନ ଥିବ ଏପରି ରାଜନ ଜଣେ ଯେ ।୧୪ ।
ଅଦ୍ଭୁତ ରୂପ ଶକ୍ତି ତା'ର ଅନୁପମ

ଯଦି ନ ଥାନ୍ତା କରଣେ ଅଧର୍ମ ଯେ ।୧୫ ।
ଶଚୀପତି ପ୍ରାୟ ଏହି ତିନି ଲୋକରେ
ନାମ ଲିପିବଦ୍ଧ ଥାନ୍ତା ସ୍ୱର୍ଣ୍ଣାକ୍ଷରରେ ଯେ ।୧୬ ।
ଦେଖି ପିଙ୍ଗାକ୍ଷ ପିଙ୍ଗରୋମା ପିଙ୍ଗକେଶ
ବାନର ଶିରୋମଣି ହନୁମାନ ରୋଷ ଯେ ।୧୭ ।
ମନେ ବହିଣ ଜଳି ଉଠିଲା କ୍ଷଣକେ
ମନ୍ତ୍ରୀ ପ୍ରହସ୍ତେ ପ୍ରଶ୍ନ କଲା ଘଡ଼ିକେ ଯେ ।୧୮ ।
ପଚାର ପରିଚୟ ଏହି ବାନରର
କେଉଁ ସ୍ଥାନୁ ଆସି ଅଛି ଏ ଲଙ୍କାପୁର ଯେ ।୧୯ ।
କି ଉଦ୍ଦେଶ୍ୟେ ଆସି ଅଶୋକ ଉପବନ
ଭାଙ୍ଗି ମାରିଲା ଯୋଦ୍ଧା ସହ ପ୍ରାଣଧନ ଯେ ।୨୦ ।
ରାବଣ ଇଚ୍ଛାମତେ ପୁଛଇ ପ୍ରହସ୍ତ
ପ୍ରାଣଦାନ ପାଇବ ପ୍ରକାଶିଲେ ସତ ଯେ ।୨୧ ।
କିଏ ପେଶିଛି ତୋତେ ଲକ୍ଷ୍ୟ ତା'ର କିସ
କେହ୍ନେ ଆସି ଲଙ୍କାରେ ହୋଇଲୁ ପ୍ରବେଶ ଯେ ।୨୨ ।
ନିଶଙ୍କ ନିର୍ଭୟ ପ୍ରଭୁ ଶ୍ରୀ ହନୁମାନ
ପରମ ପ୍ରଭୁ ଶ୍ରୀରାମ କରି ସ୍ମରଣ ଯେ ।୨୩ ।
ଲଙ୍କାଧିପତି ରାବଣ ଶୁଣ ବଚନ
ବୁଝିବା ଶକତି ଥିଲେ ମନରେ ଘେନ ଯେ ।୨୪ ।
ମହିମାମୟ ପରମ ପ୍ରଭୁ ଅନନ୍ତ
ଯା'ର ଚରଣେ ମାୟା ହୋଇଛି ଆଶ୍ରିତ ଯେ ।୨୫ ।
ଯାହାର ଶକ୍ତିରେ ବ୍ରହ୍ମା ବିଷ୍ଣୁ ମହେଶ
ସୃଷ୍ଟିକୁ ସୃଜନ୍ତି ପାଳନ୍ତି କରନ୍ତି ନାଶ ଯେ ।୨୬ ।
ଯା'ର ବଳରେ ବଳୀ ହୋଇ ଶେଷନାଗ
ଧରିଛି ଏ ବ୍ରହ୍ମାଣ୍ଡ ନଦୀ ସିନ୍ଧୁ ନଗ ଯେ ।୨୭ ।
ଯିଏ ପ୍ରତି ଯୁଗେ ଗୋ ଦେବତା ବ୍ରାହ୍ମଣ
ଧର୍ମ ସହିତ ପ୍ରେମେ କରନ୍ତି ରକ୍ଷଣ ଯେ ।୨୮ ।
ଧରିତ୍ରୀ ଭାରଭୁତ ଅଧର୍ମୀ ଦୁଷ୍କୃତ
ନାଶ କରଣେ ହୁଅନ୍ତି ଅବତରିତ ଯେ ।୨୯ ।
ସେହି ପରମ କାରୁଣିକ ରଘୁନାଥ
ଶ୍ରୀରାମ ରାଘବେନ୍ଦ୍ରଙ୍କର ମୁହିଁ ଦୂତ ଯେ ।୩୦ ।
ଜ୍ଞାତ ନୋହୁ କି ସେ ଦଶରଥ ନନ୍ଦନ

ମୃଣାଳ ତୁଲ୍ୟ ଭାଙ୍ଗି ଶିବ ଶରାସନ ଯେ ।୩୧ ।
ଖର ଦୁଷଣ ତ୍ରିଶିରା ଦୈତ୍ୟେ ବଧିଲେ
ତୋତେ କାଖେ ଧରିଥିବା ବାଳୀ ନାଶିଲେ ।୩୨ ।
ନ ଜାଣିବାର ସୁଆଙ୍ଗ ଦେଖା ତୁ ଯେତେ
ସୀତା ହରଣକାରୀ ଭୁଲିବେ କି ତୋତେ ଯେ ।୩୩ ।
ଦେଖି ବୁଝି ଯା ଆରେ ରାବଣ ଅଜ୍ଞାନ
ସେହି ସର୍ବଶକ୍ତି ସଂପର୍ଣ୍ଣ ଭଗବାନ ଯେ ।୩୪ ।
ମୁହିଁ ତାଙ୍କର ସେବକ ସାମାନ୍ୟ ଦୂତ
ପରମ ପ୍ରତାପୀ ପବନ ଦେବ ପୁତ୍ର ।୩୫ ।
ଶ୍ରୀରାମ ସଖା ସୁଗ୍ରୀବ କିଷ୍କିନ୍ଧ୍ୟାଈଶ
ସୀତା ଠାବ ପାଇଁ ବ୍ୟଗ୍ର ହୋଇ ମାନସ ଯେ ।୩୬ ।
କୋଟି କୋଟି ଭଲ୍ଲୁକ ଓ ବାନର ବୀର
ପେଶିଲେ ଚଉଦିଗକୁ କରିଣ ଚାର ଯେ ।୩୭ ।
ସୁଗ୍ରୀବ ନିର୍ଦ୍ଦେଶେ ଆସିଛି ଲଙ୍କାପୁର
ଶତ ଯୋଜନ ଡେଇଁ ଲଙ୍ଘିଣ ସାଗର ଯେ ।୩୮ ।
ମାତା ସୀତାଙ୍କର କରିଅଛି ଦର୍ଶନ
ଲଙ୍କା ବିନାଶର ସେ ଅଟନ୍ତି କାରଣ ଯେ ।୩୯ ।
ତିନିଲୋକ ମଧ୍ୟେ ନାହିଁ ଏପରି ଜୀବ
ଶ୍ରୀରାମ ଅପରାଧି ସଂସାରେ ବଞ୍ଚିବ ଯେ ।୪୦ ।
ସମଗ୍ର ସଂସାରକୁ ନିମିଷ ମଧ୍ୟରେ
ମୋ ପ୍ରଭୁ ସକ୍ଷମ ସଂହାରି ଗଢ଼ିବାରେ ।୪୧ ।
ଚତୁର୍ମୁଖ ବ୍ରହ୍ମା ତ୍ରିନେତ୍ର ତ୍ରିପୁରାରୀ
ସହସ୍ରାକ୍ଷ ବାସବ ଦୈତ୍ୟ ଦୈତ୍ୟ ଅରୀ ଯେ ।୪୨ ।
ନାଗ ଯକ୍ଷ ଗନ୍ଧର୍ବ ପୁଣି ବିଦ୍ୟାଧର
ଅସମର୍ଥ ହୋଇବେ କରଣେ ସମର ଯେ ।୪୩ ।
ମାତା ସୀତାଙ୍କର ଦର୍ଶନେ ଥିଲି ଯାଇ
କ୍ଷୁଧାର ତାଡ଼ନାରେ ଫଳ ଅଛି ଖାଇ ଯେ ।୪୪ ।
ସ୍ୱଭାବାନୁସାରେ କିଛି ଶାଖା ଭାଙ୍ଗିଛି
ଆକ୍ରମଣକାରୀ ରକ୍ଷେ ପ୍ରହାର କରିଛି ଯେ ।୪୫ ।
ନିର୍ମମ ମୋତେ ଦେଲା ଯେ ଘୋର ଆଘାତ
ନିର୍ମମେ କରିଲି ତା'ର ମୁଁ ପ୍ରାଣଘାତ ଯେ ।୪୬ ।
ଏଥେ ମୋର କି ଦୋଷ ରହିଛି ରାଜନ

ଅନ୍ୟାୟେ ଧରି ଆଣିଛି ତୁମ୍ଭ ନନ୍ଦନ ଯେ ।୪୭ ।
ଚତୁରତାପୂର୍ଣ୍ଣ ନିର୍ଭିକ ବାଣୀ ଶୁଣି
ପ୍ରସନ୍ନ ହେଲେ ଦେବଗଣେ ଗୁଣଗୁଣି ଯେ ।୪୮ ।
ଭୟାକ୍ରାନ୍ତ ହୋଇଣ ରାକ୍ଷସ କମ୍ପିଲେ
ରାମ ମହିମା ଶୁଣି ହତବୀର୍ଯ୍ୟ ହେଲେ ଯେ ।୪୯ ।
ଦଶାନନ ଶୁଣି ଦଶନ କାମୁଡ଼ଇ
କ୍ରୋଧ ବଢ଼ାଏ କପି ଉପଦେଶ ଦେଇ ଯେ ।୫୦ ।
ଶୁଣ ରାବଣ ହିତ ତୁମ ପାଇଁ ଯାହା
କହୁଛି ମନ ଦେଇ କରି ଶୁଣ ତାହା ଯେ ।୫୧ ।
ଲଙ୍କାଧିପତି ତୁମେ ତ ବ୍ରହ୍ମା ବଂଶଜ
ପୁଲସ୍ତ୍ୟନନ୍ଦନ ବିଶ୍ରବାଙ୍କ ଆତ୍ମଜ ଯେ ।୫୨ ।
ଦେବ ଧନପତି କୁବେର ସହୋଦର
ଦେହାତ୍ମ ବୁଦ୍ଧିରେ ନୁହଁ ହେ ନିଶାଚର ଯେ ।୫୩ ।
ଆତ୍ମ ବୁଦ୍ଧି ଦୃଷ୍ଟିରୁ ହେ ନୁହଁ ରାକ୍ଷସ
ସତ୍ତ୍ୱ ଗୁଣାଦିର ତୁମ୍ଭେ ଦୈବୀ ପ୍ରକାଶ ଯେ ।୫୪ ।
ନୁହଁ ବୁଦ୍ଧି ଇନ୍ଦ୍ରିୟ ଦୁଃଖାଦି ଶରୀର
ସର୍ବଗୁଣାତିତ ସର୍ବଥା ନିରାକାର ଯେ ।୫୫ ।
ଏ ସର୍ବେ ଅଜ୍ଞାନାସତ୍ ସ୍ୱପ୍ନ ସମାନ
ଆତ୍ମ ସ୍ୱରୂପ ତୁମେ ହେ ବିକାର ଶୂନ୍ୟ ଯେ ।୫୬ ।
ଆକାଶ ସର୍ବତ୍ର ବ୍ୟାପ୍ତ ହୋଇ ଯେପରି
କାହା ଗୁଣ ଦୋଷେ ଲିପ୍ତ ନୋହେ ସେପରି ଯେ ।୫୭ ।
ଆତ୍ମ ସ୍ୱରୂପି ସୂକ୍ଷ୍ମେ ବସ ଏ ଶରୀରେ
ରିପ୍ତ ହୁଅ ନା ଏହାର ସୁକ ଦୁଃଖରେ ଯେ ।୫୮ ।
ଦେହ ଇନ୍ଦ୍ରିୟ ପ୍ରାଣ ଶରୀରରେ ଆତ୍ମା
ବନ୍ଧନର କାରଣ ଅଟେ ଏ ଚେତନା ଯେ ।୫୯ ।
ଚିନ୍ମାତ୍ମା ଅଜନ୍ମା ଅବିନାଶୀ ଯେ ଭାବେ
ଆନନ୍ଦ ସ୍ୱରୂପ ବିଚରେ ମୁକ୍ତ ଭାବେ ଯେ ।୬୦ ।
ପୃଥ୍ୱୀ ବିକାର ଯୁକ୍ତ ଏ ଦେହ ଅନାତ୍ମା
ପ୍ରାଣ ବାୟୁ ସ୍ୱରୂପ କେହ୍ନେ ହେବ ଆତ୍ମା ଯେ ।୬୧ ।
ପ୍ରକୃତିରୁ ବୁଦ୍ଧି ଅହଂକାରରୁ ମନ
ଏମାନେ କେହି ନୁହନ୍ତି ଆତ୍ମା ସମାନ ଯେ ।୬୨ ।
ଆତ୍ମା ଚିଦାନନ୍ଦ ସ୍ୱରୂପ ଅବିକାରୀ

ଦେହାଦି ସଂଘାତୁ ଭିନ୍ନ ସ୍ୱାମୀ ଏହାରି ଯେ ।୬୩ ।
ସର୍ବଦା ନିର୍ମଳ ସେ ଉପାଧି ରହିତ
ଜ୍ଞାନୀ ଜାଣେ ଯେ ସଂସାରୁ ହୁଅଇ ମୁକ୍ତ ଯେ ।୬୪ ।
ମହାମତେ ଆତ୍ୟନ୍ତିକ ମୋକ୍ଷ ସାଧନ
ଦେଉଅଛି ବତାଇ ସାବଧାନେ ଶୁଣ ଯେ ।୬୫ ।
ବୁଦ୍ଧିକୁ ଶୁଦ୍ଧି କରଇ ବିଷ୍ଣୁ ଭକତି
ତହୁଁ ହୁଏ ନିର୍ମଳ ଆତ୍ମଜ୍ଞାନ ପ୍ରାପ୍ତି ଯେ ।୬୬ ।
ଆତ୍ମଜ୍ଞାନରୁ ଆତ୍ମ ତତ୍ତ୍ୱ ଅନୁଭବ
ସେଥେ ଦୃଢ଼ ବୋଧୁ ମିଳେ ପରମ ପଦ ଯେ ।୬୭ ।
ପ୍ରକୃତିର ଉର୍ଦ୍ଧେ ଯେ ପୁରାଣ ପୁରୁଷ
ସର୍ବ ବ୍ୟାପକ ପ୍ରଭୁ କମଳାଙ୍କ ଈଶ ଯେ ।୬୮ ।
ଆଦି ନାରାୟଣଙ୍କର କର ହେ ଭଜନ
ନିରନ୍ତର ଜପ ସେ ହରି ଭଗବାନ ଯେ ।୬୯ ।
ଶତ୍ରୁଭାବ ମୂର୍ଖତାକୁ ହୃଦୟୁ କାଢ଼
ଶ୍ରୀରାମଙ୍କ ଭଜନକୁ ଜୀବନେ ଯୋଡ଼ ଯେ ।୭୦ ।
ବନ୍ଧୁ ବାନ୍ଧବ ପୁତ୍ର ପୌତ୍ରାଦିଙ୍କୁ ନେଇ
ମାତା ସୀତା ସହିତ ରାମ ପାଦେ ଯାଇ ଯେ ।୭୧ ।
ନମସ୍କାର କରିଣ ପଶିଲେ ଶରଣ
ସର୍ବବିଧ ଭୟ ହୋଇବ ନିବାରଣ ଯେ ।୭୨ ।
ହୃଦସ୍ଥିତ ପରମାତ୍ମା ସୁଖ ସ୍ୱରୂପ
ଭକ୍ତିଭରେ ଧ୍ୟାନ କରେ ଯେ ସେ ରୂପ ଯେ ।୭୩ ।
ଦୁଃଖ ତରଙ୍ଗପୂର୍ଣ୍ଣ ଭବ ପାରାବାର
ଉଦ୍ଧାରିବ କିଏ ବା ଅଛି ପାରିବାର ଯେ ।୭୪ ।
ଭଗବାନ ରାମଙ୍କ ନ କଲେ ଭଜନ
ଅଜ୍ଞାନ ଅନଳରେ ଜଳି ଅନୁକ୍ଷଣ ଯେ ।୭୫ ।
ସ୍ୱୟେଂ ସ୍ୱୟଂ ଶତ୍ରୁ ସମ ଅସୁରକ୍ଷିତ
ଅଜ୍ଞାନୁ ପାପଭାର ବଢ଼ିବ ବହୁତ ଯେ ।୭୬ ।
ଉତ୍ତରୋତ୍ତର ଅଧର୍ମ ବୃଦ୍ଧି ହେବାରୁ
ବିଚ୍ୟୁତ ହେବ ତୁମେ ମୋକ୍ଷ ପ୍ରାପ୍ତିଠାରୁ ଯେ ।୭୭ ।
ହେ ଅସୁର ରାଜ କରୁଛି ନିବେଦନ
ଆଦରପୂର୍ବକ ଜାନକୀଙ୍କୁ ନେଇଣ ଯେ ।୭୮ ।
ପ୍ରଭୁ ଶ୍ରୀରାମଙ୍କର ପଡ଼ିଣ ଚରଣେ

କ୍ଷମା ମାଗ ନିସଙ୍କୋଚରେ ଶୁଦ୍ଧ ମନେ ଯେ ।୭୯ ।
ଦୟାନିଧାନ ନିଶ୍ଚୟ ବହିବେ ଦୟା
ନିର୍ଦ୍ଦୟ ନ ହୋଇ ସେ କରିବେ ସୁଦୟା ଯେ ।୮୦ ।
କ୍ଷମାଶୀଳ ପ୍ରଭୁ ମୋର କ୍ଷମା କରିବେ
ନିଷ୍କଣ୍ଟକ ରାଜ୍ୟ ଭୋଗ ଆଶିଷ ଦେବେ ଯେ ।୮୧ ।
ଲୌକିକ ପାରଲୌକିକ ଦୁଇ ଜୀବନ
ସୁଧୁରି ସଫଳ ହେବ ହେବୁ ତୁ ଧନ୍ୟ ଯେ ।୮୨ ।
ଶୂକରକୁ ପକ୍ୱ ରମ୍ଭା ଫଳ ଯେପରି
ରାବଣକୁ ଉପଦେଶ ପ୍ରତେ ସେପରି ଯେ ।୮୩ ।
ଚୋରକୁ ଚାନ୍ଦିନୀ ରାତି ବେଶ୍ୟାକୁ ପୁତ୍ର
ମୂର୍ଖେ ଉପଦେଶ ଖଳକୁ ଧର୍ମମତ ଯେ ।୮୪ ।
ସେହି ପରି ଅନୁଭବି ଲଙ୍କା ରାଜନ
କ୍ରୋଧେ ହୋଇଲା ଆରକ୍ତ ତା'ର ନୟନ ଯେ ।୮୫ ।
ଅତ୍ୟନ୍ତ ରୋଷ ହୋଇଣ ବୋଲଇ ବାଣୀ
ଦୁଷ୍ଟ ବାନରାଧମ ଶୁଣାଉ କାହାଣୀ ଯେ ।୮୬ ।
ମୋ ସମ୍ମୁଖେ ଅନର୍ଗଳ କରୁ ପ୍ରଳାପ
ଦୁଃସାହସୀ ଜାଣି ନାହୁଁ ମୋର ପ୍ରତାପ ଯେ ।୮୭ ।
ଇନବାସୀ ରାମ ସୁଗ୍ରୀବର କି ଶକ୍ତି
ମକ୍ଷିକା କି ପକ୍ଷୀ ଗଣେ ହୁଏ ଗଣତି ଯେ ।୮୮ ।
ବାଚାଳତା ପାଇଁ ତୋତେ ବଧିବି ଆଗ
ସୀତାକୁ ତା ପରେ ମାରି ପେଷିବି ସ୍ୱର୍ଗ ଯେ ।୮୯ ।
ରାମ ଲକ୍ଷ୍ମଣ ସୁଗ୍ରୀବ ସେନା ସହିତ
ଖୁଆଇବି ରାକ୍ଷସଙ୍କୁ କରିଣ ହତ ଯେ ।୯୦ ।
ଦଶାନନ ଦର୍ପୋକ୍ତି ଶୁଣି ହନୁମାନ
ଦାନ୍ତ କାମୁଡ଼ି କହିଲେ ଏହି ବଚନ ଯେ ।୯୧ ।
ଅଧମ ରାକ୍ଷସରାଜ ମୃତ୍ୟୁ ତୋ ଶିରେ
ପ୍ରଳାପ କରୁ ଏପରି ତା ପ୍ରଭାବରେ ଯେ ।୯୨ ।
ଶ୍ରୀରାମ ସେବକ ମୁହିଁ ଜାଣିନୁ ଶକ୍ତି
ପରାକ୍ରମ ପରୀକ୍ଷଣେ ନାହିଁ ଶକତି ଯେ ।୯୩ ।
ତୋ ପରି ପାପାତ୍ମା ଯେତେ ସଂସାରେ ଛନ୍ତି
ପ୍ରାଣ ଛାଡ଼ିଯିବ ତାଙ୍କ କେବଳ ଚିନ୍ତି ଯେ ।୯୪ ।
ମୋ ସହିତ ସମାନତା କରିବା ପାଇଁ

ତିନି ଭୁବନରେ ବୀର ଜଣେ କେ ନାହିଁ ଯେ ।୯୫ ।
ଦୁରାତ୍ମା ରାବଣ କ୍ରୋଧେ ଉଠିଲା ଜଳି
ହନୁ ଆନନ୍ଦ ନିଅନ୍ତି ରୋଷ ତା କଳି ଯେ ।୯୬ ।
ବୋଇଲା ରାକ୍ଷସେ ଦୁଷ୍ଟକୁ ବଧ କର
ରାକ୍ଷସେ ଧାଇଁଲେ ଶୁଣି ଆଦେଶ ତା'ର ଯେ ।୯୭ ।
ରାବଣ ଅନୁଜ ଦେଖି ଅଧର୍ମ କାର୍ଯ୍ୟ
ବୋଲଇ ଭ୍ରାତା ଅକାର୍ଯ୍ୟ ଦୂତର ବଧ ଯେ ।୯୮ ।
ଉତ୍ତମ ହେଉ ଅଥବା ସେ ଦୁଷ୍ଟ ଆତ୍ମା
ଶତ୍ରୁ ସ୍ୱାର୍ଥ କଥା ଭଣେ ତା ପକ୍ଷ ଆତ୍ମା ଯେ ।୯୯ ।
ଦୂତ ଯେଣୁ ପରାଧୀନ ନୁହେଁ ଉଚିତ
ମୃତ୍ୟୁ ଦଣ୍ଡର ନିମନ୍ତେ ସେ ଉପଯୁକ୍ତ ଯେ ।୧୦୦ ।
ଅଙ୍ଗ ଭଙ୍ଗ ଆଦି ଅଛି ଅନେକ ଦଣ୍ଡ
ଯାହା ଇଛା ତାହା ଦିଅ ସେ ଦୁରୁଦଣ୍ଡ ଯେ ।୧୦୧ ।
ଦେଶକାଳ ପାତ୍ର ଅନୁକୂଳ ବଚନ
ହିତକର କଥା ଶୁଣି ଲଙ୍କା ରାଜନ ଯେ ।୧୦୨ ।
ମୋଲେ ବିଭୀଷଣ ତୋର ଯୁକ୍ତି ସଙ୍ଗତ
ପୁଛ ବାନରର ନ ରଖିବା ସଙ୍ଗତ ।୧୦୩ ।
ଏହା ଏ ବାନରର ଅତିଶୟ ପ୍ରିୟ
ରହିଛି ଶରୀରରେ ଆଭୁଷଣ ପ୍ରାୟ ଯେ ।୧୦୪ ।
ଯଥାଶୀଘ୍ର ଲାଞ୍ଜକୁ ତା' ଦିଅ ଜଳାଇ
ବନବାସୀ ରାମ ପାଶେ କହୁ ସେ ଯାଇ ଯେ ।୧୦୫ ।
ଲଙ୍କା ଦାଣ୍ଡେ ବୁଲାଅ କରି ତିରସ୍କାର
ଶେଷେ ଅଗ୍ନି ଲଗାଇବ ଲାଙ୍ଗୁଳେ ତା'ର ଯେ ।୧୦୬ ।
ମାରୁତି ପରାକ୍ରମକୁ ତା'ର ଦୟାରେ
ସୁରେଶ ବର୍ଣ୍ଣଇ ଦ୍ୱାବିଂଶ ଅଧ୍ୟାୟରେ ଯେ ।୧୦୭ ।
ବିଦୁଷେ ଦୋଷାଦୋଷକୁ ମୋର କ୍ଷମିବ
ଭକ୍ତିରେ ହନୁମାନ ଚରିତ ଘେନିବ ଯେ ।୧୦୮ ।



# ତ୍ରୟୋବିଂଶ ଛାନ୍ଦ

(ଲଙ୍କା ଦହନ)

ରାଗ-ମାଳବ ଗୋଡ଼ାବାଣୀ

ବକ୍ରତୁଣ୍ଡ ପ୍ରଭୁ ହେ ମହାକାୟ । ତେଜବନ୍ତ କୋଟିଏ ସୂର୍ଯ୍ୟ ପ୍ରାୟ ।
କୃପାକର ଗଣେଶ ଗୌରୀ ସୁତ । କୃପାବଳେ ହନୁମାନ ଚରିତ ।୧ ।
ବର୍ଣ୍ଣନ ହେବ ଭକ୍ତଜନ ପାଇଁ । ନାସ୍ତିକେ ଏ ତତ୍ତ୍ୱ ବୁଝିବେ କାହିଁ ।
କେଶରୀ ନନ୍ଦନର ପରାକ୍ରମ । ଶୁଣିଲେ ଖଣ୍ଡଇ ଯେତେ ବିଭ୍ରମ ।୨ ।
ଲଙ୍କାଧିପତି ରାବଣ ଆଦେଶ । ପ୍ରାପ୍ତମାତ୍ରେ ଯେତେ ମୂଢ଼ ରାକ୍ଷସ ।
ଘୃତ ତୈଳରେ ବସ୍ତ୍ରାଦି ବୁଡ଼ାଇ । ଗୁଡ଼ାଇଲେ କପି ଲାଙ୍ଗୁଳେ ନେଇ ।୩ ।
ସତ୍ତ୍ୱଗୁଣଶାଳୀ କପି କୁଞ୍ଜର । ମହା ପରାକ୍ରମୀ ବାତ କୁମର ।
ପ୍ରଭୁଙ୍କର କାର୍ଯ୍ୟ ସିଦ୍ଧି ନିମନ୍ତେ । ଅତ୍ୟନ୍ତ କୌତୁକ ବହିଣ ଚିତ୍ତେ ।୪ ।
ଲାଙ୍ଗୁଳକୁ ଧିରେ ଦେଲେ ବଢ଼ାଇ । ରାକ୍ଷସେ ଅଧିକ ବସ୍ତ୍ର ମଗାଇ ।
ପୁନଃ ଗୁଡ଼ାନ୍ତି ନେଇ ଲାଙ୍ଗୁଳରେ । ଲାଙ୍ଗୁଳ ପୁନଃ ବଢ଼ିଯାଏ ଧିରେ ।୫ ।
ରକ୍ଷେ ଆଣିଲେ ବସ୍ତ୍ର ଯେତେଯେତେ । ଲାଙ୍ଗୁଳ ବଢ଼ି ବଡ଼ ହେଲା ସେତେ ।
ଲଙ୍କା ନଗ୍ରରେ ବସ୍ତ୍ର ଘୃତ ତୈଳ । ଅଭାବ ହେବାରୁ ରକ୍ଷେ ବିକଳ ।୬ ।
ବିକଳ ଦେଖି ଦୟାବହି ମନ । ଜାଣି ଶୁଣି ସ୍ୱୀକାରିଲେ ବନ୍ଧନ ।
ଲାଙ୍ଗୁଳ ବୃଦ୍ଧିକୁ ରୋକି ମାରୁତି । ହରିଲେ ରାକ୍ଷସ ମାନଙ୍କ ଭିତି ।୭ ।
ତଥାପି ଯହୁଁ ଯାହା ତୈଳ ଘୃତ । ବସ୍ତ୍ର ମିଳିଲା ଆଣିଲେ ସମସ୍ତ ।
ଲାଞ୍ଜରେ ରକ୍ଷେ ସବୁ ଦେଲେ ବାନ୍ଧି । ରଜ୍ଜୁରେ ପୁଣି ପୂର୍ଣ୍ଣ ରୂପେ ରୁନ୍ଧି ।୮ ।
ବସ୍ତ୍ରକୁ ଘୃତ ତୈଳରେ ଭିଜେଇ । ବାକି ତୈଳ ତା ପରେ ଢାଳି ଦେଇ ।
ଦୃଢ଼ ରଜ୍ଜୁରେ ବାନ୍ଧି ହନୁମାନ । ଧରି ନିଶାଚରେ ହେଲେ ପ୍ରସନ୍ନ ।୯ ।
ଶଙ୍ଖ ଭେରୀ ତୁରୀ ବାଜା ବଜାଇ । ହନୁମାନ ଅପରାଧକୁ ଗାଇ ।
ଗଳି ଗଳି ସାହି ସାହିରେ ନେଇ । ବୁଲାନ୍ତି ଗାଳି ପରେ ଗାଳି ଦେଇ ।୧୦ ।
ରାକ୍ଷସେ ରାକ୍ଷସ ଆତ୍ମଜମାନେ । ତାଳି ବଜାଇ ପଛେ ହୃଷ୍ଟମନେ ।
ନାନା ପ୍ରକାରେ କରି ହରକତ । ଚାଲନ୍ତି ବୀର ଠାଣି କରିବ୍ୟକ୍ତ ।୧୧ ।
ମୁଥ କେ ମାରେ କେ କେଶ ଟାଣେ । ପଥର ଗୋଡ଼ି ଫିଙ୍ଗି ଘୃଣା ମନେ ।
ସବୁ ସହି ବୁଦ୍ଧିମାନ ମାରୁତି । ଧୈର୍ଯ୍ୟଧରି ଚାଲନ୍ତି ପ୍ରଭୁ ଚିନ୍ତି ।୧୨ ।
ନଗର ଦୁର୍ଗ ନିର୍ମାଣ ପ୍ରବିଧି । ବୁଲି ବୁଲି ଦେଖିଲେ ଗୁଣନିଧି ।
ରାତ୍ରୀରେ ଯାହା ସେ ଦେଖି ନଥିଲେ । ବିସ୍ତାରିତେ ସୂର୍ଯ୍ୟାଲୋକେ ଦେଖିଲେ ।୧୩ ।
ଅଭିନବ ଚଉତରା ବିମାନ । ଗୃହପନ୍ତି ଘେରା ସଡ଼କମାନ ।
ଗଡ଼ ଦ୍ୱାର ଗୃହର ମଧଭାଗ । ଛକ ପ୍ରଖ୍ୟାତ ରକ୍ଷ ଗୃହବର୍ଗ ।୧୪ ।

ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଥିଲା ଯେତେ । ଧ୍ୟାନ ପୂର୍ବକ ଦେଖିଲେ ସଂଯତେ ।
ଘୁରାଇ ସଂପୂର୍ଣ୍ଣ ଲଙ୍କା ନଗରେ । ନେଲେ ହନୁମାନେ ମୁଖ୍ୟ ଛକରେ ।୧୫ ।
ଘେରି ଚତୁଃପାର୍ଶ୍ୱରେ ତାଙ୍କର । ହର୍ଷୋଲ୍ଲାସରେ କରିଲେ ଚିତ୍କାର ।
ଲାଙ୍ଗୁଳରେ ଅଗ୍ନି କରି ସଂଯୋଗ । ନାଚିଲେ ଅସୁରେ ଦୋଳାଇ ଅଙ୍ଗ ।୧୬ ।
ବଳବୁଦ୍ଧି ନିଧାନ ହନୁମାନ । ଜାଣି ଉଦ୍ଦେଶ୍ୟ ହୋଇବା ପୂରଣ ।
ଶରୀରକୁ ତତ୍କ୍ଷଣେ ଲଘୁ କରି । ରକ୍ଷ ବନ୍ଧନୁ ଆସିଲେ ବାହାରି ।୧୭ ।
ପୁଣି ନିଜ ବପୁକୁ ବିସ୍ତାରିଣ । ପୁଚ୍ଛରେ ପିଟିଲେ ରାକ୍ଷସଗଣ ।
ବାଳକ ଯୁବା ବୃଦ୍ଧ ନରନାରୀ । ଭୟେ ଦୌଡ଼ିଲେ ନିଜ ପ୍ରାଣଧରି ।୧୮ ।
ଯିଏ ଯେହ୍ନେ ଯେଉଁ ସ୍ଥାନେ ଗଲେ । ଖୋଜି ଲାଞ୍ଜରେ ଗୁଡ଼ାଇ ଧରିଲେ ।
ଅଗ୍ନି ଧାସରେ ହୋଇ ଛଟପଟ । ଭୂମିରେ ପଡ଼ି ରକ୍ତେ ଲଟପଟ ।୧୯ ।
କରି ବଧିଲେ ସମସ୍ତ ଅସୁର । ଏକତ୍ର ଯେତେ ଥିଲେ ସେ ଠାବର ।
ଏକଇ ଗଗନଚୁମ୍ବୀ ଭବନ । ତହୁଁ ବସିଲେ ତା ପରେ ଡେଇଁଣ ।୨୦ ।
ଯେ କାଳେ ମାରୁତିଙ୍କର ପୁଚ୍ଛରେ । ଅଗ୍ନି ସଂଯୋଗିଲେ ଅସୁର ବୀରେ ।
ଏକ ଅସୁରୀ ସୀତା ପାଶେ ଯାଇ । ସବିସ୍ତାରରେ ଘଟଣା କହଇ ।୨୧ ।
ହେ ମାତେ ଯେଉଁ ବାନର ଏଠାରେ । ଭେଟିଥିଲା ଅଶୋକ ବାଟିକାରେ ।
ବାନ୍ଧିଣ ତାହାରେ ଅଗ୍ନି ପୁଚ୍ଛରେ । ସଂଯୋଗିଛନ୍ତି ସମସ୍ତ ଅସୁରେ ।୨୨ ।
ଅତ୍ୟନ୍ତ ତିରସ୍କାର କରିକରି । ଘୁରାଉ ଅଛନ୍ତି ଲଙ୍କା ନଗରୀ ।
ଶୁଣି ମାତା ହୃଦୟ ଗଲା ଥରି । ଦେଖିଲେ ନୟନ ଉଠାଇ କରି ।୨୩ ।
ଅନଳ ଜ୍ୱାଳା ବିଶାଳ ଲଙ୍କାରେ । ଘୋଟି ଯାଉଛି ପ୍ରବଳ ଗତିରେ ।
ଅତି ବ୍ୟାକୁଳେ ଡାକନ୍ତି ଅନଳେ । ଯଦି ସେବିଛି ପତିଙ୍କୁ ନିର୍ମଳେ ।୨୪ ।
ଯଦି ପତିବ୍ରତା ତପସ୍ୟା ବଳ । ଅଛି ମୋର ଅଗ୍ନି ହୁଅ ଶିତଳ ।
ପବନପୁତ୍ରକୁ ମୋର ତୁମର । ତେଜ ନ ଲାଗୁ ଏତେ କୃପା କର ।୨୫ ।
ପତିବ୍ରତା ମା ଜନକ ଜନନୀ । ଅଗ୍ନିଦେବ ଶୁଣି ତାଙ୍କ ଦୟିନୀ ।
ହନୁମାନ ପାଇଁ ହୋଇଲେ ଶାନ୍ତ । ଜାଣି ହନୁମନ୍ତ ହେଲେ ଚକିତ ।୨୬ ।
ମାତା ଦୟା ପରମ ପ୍ରଭୁ ତେଜ । ପିତାଙ୍କର ମୈତ୍ରୀ ପୁଣି ସ୍ୱ ଓଜ ।
ସାଥେ ଧରି ହନୁମାନ ଡେଇଁଲେ । ଅଟ୍ଟାଳିକାରେ ଅଗ୍ନି ସଂଯୋଗିଲେ ।୨୭ ।
ଭୟାନକ ରୂପ ଧରି ମାରୁତି । ଭୀଷଣ ଗର୍ଜନ ଥରାଏ ଛାତି ।
ଗର୍ଜନ ଶ୍ରବଣେ କିଛି ଅସୁରେ । ପ୍ରାଣ ଛାଡ଼ି ଚଳିଲେ ଯମପୁରେ ।୨୮ ।
ଗର୍ଭରୁ ଗର୍ଭବତୀ ଅସୁରୀର । ଅକାଳେ ଛୁଆ ହୋଇଲା ବାହାର ।
ବଡ଼ ବଡ଼ ବୀର ରକ୍ଷ ହୃଦୟ । କମ୍ପି ଉଠିଣ ଜନ୍ମାଇଲା ଭୟ ।୨୯ ।
ରାବଣ ଦୁର୍ଗେ ଅନଳ ଲଗାଇ । ବସିଲେ ପ୍ରହସ୍ତ ମହଲେ ଯାଇ ।

ତା ଘର ଜାଳି ବଜ୍ରଦ୍ରଂଷ୍ଟ୍ର ଘର । ଯାଇ ଜାଳିଲେ ଶୁକ ସାରଣର ।୩୦ ।
ମେଘନାଦ ଜମ୍ବୁମାଳୀ ସୁମାଳୀ । ସମସ୍ତ ଅସୁର ଭବନ ଜାଳି ।
ଅଦ୍ଭୁତ ବେଗରେ ମାରୁତି ଯାଇ । ଘର ଦ୍ୱାର ମହଲକୁ ଜାଳଇ ।୩୧ ।
ଯହିଁ ଦେଖନ୍ତି ନିଶାଚର ଗଣ । ସବୁ ସ୍ଥାନେ ମାରୁତି ବିଦ୍ୟମାନ ।
ଏହିପରି ଶୀଘ୍ରତାର ସହିତ । ସବୁ ଅସୁର ଘର ହନୁମନ୍ତ ।୩୨ ।
ଗୋଟି ଗୋଟି କରି ଗୃହ ଜାଳିଲେ । ସାରା ଲଙ୍କା କଲବଲ କରିଲେ ।
ହସ୍ୱକର୍ଣ୍ଣ ରୋମଶ ରଶ୍ମିକେତୁ । ଧ୍ୱଜଗ୍ରୀବ ନିକୁମ୍ଭ ସୂର୍ଯ୍ୟଶତ୍ରୁ ।୩୩ ।
ବିଦ୍ୟୁଜିହ୍ୱ ହସ୍ତୀମୁଖ କରାଳ । ନରାନ୍ତକ ଦ୍ରଂଷ୍ଟ୍ରକୁମ୍ଭ ବିଶାଳ ।
ମକରାକ୍ଷ ଯଜ୍ଞଶତ୍ରୁ ରାକ୍ଷସ । ବ୍ରହ୍ମଶତ୍ରୁ ଆଦି ନ ରହି ଶେଷ ।୩୪ ।
ସବୁରି ଗୃହ ଅଶ୍ୱ ଗଜଶାଳା । ଅସ୍ତ୍ରାଗାର ଜାଳିଲେ ସୈନ୍ୟଖଳା ।
ମାରୁତି କାର୍ଯ୍ୟ ଦେଖିଣ ମରୁତ । ଆସି ପହଞ୍ଚିଲେ ହୋଇ ଉଷତ ।୩୫ ।
ପୁତ୍ର କାର୍ଯ୍ୟେ ସହାୟତା କରଣେ । ବହିଲେ ତୀବ୍ରବେଗେ ହୃଷ୍ଟମନେ ।
ଅଗ୍ନି ଅଧିକ ବେଗେ ପ୍ରଜ୍ୱଳିତ । ରତ୍ନ ମହଲେ କଲା ପରାହତ ।୩୬ ।
ସୁବର୍ଣ୍ଣାଦି ବହେ ହୋଇ ତରଳ । ଲଙ୍କାବାସୀ କାନ୍ଦି ହୁଅନ୍ତି ବିକଳ ।
ସର୍ବେ ତ୍ରାହି ତ୍ରାହି ଡାକ ପକାଇ । ଦଉଡ଼ନ୍ତି ନିଜ ଜୀବନ ନେଇ ।୩୭ ।
ଲକ୍ଷ ଲକ୍ଷ ଅସୁରେ ପୋଡ଼ି ମଲେ । ବୁଦ୍ଧି ନ ଆସେ କା' ମନକୁ ଭଲେ ।
ଅନ୍ନ ବସ୍ତ୍ରାଦି ପୁଣି ଆଭୂଷଣ । ଗଜ ଅଶ୍ୱ ଖଚର ରଥମାନ ।୩୮ ।
ଅଗ୍ନିରେ ଜଳଇ ଦେଖନ୍ତି ନେତ୍ରେ । ପ୍ରାଣ ରକ୍ଷାଚିନ୍ତା ଚିନ୍ତିଣ ଚିତ୍ତେ ।
ରୋଦନ କରି ସୁରକ୍ଷିତ ସ୍ଥାନେ । ଦୌଡ଼ି ଯାନ୍ତି ଛାଡ଼ି ପୁତ୍ର ମନ୍ତାନେ ।୩୯ ।
ଅନାଥ ଅସହାୟ ଲଙ୍କାପୁର । ଅଗ୍ନି ଶିଖାରେ ଧ୍ୱସ୍ତ ଥରହର ।
ଶୁଭଇ ପଶୁ ସ୍ତ୍ରୀ ଶିଶୁ ଚିତ୍କାର । କିଂକର୍ତ୍ତବ୍ୟବିମୁଢ଼ ଲଙ୍କେଶ୍ୱର ।୪୦ ।
ଅବଶ ମନ ନିରୁପାୟ ହୋଇ । ଜଡ଼ବତ୍ ଦେଖେ ନୟନ ଫେଇ ।
ଯେଉଁ ସ୍ଥାନେ ଅଗ୍ନି ପଡ଼ନ୍ତି ଶାନ୍ତ । ତେଜନ୍ତି ତହିଁ ହନୁମନ୍ତ ।୪୧ ।
ଦୁର୍ଲଭ ଅଲୌକିକ ସ୍ୱ ଭବନ । ଜଳିବା ଦେଖି ବିଶ୍ରବା ନନ୍ଦନ ।
ହୃଦୟ କମ୍ପଇ ଥରଇ ମନ । ଭାବ ଛପେଇ କରିଲା ବୟାନ ।୪୨ ।
ଶିଘ୍ର ଧରି ଏ ବାନରକୁ ଆଣି । ଟିକି ଟିକି କରିଦିଅ ହୋ ହାଣି ।
ସ୍ୱାମୀ ଆଦେଶ ସର୍ବେ କରି ପ୍ରାପ୍ତ । ମେଘନାଦାଦି ହୋଇଣ ଏକତ୍ର ।୪୩ ।
ଧରିବା ପାଇଁ ସମୀରଣ ସୁତ । ବାହାରିଲେ ଅସ୍ତ୍ରେ ହୋଇ ସଜ୍ଜିତ ।
ଦେଖିଲେ ଆଚମ୍ବିତକାରୀ ଦୃଶ୍ୟ । ସବୁ ଅଟ୍ଟାଳିକାରେ ବାୟୁ ଶିଶ ।୪୪ ।
ଭୟାନକ ରୂପ ମାରୁତି ଧରି । ଲମ୍ଫ ଦେଉଛି ଅଟହାସ୍ୟ କରି ।
ବଜ୍ରତୁଲ୍ୟ ଜ୍ୱଳନ୍ତ ପୁଚ୍ଛ ତା'ର । ଲମ୍ବାଇ ଧରିଲା ବାୟୁ କୁମର । ୪୫ ।

ବଧିଲା କିଛି କେତେକ ଜାଳିଲା । ଥୋକେଙ୍କୁ ନେଇ ଭୂମିରେ ପିଟିଲା ।
ଥୋକେ ରାକ୍ଷସ ଜୀବନ ବଞ୍ଚାଇ । ରାବଣ ସମ୍ମୁଖେ କହିଲେ ଯାଇ ।୪୬ ।
ବିବଶ ହୋଇ ଲୋକପାଳ ଯମେ । ପଠାଇଲା ଲଙ୍କାଧିପତି କ୍ରମେ ।
ଲୋକପାଳଙ୍କୁ ଲାଙ୍ଗୁଳେ ପିଟିଣ । ପେଷିଲେ ରାବଣ ସନ୍ନିଧା ।୪୭ ।
ଯମକୁ ରଖିଲେ ମୁଖ ମଧ୍ୟରେ । ହାହାକାର ପଡ଼ିଗଲା ସୃଷ୍ଟିରେ ।
ବ୍ରହ୍ମାଦି ଦେବେ ଏକତ୍ରିତ ହୋଇ । ପ୍ରାର୍ଥନା କରିଲେ ମାରୁତିଙ୍କୁ ଯାଇ । ୪୮ ।
କରୁଣା ନିଧାନ କୃପା କରିଣ । ଯମଙ୍କୁ ମୁଖୁ କଲେ ନିସ୍ତାମଣ ।
ଯମ ଗଲା ପରେ ଜୀବନ ନେଇ । ରାବଣ ପେଶିଲା ମେଘଙ୍କୁ ରାଇ ।୪୯ ।
ବରଗି କୁହଇ ଜଳଦେ ଯାଅ । ବରଷି ଅଗ୍ନିଙ୍କୁ ଶାନ୍ତ କରାଅ ।
ଘୋର ଗର୍ଜନ କରିଣ ବାରିଦେ । ଘନ ଘୋର ବର୍ଷା କରିଲେ ହାଦେ ।୫୦ ।
ବର୍ଷାଜଳ ପଡ଼ି ଅଗ୍ନି ମଧ୍ୟରେ । ଜଳିଲେ ଯେହ୍ନେ ଘୃତ ଯଜ୍ଞାଗ୍ନିରେ ।
ଅଗ୍ନି ଜଳିଲା ଅଧିକୁ ଅଧିକ । ଜଳଦେ ତତ୍‌କ୍ଷଣେ ହୋଇଲେ ଶୁଷ୍କ ।୫୧ ।
କେସରୀ ନନ୍ଦନେ ପ୍ରଣାମ କଲେ । ସ୍ୱସ୍ଥାନରେ ଗ୍ଲାନିରେ ବାହୁଡ଼ିଲେ ।
ସ୍ୱର୍ଣ୍ଣ ଲଙ୍କା ଜଳଇ ଧାଇଁ ଧାଇଁ । ରକ୍ଷା କରିବାକୁ କେହି ତ ନାହିଁ ।୫୨ ।
ମନ୍ଦୋଦରୀ ଆଦି ଯେତେକ ରାଣୀ । ସର୍ବେ ମିଳି କଲେ ଗ୍ଲାନି ବର୍ଷେଣି ।
ଚୋର ମୁହାଁ ଦଶମୁହାଁ ରାବଣେ । ବୋଲୁ ଥିଲୁ ବଚନ ନିଏ ମନେ ।୫୩ ।
ସତୀ ସୀତା ମାତାଙ୍କୁ ତୁ ସତାନା । ପତି ପାଶେ ପେଶ ନ କରିଣ ମନା ।
ଶ୍ରୀରାମ ସାଥେ ଶତ୍ରୁତା ନ କର । ନ ଶୁଣିଣ ବହିଲା ଅହଂକାର ।୫୪ ।
ପୌରୁଷତ୍ୱ ବଳବୀର୍ଯ୍ୟ ହରାଇ । ବସିଛି କୋଣରେ ମୁହଁ ଲୁଚାଇ ।
ଲଙ୍କା ନାରୀଏ କଲେ ତିରସ୍କାର । ବାଳ ବୃଦ୍ଧେ ଗାଳି ଦେଲେ ଅପାର ।୫୫ ।
ଧନରତ୍ନ ଦଗ୍ଧ ହୋଇବା ଦେଖି । କାନ୍ଦନ୍ତି ରାକ୍ଷସେ ହୋଇଣ ଦୁଃଖି ।
ଲଙ୍କାପୋଡ଼ି ମାରୁତି ରାମେ ସ୍ମରି । ରାବଣ ମନେ ଦେଲେ ଭୟ ଭରି ।୫୬ ।
ଅଦ୍ଭୁତ ଅପ୍ରତିମ କାର୍ଯ୍ୟ ଦେଖି । ଦେବତା ସକଳେ ହୋଇଲେ ସୁଖି ।
ଦେବେ ପବନପୁତ୍ରଙ୍କର ସ୍ତୁତି । ଆରମ୍ଭିଲେ ଆନନ୍ଦ ମନେ ଅତି ।୫୭ ।
ନମସ୍ତେ କପୀଶ ରୁଦ୍ର ସ୍ୱରୂପୀ । ନମସ୍ତେ ବାନର ବିରାଟ ରୂପୀ ।
ନମସ୍ତେ ଅଞ୍ଜନାପ୍ରିୟ ନନ୍ଦନ । ନମସ୍ତେ ଲଙ୍କା ଧ୍ୱଂସୀ ହନୁମାନ ।୫୮ ।
ନମସ୍ତେ ସୁଗ୍ରୀବ ପ୍ରିୟ ସଚିବ । ନମସ୍ତେ ମାରୁତି ଭକ୍ତବାନ୍ଧବ ।
ନମସ୍ତେ କେସରୀ ପ୍ରୀତି ଦାୟକ । ନମସ୍ତେ ସର୍ବ ସଙ୍କଟ ମୋଚକ ।୫୯ ।
ନମସ୍ତେ କୌଶଲ୍ୟା ସୁତ ଭକତ । ନମସ୍ତେ ରଘୁବଂଶନାଥ ଦୂତ ।
ଅତୁଳିତ ବଳଶାଳୀ ମାରୁତି । ଦେଖି ସୁବର୍ଣ୍ଣ ଲଙ୍କାର ଏ ଗତି ।୬୦ ।
ମନରେ ଚିନ୍ତିଲେ ବିଭୀଷଣର । ଗୃହଛାଡ଼ି ପୋଡ଼ିଛି ସବୁ ଘର ।

ମାତା ସୀତା ଥିଲେ ଅଶୋକ ବନେ । ତାଙ୍କ କଥା ଚିନ୍ତା କରିନି ମନେ ।୬୧ ।
ଯଦି ଅଘଟଣ ଥିବ ଘଟିଣ । ମାତା ଚିନ୍ତା ତା'ର ଘାରିଲା ମନ ।
ଯଥାଶୀଘ୍ର କୁଦି ଗଲା ସାଗରେ । ଲାଙ୍ଗୁଳ ଅଗ୍ନି ଲିଭାଇ ଜଳରେ ।୬୨ ।
ତୀବ୍ରବେଗେ ମାତା ଦର୍ଶନ ପାଇଁ । ହନୁମାନ ଯେବେ ବାହରଇ ।
ଶୁଣିଲେ ଚାରଣ ଏକ ଗାଉଛି । ଗାଇ ଗାଇ ତା' ଆନନ୍ଦ ନେଉଛି ।୬୩ ।
ପବନପୁତ୍ର ବୀର ହନୁମାନ । ପ୍ରବେଶ କରିଣ ଲଙ୍କା ନଗ୍ରେଣ ।
ଅଗ୍ନି ଲଗାଇ ଦୁଃସାହସିକ କର୍ମ । କରିଛନ୍ତି ପାଇ ଅନେକ ଶ୍ରମ ।୬୪ ।
ଘରଶୂନ୍ୟ ରାକ୍ଷସ ପୁରଜନେ । କମ୍ପାଉ ଅଛନ୍ତି ଲଙ୍କା ରୋଦନେ ।
ଘରଦ୍ୱାର ଅଟ୍ଟାଳିକା ଭବନ । ସବୁ ଜଳି ପାଲଟିଛି ଶ୍ମଶାନ ।୬୫ ।
ବଡ଼ ଆଚମ୍ବିତ  କଥା ଯେ ଏହି । ଅଶୋକ ବାଟିକା ଯାଇଛି ରହି ।
ଆଞ୍ଚ ଆସିନି ଲବେ ସୀତାମାତେ । ଶୁଣି ହନୁ ଆନନ୍ଦ ହେଲା ଚିତ୍ତେ ।୬୬ ।
ବାତ ନନ୍ଦନ ପ୍ରଭୁ ହନୁମାନ । କୃପା ବରଷୁ ଥାନ୍ତୁ ଅନୁକ୍ଷଣ ।
ଲଙ୍କା ଦହନର ଏହି ଚରିତ । ବର୍ଣ୍ଣେ ସୁରେଶ ସ୍ମରି କପି ଚିତ୍ତ ।୬୭ ।



# ଚତୁର୍ବିଂଶ ଛାନ୍ଦ

ମାତା ସୀତାଙ୍କ ଠାରୁ ବିଦାୟ

ରାଗ-ଦକ୍ଷିଣ କାମୋଦୀ(କୁମ୍ଭୋକାମୋଦୀ)

ଶୁଣ ହେ ସୁଜନ ଡେରିଣ ଶ୍ରବଣ ଅପୂର୍ବ ଚରିତ
ଭକ୍ତି ରସେ ପୂର୍ଣ୍ଣ ଭକତ କଥା ହନୁମାନ ଚରିତ ।
ମାତା ସୀତା ସ୍ମୃତି ଚିନ୍ତି ଚିତ୍ତେ କପି ସାଗରେ ସ୍ନାହାନ
ଜୟ ସୀତା ରାମ ଜୟ ଧ୍ୱନି କରି ହୋଇ ବେଗବାନ ।୧ ।
ଅଞ୍ଜନା ନନ୍ଦନ କୁଶଳତା ଚିନ୍ତି ଚିନ୍ତାମଣି ଜନି* *ମାତା
ଚିନ୍ତିତ ହୃଦୟେ ଉଦାସ ମନରେ ଥିଲେ ଗୁଣଗୁଣି ।
ପବନ ନନ୍ଦନ ଜନନୀ ଜନନୀ ଡାକି ଉଚ୍ଚ ସ୍ୱରେ
ଦଉଡ଼ି ଯାଇଣ ରଖିଲେ ଶ୍ରଦ୍ଧାରେ ଶିର ଚରଣରେ ।୨ ।
ଜନନୀ ହୃଦୟେ ଜନ୍ମିଣ ବାତ୍ସଲ୍ୟ ମମତା ପ୍ରଖର
ନେତ୍ରୁ ଅବାରିତ ମମତା ଉଦକ ବହେ ଝରଝର,
ଅତ୍ୟନ୍ତ ସ୍ନେହରେ ହନୁମାନ ଶିରେ ଅଭୟଦ ହସ୍ତ
କରି ସଞ୍ଚାଳନ ଧନ୍ୟ[୧] କାର୍ଯ୍ୟ ଧନ୍ୟ[୨] କଲୁ ଧନ୍ୟ[୩] ପୁତ୍ର ।୩ । ୧-ବିଷ୍ଣୁ, ୨-ସଫଳ, ୩-ସାବାସ
ଅତିଶୟ ସ୍ନେହେ ପୁଛିଲେ ଜାନକୀ କୁଶଳ ତ ସର୍ବ
କୌଣସି ଅଙ୍ଗରେ ଅଗ୍ନିର ପ୍ରକୋପ ଲାଗିଛି କି ଲବ,
ଗୋଗୋଷ୍ଠରୁ ଫେରି ବତ୍ସାଙ୍କୁ ଯେପରି ଗୋମାତା ପ୍ରଦର୍ଶେ
ହନୁମାନେ ପାଇ ଜାନକୀ ଅବସ୍ଥା ଦିଶଇ ଆଦୃଶ୍ୟେ ।୪ ।
କେଶରୀ ନନ୍ଦନ ମାତାଙ୍କ ସହଜ ସ୍ନେହ ପ୍ରାପ୍ତ କରି
ମନ ହୃଦୟରେ ହେଲେ ପ୍ରଫୁଲ୍ଲିତ ଚାନ୍ଦ ହସ୍ତେ ଧରି,
ବୋଲଇ ଜନନୀ ପରମ ପାବନୀ ଅଭୟଦ କର
ରହିଅଛି ଯେଣୁ ଛତ୍ର ପ୍ରାୟ ଶତ୍ରୁ କି କରିବ ମୋର ।୫ ।
ଦୟାରେ ତୁମାର ଏଥେ ଆସିବାର ଉଦ୍ଦେଶ୍ୟ ପୂରଣ
ଭାଗ୍ୟବଳୁ ମାତେ ତୁମ୍ଭର ଚରଣ କରିଲି ଦର୍ଶନ,
ଲଙ୍କାର ରହସ୍ୟ ରାକ୍ଷସଙ୍କ ବଳ ପରିଚିତ ହେଲି
ପ୍ରତ୍ୟେକ ସ୍ଥଳ ରାସ୍ତାଘାଟ ସହିତ ବିସ୍ତାରେ ଜାଣିଲି ।୬ ।
କୃପାକରି ମୋତେ ଆଜ୍ଞା ଦିଅ ମାତେ ସକୁଶଳେ ଯାଇ
ପ୍ରଭୁ ଚରଣରେ ଖୁସି ପରସିବି ତୁମ୍ଭ ବାର୍ତ୍ତା ଦେଇ,
ଯେହ୍ନେ ପ୍ରଭୁ ରାମ କରୁଣା ନିଧାନ ଲଙ୍କାରେ ପ୍ରବେଶି
ଉଦ୍ଧାର କରିଣ ନେବେ ମା' ତୁମ୍ଭଙ୍କୁ ନିଶାଚରେ ନାଶି ।୭ ।

ଶ୍ରାବଣର ଧାରା ବୁହାଇ ନୟନୁ ହୋଇ ବ୍ୟଥାତୁରା
ବୋଇଲେ ହେ ପୁତ୍ର ତୁମ୍ଭ ଆଗମନ ଦିଅଇ ସାହାରା,
ତୁମ୍ଭେ ଗଲା ପରେ ଭରସା ମୋ ଯିବ ଜୀବନ ଦୁଃସହ
ଦିବା ରାତ୍ରୀ ଦୁଃଖେ ହୋଇଯିବ ପୂର୍ଣ୍ଣ ଜୀଇଁବା ଅସହ୍ୟ ।୮ ।
ଥକା ଶରୀରକୁ ଥାକିବା ନିମନ୍ତେ ଗୁପ୍ତ ସ୍ଥାନ ଦେଖି
ନେଇଣ ବିଶ୍ରାମ ବିନୋଦିଣ ଶ୍ରମ ଫଳ ମୂଳ ଭକ୍ଷି,
ଦିନଟିଏ ରହି ଯାଅ ଯଦି ଚାହଁ ହୋଇବ ଉତ୍ତମ
ତତ୍ପଶ୍ଚାତେ ଯାଇ ଦୟିନୀ ମୋ କହି ଆଣିବ ଶ୍ରୀରାମ ।୯ ।
ଶ୍ରଦ୍ଧା ଭକତିରେ ହନୁମାନ ବୋଲେ ପ୍ରଭୁଙ୍କର କାର୍ଯ୍ୟ
ସମ୍ପୂର୍ଣ୍ଣ ନ ହେବା ପରିଜନ୍ତେ ଶ୍ରମାପନୋଦନ ବର୍ଜ୍ୟ,
ତୁମର ଅମୋଘ ଆଶୀର୍ବାଦ ନେଇ ପବନ ବେଗରେ
ମହୋଦଧି ପାର କରିଯିବି ଖରେ ଭେଟିବି ବାନରେ ।୧୦ ।
କୋଟି କୋଟି ଭାଲୁ ବାନର ମୋହର ପ୍ରତିକ୍ଷାରେ ଛନ୍ତି
ମୋର ସଫଳତା ତୁମ୍ଭରି ବାରତା ହୃଦମଧ୍ୟେ ଚିନ୍ତି,
ପୁରୁଷ ଉତ୍ତମ ରଘୁପତି ରାମ ଆସିବେ ଏ ସ୍ଥାନେ
ହେବେ ଆନନ୍ଦିତ ଦୁହିଁଙ୍କୁ ସମସ୍ତେ ଦେଖି ସିଂହାସନେ ।୧୧ ।
ଭଗବତୀ ସୀତା ସ୍ନେହରେ ପୁଛିଲେ ପୁତ୍ର ହନୁମାନ
ସନ୍ଦେହ ଆଛନ୍ନ ହୋଇ ରହିଅଛି ତଥାପି ମୋ ମନ,
ଅହି ଯା'ର ଖାଦ୍ୟ ଅହିର ଯେ ଖାଦ୍ୟ ପୁଣି ତା' ସନ୍ତତି
ଜାଣେ ଏହି ତିନି ରଖନ୍ତି ସାଗରେ ଲଙ୍ଘିବା ଶକତି ।୧୨ ।
ଭୀଷଣ ବାନରେ ଭଲ୍ଲୁକ ସାଥିରେ ସୁଗ୍ରୀବ କିପରି
ବିଶାଳ ବାହିନୀ ସହିତ ସାଗର ହୋଇବେ ବା ପାରି,
ସାନୁଜ ସହିତ ପ୍ରଭୁ ରଘୁପତି ଲଙ୍ଘି ପାରାବାର
ଆସି ଲଙ୍କାପୁରେ କରିବେ କିପରି ଉଦ୍ଧାର ମୋହର ।୧୩ ।
ରାମଭକ୍ତ ହନୁମାନ ବିନୟରେ ଭାଷିଲେ ମାତାଙ୍କୁ
ବାନର ଭାଲୁଙ୍କ ଶକ୍ତି ମେତେ ମାତା ଲଙ୍ଘି ଜଳଧିକୁ,
ଆସିବେ ଏ ସ୍ଥାନେ ତୁମ ସନ୍ନିଧାନେ ପ୍ରଭୁକୃପା ବିନା
ତାଙ୍କ ଆଶିଷରେ ପଙ୍ଗୁ ଲଙ୍ଘିପାରେ ମହୋଦଧି ସିନା ।୧୪ ।
କ୍ଷୁଦ୍ର ସର୍ପଟିଏ ଖାଦକକୁ ତାର ଗିଳେ ଅବହେଳେ
ତାଙ୍କରି ଦୟାରେ ସୂର୍ଯ୍ୟର ଉଦୟ ହୁଅଇ ସକାଳେ,
ବୃକ୍ଷରେ କୁସୁମ ହସେ ପ୍ରତିଦିନ ଗାଅଇ କୋକିଳ

ପବନ ବହଇ ପାବକ ଦହଇ ପକ୍ୱ ହୁଏ ଫଳ ।୧୫ ।
ତାଙ୍କରି ନିର୍ଦ୍ଦେଶେ ଦିବା ନିଶି ହୁଏ ହୁଅଇ ପ୍ରଦୋଷ
ଗ୍ରହନକ୍ଷତ୍ରରେ ତାରା ଶଶି କରେ ଭରଇ ଆକାଶ,
ତାଙ୍କ ପ୍ରେରଣାରେ ବରଷା ବର୍ଷଇ ହୁଏ ମାସ ବର୍ଷ
ଋତୁ ପରେ ଋତୁ ହୁଏ ସମାଗମ ପୃଥ୍ୱୀ ହୁଏ ହର୍ଷ ।୧୬ ।
ଜାତି ଜାତି ପ୍ରଜାପତି ତାଙ୍କ ସୃଷ୍ଟି ଚୁମ୍ବନ୍ତି ସୁମନ
ଶୈବାଳିକା ଠାରୁ ମହାଦ୍ରୁମ ଯାଏଁ ତାଙ୍କରି ରଚନ,
ମୃଦୁ ସମୀରଣ ଝଡ଼ଝଞ୍ଜା ବାତ ସବୁ ତାଙ୍କ ଦାନ
ଦୁଃଖ ଆଉ ସୁଖ ହରଶ ବିଷାଦ ତାଙ୍କ ଅବଦାନ ।୧୭ ।
ତାଙ୍କରି ଇଚ୍ଛାରେ ଧୂଳି ରହେ ପଡ଼ି ଉଡ଼େ ମହାଶୈଳ
ତାଙ୍କରି କୃପାରେ ବଗା ହୁଏ ବାଗ୍ମୀ ଅଚଳେ ସଚଳ,
ଟିକି ଚଢ଼େଇଙ୍କ କିଚିରି ମିଚିରି ମେଘ ବଜ୍ରଧ୍ୱନି
ଟିକି ସୁମନଙ୍କ ଜାତି ଜାତି ବର୍ଣ୍ଣ ଟିକି ସାଧବାଣୀ* ।୧୮ । *ସାଧବବୋହୁ ପୋକ
ଟିକି ଝରଣାର କୁଳୁକୁଳୁ ନାଦ କପୋତ କ୍ରନ୍ଦନ
ଦିନାନ୍ଧ*ର ଭୟ ପ୍ରଦକାରୀ ଶବ୍ଦ ଶୂକର ଭାଷଣ *ପେଚା
ତାଙ୍କରି ଦୟାରେ ରାଜହଂସ ଚାଲେ ସୁଚାରୁ ଢଙ୍ଗରେ
ତୀରସମ ବେଗେ ଶଶାଦନ* ଉଡ଼େ ତାଙ୍କର କୃପାରେ ।୧୯ । *ଛଞ୍ଚାଣ
ମନ ବୁଦ୍ଧି ପରେ ତାହାଙ୍କର ସ୍ଥିତି ଦର୍ଶନେ ତାଙ୍କର
ମହୋଦଧି ସ୍ୱତଃ ମାର୍ଗଦେବ ସ୍ୱୟଂ ନୁଆଁଇଣ ଶିର,
ପଥ ପ୍ରଦାନରେ କଲେ ଅବହେଳା ସୁମିତ୍ରା ନନ୍ଦନ
କ୍ରୋଧର ଶିକାର ହୋଇବ ଦେଖିବ ତାଙ୍କ ଶରାସନ ।୨୦ ।
କୋଟି କୋଟି କପି ଗଣଙ୍କ ଗହଣେ ସୁଗ୍ରୀବ ରାଜନ
କରିଛନ୍ତି ପଣ ତୁମ ଉଦ୍ଧାରଣେ ତେଜିବେ ପରାଣ,
ଜ୍ଞାନ ଓ ବିଜ୍ଞାନ ତନ୍ତ୍ର ଯନ୍ତ୍ର ମନ୍ତ୍ର ଶିଳ୍ପ କଉଶଳ
ପାଶରେ ତାଙ୍କର ରହିଛି ସକଳ ଅଛି ଲୋକବଳ ।୨୧ ।
ଶୋଚନା ନ କର ଧୈର୍ଯ୍ୟ ଧରି ରୁହ ପ୍ରଭୁ ଶୀଘ୍ର ଆସି
ଉଦ୍ଧାର କରିବେ ସମ୍ମାନର ସହ ରକ୍ଷକୁଳ ନାଶି,
ଅସମ୍ଭବ ସବୁ ହୁଅଇ ସମ୍ଭବ ତାଙ୍କ ପାଦତଳେ
ଏ ବିଶ୍ୱ ବ୍ରହ୍ମାଣ୍ଡ ତାଙ୍କର ରଚନା ନିର୍ଦ୍ଦେଶରେ ଚଳେ ।୨୨ ।
ଅଞ୍ଜନାନନ୍ଦବର୍ଦ୍ଧନଙ୍କ ଉତ୍ତର ଶୁଣି କର୍ଣ୍ଣେ ମାତା
ଅବରୁଦ୍ଧ କଣ୍ଠେ ବୋଇଲେ ନନ୍ଦନ ଦେବୁ ହି ବାର୍ତ୍ତା,

ଦୟନୀୟ ସ୍ଥିତି ଦେଖିଗଲୁ ଯାହା କହିବୁ ସମସ୍ତ
ମୋ ପାଇଁ ପ୍ରାର୍ଥନା କରିଣ କହିବୁ ଆସିବେ ତୁରନ୍ତ ।୨୩ ।
ପ୍ରତି ପ୍ରଶ୍ୱାସ ମୋ ତାଙ୍କରି ପାଇଁ କି ବହୁଛି କହିବୁ
ପ୍ରତିକ୍ଷାରେ ତାଙ୍କ ପ୍ରାଣ ମୋ ଚାଲୁଛି ସଂଯତେ ବର୍ଣ୍ଣିବୁ,
ପ୍ରତିକ୍ଷଣ କେହ୍ନେ ବିତଇ ପ୍ରତୀକ୍ଷା କରିବା ବ୍ୟକ୍ତିର
ବିରହି ପ୍ରାଣୀଠୁ ଅଧିକ କେ ଅଛି ଅବା ଜାଣିବାର ।୨୪ ।
ରାବଣ ପ୍ରଦତ୍ତ ଅବଧି ମଧ୍ୟରେ ଆସି ବହଞ୍ଚିବେ
ନୋହିଲେ ମୋ ପ୍ରାଣ ପ୍ରାଣ ଛରଡ଼ିଥିବା ନୟନେ ଦେଖିବେ,
କହିବ ମୋ ପ୍ରିୟ ଦେବର ଲକ୍ଷଣେ ମୁହିଁ ତାଙ୍କ ଦୋଷୀ
ବଚନ ନମାନି କାଳର ଯନ୍ତାରେ ହୋଇଗଲି ପେଶି ।୨୫ ।
ସମ୍ଭବ ହୋଇଲେ ତ୍ରୁଟିକୁ ମୋହର ଦେବେ କ୍ଷମା କରି
କ୍ଷମାର ସାଗର ଅଗ୍ରଜେ ତାଙ୍କର କଲି ଏତେ ସରି,
ଆଶୀର୍ବାଦ ଦେବ ଭ୍ରାତା ସୌମିତ୍ରିଙ୍କୁ ସୁଗ୍ରୀବ ରାଜନେ
ଯୁବରାଜ ଅଙ୍ଗଦଙ୍କ ସହ ସର୍ବ କପି ଜାମ୍ବବାନେ ।୨୬ ।
କହିବ ସମସ୍ତ ବାନର ବୀରଙ୍କୁ ଅଛି ପ୍ରତୀକ୍ଷାରେ
ଦୁଃଖର ପ୍ରତ୍ୟେକ କ୍ଷଣକୁ ଆତ୍ମସ୍ଥ କରି ତିତିକ୍ଷାରେ,
ଏତେ କହି ମାତା କମଳ ଲୋଚନା ଆବେଗରେ ଆସି
ହୃଦୟରେ କୋହ ନେତ୍ରେ ଭରି ଲୁହ ତାଙ୍କ ମୁଖ ଶଶି ।୨୭ ।
ମାତାଙ୍କ ବିବଶ ଅବସ୍ଥା ଦର୍ଶନେ ଧଇର୍ଯ୍ୟ ହରାଇ
ଶିଶୁ ପ୍ରାୟ ହନୁ ମାନ କାନ୍ଦି କାନ୍ଦି କୋହ ନିୟନ୍ତ୍ରଇ,
ନିଜକୁ ସମ୍ଭାଳି ବୋଲେ ମାତା ଧୈର୍ଯ୍ୟ ଅଳ୍ପ ଦିନ ଧର
ମୋ ପହଞ୍ଚ କ୍ଷଣି ତତ୍କାଳେ ଆସିବେ ପ୍ରଭୁ ଶାର୍ଙ୍ଗଧର ।୨୮ ।
ମାତେ ପୁତ୍ର ପ୍ରତି କରୁଣା ଏତିକି କ୍ଷମାଗୁଣେ କର
ପ୍ରଭୁ ରାମ ଯେହ୍ନେ ପେଶିଥିଲେ ମୁଦ୍ରିକା ଦେଇ ତାଙ୍କର,
ସେହିପରି କିଛି ଚିହ୍ନ ଦେଇ ମୋତେ ଦିଅନ୍ତୁ ବିଦାୟ
ଯାହା ଦେଖି ପ୍ରଭୁ ବିଶ୍ୱାସକୁ ନେଇ ହୋଇବେ ସଦୟ ।୨୯ ।
କେଶ ପାଶ ମଧ୍ଯୁ କାଢ଼ି ମଥାମଣି ହନୁମାନେ ଦେଇ
ବୋଇଲେ ଲକ୍ଷ୍ମଣ ସହ ଆର୍ଯ୍ୟପୁତ୍ରେ ଦେବ ୟାକୁ ନେଇ,
ଦର୍ଶନେ ଏହାର ବିଶ୍ୱାସ ତୁମ୍ଭର କରିବେ ନିଶ୍ଚୟ
ଅନ୍ୟ ଏକ କଥା କହୁଛି ମାରୁତି ଗୁପ୍ତ ଅତିଶୟ ।୩୦ ।
ପ୍ରଭୁଙ୍କ ପାଶରେ ନିବେଦନ କରି କହିବ ତାହାଙ୍କୁ

ଆମ୍ଭ ଦୁଇଜଣ ବିନା ଏ ସଂସାରେ ଅଜଣା ସଭିଙ୍କୁ,
ଚିତ୍ରକୂଟ ବନେ ଥିଲା ବେଳେ ଦିନେ ଏକାନ୍ତ କାଳରେ
ବସିଥିଲି ମୁହିଁ କୋଳେ ଶିର ରଖି ଶ୍ରୀରାମ ନିଦ୍ରାରେ ।୩୧ ।
ଇନ୍ଦ୍ରର ତନୟ କାକ ବେଶ ଧରି ମାଂସ ଲୋଭ ବଶେ
ପଦର ଅଙ୍ଗୁଳି ଲାଲ ଲାଲ ଦେଖି ଖୁମ୍ପେ ଭ୍ରମରେ ସେ,
ନିଦ୍ରାରୁ ଜାଗ୍ରତ ହୋଇ ରଘୁବୀର ରକତେ ଆରକ୍ତ
ଅଙ୍ଗୁଳି ଦର୍ଶନେ ପ୍ରଭୁ ଆର୍ତ୍ତତ୍ରାଣ ହୋଇଣ ଆରତ ।୩୨ ।
କେଉଁ ଦୁଷ୍ଟ ପ୍ରାଣୀ କଷ୍ଟ ଦେଲା ଆଣି ମୋର ପ୍ରାଣ ଧନେ
ଏକାଳେ ରକତ ସଂଲଗ୍ନିତ ଚଞ୍ଚୁ କାକକୁ ସାମନେ,
ଦେଖି ରଘୁରାଣ ଉଠାଇଣ ତୃଣ ପେଶିଲେ ତାପରେ
ଦିବ୍ୟାସ୍ତ୍ର ମନ୍ତ୍ରର ପ୍ରୟୋଗ କରିଣ ରୋଷ କୌତୁକରେ ।୩୩ ।
ଭୟରେ ଆତୁର ଇନ୍ଦ୍ରର କୁମର ଗଲା ଖରତର
ଯେଣେ ଗଲା ତେଣେ ପ୍ରଜ୍ୱଳିତ ଅସ୍ତ୍ର ପଛେ ଧାଏଁ ତା'ର,
ଇନ୍ଦ୍ର ବ୍ରହ୍ମା ଆଦି ଶରଣକୁ ଯାଇ ଆଶ୍ରୟ ନ ପାଇ
ଚଉଦ ଭୁବନ କରିଣ ଭ୍ରମଣ ବିବଶ ସେ ହୋଇ ।୩୪ ।
ଚରଣରେ ଆସି ପଡ଼ି ସେହି ଦୋଷୀ ମାଗିଲା ଶରଣ
କ୍ଷମାଶୀଳ ପ୍ରଭୁ ବୋଇଲେ ତାହାକୁ ଅମୋଘ ଏ ବାଣ,
ଯେଉଁ ନୟନରେ ଦେଖି ଲୋଭ କଲୁ ସେ ଚକ୍ଷୁରୁ ଏକ
ନେବ ନିଶ୍ଚେ ଏହି ଦିବ୍ୟାସ୍ତ୍ର ତୋହର ଦେଖିବେ ତ୍ରିଲୋକ ।୩୫ ।
ଭବିଷ୍ୟତ ବଂଶଧର ତୋ ଧାରଣ କରିବେ ଏହାକୁ
ଏ ସତ୍ୟ ବଚନ ସ୍ମରିବେ ସରବେ କାଳରୁ କାଳକୁ,
ଅପରିସୀମ ଅଚିନ୍ତ୍ୟଶକ୍ତିବାନ ପ୍ରଭୁଙ୍କୁ କହିବ
ନ ଆସିଲେ ଶୀଘ୍ର ଅନାଥିନୀ ପ୍ରାଣ ଆଉ କି ରହିବ ।୩୬ ।
ଆଜ୍ଞା କଲେ ବାଂଛା ଚରଣରେ ଶିର ରଖି ହନୁମାନ
ମାତା ଆଶୀର୍ବାଦ ଦେଲେ ଛାଡ଼ି ଚିନ୍ତା ବର୍ଷନ୍ତ ନୟନ,
ଯାଅ ତୁମ୍ଭେ ପୁତ୍ର ସର୍ବ କୁଶଳରେ ଫେରିବ ତ୍ୱରିତେ
ଶ୍ରୀରାମ ସୌମିତ୍ରି କପିଗଣ ନେଇ ଉଦ୍ଧାରିବେ ମୋତେ ।୩୭ ।
ସୃଷ୍ଟି ସ୍ଥିତି ସଂହାରକାରିଣୀ ମାତା ଆଶୀର୍ବାଦ ପାଇ
ମନ ହୃଦୟରେ ପ୍ରଭୁ ରାଘବେନ୍ଦ୍ରେ ସପ୍ରେମରେ ଧ୍ୟାୟୀ,
ଏକା ଲମ୍ଫେ ଡେଇଁ ଅରିଷ୍ଟ ପର୍ବତ ଶିଖରେ ଚଢ଼ିଲେ
କପିଶ୍ରେଷ୍ଠ ହନୁମାନ ଶରୀରକୁ ବିଶାଳ କରିଲେ ।୩୮ ।

ଦକ୍ଷିଣୁ ଉତ୍ତର ଦିଗେ ମହୋଦଧି ଲଙ୍ଘିବା ନିମନ୍ତେ
ପଦାଘାତେ ମହା ପର୍ବତ ପୃଥିରେ ପଶିଲା ତିଅନ୍ତେ,
ତିରିଶ ଯୋଜନ ଉଚ୍ଚତା ଚଉଡ଼ା ତା ଦଶ ଯୋଜନ
ଶିଖର ଉଭିଦ ଲତା ପ୍ରାଣୀ କଲେ ପାତାଳ ଗମନ ।୩୯ ।
ପହଁଚିଲେ ଯେବେ ପର୍ବତୁ ଗଗନେ ମାରୁତି ବଜ୍ରାଙ୍ଗ
ପ୍ରତାପେ କମ୍ପିଲା ଭୟାନକ ଗର୍ଜନରେ ଦଶଦିଗ,
ଆକାଶ ଫାଟିଲା ମେଘେ ଖଣ୍ଡ ଖଣ୍ଡ ହେଲେ ଏଣେ ତେଣେ
ସାଗର ଉଚ୍ଛୁଳେ ଗିରିଶୃଙ୍ଗ ଭାଙ୍ଗେ ଭୀତ ରକ୍ଷଗଣେ ।୪୦ ।
ସାରା ଲଙ୍କା ନଗ୍ରେ ହେଲା ଭୂମିକମ୍ପ ପୁରୁ ବୃଦ୍ଧ ବାଳ
ବାହାରେ ବାହାରି କି ଘଟିଲା ଚିନ୍ତି ହେଲେ ଦଳଦଳ,
ଗର୍ଭିଣୀ ରାକ୍ଷସୀ ମାନଙ୍କ ଅକାଳେ ହେଲା ଗର୍ଭପାତ
ସଭାସଦ ସହ ସ୍ୱୟଂ ଦଶଗ୍ରୀବ ହେଲା ଭୂମିଗତ ।୪୧ ।
ଶିରରୁ ମୁକୁଟ ତଳେ ପଡ଼ି ଗଡ଼େ କମ୍ପଇ ଭୟରେ
ଅପଶକୁନ ଏ ଆଲୋଚନା ହୁଏ ଅସୁର ମଧ୍ୟରେ,
କୋଳଛୁଆମାନେ ମାତାଙ୍କୁ ଜାବୁଡ଼ି ଧରିଣ କାନ୍ଦିଲେ
ସମଗ୍ର ଲଙ୍କାରେ ଚାରଣେ ରାବଣ ନିନ୍ଦଗାନ କଲେ ।୪୨ ।
ସମୁଦ୍ର ମଧ୍ୟରେ ମୈନାକକୁ ଛୁଇଁ ଗଲେ ତୀବ୍ର ବେଗେ
ମହାସାଗରର ଉତ୍ତର ତଟରେ ପହଁଚିଲେ ବେଗେ,
ଚତୁର୍ବିଂଶ ଛାନ୍ଦ ହୋଇଲା ସମାପ୍ତ ମାରୁତି ଚରିତ
ସୁରେଶ ବର୍ଣ୍ଣଇ ଆଶିଷେ ତାଙ୍କର ଭକ୍ତି ରସ ଗୀତ ।୪୩ ।



# ପଞ୍ଚବିଂଶ ଛାନ୍ଦ

(ଲଙ୍କାରୁ ହନୁମାନଙ୍କ ପ୍ରତ୍ୟାବର୍ତ୍ତନ, ବାନର ସେନା ସହ ଭେଟ ଓ ମଧୁବନରେ ପ୍ରବେଶ)

ରାଗ-କଲ୍ୟାଣ ଆହାରୀ

ଗଉରୀ ନନ୍ଦନ ଚରଣ ବନ୍ଦନ କରି ହୋଇଣ ତୋଷ ଚିତ୍ତ
ଶୁଣ ଭକ୍ତି ରସ ରସିକ ବିଦୁଷ ହନୁମାନ ଚରିତାମୃତ
ଶ୍ରବଣରେ ଯେ, ନାଶ ଯିବ କଲୁଶ ମାନ
କେଶରୀ ନନ୍ଦନ ସଙ୍କଟ ମୋଚନ ହରିବେ ଯେତେ କ୍ଲେଶମାନ ।୧ ।
ଲଙ୍କାକୁ ଦହନ କରି ହନୁମାନ ସାଗର ଉତ୍ତର ତଟରେ
ପହଞ୍ଚି ମହେନ୍ଦ୍ର ଗିରି ସଂଦର୍ଶନେ ସିଂହ ନାଦ କଲେ ହର୍ଷରେ
କପିଗଣ ଯେ, ମାରୁତି ସଫଳତା ଜାଣି
ଆନନ୍ଦ ଉଲ୍ଲାସେ ଘୋର ନାଦ କରି କମ୍ପମାନ କଲେ ଧରଣୀ ।୨ ।
ଉଚ୍ଚେ ଲମ୍ଫ ଦେଇ ବୃକ୍ଷୁ ବୃକ୍ଷେ ଡେ଼ଇଁ କିଳିକିଳା ରାବ କରିଲେ
ଅଞ୍ଜନା ସୁତର ଗତି ରୀତି ଧ୍ୱନି ଶୁଣିଣ ଆଶ୍ୱସ୍ତ ହୋଇଲେ
କପି ରକ୍ଷେ ଯେ, ଆତ୍ମପ୍ରତ୍ୟୟ କଲେ ପ୍ରାପ୍ତ
ନିସ୍ତ୍ରାଣ ତନୁରେ ପ୍ରାଣ ସଞ୍ଚରିଲା ହେଲେ ସରବେ ଆମୋଦିତ ।୩ ।
ସୀତା ଠାବ କରି ମାରୁତି ଆସିବା ଚିନ୍ତିଣ ଭଲ୍ଲୁକ ବାନର
ଦର୍ଶନ ପ୍ରୟାସେ ଚଢ଼ି ବୃକ୍ଷେ ବୃକ୍ଷେ ଚଢ଼ିଣ ପର୍ବତ ଶିଖର
କପି ରକ୍ଷ ଯେ, ହସ୍ତେ ଧରି ସୁଦୃଶ୍ୟ ବସ୍ତ୍ର
ସଂକେତ ରୂପରେ ଦୋଳାଇ ତାହାରେ କଲେ ପୁଲକେ ପ୍ରଦର୍ଶିତ ।୪ ।
କିଛି କ୍ଷଣ ମଧ୍ୟେ ଶ୍ରୀହର ଅଂଶଜ ମହେନ୍ଦ୍ର ପର୍ବତ ଶିଖରେ
ଅବତରଣ କରିଣ ହର୍ଷ ଧ୍ୱନି ବିରାଜିଲେ ହସ ମୁଖରେ
ହନୁମାନ ଯେ, ଆନନ୍ଦୋନ୍ମତ୍ତ କପିଶ୍ରେଷ୍ଠ
ପୁଣି ଡେଇଁ ଆସି ହେଲେ ଉପସ୍ଥିତ କପିଙ୍କ ପାଶେ ପୃଥ୍ୱୀପୃଷ୍ଠ ।୫ ।
ପାଶେ ପାଇ ହନୁମାନେ କପି ଭଲ୍ଲୁକେ ଯେ ଯହିଁ ଥିଲେ ଯେପରି
ଦଉଡ଼ି ଆସିଣ ଘେରି ଗଲେ ସର୍ବେ ଆନନ୍ଦିତ ମନ ସବୁରି
ହନୁମାନ ଯେ, ମାତା ସୀତା ଦୁର୍ଲ୍ଲଭ ପଦ
ଦର୍ଶନ ସ୍ପର୍ଶନ କରିଅଛି ମୁହିଁ କହିଲେ ହୋଇଣ ଆନନ୍ଦ ।୬ ।
ଶୁଣି ଜାମ୍ବବାନ ବକ୍ଷରେ ଲଗାଇ ଗାଢ଼େ କରିଣ ଆଲିଙ୍ଗନ
ବୋଲିଲେ ମାରୁତି ଧନ୍ୟ ତୁମେ ଧନ୍ୟ ରକ୍ଷା କଲ ଆମ୍ଭ ପରାଣ
ଶୁଭବାର୍ତ୍ତା ଯେ, ପ୍ରାପ୍ତ ମାତ୍ରେ ସର୍ବ ବାନରେ
ବିଭିନ୍ନ ଶବଦ ଉଚ୍ଚାରି ଆନନ୍ଦେ ଡେଇଁଲେ ବିଭିନ୍ନ ପ୍ରକାରେ ।୭ ।
ପୁଚ୍ଛକୁ ଉଠାଇ କେତେକ ବାନର ଆରମ୍ଭିଲେ ଦିବ୍ୟ ନର୍ତ୍ତନ
କେତେକ ବାନର ଲମ୍ବା ମୋଟା ପୁଛ ନାଚନ୍ତି ଧିରେ ଘୁରାଇଣ

କିଛି କପି ଯେ, ଚୁମ୍ବନ୍ତି ହନୁମାନ ପୁଛ
କିଛି ଫଳମୂଳ ଥୋଇ ସମ୍ମୁଖରେ ଠିଆ ହେଲେ ମରୁତି ପଛ ।୮ ।
କିଛି ହର୍ଷେ ଡେଇଁ ଶୂନ୍ୟରେ ଘୁରନ୍ତି ଦେଖାଇ କ୍ରୀଡ଼ାର ଚାତୁରୀ
କୌତୁକରେ କିଛି ବୀରବର ଚାଲି ଦେଖାନ୍ତି ଅଭିନୟ କରି
କିଛି କପି ଯେ, କେଶରୀ ନନ୍ଦନ ଚରଣେ
ସଭକ୍ତିରେ ଭାବେ ଆସିଣ ଧାଡ଼ିରେ ପ୍ରଣାମ କଲେ ଜଣେ ଜଣେ ।୯ ।
ହନୁମାନ ମନେ ସୁଖ ଭରିବାକୁ ବାନରେ ବିଭିନ୍ନ ପ୍ରକାରେ
ସେବା ଆରମ୍ଭିଲେ ପ୍ରତିଯୋଗୀ ରୂପେ ଶ୍ରେଷ୍ଠ ହେବା ଅଭିଳାଷରେ
କପି ଗଣ ଯେ, ଭୁଲିଣ ଦୀର୍ଘ ଅବସାଦ
ଉଲ୍ଲସିତ ପୁଲକିତ ହରଷିତ ମନେ ଜାତ ଶତ କୁମୁଦ ।୧୦ ।
ଖୁସି ଗଦଗଦ ଅଞ୍ଜନା କୁମର ବୟସ୍କଙ୍କ ଛୁଇଁ ଚରଣ
ସମବୟସ୍କଙ୍କୁ କରି କୋଳାଗ୍ରତ କନିଷ୍ଠ ଶିରକୁ ଛୁଇଣ
ହନୁମାନ ଯେ, ପିଠି ଥାପୁଡ଼ାଇ ପ୍ରଶଂସି
ଭଲ୍ଲୁକ ବାନର ସମସ୍ତଙ୍କ ସହ ମିଶିଗଲେ ନିଛନ୍ଦେ ହସି ।୧୧ ।
ସାଗର ଲଙ୍ଘନ ମାତାଙ୍କ ଦର୍ଶନ ବାର୍ତ୍ତାଳାପ ରାବଣ ସହ
ଲଙ୍କାର ଦହନ ଭେଟ ବିଭୀଷଣ ସମାଚାର ରଖି ଆଗ୍ରହ
ଯୁବରାଜ ଯେ, ଶୁଣିଣ ହୋଇଲେ ପ୍ରସନ୍ନ
ଅଙ୍ଗଦ ବୋଲନ୍ତି ବଳ ପରାକ୍ରମେ ନାହିଁ କେହି ମର୍ତ୍ତେ ସମାନ ।୧୨ ।
ବିଶାଳ ଜଳଧିକୁ କରି ଲଙ୍ଘନ ସାମର୍ଥ୍ୟ କରି ପ୍ରଦର୍ଶନ
ନିଶାଚରେ ବଧି ଲେଉଟି ଅବଧି ପୂର୍ବୁ ରଖିଲ ଆମ୍ଭ ପ୍ରାଣ
କପି ଈଶ ହେ, ତୁମ ତୁଲେ ସଫଳ ମନେ
ରାଘବେ ଭେଟିବା ସୁଖ ପରଶିବା ଅସମ୍ଭବ ତୁମ୍ଭ ବିହୁନେ ।୧୩ ।
ଦଶରଥ ସୁତ ଚରଣ ପଙ୍କଜେ ଭକତି ବାସ୍ତବେ ଅଦ୍ଭୁତ
ତୁମ୍ଭ ପରାକ୍ରମ ଧୈର୍ଯ୍ୟ ଓ ସାହସ ଆଶ୍ଚର୍ଯ୍ୟ ଜନକ ବୀରତ୍ୱ
ହନୁମାନ ହେ, ପରମ ସୌଭାଗ୍ୟ ତୁମର
ଚର୍ମ ନୟନରେ ଦର୍ଶନ କରିଲ ଶ୍ରେଷ୍ଠା ସତୀ ବୈଦେହୀଙ୍କର ।୧୪ ।
ତୁମ୍ଭର ବାରତା ତୁମ୍ଭ ଉପସ୍ଥିତି ଆନନ୍ଦର ହେତୁ ଆମ୍ଭର
ସୁଗ୍ରୀବଙ୍କ ଚିନ୍ତା ହର ମହୌଷଧି ହୃଦୟରେ ଶ୍ରୀରଘୁବୀର
ହନୁମାନ ହେ, ଲେପିବ ଶୀତଳ ଚନ୍ଦନ
ବିୟୋଗ ଜନିତ ଶୋକକୁ ନାଶିବ ହେବ ଏ ମଳୟ ପବନ ।୧୫ ।
ଜାମ୍ବବାନ ଯୁବରାଜ ଅଙ୍ଗଦଙ୍କ ସହିତ କରି ଆଲୋଚନା
ବାନର ସମୁଦାୟ ସଙ୍ଗେ ଜାନକୀ ସନ୍ଦେଶ ଧରି ମହାମନା
ହନୁମାନ ଯେ, ଚଳିଲେ ରାଘବେନ୍ଦ୍ର ପାଶ

ପଛେ ପଛେ ଭାଲୁ ବାନର ସମୂହ ସର୍ବାଗ୍ରରେ ରହି କପୀଶ ।୧୬।
ନାଚିକୁଦି ସର୍ବେ ସହର୍ଷେ ଚଳନ୍ତି ଋଷି ସିଦ୍ଧାଦି ଭୂତଗଣ
ଅପଲକ ନେତ୍ରେ ମାରୁତି ଦେଖନ୍ତେ ପ୍ରଶଂସନ୍ତି ହୋଇ ପ୍ରସନ୍ନ
କପିଗଣ ଯେ, ଦୃଶ୍ୟ ଦିଶଇ ଚମତ୍କାର
ମନର ଆନନ୍ଦ ଶରୀରରେ ଫୁଟେ ସ୍ୱଚ୍ଛ ଆଭ୍ୟନ୍ତର ବାହାର ।୧୭।
ଶୂନ୍ୟେ ଡେଇଁ ଡେଇଁ ହର୍ଷୋନ୍ମତ କପି ଭଲ୍ଲୁକ ମାନଙ୍କର ଦଳ
ନନ୍ଦନ କାନନ ତୁଲ୍ୟ ମନୋହର ମଧୁବନରେ ହେଲେ ମେଳ
ଦଧିମୁଖ ଯେ, ସୁରକ୍ଷା ଦାୟିତ୍ୱ ତାହାର,
କିଷ୍କିନ୍ଧ୍ୟାଧିପତି ସୁଗ୍ରୀବର ମାମୁଁ ରହେ ସଦା ଜାଗତିଆର ।୧୮।
ବାନର ଭଲ୍ଲୁକ ସମୁଦାୟ ଦେଖି ଆଗରେ ମନୋରମ ବନ
ମଧୁ ପିଇବାକୁ ଫଳ ଭକ୍ଷିବାକୁ ଲାଳାୟିତ ହୋଇଲେ ମନ
କପିଗଣେ ଯେ, ଆଜ୍ଞା ମାଗିଲେ ଅଙ୍ଗଦରେ,
ଜାମ୍ବବାନ ହନୁମାନ ମନ୍ତ୍ରଣାରେ ସ୍ୱୀକାରିଲେ ଖୁସି ହୃଦରେ ।୧୯।
ଯୁବରାଜଙ୍କର ଆଜ୍ଞା ପ୍ରାପ୍ତକରି ମଧୁବନ ମଧ୍ୟରେ ପଶି
ସୁଗନ୍ଧିତ ଫଳ ମୂଳ ଗ୍ରାସକଲେ ମଧୁପାନେ ହୋଇଲେ ଖୁସି
ପ୍ରସନ୍ନତା ଯେ, ଛୁଇଁଲା ଅମର ଭୁବନ,
ମଧୁମତ୍ତ ହୋଇ ମନ୍ତୋଷ ଚିତ୍ତରେ କରିଲେ ଉଦଣ୍ଡ ନର୍ତ୍ତନ ।୨୦।
ବାନର ଭଲ୍ଲୁକ ଗଣଙ୍କର ମାନସିକ ସ୍ଥିତି ଦିଶେ ବିଚିତ୍ର
ଆନନ୍ଦ ମଗ୍ନ ହୋଇ କେହି ନାଚଇ ହସି କିଏ ଗାଏ ସଂଗୀତ
ଉଠି ପଡ଼ି ଯେ, ତଳେ ହୁଅନ୍ତି ଗଡ଼ାଗଡ଼ି,
ଡ଼େଇଁ ଚକ୍ର ପ୍ରାୟ ଘୂରେ କେ ଶୂନ୍ୟରେ ଯାଏ ଖଣ୍ଡେ ଦୂର କେ ଉଡ଼ି ।୨୧।
ଦ୍ରୁତ ଗତିରେ କେ ଚାଲଇ ଅନ୍ୟ କେ କଚ୍ଛପ ସମ ଗତି କରେ
ସିଂହ ପରି ଚାଲି ପ୍ରଦର୍ଶେ କିଏ ସେ ଚାଲେ କେ ଭୂମିରେ ଛାତିରେ
ନବବଧୂ ଯେ, ପ୍ରାୟ ଓଢ଼ଣୀ ହସ୍ତେ ଟାଣି,
ମଦମତ୍ତ ପରି ପ୍ରଳାପ କେ କରେ ଦେଖାଇଣ ବିଭିନ୍ନ ଠାଣି ।୨୨।
ଫଳପୂର୍ଣ୍ଣ ଶାଖା ଟାଣି କେ ଭାଙ୍ଗଇ ଉପାଡ଼େ ବୃକ୍ଷ କେ ମୂଳରୁ
ଘୂର୍ଣ୍ଣାୟମାନ କରି ଫିଙ୍ଗଇ କେହି ଦେଖେ ଯାଉଛି କେତେ ଦୂରୁ
କପିଗଣ ଯେ, ରମଣୀୟ ସେ ମଧୁବନ,
କେତେ କ୍ଷଣ ମଧ୍ୟେ ତାଡ଼ନେ ତାଙ୍କର ହୋଇଗଲା ପୂର୍ଣ୍ଣ ଶ୍ରୀହୀନ ।୨୩।
ଦଧିମୁଖ ସହ ଅନ୍ୟାନ୍ୟ ରକ୍ଷକେ ତ୍ୱରିତରେ ମିଳି ତୁରିତେ
ବାରଣ କରନ୍ତେ ଓଲଟା ବାନରେ ଡରାଇଲେ ନିଶ୍ଚିନ୍ତ ଚିତ୍ତେ
କପି ଗଣେ ଯେ, ରକ୍ଷିଙ୍କୁ ପିଟିଲେ ଗୋଡ଼ାଇ,
ବିବଶ ହୋଇଣ ଦଧିମୁଖ ଜଣାଇଲା ସୁଗ୍ରୀବଙ୍କୁ ଯାଇ ।୨୪।

ସୁଗ୍ରୀବ ରାଜନେ ବୋଲେ ଦଧିମୁଖ ଶୁଣ ଆମ୍ଭର ନିବେଦନ
ଅଙ୍ଗଦ ମାରୁତି ନିର୍ଦ୍ଦେଶେ ନଷ୍ଟଭ୍ରଷ୍ଟ କଲେ କପି ମଧୁବନ
ବଳିୟାନ ଯେ, ହୋଇ ସେମାନଙ୍କ ବଳରେ,
ରକ୍ଷକ ମାନଙ୍କୁ ମାରାପିଟା କଲେ ଦେଖି ଡରନ୍ତି ଯେ ବାନରେ ।୨୫ ।
ଆନନ୍ଦେ ଗଦ୍ ଗଦ୍ ଶ୍ରବଣେ ସୁଗ୍ରୀବ ମାମୁଁ ଦଧିମୁଖେ ବୋଲଇ
ହନୁମାନ ନିଶ୍ଚେ ସୀତା ଠାବ କରି ଫେରିଛି ସୁସମ୍ବାଦ ନେଇ
ନ ହୋଇଲେ ହେ, ଏପରି ସାହସ ହେବ କି ?
ମଧୁବନ ଉପବନୁ ଫଳ ମଧୁ ଭକ୍ଷିବା ଶକ୍ତି କା' ଅଛି କି ? ।୨୬ ।
ଯୁବରାଜଙ୍କର ଏହି ମଧୁବନ ଦିଅନ୍ତେ କି ଆଜ୍ଞା ଏପରି ?
କ୍ଷମାଯୋଗ୍ୟ କପିଗଣଙ୍କର କାର୍ଯ୍ୟ ପ୍ରଭୁକାର୍ଯ୍ୟ ଅଛନ୍ତି କରି
କ୍ଷମାକର ହେ, କ୍ରୋଧକୁ କର ପରିହାର,
ମାତା ସୀତାଙ୍କର ସନ୍ଦେଶୁ ଅଧିକ କିଛି ନାହିଁ ଆଗେ ଆମର ।୨୭ ।
ସୁଗ୍ରୀବଙ୍କ ମୁଖୁ ସୀତା ଶବ୍ଦ ଶୁଣି ରଘୁପତି ହେଲେ ବିହ୍ୱଳ
ସୀତା ଶବ୍ଦ ଶୀତ[୧] କରିଲା ହୃଦୟ ଶୀତ[୨] ଦେହ ହେଲା ସଚଳ ୧-ଶୀତଳ, ୨-ଜଡ଼
ରଘୁପତି ଯେ, କି ହୋଇଲା ସୀତାଙ୍କୁ ମୋର,
ସୀତା କଥା ଏବେ କଲ ଆଲୋଚନା ଫେଡ଼ି କୁହ ଅମୃତ ଗୀର ।୨୮ ।
ବିନୟର ସହ ସୁଗ୍ରୀବ ଭାଷଇ ପ୍ରତ୍ୟୟ ହୁଏ ହନୁମାନ
କରି ଆସିଅଛି ସଂନ୍ଦେଶ ଦେବାକୁ ଜନକ ଦୁଲଣୀ ଦର୍ଶନ
ରଘୁରାଣ ହେ, ଧନ୍ୟ ହେଲା ଆମ୍ଭ ପରାଣ,
ନୋହିଲେ ବାନରେ ଫଳ ଭକ୍ଷିବାରେ ପଶନ୍ତେ କେହ୍ନେ ମଧୁବନ ।୨୯ ।
ଦଧିମୁଖେ ଚାହିଁ ସୁଗ୍ରୀବ ରାଜନ ବୋଇଲେ ମାମୁଁ ଶୀଘ୍ର ଯାଅ
ମାତାସୀତାଙ୍କର ସନ୍ଦେଶ ଶୁଣାଇବାକୁ ଉପସ୍ଥିତ କରାଅ
କପିଗଣେ ହେ, ଅଙ୍ଗଦ ହନୁମାନ ସହ,
ପ୍ରଭୁ ଚରଣରେ ପହଞ୍ଚି କୁହନ୍ତୁ ବିଳମ୍ବ ହେଉଛି ଅସହ୍ୟ ।୩୦ ।
ଦଧିମୁଖ ଶୀଘ୍ର ଅନ୍ତର ହୋଇଲା ସୁଗ୍ରୀବ ହୋଇଲେ ଆନନ୍ଦ
ଶ୍ରୀରାମ ଜାନକୀ ସ୍ମୃତିରେ ଡୁବିଲେ ସୌମିତ୍ରି ହସେ ମନ୍ଦ ମନ୍ଦ
ହୃଦୟରେ ଯେ, ସଭିଙ୍କ ଆନନ୍ଦ ଆନନ୍ଦ,
ସୁରେଶ ଆନନ୍ଦେ ପରମାନନ୍ଦଙ୍କ ଗାଥା ବର୍ଣ୍ଣେ ହୋଇ ଆନନ୍ଦ ।୩୧ ।



# ଷଡ଼୍‌ବିଂଶ ଛାନ୍ଦ

ରାଗ-ଖଣ୍ଡିତା

(ହନୁମାନଙ୍କ ଦ୍ୱାରା ମାତା ସୀତାଙ୍କ ସନ୍ଦେଶ ପ୍ରଭୁ ରାମଙ୍କୁ ପ୍ରଦାନ)

ନମୋ ବିଘ୍ନେଶ ଗଣେଶ ପାର୍ବତୀ ନନ୍ଦନ
ନମୁଛି କରୁଣା କର ମୂଷିକ ବାହନ
ବର୍ଣ୍ଣିନିବି ହେ ହନୁମାନ ଚରିତ ରଚିବି ହେ ।୧ ।
ନଗଜ ଆନନ ପ୍ରଭୁ ବିଘ୍ନ ବିନାଶନ
ନଗସୁତାସୁତ ମୋର ଘେନ ନିବେଦନ
ମୋଦେ ପଦ ହେ, କର୍ଣ୍ଣରେ ମୋ କୃପା କରି ବଦ ହେ ।୨ ।
ସୁଧିଜନ ଶୁଣ ଏଣେ ଏ ଅପୂର୍ବ ରସ
ଶ୍ରବଣେ ହରଣେ କ୍ଷମ ଏ ସର୍ବ କଳୁଷ
ରସସର ହେ, ଭକ୍ତି ରସେ ସନ୍ତରଣ କର ହେ ।୩ ।
ଦତ୍ତ ଆଦେଶ ରାଜାର ଜାମ୍ବବ ଅଙ୍ଗଦ
ଦଧିମୁଖ ମୁଖୁ ଶୁଣି ହୋଇଣ ଆନନ୍ଦ
କପି ଯାକ ହେ, ଖ'ମାର୍ଗେ ଚଳିଲେ ଛାଡ଼ି ଦକ ହେ ।୪ ।
ବିଶାଳ ବାନର ସେନା ସହ ହନୁମାନ
ପ୍ରଶବଣ ଗିରି ଶିରେ କରିଲେ ଗମନ
ରଘୁବୀର ହେ, ଥିଲେ ନିର୍ମାଣି ପର୍ଣ୍ଣ କୁଟୀର ହେ ।୫ ।
କୁଟୀର ବାହାରେ ସ୍ଫଟିକ ଶିଳା ଉପରେ
ବସିଥିଲେ ରାଘବେନ୍ଦ୍ର ସୌମିତ୍ରି ସାଥିରେ
କପିଈଶ ହେ, ଶୋଭା ପାଉଥିଲେ ତାଙ୍କ ପାଶ ହେ ।୬ ।
ବାନର ସମୂହ ସହ ଦୂରରୁ ଅଙ୍ଗଦ
ଆକାଶମର୍ଗେ ଆସିବା ଦେଖି ହୋଇ ମୋଦ
କପିରାଜ ଯେ, ରଘୁରାଣେ ବୋଲେ ଧର ଧୈର୍ଯ୍ୟ ହେ ।୭ ।
ନିଃସନ୍ଦେହ ପବନ ନନ୍ଦନ ମାତାସୀତା
ଠାବ କରିଣ ଆସିଛି ଧରି ତାଙ୍କ ପତା
ଉଲ୍ଲସିତ ହେ, ଦିଶୁଛନ୍ତି ବାନର ସମସ୍ତ ହେ ।୮ ।
ଅବଧି ସମାପ୍ତ ସତ୍ତ୍ୱେ ଏତେ ହୃଷ୍ଟ ମନେ
ଯୁବରାଜ ଅଙ୍ଗଦ ସହିତ କପିଗଣେ
ଆମ୍ଭ ପାଶେ ହେ, ଆସିବା ସମ୍ଭବ କି ସାହସେ ହେ ।୯ ।
ଅଞ୍ଜନା ନନ୍ଦନ ବିନା ଏ କାର୍ଯ୍ୟ କରଣେ

ଅନ୍ୟ କେ କରିବ ସଂସାରରେ ନାହିଁ ଜଣେ
କାର୍ଯ୍ୟସିଦ୍ଧି ଯେ, କରଣେ ରଖନ୍ତି ଶକ୍ତି ବୁଦ୍ଧି ଯେ ।୧୦ ।
ଉଦ୍ୟୋଗ ଓ ପରାକ୍ରମ ପୁଣି ଶାସ୍ତ୍ରଜ୍ଞାନ
ଏ ସମସ୍ତ ତାଙ୍କ ଠାରେ ରହିଅଛି ପୂର୍ଣ୍ଣ
ସେ ନିଶ୍ଚିତ ହେ, ସୁସମ୍ବାଦ ଧରିଣ ଆଗତ ହେ ।୧୧ ।
କୌଶଲ୍ୟାସୁତେ ସୁଗ୍ରୀବ ଧୈର୍ଯ୍ୟ ଦେବା ବେଳେ
ଅଙ୍ଗଦେ ପବନସୁତେ ବାନର ସକଳେ
ସମ୍ମୁଖରେ ଯେ ରଖି ସିଂହନାଦ ସହିତରେ ଯେ ।୧୨ ।
ପହଞ୍ଚିଲେ ମହୋଲ୍ଲାସେ ରଘୁରାଣ ପାଶେ
ଦେଖି କପିପତି ପୁଚ୍ଛ ଟେକିଣ ପ୍ରକାଶେ
ପ୍ରସନ୍ନତା ଯେ ସିଂହନାଦ ଦିଏ ଶୁଭବାର୍ତ୍ତା ଯେ ।୧୩ ।
ହର୍ଷ ଉଲ୍ଲାସ ସହିତ ଆକାଶୁ ଭୂମିରେ
ପ୍ରଣାମିଲେ ସାନୁଜଶ୍ରୀରାଘବେ ବାନରେ
ଓହ୍ଲାଇଣ ହେ, ଜାମ୍ବବ ଅଙ୍ଗଦ ହନୁମାନ ହେ ।୧୪ ।
ପ୍ରଭୁ ଦରଶନ କରି ମାରୁତି ନନ୍ଦନ
ଆନନ୍ଦେ ବିହ୍ୱଳ ହୋଇ ଧରିଣ ଚରଣ
ଚକ୍ଷୁନୀରେ ଯେ, ଚରଣ ଧୋଇ ବୋଲଇ ଧିରେ ଯେ ।୧୫ ।
ମାତା ସୀତା ସତୀତ୍ୱର ନିୟମ କଠୋର
ଅଛନ୍ତି ପାଳନ କରି କୁଶଳ ଶରୀର
ଦରଶନ ହେ, କରି ଆସିଛି ସ୍ୱ ନୟନ ହେ ।୧୬ ।
ବାତ ସୁତ ଶ୍ରୀମୁଖରୁ ଏ ସୁସମାଚାର
ଶୁଣି ଶ୍ରୀରାମ ଲକ୍ଷ୍ମଣ କପିରାଜ ବୀର
ମନେତୋଷ ହେ, ବହିଣ ଲାଭକଲେ ସନ୍ତୋଷ ହେ ।୧୭ ।
ପ୍ରୀତି ଭରେ ଆଦର ପୂର୍ବକ ରଘୁପତି
ପବନପୁତ୍ର ଉପରେ ସ୍ନେହଦୃଷ୍ଟି ପାତି
ନୟନରେ ହେ, ପ୍ରଶଂସା କରିଲେ ଚାହାଣିରେ ହେ ।୧୮ ।
କେଶରୀ ଆତ୍ମଜ ପୁନଃ ପୁନଃ ପ୍ରଣମଇ
ସୌମିତ୍ରୀ ସୁଗ୍ରୀବ ପ୍ରଣମନ୍ତି ମୁଖେ ଚାହିଁ
ଅପଲକ ହେ, ନୟନରେ ଥାଇଣ ନିର୍ବାକ ହେ ।୧୯ ।
ଏକାଏକ ଭାଙ୍ଗିଣ ଶ୍ରୀରାମ ନିରବତା
ବୋଇଲେ ଅତି ସାଗ୍ରହେ କାହିଁ ଛନ୍ତି ସୀତା

କେଉଁ ପରି ସେ, ଅଛନ୍ତି କେହ୍ନେ କିସ ବିଚାରି ହେ ।୨୦ ।
ବିଦେହ କୁମାରୀ ସମାଚାର ସବିସ୍ତାର
ଶୁଣାଅ ଶୀତଳ ହେଉ ପରାଣ ମୋହର
ହନୁମାନ ହେ, ମରୁଯାତ୍ରୀ ମୁଁ ଦିଅ ଜୀବନ ହେ ।୨୧ ।
ଦକ୍ଷିଣ ଦିଗେ ପ୍ରଣାମ କରି ସୀତା ମାତେ
ନମ୍ର ଭାବେ ହନୁମାନ ରାମଙ୍କ ଅଗ୍ରତେ
କରଯୋଡ଼ି ସେ, ବୋଲେ ଶୁଣ ପ୍ରଭୁ ଶଙ୍କା ଛାଡ଼ି ହେ ।୨୨ ।
ଶହେ ଯୋଜନ ବିସ୍ତାର ମହୋଦଧି ପାର
ଲଙ୍କା ନଗରୀ ରହିଛି ଦକ୍ଷିଣ ତଟର
ଦଶାନନ ହେ, ସୁବର୍ଣ୍ଣ ଗଡ଼ର ସେ ରାଜନ ହେ ।୨୩ ।
ସେ ରାକ୍ଷସ ପୁରୀର ଅଶୋକ ଉପବନେ
ଅଶୋକ ତରୁ ତଳରେ ଥିଲେ ଦୁଃଖ ମନେ
ମାତା ସୀତା ଯେ, ଦେଖିଲି ଜ୍ୱଳନ୍ତ ଚିନ୍ତା ଚିତା ହେ ।୨୪ ।
ଜପାମାଳି କରିଥିଲେ ନାମକୁ ତୁମର
ବିୟୋଗ ଦାବାଗ୍ନି ଦହୁ ଥିଲା ନିରନ୍ତର
ଜଳବିନା ହେ, ମୀନ ପରାଏ ରୋରୁଦ୍ୟମାନା ହେ ।୨୫ ।
ଅଞ୍ଜନା ନନ୍ଦନ ବଚନ ଶୁଣି ଅଧୀର
ହୋଇଲା ନୟନ ଦୁଇ ପୂର୍ଣ୍ଣ ବହି ନୀର
ରଘୁବୀର ସେ, ଦୁଃଖେ କମ୍ପଇ ଦୃଢ଼ ଶରୀର ହେ ।୨୬ ।
ପ୍ରଭୁ ଦଶା ସମ ଦଶା ପବନ ସୁତର
ନେତ୍ର କୋଟରରୁ ଅଶ୍ରୁ ବହେ ଝରଝର
ସମ୍ଭାଳିଣ ହେ, ବାର୍ତ୍ତା ଦିଏ ମନ କରି ଟାଣ ହେ ।୨୭ ।
ଅତ୍ୟନ୍ତ ଦୁଃଖରେ ଦିନ କାଟୁଛନ୍ତି ମାତା
ଦୃଢ଼ ପ୍ରହରା ଦିଅନ୍ତି ଅସୁର ବନିତା
ଦଶାନନ ଯେ, ଦୃଷ୍ଟି ରଖେ ତହିଁ ରାତ୍ର ଦିନ ହେ ।୨୮ ।
କେଶ ପାଲଟିଛି ଜଟା ଶାଢ଼ୀଟି ବଲ୍କଳ
ମଳିନ ଦିଶେ ଚିନ୍ତାଗ୍ରସ୍ତ ମୁଖ ମଣ୍ଡଳ
ପୃଥ୍ୱୀକୋଳ ଯେ, ଆଶ୍ରା କରିଛନ୍ତି ତେଜି ଜଳ ହେ ।୨୯ ।
ଅନ୍ନ ବିନା କୃଶ ତନୁ ଦିଅଇ କଷଣ
ଶୋକାକୁଳେ ବୋଲନ୍ତି ହା'ରାମ ପ୍ରତି କ୍ଷଣ
ଭକ୍ତିମତି ସେ, କଠୋର ତପେ ଦୁଃଖ ସହନ୍ତି ଯେ ।୩୦ ।

ଫେରିବା ସମୟେ ମାତା ବିଶ୍ୱାସେ ତୁମର
ସଙ୍କେତ ସ୍ୱରୂପ ମଥାମଣିକୁ ନିଜର
ହସ୍ତେ ମୋର ସେ, ଦେଇଛନ୍ତି ହୋଇଣ ଆତୁର ହେ ।୩୧ ।
ଚିତ୍ରକୁଟ ଠାରେ ଜୟନ୍ତ କାକ ଚରିତ
ସ୍ମରଣ କରିବା ପାଇଁ କହିଛନ୍ତି ମାତ
ଅପରାଧ ହେ, କ୍ଷମି ଲଙ୍କେଶଙ୍କୁ ଶ୍ରୀଘ୍ର ବଧ ହେ ।୩୨ ।
ଆହେ ପ୍ରାଣ ପ୍ରିୟ ସ୍ୱାମୀ ମୁହିଁ ଅନାଥିନୀ
ଉଦ୍ଧର ଏଠାରୁ ମୋତେ ଆସି ଭାଇ ବେନି
ପଥଚାହିଁ ହେ, ଅଛି ଚାତକ ପ୍ରାୟ ଅନାଇଁ ହେ ।୩୩ ।
ହନୁମନ ମୁଖୁ ଶୁଣି ପ୍ରଭୁ ରଘୁମଣି
ଲୋତକ ବନ୍ୟାରେ ପୂର୍ଣ୍ଣ ହେଲା ଚକ୍ଷୁ ବେନି
ମଥାମଣି ଯେ, ଲଗାଇଲେ ହୃଦେ ସୀତା ମଣି ଯେ ।୩୪ ।
ବୋଇଲେ ସୁଗ୍ରୀବ ମଥାମଣିର ଦର୍ଶନେ
ଦ୍ରବିତ ହେଉଛି ହୃଦ ହିମ ତାପେ ଯେହ୍ନେ
ସୁରପୂଜ୍ୟ ହେ, ଜଳୁ ଏ ପ୍ରକଟ ତୀବ୍ର ଓଜ ହେ ।୩୫ ।
ଯଜ୍ଞେ ସନ୍ତୁଷ୍ଟ ହୋଇଣ ପ୍ରଭୁ ସୁରପତି
ଜନକଙ୍କୁ ଦେଇଥିଲେ ଖୁସି ହୋଇ ଅତି
ଜାନକୀରେ ଯେ, ଦେଇଥିଲେ ବିବାହ କାଳରେ ହେ ।୩୬ ।
ଜନକ ପ୍ରଦତ୍ତ ଏହି ସଉଭାଗ୍ୟ ମଣି
ସୀମନ୍ତରେ ପିନ୍ଧୁଥିଲେ ସଦା ସୀମନ୍ତିନୀ
ପ୍ରାଣ ପ୍ରିୟା ଯେ, ବଞ୍ଚୁଥିବେ କେହ୍ନେ ମୋର ଛାୟା ଯେ ।୩୭ ।
ହନୁକୁ ବୋଇଲେ ହୋଇ ଅତ୍ୟନ୍ତ ପ୍ରସନ୍ନ
ମୋ ନିମନ୍ତେ ଯେଉଁ କାର୍ଯ୍ୟ କରିଲ ସମ୍ପର୍ଣ୍ଣ
ସୁଦୁଷ୍କର ହେ, କରି ନ ପାରିବେ କେଉଁ ସୁର ହେ ।୩୮ ।
ପ୍ରତିବଦଳରେ କରିବି କି ଉପକାର
ମନକୁ କାହିଁକି ଏବେ ନ ଆସେ ମୋହର
ମନେ ଚିନ୍ତେ ହେ, ଋଣମୁକ୍ତ ହୋଇବି କେମନ୍ତେ ହେ ।୩୯ ।
ତୁମ ଉପକାର ପାଇଁ ସର୍ବସ୍ୱ ମୋହର
ଅର୍ପଣ କରୁଛି ଆସ କେଶରୀ କୁମର
ବାହୁ ଧରି ଯେ, ଭିଡ଼ିଲେ ହୃଦୟେ ଦୃଢ଼ କରି ଯେ ।୪୦ ।
ପରମ ଭକ୍ତ ମୋର ତୁମେ ଅତି ପ୍ରିୟ

ଭକତି ବଳରେ ଜୟ କରିଲ ହୃଦୟ
ହନୁମାନ ହେ, ଧନ୍ୟ ଜନମ ଧନ୍ୟ ଜୀବନ ହେ ।୪୧ ।
ଆନନ୍ଦ ମଗ୍ନ ହୋଇଣ ମାରୁତି ନନ୍ଦନ
ପ୍ରଣାମ କରିଲେ ପଡ଼ି କମଳ ଚରଣ
ନିସ୍ତରିଲି ହେ, ଉଚ୍ଚାରନ୍ତି କପି ନିସ୍ତରିଲି ହେ ।୪୨ ।
ବାନର ଶରୀର ଧାରଣ ଉଦ୍ଦେଶ୍ୟ ମୋର
ସିଦ୍ଧ ହୋଇଲା କାମନା ପ୍ରଭୁ ରଘୁବୀର
ବାରବାର ଯେ, ପ୍ରଣାମ କଲେ ହୋଇ ଅଧୀର ହେ ।୪୩ ।
ରାମ-ହନୁମାନ ଭେଟ ଅପୂର୍ବ ଚରିତ
ଭକ୍ତ-ପ୍ରଭୁ ପ୍ରେମ ଷଡ଼ବିଂଶ ଛାନ୍ଦେ ଉକ୍ତ
ଭାବେ ଭଣେ ଯେ, ସୁରେଶ ସେ ପ୍ରୀତି ଚିନ୍ତି ମନେ ଯେ ।୪୪ ।



# ସପ୍ତବିଂଶ ଛାନ୍ଦ

## ରାଗ-କାଫି

(ଲଙ୍କା ଯାତ୍ରାରମ୍ଭ)

ବନ୍ଦନା କରି ଗଉରୀ ନନ୍ଦନ । ନମଇ ଭବ ଅର୍ଣ୍ଣବ ତାରଣ ।
ହନୁମାନ ଚରିତାମୃତ ରସ । ଶ୍ରବଣେ ନାଶିବ ସଂସାର ବିଷ ।
ବିଦୁଷେ ଦୂଷଣ ନାଶକାରୀ । ରମଣୀୟ ଭକତ ହିତକାରୀ ।୧ ।
ଶୁଣି ହନୁମାନ ମୁଖୁ ଶ୍ରୀରାମ । ମନେ ଭରି କରି ଅନନ୍ତ ପ୍ରେମ ।
ପୁଛିଲେ କୁହ ପବନ ନନ୍ଦନ । କୋହି ଭୀତ ଗଲ କେହ୍ନେ ଲଙ୍ଘିଣ ।
ମହୋଦଧି ପାରେ ଲଙ୍କା ପୁର । ରାମାବରେ ଭେଟିଲ କି ପ୍ରକାର ।୨ ।
ଦୁର୍ଗାଦି ଗଠନ ରୀତି ଶକତି । ତା'ର ବିବରଣୀ କରି ବିସ୍ତୃତି ।
କୁହ ମୋ ଆଗରେ କର ମୋଚନ । ନଭସୂତ ନନ୍ଦନ ହନୁମାନ ।
ପ୍ରଭୁ ମୁଖାରବିନ୍ଦ ନିହାରି । ରମ୍ୟ ଶବ୍ଦେ କହେ ରାମ ସୁମରି ।୩ ।
ପ୍ରଭୁ ମୁଁ ପଶୁ ଚଞ୍ଚଳ ବାନର । ରତିଏ ବିଦ୍ୟା ବୁଦ୍ଧି ନାହିଁ ମୋର ।
ବଡ଼ବାଗ୍ନିକୁ ତୁମର ପ୍ରତାପେ । ପକାଏ ଜଳାଇ ତୁଳା ତା' ତାପେ ।
ଶକତି ସାମର୍ଥ୍ୟ ମୋ ଅବା କେତେ । ତବ ବଳେ ବଳିୟାନ ମୁଁ ଏତେ ।୪ ।
କିଷ୍କିନ୍ଧ୍ୟାଧିପତିଙ୍କର ଆଦେଶେ । ସୀତା ମାତାଙ୍କର ଦର୍ଶନ ଆଶେ ।
ଖେଳ ଖେଳରେ ଡେଇଁଣ ଆକାଶେ । ସରିତା ପତିଙ୍କୁ ଲଙ୍ଘି ସରସେ ।
ଲଙ୍କା ସାଗର ତଟେ ପହଞ୍ଚି । ଚଞ୍ଚଳ ରାକ୍ଷସ ନେତ୍ରରୁ ବଞ୍ଚି ।୫ ।
ଗଲି ନଗ୍ରେ ଧରିଣ ସୂକ୍ଷ୍ମ ରୂପ । ପୁରେ ଖୋଜିଲି ପର୍ବତ ବିଟପ ।
ଦଶାନନ ପ୍ରିୟ ଅଶୋକ ବନେ । ନିଶାଚରୀ ମେଳେ ନିରାଶ ମନେ ।
ଅଶୋକ ତରୁ ତଳେ ବିରହେ । ହରି ନାମ ଜପନ୍ତି ତୁବି ଲୁହେ ।୬ ।
ଶୋକ ମୂର୍ତ୍ତି ଦର୍ଶନରେ ଅଧୀର । ରହିଲି ଛପି ବୃକ୍ଷେ ମୁଁ ଅଧୀର ।
ସେ କ୍ଷଣି ଆସିଲା ଦଶ ଆନନ । ନାନା ବାକ୍ୟେ କରିଲା ଭର୍ତ୍ସନ ।
ଚେଷ୍ଟା କଲା କରିବାକୁ ବଶ । ଶମ ଦମ ଦଣ୍ଡ କଲା ପ୍ରକାଶ ।୭ ।
ମାତା ଶ୍ୱାନ ସ୍ଥାନ ଅର୍ପିଲେ ଯେବେ । ବଧିବ ବୋଲି କ୍ରୋଧେ ଆସି ତେବେ ।
ତା'ରେ ବୁଝାଇ ରଖିଲା ତା' ରମା । ମାସେ କଷ୍ଟ ଦେଇ ଗଲା ଜମା ।
ଦେଇ ରାକ୍ଷସୀଙ୍କୁ ଗଲା ଦେଶ । ସର୍ବେ କ୍ଳେଶ ଦେଲେ ହୋଇ ବିବଶ ।୮ ।
ଅସହ୍ୟ ଦୁଃଖ କାରଣରୁ ମାତା । ତେଜିବା ନିମନ୍ତେ ପ୍ରସ୍ତୁତି ଚିତା ।
ପ୍ରାଣ ବିସର୍ଜନ ପାଇଁ ଉଦ୍ୟତ । ତୟାର ଦେଖି ମୁଁ ହୋଇ ବିସ୍ମିତ ।
ବୃକ୍ଷ ଗହଳରେ ରହି ଲୁଚି । ଚିତେ ଚିନ୍ତା କରି ପ୍ରଭୁଙ୍କ ରୁଚି ।୯ ।
ଜନ୍ମ ଠାରୁ ଦଣ୍ଡକାରଣ୍ୟ ଯାତ୍ରା । ତା'ପରେ ଚରିତ ହରଣ ସୀତା ।

ସୁଗ୍ରୀବ ସହ ମୈତ୍ରୀ ବାଳୀ ବଧ । ଧୃତିମାନ ସୁଗ୍ରୀବ ଠାରେ କ୍ରୋଧ ।
ମାତା ସୀତା ଠାବ ପାଇଁ ଦୂତ । ତତକ୍ଷଣେ ଭେଜିଲେ ଅପ୍ରମିତ ।୧୦ ।
କୋଟି ସଂଖ୍ୟାରେ ଭିନ୍ନ ଭିନ୍ନ ଦିଗେ । ଗଲେ ଭଲ୍ଲୁକ ସାଥେ ଶାଖାମୃଗେ ।
ସୁଗ୍ରୀବ ପ୍ରେରିତ ଶ୍ରୀରାମ ଦୂତ । ତୁମ ଦର୍ଶନ କରିଲି ପ୍ରାପତ ।
କୃତାର୍ଥ ମୁହିଁ ପାଇ ଦର୍ଶନ । ନ ଚିନ୍ତ ମାନସରେ କିଛି ଅନ୍ୟ ।୧୧ ।
ମୁଖୁ ଶୁଣି ମଧୁର ଲୀଳା କଥା । ଥୟ ନୋହିଲା ମାତାଙ୍କର ମଥା ।
ଆତୁରରେ ମାତା ବୋଲିଲେ ଗୀର । ରକ୍ଷ ଯକ୍ଷ ସୁରାସୁର କିନ୍ନର ।
ଶୁଣାଇଲ ବାଣୀ କର୍ଣ୍ଣ ପଥ । ତରଣୀ ଦୁଃଖ ସାଗରେ ଅମୃତ ।୧୨ ।
ଦେଖା ଦିଅ ହେ ହୁଅ ଆବିର୍ଭୁତ । ତୁମେ କିଏ ଆସ ମୋ ନେତ୍ର ପଥ ।
ଆଗ୍ରହ ଦେଖି ବୃକ୍ଷୁ ଓହ୍ଲାଇଣ । ନମିଲି ଧରି ମାତାଙ୍କ ଚରଣ ।
ଦେଖି ବାନର ଚିନ୍ତି ମାୟା ଛବି । ବିକଳ ହେଲେ ରାବଣ କୃତ ଭାବି ।୧୩ ।
ମାତେ ବୁଝାଇଲି ବିଭିନ୍ନ ମତେ । ବିଶ୍ୱାସେ ମୁଦ୍ରିକା ଅର୍ପିଲି ହସ୍ତେ ।
ତହୁଁ ବହିଲେ ଆସ୍ଥା ମୋ ଉପରେ । ରୋଦନ କଲେ ତରି ଚକ୍ଷୁ ନୀରେ ।
ବୋଇଲେ ପୁତ୍ର ଦେଖିଲ ସ୍ଥିତି । ତିନ୍ତାଉଛି ନିତି ଅସୁରୀ ଭିତି ।୧୪ ।
ପ୍ରାଣନାଥଙ୍କୁ ମୋ ବତାଇ ଦେବ । ବଳ ସାମର୍ଥ୍ୟେ ଯେ ଭବେ ଅପୂର୍ବ ।
ଧୈର୍ଯ୍ୟ ଦେଇ ପ୍ରବୋଧନା ବଚନ । ନ କର ଦୁଃଖ ଶୀଘ୍ର ରଘୁରାଣ ।
ଆସିବେ ପ୍ରାପ୍ତ ମାତ୍ରେ ସମ୍ବାଦ । ଦନୁଜ ନାଶିବେ ପରମ ପଦ ।୧୫ ।
ସୌମିତ୍ରୀଙ୍କ ଉଦ୍ଦେଶ୍ୟେ ଆତୁରରେ । ରୋଦନ ରୋଧି ଅତି ଦୁଃଖଭରେ ।
ବାର୍ତ୍ତା ଦେଇ ବୋଇଲେ ମୁଁ ଦୋଷିଣୀ । ନ ମାନୀ କଥା କଲି ମନମାନୀ ।
କହି ତିରସ୍କାର କଟୁକଥା । ଥାଇ ଭୁଲିଣ ନିନ୍ଦିଲି ଅଯଥା ।୧୬ ।
ଦେବର ପ୍ରିୟ ମୋର କ୍ଷମା କର । ରଘୁବୀର ସହ ଆସି ଏଠାର ।
ନ ଉଦ୍ଧାରିଲେ ମାସକ ମଧ୍ୟରେ । ରହିବି ନାହିଁ ମୁଁ ଜୀବଦଶାରେ ।
ଶୁଣି ବଇଦେହୀ ସମାଚାର । ରାମ ସୌମିତ୍ରୀ ଶୋକେ ଆତୁର ।୧୭ ।
ବର୍ଷଣ ନେତ୍ରେ କହନ୍ତି ମାରୁତି । ତରୁ ଫଳ ଭକ୍ଷଣେ ଅନୁମତି ।
ମାତାଙ୍କ ଠାରୁ କରିଣ ପ୍ରାପତ । ତତ୍‌କ୍ଷଣେ ବାଟିକା କଲି ବିଧ୍ୱସ୍ତ ।
ରାବଣ ସହ ଭେଟ ଇଚ୍ଛାରେ । ରଣେ ବଧିଲି ସହସ୍ର ଅସୁରେ ।୧୮ ।
ଅକ୍ଷୟ କୁମାର ରାବଣ ସୁତ । ତରୁ ପ୍ରହାରରେ କରିଲି ହତ ।
ଇନ୍ଦ୍ରଜିତ ବାନ୍ଧିଣ ବ୍ରହ୍ମ ପାଶେ । ସଗର୍ବେ ନେଲା ଲଙ୍କାପତି ପାଶେ ।
ଦଣ୍ଡ ସ୍ୱରୂପେ ଦୁଷ୍ଟ ଅସୁର । ରଇ ଲଗାଏ ଲାଙ୍ଗୁଳରେ ମୋର ।୧୯ ।
ଆପଣଙ୍କ କୃପାରେ ଲଙ୍କାପୁର । ରକ୍ଷେ ହେଲେ ଅଗ୍ନିଦେବ ଆହାର ।
ଅନ୍ତର୍ଯ୍ୟାମୀ ପ୍ରଭୁ ହୃଦୟେ ବସି । ଶକ୍ତିରେ ତୁମ ଯା' ଲିଳା ପ୍ରକାଶି ।

କରଇ ତାହା ମୁହିଁ ନିମିତ୍ତ । ତୁମ ଇଚ୍ଛାରେ କରଇ ସମସ୍ତ ।୨୦।
କରୁଣାମୟ ! ତ୍ରିକୁଟ ପର୍ବତେ । ତ୍ରିଲୋକେ ଦୁଷ୍ପ୍ରାପ୍ୟ ଲଙ୍କା ସାକ୍ଷାତେ ।
ସୁବର୍ଣ୍ଣେ ନିର୍ମିତ ଦୂର୍ଗ ଶିଖର । ରମ୍ୟ ଦିଶେ ଆଭା ଶୋଭା ଭଣ୍ଡାର ।
ଚାରୋଟି ଦୀର୍ଘ ଚଉଡ଼ା ଦୁଆର । ରହିଛି ଚାରି ପାରୁଶେ ତାହାର ।୨୧।
ମଜଭୁତ କବାଟ ଲାଗିଛି । ଛବି ପରି ରୂପ ତାର ଦିଶୁଛି ।
ମୋଟା ମୋଟା ଅରଗଳା ତହିଁରେ । ରହିଛି ସେଥିରେ ଅତି ଯତ୍ନରେ ।
ବଡ଼ ଶକ୍ତିଶାଳୀ ଯନ୍ତ୍ର ସର୍ବ । ବୈଷୟିକ ଜ୍ଞାନ ଶ୍ରେଷ୍ଠ ଅତୀବ ।୨୨।
ବରଷନ୍ତି ଗୋଳା ପଥର ବାଣ । ନ ପ୍ରବେଶିବେ ଯେହ୍ନେ ଶତ୍ରୁ ସୈନ୍ୟ ।
ଲଙ୍କାପୁର ସୁରକ୍ଷିତ ପ୍ରାଚୀରେ । ରତ୍ନ ସୁବର୍ଣ୍ଣ ଜଡ଼ିତ ସେଥିରେ ।
ଚତୁଃପାର୍ଶ୍ୱେ ଗଡ଼ଖାଇ ତା'ର । ରହିଛନ୍ତି ଯହିଁ ହିଂସ୍ର କୁମ୍ଭୀର ।୨୩।
ଗଡ଼ଖାଇ ପରେ ଚାରି ଦୁଆରେ । ରମ୍ୟ କାଷ୍ଠ ପୋଲଚୟ ମଧ୍ୟରେ ।
ଯନ୍ତ୍ର ଲାଗିଛି ତହିଁରେ ବିଚିତ୍ର । ତହୁଁ ଫିଙ୍ଗେ ଯିଏ ହୁଏ ଆଗତ ।
ଲଙ୍କାଗଡ଼ ଭେଦିବା ନିମନ୍ତେ । ତହିଁ ରାସ୍ତା ନାହିଁ ଯିବା କେମନ୍ତେ ।୨୪।
ଚାରି ଦିଗେ ଦୁର୍ଗମ ଗିରୀ ବନ । ନଦୀ ଗଡ଼ଖାଇ ପ୍ରାଚୀରମାନ ।
ଭୀମ ଦକ୍ଷିଣ ସାଗର ତଟରେ । ରହିଣ ଅଭେଦ୍ୟ ଲଙ୍କା ନଗରେ ।
ଗମନେ ଅକ୍ଷମ ଜଳଯାନ । ନ ଡରେ କା'ରେ ତେଣୁ ଦଶାନନ ।୨୫।
ପୂର୍ବ ଦ୍ୱାରେ ସୈନ୍ୟ ଦଶ ସହସ୍ର । ସଜ ହୋଇଛନ୍ତି ରାତ୍ର ଦିବସ ।
ଚତୁରଙ୍ଗିଣୀ ସେନା ଦକ୍ଷିଣରେ । ରହିଛନ୍ତି ଏକ ଲକ୍ଷ ସଂଖ୍ୟାରେ ।
ପଶ୍ଚିମେ ଦଶ ଲକ୍ଷ ରାକ୍ଷସ । ସର୍ବଦା କରନ୍ତି ଯୁଦ୍ଧ ଅଭ୍ୟାସ ।୨୬।
ଉତ୍ତର ଦ୍ୱାରେ ଏକ କୋଟି ରକ୍ଷ । ଖଟୁଛନ୍ତି ଯୋଦ୍ଧା ଯୁଦ୍ଧରେ ଦକ୍ଷ ।
ମଧ୍ୟ ଭାଗରେ ସୈନ୍ୟ ଛାଉଣୀରେ । ରହିଛନ୍ତି ଶତ ସହସ୍ର ବୀରେ ।
ହାତୀ ଘୋଡ଼ା ଗଡ଼ଖାଇ ଆଦି । ଦ୍ୟନ୍ତି ସୁରକ୍ଷା ତା' ଚଉହଦୀ ।୨୭।
ସମସ୍ତ ସୁରକ୍ଷା ବଳୟ ନାଶି । ସନ୍ତର୍ପଣରେ ଲଙ୍କାଗଡ଼େ ପଶି ।
ତୁମ୍ଭ କୃପାରେ ଜାଳି କରି ଧ୍ୱଂସ । ସହାସ୍ୟେ ବଧିଲି ବହୁ ରାକ୍ଷସ ।
ରାବଣ ମନେ ଭୟ ସଂଚାରି । ରାକ୍ଷସ ମନୋବଳ ହ୍ରାସ କରି ।୨୮।
ଯୁଦ୍ଧ ପାଇଁ କାଳ ଅତି ଉତ୍ତମ । ମନ୍ତ୍ରଣା କର ହେ ପୁରୁଷୋତ୍ତମ ।
ହନୁମାନ ମୁଖୁଁ କରି ଶ୍ରବଣ । ନବ ନୀରଦ ବପୁ ଯେ ପ୍ରସନ୍ନ ।
ବୋଲନ୍ତି ଚାହିଁଣ ମାରୁତିକୁ । କରିଛ ସମ୍ଭବ ଅସମ୍ଭବକୁ ।୨୯।
ଶକ୍ତି ସାମର୍ଥ୍ୟେ ତୁମର ସମାନ । ନାହିଁ କେହି ସଂସାରେ ବଳବାନ ।
ଶତ ଯୋଜନ ସାଗର ଲଙ୍ଘିଣ । ନଗ୍ରେ ପଶି ଡରାଇଣ ରାବଣ ।
ସୀତା ଠାବ ବିକ୍ରମେ କରିଲ । ଲକ୍ଷ୍ମଣ ରାମ ସୁଗ୍ରୀବେ ରଖିଲ ।୩୦।

ସୁଗ୍ରୀବେ ଚାହିଁ ପ୍ରଭୁ ରଘୁପତି । ତିଆର ସୈନ୍ୟ କିସ୍କିନ୍ଧ୍ୟାଧିପତି ।
ଭାଷିଲେ ବିଜୟ ନାମେ ମୂହୂର୍ତ୍ତ । ତୁମେ ଆଜ୍ଞା ଦିଅ ହୋଇ ପ୍ରସ୍ତୁତ ।
ଗତ ଶୁଭ ମୂହୂର୍ତ୍ତ ନ ହେଉ । ଉଦ୍ଧାରିବା ବୈଦେହୀ ବେଳ ଥାଉ ।୩୧ ।
ସଜାଅ ଭଲ୍ଲୁକ ବାନର ସୈନ୍ୟ । ନ କର ବିଳମ୍ବ ଦିଅ ସୁମନ ।
ପ୍ରଭୁ ଆଦେଶ ପ୍ରାପ୍ତେଣ ସୁଗ୍ରୀବ । ବରଗିଣ ଦୂତ କହେ ବୋଲିବ ।
ଭାଲୁ ବାନର ଯୁଥ ପତିଙ୍କୁ । କହିବ ଆସିବେ ଯିବା ଯୁଦ୍ଧକୁ ।୩୨ ।
ସୁଗ୍ରୀବ ରାଜାର ପାଇ ଆଦେଶ । ସୈନ୍ୟ ସମେତ ଯୁଥଙ୍କର ଈଶ ।
ସର୍ବେ ଆସି ମନରେ ବହି ହର୍ଷ । ସମବେତ ହେଲେ ରାଜନ ପାଶ ।
ସେନା ସହ ସାନୁଜ ଶ୍ରୀରାମ । ମନ ଟାଣେ ପିନ୍ଧିଲେ ଧନୁବର୍ମ ।୩୩ ।
ଜଟାଜୁଟ ବାନ୍ଧି ପିନ୍ଧି ବଲ୍କଳ । ରମ୍ୟ ଦିଶନ୍ତି ମଧ୍ୟେ ସୈନ୍ୟ ଦଳ ।
ହନୁମାନଙ୍କ କନ୍ଧପରେ ବସି । ସୀତାପତି ଯେହ୍ନେ ଆକାଶେ ଶଶି ।
ଅଙ୍ଗଦ ସ୍କନ୍ଧେ ଭ୍ରାତା ଲକ୍ଷ୍ମଣ । ନଳନୀଳ ସାଥେ ଚାଲେ ସୁଷେଣ ।୩୪ ।
ଗଜ ଗବାକ୍ଷ ମୈନ୍ଦ ଦୁଇବିନ୍ଦ । ଦଳରେ ସୁଗ୍ରୀବ ଚାଲେ ନିର୍ଦ୍ୱନ୍ଦ୍ୱ ।
ଚଞ୍ଚଳ ଅନୁଶାସିତ ବାନର । ରଣମୁଦ୍ରାରେ ହୋଇଣ ବାହାର ।
ଗର୍ଜନ ତର୍ଜନ କରି ଅତି । ତୀର ବେଗେ ଗଲେ ଦକ୍ଷିଣ କତି ।୩୫ ।
ସୌଭାଗ୍ୟଶାଳୀ ଏହି ଶାଖାମୃଗେ । ଗମନ୍ତି ସୌମ୍ୟେ ପ୍ରଭୁ କାର୍ଯ୍ୟେ ବ୍ୟଗ୍ରେ ।
ଇନ୍ଦ୍ରାଦି ଦେବଗଣ ଏହା ଦେଖି । ଖ'ରେ ଥାଇ ଧନ୍ୟ କରନ୍ତି ଆଖି ।
ପ୍ରଶଂସା କରନ୍ତି ଭାଗ୍ୟକୁ ତାଙ୍କ । କରେ ପକାନ୍ତି ପୁଷ୍ପ ତେଜି ରଙ୍କ ।୩୬ ।
ପ୍ରଭୁ ଶ୍ରୀରାମ ପ୍ରସ୍ଥାନକୁ ଜାଣି । ନେତ୍ର ଭୁଜ ବାମ କଲା ନର୍ତ୍ତନ ।
ମାତା ସୀତା ଖୁସି ଶୁଭ ଶକୁନ । ନୃପତି ରାବଣର ଥରେ ପ୍ରାଣ ।
ବିନା ବିଶ୍ରାମେ ବାନର ଭଲ୍ଲୁକ । କରନ୍ତି ଯାତ୍ରା ତେଜି ନିଦ୍ରା ଶୋକ ।୩୭ ।
ମଳୟାଚଳ ସହ୍ୟାଦ୍ରି ପର୍ବତ । ତା'ରେ ପାରେ ଗଲେ ଯୁଦ୍ଧ ତୃଷିତ ।
ନୀଳୋଦଧି ତଟେ ଯାଇ ପହଞ୍ଚି । ଚଉଦିଗ କମ୍ପେ ଶବଦେ ପାଞ୍ଚି ।
ଗର୍ଜନ ଶୁଣି ଭୟେ ସମୁଦ୍ର । ଦ୍ରବିତ ହୋଇ ହୋଇଲାକ ଭଦ୍ର ।୩୮ ।
ସପ୍ତବିଂଶ ଛାନ୍ଦ ହେଲା ସମ୍ପୂର୍ଣ୍ଣ । ନମି ସୀତାପତିଙ୍କର ଚରଣ ।
ବର୍ଣ୍ଣେ ସୁରେଶ ହନୁମାନ ଚିନ୍ତି । ତରଣୀ ସେ ଭବ ସାଗର ପ୍ରତି ।
କର ନିରେଖ ଜନର ସୁରକ୍ଷା । କ୍ଷମା ନିମନ୍ତେ କରିଛି ପ୍ରତୀକ୍ଷା ।୩୯ ।



# ଅଷ୍ଟବିଂଶ ଛାନ୍ଦ

ରାଗ-ସାନ ଭୂପାଳ

ବିଭୀଷଣଙ୍କ କୃପାପ୍ରାପ୍ତି

ଅଞ୍ଜନା ନନ୍ଦନ ଚରଣ ବନ୍ଦନ ହର୍ଷେ କରି ମନ ହୃଦୟରେ
ଅତି ବିନୟରେ ଜଣାଏ ପୟରେ କୃପାକର ପ୍ରଭୁ କଟାକ୍ଷରେ ।୧ ।
ଆଶା କରି ବସି ଚିନ୍ତେ ଦିବାନିଶି ବର୍ଣ୍ଣିବି ତୁମରି ଯଶ କୀର୍ତ୍ତି
ଆହେ ବାୟୁ ଶିଶ ଦିଅ ହେ ଆଶିଷ ମିଳୁ ପ୍ରଭୁ ମୋତେ ଶୁଭ ମତି ।୨ ।
ଇଚ୍ଛାରେ ପ୍ରଭୁର ଭଲ୍ଲୁକ ବାନର ସୁଗ୍ରୀବ ସୌମିତ୍ରୀ ହନୁମାନ
ଇକ୍ଷ୍ୱାକୁ ନୃପତି ପ୍ରଭୁ ସୀତାପତି ସୀତା ଉଦ୍ଧାରକୁ ଚିନ୍ତି ମନ ।୩ ।
ଈର୍ଷାନ୍ୱେଷୀ ଦଶାନନେ ବଳେ ଫଶାଇଣ କରିଣ ବଧ ତାହାର
ଈପ୍‌ସିତ ପ୍ରାଣ ପ୍ରିୟାର ହରଣକାରୀକୁ ଦେବାକୁ ଯୋଗ୍ୟ ବର ।୪ ।
ଉତ୍କଣ୍ଠାର ସହ ସାଥେ ଶହ ଶହ କପି ନେଇ ସାଗରର କୂଳେ
ଉଖାଡ଼ିବା ପାଇଁ ଲଙ୍କା ନିଅଁ ତହିଁ ପହଁଚି ପାଞ୍ଚନ୍ତି ବଳେ କଳେ ।୫ ।
ଉର୍ମିପତି ପରେ ଦୃଷ୍ଟି ଦେଇ ଧିରେ ଉର୍ମିକା ସ୍ପର୍ଶି କଲେ ଶପଥ
ଉର୍ମିଳା ପତିକୁ ଡକାଇ ପାଖକୁ ବୋଲନ୍ତି ଲଙ୍ଘନେ କାହିଁ ପଥ ।୬ ।
ରକ୍ଷରାଜ ଆଦି ବୀରଙ୍କୁ ସଂବାଦୀ ଶୀଘ୍ର କର ବିମର୍ଷ ବିଚାର
ରକ୍ଷକପିଗଣ ଲଙ୍କାକୁ ନେଇଣ ଯିବା କେହ୍ନେ ବନ୍ଦୋବସ୍ତ କର ।୭ ।
ଏ ସର୍ବ ଖବର ଯାଇ ଲଙ୍କାପୁର ସଂଚାର କରିଲା ମନେ ଭୟ
ଏକଇ ବାନର ଜାଳି ଗଲା ଘର ଥାଉଣୁ ଅସୁର ବୀର ଚୟ ।୮ ।
ଐକ୍ୟବଦ୍ଧ ହୋଇ ମନେ ଐକ୍ୟନେଇ ସୁଗ୍ରୀବ ବାନର ସୈନ୍ୟଦଳ
ଐକୋଗାରିକ ରାବଣ ଦରମରା କରିବା ଲକ୍ଷ୍ୟରେ ହୋଇ ମେଳ ।୯ ।
ଓଜକୁ ଜଗିଣ ପ୍ରଭୁ ରଘୁରାଣ ବାଣ ହସ୍ତେ ସାଥିରେ ଲକ୍ଷ୍ମଣ
ଓଜଶୀଳ ଯୁଥ ପତି ରୁମାନାଥ ସୁଗ୍ରୀବ ଧରି ନିଜର ସଇନ୍ୟ ।୧୦ ।
ଔଘ ପରେ ଦୃଷ୍ଟ ରଖି ପରମେଷ୍ଠୀ ଚିନ୍ତନ୍ତି ବ୍ୟଗ୍ରେ ମନକୁ ମନ
ଔଦ୍ଧତ୍ୟ ଭାଙ୍ଗିଣ ସୀତା ଉଦ୍ଧାରିଣ ଆଣିବି ଶୀଘ୍ର ମୋ ପ୍ରାଣ ଧନ ।୧୧ ।
ତେଣେ ଲଙ୍କାପୁରେ ରାବଣ ସଭାରେ ରାମଙ୍କର ସୈନ୍ୟ ସମାବେଶ
ଖବର ପ୍ରକାଶି ବିଶ୍ରବାର ଶିଶି ବୋଲେ ହୋଇ ସଙ୍କିତ ମାନସ ।୧୨ ।
ବାନରଙ୍କ ସେନା ହୋଇ ଉଇମନା ନେଇ ଦଶରଥ ପୁତ୍ର ଦୁଇ
ଶ୍ରୀରାମ ଲକ୍ଷ୍ମଣ ଚିନ୍ତି ଆକ୍ରମଣ ମହୋଦଧି ତଟେ ରୁଣ୍ଡ ହୋଇ ।୧୩ ।
ସର୍ବେ ନିଶାଚର କର ହେ ବିଚାର ଦଣ୍ଡିବା ତୁଚ୍ଛ ନର ବାନରେ
ରାବଣ ବଚନ ଶୁଣି ସଭାଗଣ ସୁହାଇ କହିଲେ ଚାଟୁକାରେ ।୧୪ ।

ତୁମ୍ଭେ ତ ଦୁର୍ଜେୟ ପଦାନତ ଜୟ ପରାକ୍ରମେ କରିଅଛ ବଳେ
ସୌଭାଗ୍ୟ ଆମ୍ଭର ସୁପ୍ରିୟ ଆହାର ମିଳିଛି ଆମ୍ଭଙ୍କୁ ଭାଗ୍ୟବଳେ ।୧୫ ।
କାଳ ପ୍ରେରଣାରେ କ୍ଷୁଧାର୍ତ୍ତ ପ୍ରାଣୀରେ ପ୍ରାପ୍ତ ଏତେ ଖାଦ୍ୟ ଧନ୍ୟ ବିହି
ଯେଉଁ ଶାଖାମୃଗ ଆସିଥିଲା ଆଗ ଛାଡ଼ି ଥିଲେ ଉଦାରତା ବହି ।୧୬ ।
ସଂପ୍ରତି ଯେତେକ ବାନର ଭଲ୍ଲୁକ ନ ଫେରିବେ ଆଉ ପ୍ରାଣ ନେଇ
ଲଙ୍କାବାସୀଙ୍କର ବନିବେ ଆହାର କ୍ଷୁଧା ନ ଭୋଗିବେ ଜଣେ କେହି ।୧୭ ।
ଦଶରଥ ବାଳ ପ୍ରଭୁ ତୁମ୍ଭ ବଳ ନ ଜାଣି ସର୍ଫରୀ ପ୍ରାୟ ହୁନ୍ତି
ପତଙ୍ଗ ସମାନ ତେଜିବାକୁ ପ୍ରାଣ ପ୍ରଜ୍ଜ୍ୱଳିତ ଦୀପ ଦିଗେ ଧାନ୍ତି ।୧୮ ।
ଚିନ୍ତା ପରିହର ଯାଇ ସିନ୍ଧୁ ପାର ନାଶିବୁ ଗୋଟି ଗୋଟି କରିଣ
ଆଦେଶ ବଳରେ ଯିବୁ ନିଶାଚରେ କରୁଅଛୁ ତୁମ୍ଭ ଆଗେ ପଣ ।୧୯ ।
ଚାଟୁବାଣୀ ଶୁଣି ଆନନ୍ଦ ଉଜାଣି ବହିଲା ହୃଦେ ଦଶଶୀରର
ବାକ୍ୟ ବିପରୀତ ପ୍ରିୟ ଲାଗେ ସତ ମୃତ୍ୟୁ ଶିରରେ ହେଲେ ସବାର ।୨୦ ।
ନୀତିଜ୍ଞ ଶୁଭୈଷୀ କୈକେଶୀର ଶିଶି ରାବଣ ଅନୁଜ ବିଭୀଷଣ
ସିର ନୁଆଇଣ ବିନୟ ହୋଇଣ ନିବେଦିଲା ପ୍ରଣାମି ଚରଣ ।୨୧ ।
ହେ ଲଙ୍କା ରାଜନ, ତୁମ୍ଭେ ବୁଦ୍ଧିମାନ ନୀତିଜ୍ଞାନୀ ପ୍ରଚଣ୍ଡ ବିଦ୍ୱାନ
ଉତ୍ତମ ପ୍ରକାର ସଭାସଦଙ୍କର ବାକ୍ୟ ଦେଖ ବିଚାର କରିଣ ।୨୨ ।
ଯଥାର୍ଥେ ଯା ହିତ କହି ବିପରୀତ ବୁଦ୍ଧିକୁ ମିଳି କରନ୍ତି ବଣା
ଏକ ରାମ ଦୂତ ହୋଇ ଉପଗତ ଲଙ୍କାରେ କି କଲା ସର୍ବେ ଜଣା ।୨୩ ।
ତା'ର କ୍ରୀଡ଼ା ଦ୍ୱାରା ଲଙ୍କା ନଗ୍ର ସାରା ଜଳୁଥିଲା ଯେବେ ସଭାସଦେ
କ୍ଷୁଧାକୁ ଲୁଚାଇ ମୁହଁକୁ ଛୁପାଇ କାହିଁ ଥିଲେ ନ ଆସିଲେ ଦ୍ୱନ୍ଦ୍ୱେ ।୨୪ ।
ବିନତୀ ମୋ ଘେନ ଅଗ୍ରଜ ରାବଣ ରାମ ନୁହେଁ ସାଧାରଣ ନର
ସ୍ୱୟଂ ନାରାୟଣ ଅନାଦି କାରଣ ଧରିଛନ୍ତି ମର୍ତ୍ତେ ଅବତାର ।୨୫ ।
ସୀତା ଯା'ରେ କହି ଭଗବତୀ ସେହି ବଇଦେହୀ ସାକ୍ଷାତ୍ କମଳା
ଯମପାଶ ପ୍ରାୟ ଲଙ୍କାରେ ବିଜୟ କରି ଅଛନ୍ତି ସେହି ଚଞ୍ଚଳା ।୨୬ ।
ତାଙ୍କର କାରଣେ ସର୍ବେ ଅକାରଣେ ନଷ୍ଟ ହେବା ଆମ୍ଭେ ଲଙ୍କାବାସୀ
ବେଳ ଥାଉ ଯାଅ ସମରପି ଦିଅ ଦୟା କରିବେ ବୈକୁଣ୍ଠବାସୀ ।୨୭ ।
ମିଥିଳା କୁମାରୀ ରତ୍ନ ସାଥେ ଧରି ସମ୍ମାନ ପୂର୍ବକ ରାମ ପାଦେ
କରି ସମର୍ପଣ ନିଅ ହେ ଶରଣ ଯେ ଚରଣ ସ୍ୱୟଂ ଶିବ ବନ୍ଦେ ।୨୮ ।
କରିଲେ ଅନ୍ୟଥା ସତ୍ୟ ଏହି କଥା ମଥା ସହସ୍ର ସଂଖ୍ୟା ଗଡ଼ିବ
ରଘୁପତି ବାଣ ଆଘାତରୁ ତ୍ରାଣ ନାହିଁ କେ ସଂସାରରେ କରିବ ।୨୯ ।
ହେ ପ୍ରିୟ ଅଗ୍ରଜ ସେ କଥାକୁ ହେଜ କହିଥିଲେ ପୁଲସ୍ତ୍ୟଙ୍କ ସୁନ

ଛାଡ଼ି ଅହଂକାର ମିଥିଳା କନ୍ୟାର ସସମ୍ମାନେ କର ଅରପଣ ।୩୦ ।
କରିଲେ ଏସନ ସମସ୍ତଙ୍କ ପ୍ରାଣ ରହିବ ଲଙ୍କାର ହେବ ହିତ
ଶୁଣି ମାଲ୍ୟବାନ କହେ ବୁଦ୍ଧିମାନ ସଚିବ ଖୁସି ହୋଇ ବହୁତ ।୩୧ ।
ବିନୟ ପୂର୍ବକ ରାକ୍ଷସ ନାୟକ ନୀତିନିଷ୍ଠ ବିଭୀଷଣ ଗୀର
ଉତ୍ତମ ସର୍ବଥା ତାହାଙ୍କର କଥା ମଙ୍ଗଳ ହୋଇବ ତା ସ୍ୱୀକାର ।୩୨ ।
ଦୁର୍ଭାଗ୍ୟ ଯେ କାଳେ ଆସି ପଶେ କୋଳେ ଆପଣା ଲୋକ ଲାଗନ୍ତି ପର
ହିତକର କଥା ସବୁ ପିତା ଯଥା ଲାଗଇ ଅହିତ ହିତ କର ।୩୩ ।
ଅତ୍ୟନ୍ତ କ୍ରୋଧିତ ବିଶ୍ରବାର ସୁତ ହୋଇଣ ଛାଡ଼ି ରଡ଼ି ଭୀଷଣ
ପ୍ରଶଂସା ଶତ୍ରୁର ଏ ମୂଢ଼ ଅସୁର କରେ କର ଯାରେ ନିଷ୍କାସନ ।୩୪ ।
ରାବଣ ବଚନ ଶୁଣି ମାଲ୍ୟବାନ ଚଳିଲେ ଚଳିଲେ ବିରକ୍ତ ହୋଇ ପୁରେ
ଭ୍ରାତା ବିଭୀଷଣ ମଙ୍ଗଳ ଚିନ୍ତିଣ ରାବଣକୁ ନିବେଦନ କରେ ।୩୫ ।
ପୁନଃ ଭୁଲି କ୍ରୋଧ କହେ ଭ୍ରାତା ଯୁଦ୍ଧ ସୁରକ୍ଷା ଆମ ଏଡ଼ାଇବାରେ
ବିଦେହ କୁମାରୀ ଲଙ୍କାକୁ ଆମରି ଅପଶକୁନ ଧରି ସାଥିରେ ।୩୬ ।
ଆସିବା ଦିନରୁ ନ ଯାଏ ମନରୁ ବାରମ୍ବାର ଘାରେ ତନୁ ମନ
ସୂଚନା ତାହାର ମନ୍ତ୍ରୀଏ ତୁମର ଦେବାରେ ହୁଅନ୍ତି ସଂକୋଚ ମନ ।୩୭ ।
ନମେ ପୁନଃ ପୁନଃ ଅନୁରୋଧ ଘେନ ନର ବୋଲି ନ ଭାବ ଚିତ୍ତରେ
ମହାପରାକ୍ରମୀ ସିନ୍ଧୁ ଅତିକ୍ରମି ଆଗମି ଉଦ୍ଧାରିବେ ସୀତାରେ ।୩୮ ।
ଯେତେକ ତୁମର ନିଶାଚର ବୀର ସମ୍ମୁଖେ ନିଅଣ୍ଟ ନିଶ୍ଚେ ହେବେ
ଶତ୍ରୁତା ନ କରି କଥା ମାନି କରି ଶରଣ ପଶ ନ ଚିନ୍ତି ଲବେ ।୩୯ ।
ମିଥିଳା କୁମାରୀ ରାମହୃଦହାରୀ ଫେରାଇ କ୍ଷମା ମାଗ ଚରଣେ
ନ କଲେ ଏପରି ଏହି ଲଙ୍କା ପୁରି ମଧ୍ୟରେ ବଂଚିବେ ନାହିଁ ଜଣେ ।୪୦ ।
ମୁଖୁ ବିଭୀଷଣ ଶୁଣିଣ ଏସନ ରାବଣ ରୋଷେ ହୋଇଣ ଅନ୍ଧ
କ୍ରୋଧରେ କମ୍ପିଲା ଦୂତେ ଆଦେଶିଲା କୁଳ କଳଙ୍କ ଏ ଶୀଘ୍ର ବାନ୍ଧ ।୪୧ ।
ମୋହର ଖାଉଛି ବିରୁଦ୍ଧେ ଗାଉଛି ଭୀରୁ ପରି ଦିଏ ଉପଦେଶ
ଯା' ଡରେ ଶମନ ଥରେ ନିତି ଦିନ କରେ ତାରେ ଡରାଣ ପ୍ରୟାସ ।୪୨ ।
ଧିକ୍କାର ତୋତେରେ ମୋ ମାତା ଗର୍ଭରେ ଜନ୍ମିଅଛୁ ତୁହି କାପୁରୁଷ
ଅନ୍ୟ ହୋଇଥିଲେ ତୋ କଥନ ତୁଲେ କାଟି ସାରନ୍ତିଣି ନିଶ୍ଚେ ଶିଶ ।୪୩ ।
କ୍ରୋଧ ବଶିଭୁତ କୈକେଶୀର ସୁତ ପଦାଘାତେ ଆଘାତ କରିଲା
ତୁହି ଚାଲି ଯାଆ ଯାଇ ମିଶି ଯାଆ ବନବାସୀ ସାଥିରେ କହିଲା ।୪୪ ।
ପାଇ ଅପମାନ ଭ୍ରାତା ବିଭୀଷଣ ପ୍ରଣମି ରାବଣର ପାଦରେ
ଗଦାହସ୍ତ ହୋଇ ଚାରିମନ୍ତ୍ରୀ ନେଇ ଚଳିଲା ଶୀଘ୍ର ଶୂନ୍ୟ ପଥରେ ।୪୫ ।

ମହାକାଶେ ଥାଇ ବିଭୀଷଣ ଚାହିଁ ଅଗ୍ରଜରେ ବଚନ ବୋଲଇ
ଜିହ୍ୱାକୁ ସୁଆଦ ଚିନି ପରମାଦ ଦିଏ ମଧୁମେୟ ରୂପ ନେଇ ।୪୬ ।
ସ୍ୱାଦ ସିନା ପିତା ନିମ୍ବର ଯୋଗ୍ୟତା ଚରାଚର ସଂସାରେ ବିଦିତ
ଅପ୍ରିୟ ମୋହର ଲାଗେ ସିନା ଗୀର ପରିଣାମ ଜାଣିବ ତା ହିତ ।୪୭ ।
ତୁମର ଧିକ୍କାର ଚରଣ ପ୍ରହାର ଦେଇ ନାହିଁ ଲବେ ମୋତେ କ୍ଲେଶ
ଗୋଟିଏ ମାତ୍ରକ ଚିନ୍ତାରେ ମସ୍ତକ ଭାରାକ୍ରାନ୍ତ ଭାବି ତୁମ୍ଭ ନାଶ ।୪୮ ।
ଦିଶେ ଜଳଜଳ ନ ମିଳଇ କୁଳ କାଳଗ୍ରସ୍ତ ସଭାସଦ ବୃନ୍ଦ
ବିପରୀତ କଥା ଚିନ୍ତେ ସର୍ବ ମଥା ଭଲ ଭେଲ ଲାଗେ ଶୁଭ ମନ୍ଦ ।୪୯ ।
ଶ୍ରୀରାମ ବାଣରେ ଶମନ ପୁରରେ ପୁତ୍ର ସୈନ୍ୟ ବାହନ ସଂପୂର୍ଣ୍ଣ
ନିଶାଚର ବଂଶ ହୋଇ ଯିବ ନାଶ ସ୍ୱ ଚକ୍ଷୁରେ ମୋ ଅବଲୋକନ ।୫୦ ।
ନ ପାରିବି କରି ଏହି ଚିନ୍ତା ଧରି ଯାଉଅଛି ଶ୍ରୀରାମ ଶରଣ
ମୋର ଯିବା ପରେ ନିଜ ମହଲରେ ବଂଚ ଆନନ୍ଦ ମନେ ଜୀବନ ।୫୧ ।
ସତ୍ୟର ଦର୍ଶନ ନ ହୁଏ ନୟନ ଅହଂକାର ପରଳ ମାଡ଼ିଛି
ଶଲ୍ୟ ଚିକିତ୍ସାର ଅଛି ଦରକାର ଚେରମୂଳି ପତର ହାରୁଛି ।୫୨ ।
ମନ୍ତ୍ରୀଙ୍କ ସହିତ କୈକେଶୀର ସୁତ ଶ୍ରୀରାମ ପଦ କମଳ ଚିନ୍ତି
ହୃଦୟେ ତାହାର ଆନନ୍ଦ ଲହର ଖେଳେ ଥରେ ଭାତି ପ୍ରାୟ ଛାତି ।୫୩ ।
ଚରଣ ଦର୍ଶନ ପାଇଁ ବିଭୀଷଣ ତୀବ୍ର ଲାଳସେ ହୋଇ ଆତୁର
ମହାନ ସୁକୃତ ହୋଇଲା ପ୍ରାପତ ଭାବଇ ଉଦିତ ଭାଗ୍ୟ ମୋର ।୫୪ ।
ଯେ ପଦ ପ୍ରାପତେ ଋଷିମୁନି ଯେତେ କଠୋର ତପଶ୍ଚାରଣେ ରତ
ସେ ପଦ କମଳ ଲଭିଣ ସଫଳ ପ୍ରାପ୍ତ କରି ହୋଇବି ମୁକତ ।୫୫ ।
ଯେ ପଦ ସ୍ପର୍ଶରେ ପଥର ନାରୀରେ ପରିଣତ ହୋଇଗଲା ତରୀ
ସୀତା ଭଗବତୀ ଚିତ୍ତେ ଚିନ୍ତେ ନିତି ନିର୍ଭୟରେ ନ ଡରି ଅସୁରୀ ।୫୬ ।
କର୍ପୂର ଗଉର ପ୍ରଭୁ ମହେଶ୍ୱର ଅନ୍ତରେ କରନ୍ତି ଯା'ର ଧ୍ୟାନ
ଅସୁର ଯୋନିରେ ଜନମୀ ମହୀରେ ସୌଭାଗ୍ୟେ କରିବି ତା' ଦର୍ଶନ ।୫୭ ।
ଚିନ୍ତି ଏହିପରି ଚାରିମନ୍ତ୍ରୀ ଧରି ଯୋଦ୍ଧା ବେଶେ ଭକ୍ତ ବିଭୀଷଣ
ବାସବ ସମାନ ପିନ୍ଧି ଆଭୂଷଣ ଅସ୍ତ୍ର ଶସ୍ତ୍ର କରିଣ ଧାରଣ ।୫୮ ।
ମହୋଦଧି ପାରେ ଆକାଶ ମାର୍ଗରେ ଆସି ପହଞ୍ଚିଲେ ଖୁସି ମନେ
ଭଲ୍ଲୁକ ବାନର ପର୍ବତ ଆକାର ଭୀତ ହୋଇଲେ ରକ୍ଷ ଦର୍ଶନେ ।୫୯ ।
କେତେକ ଘେରିଣ କରିଲେ ବନ୍ଧନ କେତେକ ଗଲେ ସୁଗ୍ରୀବ ପାଶ
ଜଣାଇଲେ ଯାଇ ରାବଣର ଭାଇ ଆସିଛି ଭେଟିବ ରଘୁଈଶ ।୬୦ ।
କେ କହେ ରାବଣ ଦୂତ ଏ ଭୀଷଣ ଦିଶଇ ନାମ ତା' ବିଭୀଷଣ

ସନ୍ଧି କରିବାକୁ ଅବା କଳିବାକୁ ଆମ୍ଭର କଳବଳ ବା ସୈନ୍ୟ ।୬୧ ।
ବାନର ରାଜନ କୌଶଲ୍ୟା ନନ୍ଦନ ପାଶେ ଯାଇ କଲେ ନିବେଦନ
ରାବଣର ଭାଇ ସିନ୍ଧୁ ପାର ହୋଇ ଚାହୁଁଅଛି ଆସି ଦରଶନ ।୬୨ ।
ଶ୍ରୀରାମ କହନ୍ତି ଏଥିରେ ସମ୍ମତି ଅଛି କି ତୁମ୍ଭର କୁହ ମିତ୍ର
ସୁଗ୍ରୀବ ବୋଲନ୍ତି ମାୟାବୀ ଅଟନ୍ତି ସଂସାରେ ଅଛନ୍ତି ଯେତେ ଦୈତ୍ୟ ।୬୩ ।
କ୍ଷଣକ ମଧ୍ୟରେ ଆଖି ପଲକରେ ଅନ୍ତର୍ଦ୍ଧାନ ହୋଇବା ଶକତି
ରହିଛି ତାଙ୍କର କ୍ରୁର ରାବଣର ଅଟେ ପରା ଏ ନିଜର ଜ୍ଞାତି ।୬୪ ।
କଠୋର ହସ୍ତରେ ବାନ୍ଧିବା ଏହାରେ ମନ୍ତ୍ରୀଗଣ ସଙ୍ଗତେ ମିଶାଇ
ଖବର ଏଠାର ଯେହ୍ନେ ରାବଣର ଅଗ୍ରତରେ ନ କହିବେ ଯାଇ ।୬୫ ।
ସୁଗ୍ରୀବ ବଚନ ଶୁଣି ହନୁମାନ ହୃଦେ ହେଲେ ଅତ୍ୟନ୍ତ ଆତୁର
ସହଜେ ଦୟାଳୁ ଅତୀବ କୃପାଳୁ ମନ ତାଙ୍କ ଶଶାଙ୍କର କର ।୬୬ ।
ବିଭୀଷଣ ସାଥେ ଲଙ୍କା ନଗ୍ର ପଥେ ହୋଇଥିଲା ତାହାଙ୍କର ଭେଟ
ଲଙ୍କା ନଗରୀରେ ଭକତି ଭାବରେ ଅନନ୍ୟ ନାହିଁ ଛନ୍ଦ କପଟ ।୬୭ ।
ମାତା ସୀତାଙ୍କର ରହିବା ସ୍ଥାନର ପତା ଦେଇଥିଲେ ସେ ବତାଇ
ଦୁଷ୍ଟ ଦଶାନନ ସଭାସଦଗଣ ମଧ୍ୟେ ହନୁ ପକ୍ଷ ଥିଲେ ନେଇ ।୬୮ ।
ଭକ୍ତି ନିଷ୍ଠା ବଳେ ତେଜିଣ ସମୂଳେ ଆସିଛନ୍ତି ରାମଙ୍କ ଚରଣ
ଏପରି ସ୍ଥଳରେ ଦ୍ୱେଷ ଆବେଶରେ ସୁଗ୍ରୀବଙ୍କ ମୁଖେ ଏ ବଚନ ।୬୯ ।
ଦୁଃଖିତ ମାରୁତି ଆବେଗରେ ଅତି ଅପେକ୍ଷିଲେ ପ୍ରଭୁଙ୍କ କଥନ
ଭକତ ହୃଦୟ ପ୍ରଭୁ ଦୟାମୟ କହିଲେ ହେ କିଷ୍କିନ୍ଧ୍ୟା ରାଜନ ।୭୦ ।
ଅଟେ ନୀତି ପୂର୍ଣ୍ଣ ତୁମ୍ଭର କଥନ ସତ୍ୟ ସିଦ୍ଧ ଲାଗଇ ମନକୁ
ଯାହା ଶତ୍ରୁ ହେଉ ମନେ ଯାହା ଥାଉ ତ୍ୟାଗିଣ ମାନ ଅଭିମାନକୁ ।୭୧ ।
ଶିବିରେ ଶତ୍ରୁର ଆସେ ଯେ ନିଜର ଭୁଲି କରି ମାନ ଅଭିମାନ
ପ୍ରାଣ ମୋହ ତେଜି ଶତ୍ରୁତା ବରଜୀ ରକ୍ଷା କରେ ନର ତା ଶରଣ ।୭୨ ।
ଶରଣ କାଂକ୍ଷୀର ଦେଖୁଣୁ ଶରୀର ନଷ୍ଟ ହୁଏ ଯଦି ଆଖି ଆଗେ
ମୃତ୍ୟୁ ସହ ତା'ର ଶରଣ ଦାତାର ହରଇ ସାଥିରେ ପୁଣ୍ୟ ବେଗେ ।୭୩ ।
ଶରଣାଗତର ଦାୟିତ୍ୱ ରକ୍ଷାର ଶକ୍ତି ଥିବା ସତ୍ତ୍ୱେ ତ୍ୟାଗେ ଯିଏ
ତା'ର ବଳବୀର୍ଯ୍ୟ  ନାଶେ ଏ କୁକାର୍ଯ୍ୟ ପ୍ରାପ୍ତ ସ୍ୱର୍ଗ ଯଶ ନାଶ ପାଏ ।୭୪ ।
କୋଟି କୋଟି ଜଣ ବିନାଶି ବ୍ରାହ୍ମଣ ସମ୍ମୁଖକୁ ଆସିଲେ ମୋହର
କୋଟି କୋଟି ଜନ୍ମ ପାପ ହୁଏ କ୍ଷୀଣ ପ୍ରାପ୍ତ କରେ ବଇକୁଣ୍ଠ ପୁର ।୭୫ ।
ହେ ରାଜା ସୁଗ୍ରୀବ ଏକ ବାର ଜୀବ ଶୁଦ୍ଧ ହୃଦୟେ ଆସି ଶରଣେ
ମୁଁ ତୁମ୍ଭର ବୋଲି ଦେଲେ କହି ଖାଲି ସୁରକ୍ଷା ଦିଏ ମୁଁ ପ୍ରତିକ୍ଷଣେ ।୭୬ ।

ଇଚ୍ଛାରେ ମୋହର କ୍ଷଣାର୍ଦ୍ଧେ ମାତର ଧ୍ୱଂସି ରଚିପାରେ ଏ ସଂସାର
ସଂପୂର୍ଣ୍ଣ ସୃଷ୍ଟିରେ ଯେତେକ ଅସୁରେ ଲକ୍ଷ୍ମଣ ନିମନ୍ତେ ମାତ୍ର ଛାର ।୭୭ ।
ଚିନ୍ତା ନ କରିଣ ଧରି ବିଭୀଷଣ ସମ୍ମୁଖେ ନିସଙ୍କୋଚରେ ଆଣ
ହୃଦୟରେ ତା'ର ଧରି କି ବିଚାର ଲଙ୍କାରୁ କରିଛି ଆଗମନ ।୭୮ ।
ପବନ ନନ୍ଦନ ପ୍ରଭୁଙ୍କ ବଚନ ଶୁଣି ପ୍ରଭୁଙ୍କର ଜୟ କହି
ଉଲ୍ଲାସ ମନରେ ଅଙ୍ଗଦ ସାଥିରେ ବିଭୀଷଣ ପାଶେ ହେଲେ ଯାଇ ।୭୯ ।
ଆଦର ସହିତ କରି କୋଳାଗତ ପ୍ରଭୁ ସମୀପେ ସାଥେ ଆଣିଲେ
ଦୂରୁ ବିଭୀଷଣ ଶ୍ରୀରାମ ଲକ୍ଷ୍ମଣ ତନୁ ଦେଖି ବିହ୍ୱଳିତ ହେଲେ ।୮୦ ।
ଶ୍ୟାମ ଗୌର ଦୁଇ ଶରୀର ଶୋଭଇ ବିଭୀଷଣ ମୁଗ୍ଧ ଦରଶନେ
ଚକ୍ଷୁ ନ ଫେରଇ ସ୍ତମ୍ଭିଭୂତ ହୋଇ ରହିଲେ ମୁହୂର୍ତ୍ତେ ସମ୍ମୋହନେ ।୮୧ ।
କିଛିକ୍ଷଣ ପରେ ଫେରି ସମ୍ବିତରେ କରିଲେ ସାଷ୍ଟାଙ୍ଗ ପ୍ରଣିପାତ
ଗଦଗଦ ହୋଇ ଲୋତକ ଝରାଇ ବୋଲନ୍ତି ପ୍ରଭୁ ହେ ପଦ୍ମନେତ୍ର ।୮୨ ।
ପ୍ରଭୁ ମୁଁ ଅଧମ ନିଶାଚରାଧମ ତୁମ୍ଭ ସତୀପତ୍ନୀ ଭଗବତୀ
ହରଣ କାରକ ଅସୁର ନାୟକ ରାବଣର ଭ୍ରାତା ମନ୍ଦମତି ।୮୩ ।
ଅଟେ ମୁଁ ରାକ୍ଷସ ଲଙ୍କାରେ ମୋ ବାସ ତାମସିକ ପ୍ରକୃତି ବିଶିଷ୍ଟ
ନ ଜାଣଇ ନୀତି ଅନୀତିର ନୀତି ରତ ଅସୁର ମୁହିଁ ନିକୃଷ୍ଟ ।୮୪ ।
ରାକ୍ଷସ ରାଜନେ ଅଗ୍ରଜ ରାବଣେ ଯୋଡ଼ ହସ୍ତେ କଲି ନିବେଦନ
ବିଦେହ ନନ୍ଦିନୀ ସୀତା ମାତେ ଘେନି ଫେରାଇବାକୁ ତୁମ୍ଭ ଚରଣ ।୮୫ ।
କାଳଗ୍ରସ୍ତ ହୋଇ ନ ଘେନିଲା ସେହି କୋପେ କଲା ରୋଷେ ପଦାଘାତ
ପୁତ୍ର ପତ୍ନୀ ତେଜି ତୁମ୍ଭ ନାମ ଭଜି ମୁମୁକ୍ଷୁ ରୂପେ ପାଦେ ଆଗତ ।୮୬ ।
ଚରଣେ ଶରଣ ଆଶା କରି ମନ ଆସିଛି ଭବୁ ପାଇବି ମୁକ୍ତି
ଭୁବନ ପାବନ ନେଇ ମନ୍ତ୍ରୀଗଣ କ୍ଷମ ଦୋଷ କୂଳ ଧର୍ମ ଚିନ୍ତି ।୮୭ ।
ମୋହର ଜୀବନ ପ୍ରଭୁ କର ଧନ୍ୟ କରୁଣା ବୃଷ୍ଟି କରିଣ କଣେ
ଦେଇଣ ଶରଣ ଅଭୟ ଚରଣ ଗୁଣ ନିଧାନ ଉଦାର ଗୁଣେ ।୮୮ ।
ଭକ୍ତିପୂର୍ଣ୍ଣବାଣୀ ଶୁଣି ଗୁଣମଣି ଲକ୍ଷ୍ମଣ ସହିତ ଭକ୍ତପ୍ରାଣ
ବିଭୀଷଣ ହସ୍ତ ଧରିଣ ତୁରନ୍ତ ଉଠାଇ କରିଲେ ଆଲିଙ୍ଗନ ।୮୯ ।
ପ୍ରୀତିପୂର୍ଣ୍ଣ ରୂପେ ବସାଇ ସମୀପେ ସମ୍ବୋଧି କହିଲେ ହେ ଲଙ୍କେଶ
ଲଙ୍କେଶର ଭ୍ରାତ ହୋଇ ସମ୍ବୋଧିତ ମନ ହୃଦୟେ ହେଲେ ହରଶ ।୯୦ ।
ଗଦ୍‌ଗଦ କଣ୍ଠରେ ନିବେଦନ କରେ ପ୍ରଭୁ ନିସ୍ତରିଲି ନିସ୍ତରିଲି
ତ୍ରୟତାପ ହର ପଦ କମଳର ଦରଶନେ ସମର୍ଥ ହୋଇଲି ।୯୧ ।
କୃତାର୍ଥ ହୋଇଲି ସର୍ବସ୍ୱ ପାଇଲି ଧନ୍ୟ ହୋଇଲା ମୋର ପରାଣ

ବିଷୟ ଜନିତ ସୁଖରେ ଆସକ୍ତ ନୁହେଁ ମୋ ଅଭିଷ୍ଟ ସୀତା ପ୍ରାଣ ।୯୨ ।
ଚରଣ କମଳେ ମନ ମୋ ବିମଳେ ଭକ୍ତି ରସେ ମଜ୍ଜି ରହୁ ଆଶା
ତହିଁରୁ ଅଧିକ ହେ ରଘୁ ନାୟକ କରେ ନାହିଁ ସ୍ୱପ୍ନରେ ପ୍ରତ୍ୟାଶା ।୯୩ ।
ସହଜେ କୃପାଳୁ ଅତ୍ୟନ୍ତ ଦୟାଳୁ ରାଘବେନ୍ଦ୍ର ଅନୁଜେ ବୋଲିଲେ
ଦରଶନ ଫଳ ଏହାଙ୍କୁ ତତ୍କାଳ ପ୍ରାପ୍ତ କରାଇବା ଆଦେଶିଲେ ।୯୪ ।
ସିନ୍ଧୁ ଜଳ ଆଣ ଅନୁଜ ଲକ୍ଷ୍ମଣ ରାଜପଦେ କର ଅଭିଷିକ୍ତ
ପ୍ରଭୁ ଆଦେଶରେ ଭଲ୍ଲୁକ ବାନରେ ମିଶି ଭ୍ରାତା ଲକ୍ଷ୍ମଣ ସହିତ ।୯୫ ।
ଲଙ୍କାରାଜ ପଦେ ବସାଇଣ ମୋଦେ ଉତ୍ସବ ପାଳିଲେ ହୋଇ ଖୁସି
ପ୍ରଭୁ ପଞ୍ଚାନନ ପଦେ ସମର୍ପଣ ଦଶଶିର ବିଶ୍ରବାର ଶିଶି ।୯୬ ।
କରିଣ ଅର୍ପଣ ଯେ ସମ୍ପଦମାନ ପ୍ରାପ୍ତ ମହାତପେ କରିଥିଲା
ମରୁତ ନନ୍ଦନ କରୁଣା ପ୍ରାପ୍ତେଣ ବିଭୀଷଣେ ପ୍ରାପ୍ତ ତାହା ହେଲା ।୯୭ ।
ଶ୍ରୀବିଭୀଷଣଙ୍କ ଭୂପତି ତିଳକ ଦେଖି ପ୍ରସନ୍ନ ଭାଲୁ ବାନର
ହନୁମାନ ମନ ଅଧିକ ପ୍ରସନ୍ନ ଭକ୍ତେ ଯେଣୁ ପ୍ରାପ୍ତ ପୁରସ୍କାର ।୯୮ ।
ଭକ୍ତ ଶିରୋମଣି ମାରୁତିର ପାଣିମସ୍ତକ ପରେ ଯା'ର ବରଦ
ସୁଖ ସଂସାରର ସୁଲଭ୍ୟ ତାହାର ମିଳେ ତାହାକୁ ପରମ ପଦ ।୯୯ ।
ତାଙ୍କ ପ୍ରସାଦରୁ ଆସିଣ ଲଙ୍କାରୁ ବହିଷ୍କୃତ ପୁଣି ତିରଷ୍କୃତ
ଲଭିଲା ଆଶ୍ରୟ ହୋଇଲା ଆତ୍ମୀୟ ଲଙ୍କାଧିପ ହେଲା ନିରାଶ୍ରିତ ।୧୦୦ ।
ଦୟାର୍ଦ୍ର ହୃଦୟ ଯାହାରେ ସଦୟ ସହାୟ ଯାହାରେ ହନୁମାନ
ଚଉଦ ଭୁବନେ ସୌଭାଗ୍ୟ ସମାନେ କା' ଭାଗ୍ୟ ହୋଇବ ବା ସମାନ ।୧୦୧ ।
ପ୍ରଭୁ କୃପା ଯା'ରେ ହୁଅଇ ସଂସାରେ ଅଯାଚିତେ ଝରଇ କରୁଣା
ଭକ୍ତ ଯେତେ ଚିନ୍ତେ ପାଇବାକୁ ଚିତ୍ତେ ପ୍ରଭୁ କୃପା ଆଗେ ହୁଏ ଊଣା ।୧୦୨ ।
ଅଧ୍ୟା ଅଷ୍ଟବିଂଶ ଶୁଦ୍ଧ ଭକ୍ତି ରସ ବାର୍ତ୍ତା ବିଭୀଷଣ ଅଭିଷେକ
ମାରୁତି ଆଶିଷ ବଳରେ ସୁରେଶ ବର୍ଣ୍ଣେ ପାଦେ ନୁଆଇଁ ମସ୍ତକ ।୧୦୩ ।



# ଊନତ୍ରିଂଶ ଛାନ୍ଦ

ରାଗ-ବସନ୍ତ ବରାଡ଼ି

(ସେତୁ ବନ୍ଧ ନିର୍ମାଣ)

ବକ୍ରତୁଣ୍ଡ ପାଦେ ପ୍ରଣାମ ଜଣାଇ ମାଗଇ ଏହି ଆଶ୍ରୀର୍ବାଦ
ବିଘ୍ନବିନାଶନ ପାର୍ବତୀ ନନ୍ଦନ କହି ଦିଅ କର୍ଣ୍ଣରେ ପଦ
ରଚନା, ହେବ ହନୁମାନ ଚରିତ,
ଦୀନେ କୃପାକର ପୂର୍ଣ୍ଣ ହେଉ ମୋର ଆଶ ହିମାଦ୍ରି ସୁତାସୁତ ।୧ ।
ସୁଗ୍ରୀବ ଅଙ୍ଗଦ ବିଭୀଷଣ ସହ କରିଣ ଶ୍ରୀରାମ ମନ୍ତ୍ରଣା
ଲଙ୍କା ନଗରକୁ ଯିବା ପାଇଁ ମାର୍ଗ ପ୍ରଦାନେ କରିଲେ ପ୍ରାର୍ଥନା
ସାଗରେ, ଦିନ ତିନି ନିଷ୍ଠାରେ ରହି,
ମୂଢ଼ ଜଳନିଧି ବିନୟ କି ବୁଝେ ବିଚାରେ ଦୁର୍ବଳତା ଏହି ।୨ ।
କ୍ରୋଧରେ ଆରକ୍ତ ହେଲା ପ୍ରଭୁ ନେତ୍ର ସାରଙ୍ଗ ଉଠାଇ ହସ୍ତରେ
ମନ୍ତ୍ରୀତ କରିଣ ଭୟଙ୍କର ବାଣ ଆକର୍ଣ୍ଣ ଗୁଣ ଟାଣି ଧିରେ
ବୋଲନ୍ତି, ଦେଖ ସମସ୍ତ ପ୍ରାଣୀକୁଳ,
ରଘୁକୁଳୋଦ୍ଭବ ଦଶରଥ ସୁତ ଶ୍ରୀରାମ ପରାକ୍ରମ ବଳ ।୩ ।
ମୂର୍ଖ ମହୋଦଧି ବାଣାଘାତେ ମୋର ସୁଖାଇ କରିବଇଁ ନିସ୍ୱ
ବାନର ଭଲ୍ଲୁକ ପାଦେ ପାର ହେବେ ଦେଖିବ ନେତ୍ରେ ସାରା ବିଶ୍ୱ
ଭାଙ୍ଗିବି, ବଢ଼େଇ ଅଧୁନା ଦଣ୍ଡିବି,
ସବଳେ ନିର୍ବଳ ଚିନ୍ତିବାର ଫଳ ଦେଇ ଅହଙ୍କାର ହରିବି ।୪ ।
ଅଚିନ୍ତ୍ୟ ଶକତି ସଂପନ୍ନ ଶ୍ରୀରାମ ଗୁଣର ଟଙ୍କାର ଶବଦେ
ସସାଗର ଧରା କମ୍ପି ପରବତେ ହେଲେ ନାବେ ଯେହ୍ନେ ସମୁଦ୍ରେ
ସବିତା, ଥାଉଣୁ ଆକାଶେ ପ୍ରକାଶ,
ଦଶଦିଶ ଘୋର ତାମସେ ବୁଡ଼ିଲା ଅନ୍ତରୀକ୍ଷୁ ପଡ଼େ କୁଳୀଶ ।୫ ।
ଶବଦେ କର୍କଶ ଭୀତ ଚତୁର୍ଦ୍ଦଶ ଭୁବନ ବାସୀଏ ହୋଇଲେ
ମର୍ଯ୍ୟାଦା ତ୍ୟାଗିଣ ସହସ୍ର ଯୋଜନ କ୍ଷୁବ୍ଧ ଅବ୍ଧି କୂଳ ଲଙ୍ଘିଲେ
ବ୍ୟାକୁଳ, ହୋଇଲେ ଜଳ ଜନ୍ତୁଗଣ,
ରତ୍ନ ଉପହାର ଧରିଣ ସାଗର ଶ୍ରୀରାମେ ନମିଲା ଆସିଣ ।୬ ।
ସୁଗ୍ରୀବଙ୍କ ମିତ୍ର ପରମ ପବିତ୍ର ଜାନକୀ ପତି ନବଘନ
ଦୟାର ସାଗର କରୁଣା ଆଳୟ କମଳ ପଲ୍ଲବ ନୟନ
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାବ୍ଧି ଦୀନଜନେ କ୍ଷମ ।୭ ।
ସଂସାରର ସାର ନିଗମ ବିବୃତ ଧର୍ମ ଅବତାର ପୁରୁଷ

ହୃଦ ଭୁମିଚାରୀ ସଦାନିର୍ବିକାର ସୁଖସିନ୍ଧୁ ସାରଭୂଜେଶ
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାଦ୍ଧି ଦୀନଜନେ କ୍ଷମ ।୮ ।
ହେ ଲକ୍ଷ୍ମୀ ବିଳାସ ଜଗତ ନିବାସ ଭୂଦେବ ଧ୍ୟାୟନ୍ତି ଯାହାରେ
ଶରଦ୍ବିନ୍ଦୁ ହାସ୍ୟ ବାଳୀବିଧ୍ୱଂସକ ଭୂବନ ପ୍ରକାଶେ ଦୟାରେ
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାଦ୍ଧି ଦୀନଜନେ କ୍ଷମ ।୯ ।
ପୁଷ୍ପମାଲ୍ୟଧାରୀ ସର୍ବଗୁଣାଗୁଣ ସାଗର ରସାଳ ବଚନ
ସପ୍ତବନ୍ଧନର ଜାଲହାରୀ ସୁର ରକ୍ଷକ ଅସୁର ଶମନ
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାଦ୍ଧି ଦୀନଜନେ କ୍ଷମ ।୧୦ ।
ଦେହାନ୍ତର ଜ୍ଞାନ ସମଦର୍ଶୀ ବିଜ୍ଞ ସମ୍ମାନର ସରିତ ପତି
ଦ୍ରୁତ ଅନୁଗ୍ରହ କାରୀ କରି ଯାନ ଭୟାନ୍ତକାରୀ ରଘୁପତି
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାଦ୍ଧି ଦୀନଜନେ କ୍ଷମ ।୧୧ ।
ହେ ଶ୍ୟାମାଭିରାମ ନୟନାଭିରାମ ଗୁଣାଭିରାମାଧିନାୟକ
ବଚସାଭିରାମ ହେ ବିଶ୍ୱ ପ୍ରଣମ୍ୟ ଭକ୍ତେଚ୍ଛାପୂରଣ କାରକ
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାଦ୍ଧି ଦୀନଜନେ କ୍ଷମ ।୧୨ ।
ହେ ଲୀଳା ଶରୀର ରଣରଙ୍ଗଧିର ବିଶ୍ୱୈକ ବୀର ସଦାନନ୍ଦ
ରଘୁବଂଶ ହାର ସ୍ୱର ଯା' ଗମ୍ଭୀର ଯୁକ୍ତିଜିତ ଆନନ୍ଦକନ୍ଦ
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାଦ୍ଧି ଦୀନଜନେ କ୍ଷମ ।୧୩ ।
ଖଳଜନେ ଭୀତ ସୁଜନେ ବିନୀତ ସ୍ୱକୁଳ ପ୍ରଦୀପ ଲୋକେଶ
ଭକ୍ତରେ ନିକଟ ବଚନୁ ଅତୀତ ଅବର୍ଣ୍ଣନନୀୟ କ୍ଷିତିଶ
ଶ୍ରୀରାମ, ପରମ ଚରଣେ ପ୍ରଣାମ,
ଘେନାକର ପ୍ରଭୁ ପବିତ୍ର ହୃଦୟେ କ୍ଷମାଦ୍ଧି ଦୀନଜନେ କ୍ଷମ ।୧୪ ।
ସୃଷ୍ଟି ସଂରଚନା ସମୟରେ ପ୍ରଭୁ ମୋତେ ଗଢ଼ିଛ ଜଡ଼ କରି
ଜଡ଼ତା ପ୍ରତି ମୋ ନ ଦେଇଣ ଦୃଷ୍ଟି ଉଦ୍ଧାର ମୋତେ ହେ ଶ୍ରୀହରି
ସୀତେଶ, କୃପାକରି କ୍ଷମା ପ୍ରଦାନ,
ତୁମ୍ଭ ଦରଶନେ ନିସ୍ତରିଲି ପ୍ରଭୁ ଧନ୍ୟ ହେଲା ମୋର ଜୀବନ ।୧୫ ।
ସେନା ମଧ୍ୟେ ଦୁଇ ଶିଳ୍ପକଳା ଜ୍ଞାନୀ ଛନ୍ତି ନଳ ନୀଳ ବାନର

ଋଷି ଆଶୀର୍ବାଦେ ଭାସିବ ପଥର କର ପରଷରେ ତାଙ୍କର
ସୁନ୍ଦର, ସେତୁ ଦେବେ କରି ନିର୍ମାଣ,
ସହାୟତା ମୁହିଁ କରିବି ଏ କାର୍ଯ୍ୟେ ମର୍ଯ୍ୟାଦା ମୋ ହେବ ରକ୍ଷଣ ।୧୬ ।
ଅନନ୍ତ ସମୟ ପରିଯନ୍ତେ ତୁମ୍ଭ କୀର୍ତ୍ତି ଗାଇବେ ନରଗଣ
ସଂସାର ମଳାପ ହାରିଣୀ ଏ ଖ୍ୟାତି ସଂସାରେ ହେବ ଦୀପ୍ତମାନ
ଶ୍ରୀରାମ, ସକଳେ ରଟିବେ ସୁନାମ,
ଚଉଦ ଭୁବନେ ପ୍ରସରିବ ଯଶ ରାଘବ ସ୍ୱୀକାର ପ୍ରଣାମ ।୧୭ ।
ବରୁଣ ପ୍ରାର୍ଥନା ଶ୍ରବଣେ ଲକ୍ଷ୍ମଣ ଅଗ୍ରଜ ହୋଇଲେ ଆନନ୍ଦ
ଧନୁର୍ବାଣ କ୍ରୋଧେ ରଖି ନିୟନ୍ତ୍ରଣେ ଧିରେ ହସି ଆନନ୍ଦ କନ୍ଦ
ଶ୍ରୀରାମ, ଆଜ୍ଞା ଦେଲେ ସେତୁ ନିର୍ମାଣେ,
ଜୟ ସୀତାରାମ ଜୟ ଶ୍ରୀଲକ୍ଷ୍ମଣ ଘୋଷ ଗୁଞ୍ଜରିଲା ଗଗନେ ।୧୮ ।
ଜୟ ଧ୍ୱନି ସହ ଭଲ୍ଲୁକ ବାନରେ ନଳ ଓ ନୀଳ ନେତୃତ୍ୱରେ
ଉତ୍ସାହ ସହିତ ଆନନ୍ଦ ମନରେ ନିବେଶିଲେ ମନ କାର୍ଯ୍ୟରେ
ବନ୍ଧନେ, ସେତୁ ଜଳନିଧି ଉପରେ,
ଲମ୍ଫଦେଇ ଉର୍ଦ୍ଧ୍ୱେ ଉପାଡ଼ି ଆଣିଲେ ପର୍ବତ ତ୍ୱରିତ ବେଗରେ ।୧୯ ।
ହରଷିତ ମନେ ପବନ କୁମାର ଆଣି ହସ୍ତେ ବୃକ୍ଷ ପର୍ବତ
ନଳନୀଳଙ୍କର ସଂକେତେ ସାଗରେ ରଖି ହୁଅନ୍ତି ଉଲ୍ଲସିତ
ମାରୁତି, ମରୁତ ବେଗରେ ଗମନ୍ତି,
ଭଲ୍ଲୁକ ବାନରେ ପ୍ରଭୁଙ୍କ କାର୍ଯ୍ୟରେ ପ୍ରୋତ୍ସାହିତ ମୋଦେ କରନ୍ତି ।୨୦ ।
ପବନ କୁମାର ଅଧ୍ୟକ୍ଷତା ବଳେ ଅଥକ ପରିଶ୍ରମ କରି
ପ୍ରଥମ ଦିବସେ ଦେଖିଲେ ସମସ୍ତେ ନଳନୀଳ ଶିଳ୍ପ ଚାତୁରୀ
ଚଉଦ, ଯୋଜନ ଦୀର୍ଘ ଚୌଡ଼ା ଦଶ,
ସେତୁ ନିରିମିତ ହୋଇଲା ସାଗରେ ପାବନୀ ନ ହେଲେ ସନ୍ତୋଷ ।୨୧ ।
ଦ୍ୱିତୀୟ ଦିବସେ ବାନର ସଇନେ କଲେ ଅଧିକ ପ୍ରୋତ୍ସାହିତ
ପ୍ରତ୍ୟେକ ସୈନିକ ପାଶେ ପହଞ୍ଚିଣ ପ୍ରଶଂସା କରିଲେ ବହୁତ
ପର୍ବତ, ବୃକ୍ଷ ସ୍ୱୟଂ ନେବାର କାଳେ,
ଶୌର୍ଯ୍ୟ ବୀର୍ଯ୍ୟ ଶ୍ରମ ଲଗନ ପ୍ରଶଂସା ଶୁଣି ପୁଲକିତ ସକଳେ ।୨୨ ।
ଦ୍ୱିତୀୟ ଦିବସେ ବିଂଶ ଯୋଜନର ଦୀର୍ଘ ସେତୁ ହେଲା ନିର୍ମାଣ
ତଥାପି ସନ୍ତୋଷ ନ ହେଲେ ମନରେ ଭକ୍ତି ମୂରତୀ ହନୁମାନ
ଜାନକୀ, ମୁଖ ଦିଶଇ ଜଳଜଳ,
ମଳିନ ରୂପଟି ଦିଅଇ କଷଣ ମାରୁତି ହୁଅନ୍ତି ବିକଳ ।୨୩ ।
ମାତା ସୀତାଙ୍କର ବନ୍ଧନ୍ରୁ ମୁକତି ରାବଣ ଇହ ଜନ୍ମୁ ମୁକ୍ତି

ଦରଶନେ ବ୍ୟଗ୍ର ପବନ ନନ୍ଦନ ଶ୍ରୀଘ୍ର ସେତୁ ନିର୍ମାଣେ ଚିନ୍ତି
ପ୍ରଶଂସା, ମୁକ୍ତ କଣ୍ଠେ ଉଚ୍ଚେ କରନ୍ତି,
ସେତୁ ନିର୍ମାଣରେ ନଳନୀଳ ତନୁ ମନ ଯେଣୁ ଲଗାଇଛନ୍ତି ।୨୪ ।
ତୃତୀୟ ଦିବସେ ଏକବିଂଶାଧିକ ଯୋଜନ ସେତୁ ହେଲା ପୂର୍ଣ୍ଣ
ପ୍ରଭୁପ୍ରାଣ ହନୁ ମାନଙ୍କ ତଥାପି ସନ୍ତୋଷ ନ ହୋଇଲା ମନ
ମାରୁତି, ଗତିବେଗ କଲେ ବର୍ଦ୍ଧନ,
ଚତୁର୍ଥ ଦିବସେ ନିର୍ମାଣ ହୋଇଲା ଅଧିକ ଦ୍ୱାବିଂଶ ଯୋଜନ ।୨୫ ।
ପଞ୍ଚମ ଦିବସ ପ୍ରାତଃକାଳେ ସର୍ବେ କରି ଏକତ୍ରିତ ମାରୁତି
ବୋଲିଲେ ତୁମ୍ଭର ସୌଭାଗ୍ୟ ଶ୍ରୀରାମ କାର୍ଯ୍ୟେ ଲଗାଇଛ ଶକତି
ଜୀବନ, ସଫଳ ହୋଇଲା ତୁମ୍ଭର,
ଇନ୍ଦ୍ରାଦି ଦେବତା ନିମନ୍ତେ ଦୁର୍ଲଭ ପ୍ରାପ୍ତ କଲ ସୁଅବସର ।୨୬ ।
ଲଙ୍କା ତଟ ଯାଏଁ ତେଇଶ ଯୋଜନ ରହିଛି ସେତୁ ଅବଶିଷ୍ଟ
ସାଗର ସେପାରେ ଲଗାଇବା ଆଜି ନ ଚିନ୍ତି ପରିଶ୍ରମ କଷ୍ଟ
ମନକୁ, ଦୃଢ଼ କର ହେ ବୀରଗଣ,
ଭଲ୍ଲୁକ ବାନର ନୁହନ୍ତି ସାମାନ୍ୟ ଆଜି ଜ୍ଞାତ ହେବ ରାବଣ ।୨୭ ।
ହୋଇ ଉଲ୍ଲସିତ ଉତ୍ସାହ ସହିତ ପୁଲ୍ଲକିତ ମନେ ସରବେ
ଜୟ ସୀତାରାମ ଜୟ ଶିରିରାମ ଜୟଘୋଷ କରି ଗରବେ
ପର୍ବତ, ଆଣିବା ପାଇଁ ଗଲେ ଚଳି,
ଦକ୍ଷିଣେ ପର୍ବତ ଅଭାବକୁ ଦେଖି ମାରୁତି ହିମାଳୟେ ମିଳି ।୨୮ ।
ଉତ୍ତରାଖଣ୍ଡରେ ଦେଖି ଦ୍ରୋଣାଚଳ ସପତ କୋଶ ସୁବିସ୍ତୃତ
ଶିଖର ଗୁଡ଼ିକ ସେତୁ ପ୍ରସ୍ତୁତି ନିମନ୍ତେ ଚିନ୍ତିଣ ଉପଯୁକ୍ତ
ମାରୁତି, ଗୋବର୍ଦ୍ଧନ ନାମେ ଶିଖର,
ସମସ୍ତ ଶକତି ଲଗାଇଣ ଟେକି ନ ପାରି ହୋଇଲେ ଆତୁର ।୨୯ ।
ଶ୍ରୀରାମ ଭକତ ବୀର ହନୁମନ୍ତ ପ୍ରଭୁ ଧ୍ୟାନ ଯହୁଁ କରିଲେ
ପ୍ରଭୁଙ୍କ ସ୍ୱରୂପ ସାକ୍ଷାତ୍ ବିଗ୍ରହ ଗୋବର୍ଦ୍ଧନ ବୋଲି ଜାଣିଲେ
ଗୋଲୋକୁ, ହେତୁ ପ୍ରଭୁ ଲୀଳା ଦର୍ଶନ,
ଦେବତା ଗଣଙ୍କ ସହିତ ମର୍ତ୍ତ୍ୟରେ କରିଛନ୍ତି ଅବତରଣ ।୩୦ ।
ମହିମା ବିଦିତ ହୋଇ ବାୟୁ ସୁତ ଚରଣେ ଥୋଇଣ ମସ୍ତକ
ବିନୟର ସହ ଦୁଇ ହସ୍ତ ଯୋଡ଼ି ନମିଲେ ଆଦର ପୂର୍ବକ
ବୋଲିଲେ, ପାବନତମ ଗିରିରାଜ,
ପ୍ରଭୁ ଚରଣରେ ନେଇ ଉପସ୍ଥିତ କରିବି ଅଭିମାନ ତେଜ ।୩୧ ।
ମଙ୍ଗଳ ମୂରତି ପ୍ରଭୁ ଶିରିପତି କରିବ ଦୁର୍ଲଭ ଦର୍ଶନ

ଶାନ୍ତି ନିକେତନ ଚରଣ କମଳ ପରଶରେ ହୋଇବ ଧନ୍ୟ
ନିର୍ମାଣି, ସେତୁ ପାର ହେବେ ସାଗର,
ମର୍ତ୍ତ୍ୟ ଆଗମନ ହୋଇବ ସଫଳ କାମନା ପୁରିବ ତୁମର ।୩୨ ।
ପବନ କୁମାର ବଚନ ଶ୍ରବଣ ଶ୍ରବଣେ କରି ଗୋବର୍ଦ୍ଧନ
ଶ୍ରୀଭଗବାନଙ୍କ ଦୁର୍ଲଭ ଦର୍ଶନ ସ୍ପର୍ଶନ କଳ୍ପନାରେ ମଗ୍ନ
ଭାଷିଲେ, ହୋଇଣ ଶ୍ରୀହରିତ ଗିର,
ଯଥାଶୀଘ୍ର ପ୍ରଭୁ ସମୀପକୁ ନିଅ ଦୟାକର ବାତ କୁମର ।୩୩ ।
ଅହୈତୁକୀ କୃପା କେବେ ନ ଭୁଲିବି ଋଣୀ ସଦାକାଳେ ରହିବି
ପରମ ଭକତ ହନୁମାନ ଦୟା କଳପ କଳପ ଘୋଷିବି
ମାରୁତି, କୃପାକର କୃପାସାଗର,
କୃପା ସ୍ୱରୂପଙ୍କ ଦର୍ଶନ କରାଅ ଧନ୍ୟକର ଜନ୍ମ ମୋହର ।୩୪ ।
ସରଳତା ସହ ପୁଷ୍ପତୁଲ୍ୟ ତୋଳି ବାମ ହସ୍ତେ କରି ଧାରଣ
ତ୍ୱରିତ ବେଗରେ ଆକାଶ ଦେଶରେ ଚଳିଲେ ସ୍ଥିର କରି ମନ
ପଞ୍ଚମ, ଦିନର ତେଇଶ ଯୋଜନ,
ସେତୁର ନିର୍ମାଣ ତେଣେ ସମାପନ ହୋଇଲା ସୁଖି ସର୍ବଜନ ।୩୫ ।
ତତ୍‌କ୍ଷଣେ ଶ୍ରୀରାମ ଆଜ୍ଞା ପ୍ରଚାରିତ ହୋଇ ପ୍ରସରିଲା ସର୍ବତ୍ର
ଯିଏ ଯହିଁ ଅଛ ପ୍ରଭୁଙ୍କ ସମୀପେ ତତ୍କାଳେ ହୁଅ ଉପସ୍ଥିତ
ତେଜିଣ, ବୃକ୍ଷ ଶୈଳ ଡାଳ ପର୍ବତ,
ସେତୁ ନିରିମାଣ ହୋଇଗଲା ପୂର୍ଣ୍ଣ ଲଙ୍କା ବ୍ରଜେ ହୁଅ ପ୍ରସ୍ତୁତ ।୩୬ ।
ବେଗବାନ ବୀର ବାନର ଦଉଡ଼ି ରାମ ଆଜ୍ଞା ସଭିଙ୍କୁ ଦେଲେ
ଯହିଁ ଯାହା ହସ୍ତେ ଯାହା ଥିଲା ତହିଁ ଫିଙ୍ଗିଣ ସରବେ ଆସିଲେ
ଆନନ୍ଦ, ଚଉଦିଗେ ଗଲା ସଞ୍ଚରି,
ଖୁସିରେ ନାଚିଲେ ଭଲ୍ଲୁକ ବାନରେ ଆନନ୍ଦ ସମ୍ଭାଳି ନ ପାରି ।୩୭ ।
ଗୋବର୍ଦ୍ଧନ ଧରି କେଶରୀ କିଶୋର ସେ କାଳେ ଥିଲେ ବ୍ରଜାକାଶେ
ପ୍ରଭୁ ଆଜ୍ଞା ଶୁଣି ତତ୍‌କ୍ଷଣେ ଥୋଇଲେ ହସ୍ତୁ ଗୋବର୍ଦ୍ଧନ ଗିରୀଶେ
ଉଦାସ, ମୁଖ ତା'ର କରି ଦର୍ଶନ,
ଶୁଣ ଗିରି ଗୀର ଶ୍ରୀରାମେ ମୋହର ରଖିବେ ଏ ସତ୍ୟ ବଚନ ।୩୮ ।
ଥାଅ ନିଶ୍ଚିନ୍ତରେ ପ୍ରଭୁଙ୍କ ପୟରେ ଜଣାଇ ତୁମ୍ଭ ନିବେଦନ
ଅଭିଷ୍ଟ ତୁମର କରିବି ପୂରଣ ଆଶ୍ୱାସନା ଦେଇ ଏସନ
ମାରୁତି, ପ୍ରଭୁ ପାଶେ ହୋଇ ହାଜର,
ଚରଣେ ପ୍ରଣମି ହସ୍ତ ଯୋଡ଼ି ପାର୍ଶ୍ୱେ ଢ଼ାଳିଲେ କରୁଣା ନଜର ।୩୯ ।
ସର୍ବଜ୍ଞ ଈଶ୍ୱର ପୁଚ୍ଛିଲେ ଅଭୀଷ୍ଟ ମନ କଥା ତାହାର ଜାଣି

ବିନମ୍ର ଭାବରେ ଅଞ୍ଜନା କୁମର ଭଣେ ଗୋବର୍ଦ୍ଧନ ମାଗୁଣି
ପ୍ରଭୁ ହେ, ପରମ ପାବନ ଚରଣ,
ସ୍ପର୍ଶନ ଦର୍ଶନ ପବିତ୍ର ସ୍ୱରୂପ ଦେଇଥିଲି ମୁହିଁ ବଚନ ।୪୦ ।
ଭାନରଙ୍କ ଠାରୁ ପ୍ରଭୁଙ୍କର ଆଜ୍ଞା ଶ୍ରବଣେ ଶୁଣୁଣୁ ଥୋଇଛି
ବ୍ରଜ ଭୂମି ପରେ ଶୈଳ ଗୋବର୍ଦ୍ଧନ ଉଦାସ ହୃଦୟେ ରହିଛି
ଦେଇଛି, ପୁନଶ୍ଚ ତା'ରେ ଆଶ୍ୱାସନ,
କୃପା ହେଲେ କଣେ ପୂର୍ଣ୍ଣ ହେବ ମନ କାମନା ତା'ର ଭକ୍ତପ୍ରାଣ ।୪୧ ।
ସର୍ବ ଅନ୍ତର୍ଯ୍ୟାମୀ ଭକତ ବତ୍ସଳ ଶ୍ରୀରାମ ହନୁମାନ ଗୀର
ଶୁଣିଣ ମଧୁରେ ଭାଷିଲେ ହରଷେ ତୁମ ବାକ୍ୟ ହିଁ ବାକ୍ୟ ମୋର
ଅବଶ୍ୟ, ପ୍ରାପ୍ତି ହେବ ତାହାରେ ମୋରେ,
ମୟୂର ମୁକୁଟ ବଂଶୀ ବିଭୁଷିତ ମନୋହର ରୂପ ଦ୍ୱାପରେ ।୪୨ ।
ଆଶ୍ୱାସନା ସହ ଗନ୍ଧମାର୍ଦ୍ଦନରେ ଦିଅ ଏହି ଖୁସି ଖବର
ବ୍ରଜବାଳ ସଙ୍ଗେ ଖେଳିବି ତା' ଅଙ୍ଗେ ପତ୍ର ପୁଷ୍ପ ନାଇ ତାହାର
ଶରୀରେ, ଧୂଳି ମାଟି ତା'ର ଧରିବି,
ଫଳ ମୂଳ ଖାଇ କୋଳେ ନାଚି ଗାଇ ସପ୍ତ ଦିନ ହସ୍ତେ ଟେକିବି ।୪୩ ।
କୃପା ମୂର୍ତ୍ତି ପ୍ରଭୁ ଶ୍ରୀରାମଙ୍କ ଜୟ ଉଚ୍ଚାରିଣ ଆନନ୍ଦ ମନେ
ଗୋବର୍ଦ୍ଧନ ପାଶେ ପ୍ରଭୁ ହନୁମାନ ମିଳିବାକୁ ଉଡ଼ି ଗଗନେ
ଚଳିଲେ, ପ୍ରଦାନିଲେ ସୁଖ ସନ୍ଦେଶ,
କାମନା ତୁମର ପୂରାଇବେ ପ୍ରଭୁ କହିଛନ୍ତି ରଘୁ ଈଶ ।୪୪ ।
ଧନ୍ୟ ଗୋବର୍ଦ୍ଧନ ଭକ୍ତ ପରାଧିନ ପ୍ରଭୁ ଦେଲେ ତୁମ୍ଭଙ୍କୁ ବାଣୀ
ସହସ୍ର ଜନମ ନିଅନ୍ତି ସାଧୁଏ ଯେ ପ୍ରଭୁ ବାଣୀ ପରିମାଣି
ଆରାଧି, ରୂପରେ ତୁମ୍ଭଙ୍କୁ ଦିଶିବେ,
ତୁମ୍ଭରି ବକ୍ଷରେ ବାଳକ୍ରୀଡ଼ା କରି ଗୋପବାଳାବାଳେ ରସିବେ ।୪୫ ।
ପତ୍ର ପୁଷ୍ପ ଜଳ ତୃଣଲତା ଫଳ ଶିଳାଦି ପ୍ରେମାସିକ୍ତ କରି
ଗୋପବାସୀଗଣେ ରଖିବେ ନିର୍ଭୟେ ବାମକରେ ତୁମକୁ ଧରି
ଶୋଭିବ, ପ୍ରଭୁ କରସ୍ପର୍ଶ ଲଭିବ,
ପରିକ୍ରମା ତୁମ୍ଭ ମହାତ୍ମା ସନ୍ୟାସୀ ମାନଙ୍କ କଳ୍ମଷ ହରିବ ।୪୬ ।
ଔନୁମାନ ମୁଖୁ ଶୁଣି ଗୋବର୍ଦ୍ଧନ ଭକ୍ତି ସମାଧି କଲେ ପ୍ରାପ୍ତ
ଭାରମ୍ବାର ଭକ୍ତିପୁତ ହୃଦୟରେ ପ୍ରଣମିଲେ ପାଇ ସଂବିତ
ମାରୁତି, ତୁମ୍ଭ ଦରଶନର ଫଳ,
ପରମ ପାବନ ହେ ପାବନି ତୁମେ ଦର୍ଶନୁ ପାଇଲି ସକଳ ।୪୭ ।
ପ୍ରବୋଧି ସ୍ନେହରେ ଗୋବର୍ଦ୍ଧନ ଶୈଳେ ମରୁତ କୁମର ଲେଉଟି

ପ୍ରଭୁ ଶ୍ରୀରାମଙ୍କ ଚରଣେ ମିଳିଲେ ଚରଣେ ଛୁଆଁଇ ଶିରଟି
ବୋଇଲେ, ଧନ୍ୟ ଭକ୍ତ ବନ୍ଧୁ ନାମଟି,
ଦିଅନ୍ତୁ ଆଦେଶ ଯିବା ଲଙ୍କାପୁର ସମ୍ପୁର୍ଣ୍ଣ ହୋଇଲା ସେତୁଟି ।୪୮ ।
ଶତ ଯୋଜନ ଦୀର୍ଘ ଦଶଯୋଜନ ପ୍ରସ୍ଥ ବିଶ୍ୱେ ଏହି ବିଶାଳ
ଚରଣ ପରଶେ କରନ୍ତୁ ହରଷେ ଧନ୍ୟ ଏ ଦୀନ ନଳନୀଳ
ହସ୍ତର, କରାମତି ହେ ମହାମତି,
ତୁମ୍ଭ ଦୟାବଳେ ମୂର୍ତ୍ତିମନ୍ତ ଏହି ପାଦେ ଘେନ ଆମ୍ଭ ପ୍ରଣତି ।୪୯ ।
ସେତୁର ସ୍ୱରୂପ ଦେଖି ବିଶ୍ୱରୂପ ଚକିତ ମୁଦ୍ରାରେ ଭାଷିଲେ
ଶିଳା ଶୈଳେ ବନେ[୧] ବନ[୨] ପ୍ରାୟ କେହ୍ନେ ବନ[୩]ର ପୃଷ୍ଠରେ ଭାଷିଲେ ୧-ବୃକ୍ଷ ସମୂହ, ୨-ପୁଷ୍ପଗୁଚ୍ଛ, ୩-ଜଳ
ବାନରେ, ବିନୟେ ବିନୟ କରିଲେ,
ପ୍ରଭୁ ତୁମ୍ଭ ରାମ ନାମର ମହିମା ଶୈଳେ ଶୈବାଳିକା ହୋଇଲେ ।୫୦ ।
କୌତୁହଳେ ଜଳେ ଦୁଇତିନି କ୍ଷୁଦ୍ର ଶିଳା ରଖନ୍ତେ ସୀତାପତି
ସହଜେ ସାଗର ଜଳରେ ବୁଡ଼ିଲେ ଦେଖନ୍ତେ କରିଲେ ଆପତ୍ତି
କେସନ, କହୁଛ ସମସ୍ତେ ଏପରି,
ନାମ ମୋ ଧରନ୍ତେ ଭାସଇ ପଥର ସ୍ୱୟଂ ହସ୍ତେ ବୁଡ଼େ କିପରି ।୫୧ ।
ଦୁଇ ହସ୍ତ ଯୋଡ଼ି ଆଞ୍ଜନେୟ ବୋଲେ ସଂସାର ଧାରଣ କରତା
ଯା'ରେ ଦେବେ ଛାଡ଼ି ରହିବ ନ ବୁଡ଼ି ଶୁଣି ନାହିଁ ଏହ୍ନେ ବାରତା
ପ୍ରଭୁ ହେ, ଜଗତ ଆଧାର ଆପଣ,
ହସ୍ତରୁ ପତିତ ହେବ ଯେ ପତିତ ନିଶ୍ଚିତ ଗତି ତା' ଏସନ ।୫୨ ।
ମନ୍ଦେ ହସି ଖୁସି ହୋଇ ରଘୁ ଶଶି ବିଶାଳ ସଇନ୍ୟ ବାହିନୀ
ସାଗର ଲଙ୍ଘିଲେ ଭଲ୍ଲୁକ ବାନର ପ୍ରେମବଶେ ସାଥିରେ ଘେନି
ସୁବେଳ, ପରବତେ ଡେରା ପକାଇ,
ଯାଇଣ କୋମଳ ପତ୍ର ଶଯ୍ୟା ପରେ ଶରୀରକୁ ଦେଲେ ଲୋଟାଇ ।୫୩ ।
ପ୍ରଭୁ ହନୁମନ୍ତ କୃପାରେ ହୋଇଲା ଊନତ୍ରିଂଶ ଅଧ୍ୟାୟ ଶେଷ
ସେତୁ ବନ୍ଧ ବନ୍ଧା ବୃତାନ୍ତର ବନ୍ଧା ପ୍ରାକୃତ ବନ୍ଧରେ ସୁରେଶ
ସାରିଲା, ସାଗର ଲଙ୍ଘନ ଚରିତ,
ଭବ ସାଗରର ଲଙ୍ଘନେ ସାମର୍ଥ୍ୟ ଦିଅ ଘେନି ମୋ ପ୍ରଣିପାତ ।୫୪ ।



# ତ୍ରିଂଶ ଛାନ୍ଦ

## ରାଗ-ଭୈରବ

(ରାମ ଓ ରାବଣ ଯୁଦ୍ଧାରମ୍ଭ)

ବକ୍ରତୁଣ୍ଡ ବିନାୟକ ଚରଣେ ବନ୍ଦନ
କରୁଛି ଯୋଡ଼ିଣ କର କର ହେ କଲ୍ୟାଣ ।
ହନୁମାନ ଚରିତ ଏ ଭକ୍ତି ରସେ ପୂର୍ଣ୍ଣ
ଶ୍ରବଣେ କୁହ ସୁମନେ ଘେନନ୍ତୁ ସୁମନ ।୧ ।
ମହାମତି ଜାମ୍ବବାନ ପରାମର୍ଶ ମାନି
ମାନି ରାବଣେ ମନାଇବା ମନେ ଗୁଣି ।
ଗୁଣି ଯୁବରାଜ ଅଙ୍ଗଦଙ୍କ ଗୁଣ ଜାଣି
ଜାଣିବା ବନ୍ତେ ପେଶିଲେ ପ୍ରଭୁ ରଘୁମଣି ।୨ ।
ଶିର ପରେ ନାଚୁଥିଲା ମୃତ୍ୟୁ ରାବଣର
ଶିରକୁ ଲବେ ନ ନେଲା ଗୀର ଅଙ୍ଗଦର ।
ଶିର ଜାଣି ଚିଆଁ ଦେବା ପାଇଁ ରଘୁବୀର
ଶିର ଛେଦନେ ତାହାର ହୋଇଲେ ବାହାର ।୩ ।
ଘୋର ତର ପ୍ରାରମ୍ଭ ଯେ ସମର ହୋଇଲା
ଅସୁର ବାନର ମଧ୍ୟେ ବୈର ଘନେଇଲା ।
ଉଭୟ ପାଶେ ବ୍ୟଗ୍ରତା ପ୍ରକାଶ ପାଇଲା
ରଣ ଦରଶନେ କାଳ ଆନନ୍ଦ ହୋଇଲା ।୪ ।
ଶୂଳ ଧନୁ ଗଦା ଧନୁର୍ବାଣ ଓ ପରଶୁ
ଶୂନ୍ୟେ ରହି ଅସୁରେ ପ୍ରହାରନ୍ତି ଆକାଶୁ ।
ଶୂନ୍ୟ ହସ୍ତେ ବାନରେ ଖଣ୍ଡିଲେ ଆସୁ ଆସୁ
ସୁଉଚ୍ଚ ବୃକ୍ଷ ଆଘାତେ ରକ୍ଷେ କଲେ ଖାସୁ ।୫ ।
ମାୟାରେ ହୋଇ ଅଦୃଶ୍ୟ ରାବଣର ବୀରେ
ଧୂଳି, ଅସ୍ଥି, ରକ୍ତ, ମାଂସ ବର୍ଷାନ୍ତି ମହୀରେ ।
ମାୟାପତି ଦେଖି ବ୍ୟାକୁଳିତ କପିବୀରେ
ଧୂଳି କଲେ ବାଣେ ମାୟା ନିଜର ମହୀ*ରେ ।୬ । *ବୃଦ୍ଧି, ମହତ୍ତ୍ୱ
ଅତ୍ୟଧିକ ଉତ୍ସାହରେ ବାନର ଭଲ୍ଲୁକ
କରିଲେ ସମର ସରବେ ହୋଇଣ ଏକ ।
କୁମୁଦ, ସୁଗ୍ରୀବ ଧରି ସଇନ ଅନେକ
କରନ୍ତି ରଣ ଗବାକ୍ଷ ଦେଇ ରାମ ଡାକ ।୭ ।
ମନ୍ତ୍ରୀମାନଙ୍କ ସହିତ ବୀର ବିଭୀଷଣ

ମୈନ୍ଦ ନୀଳ ଶରଭ ଅଙ୍ଗଦ ହନୁମାନ ।
ମୁଖ୍ୟ ସୁଷେଣ ଋଷଭ ରମ୍ଭ ଜାମ୍ବବାନ
ମହାବଳୀ ଗବୟ ହର ଗନ୍ଧ ମାଦନ ।୮ ।
ଅସ୍ତ୍ରରେ ସଜ୍ଜିତ ଥିଲେ ବିଭିନ୍ନ ଅସ୍ତ୍ରରେ
ଅସ୍ତ୍ର ଶସ୍ତ୍ର ହୀନ ଯହୁଁ ଭଲ୍ଲୁକ ବାନରେ ।
ଅଟ୍ଟାଳିକା ଶୀର୍ଷ ଭାଙ୍ଗି ଅସୁରଙ୍କ ଶିରେ
ଅତର୍କିତେ ପ୍ରହାରନ୍ତି ପ୍ରଚଣ୍ଡ ବେଗରେ ।୯ ।
ମାରନ୍ତି  ଚାପୋଡ଼ା ଗାଲେ ବଜ୍ରତୁଲ୍ୟ ଗେଲେ
ମୁଷ୍ଟିକାଘାତେ କେତେଙ୍କ ଶିର ଛିଡ଼ାଇଲେ ।
ମୁଖ ଲଗାଇ ଦନ୍ତରେ ଛାତି ବିଦାରିଲେ
ମୋଡ଼ି କେତେକ ବାହୁକୁ ହସ୍ତେ ଛିଡ଼ାଇଲେ ।୧୦ ।
ଧରି କିଛି ରାକ୍ଷସଙ୍କୁ ପୋତିଲେ ରେତରେ
ଧାତିକାରେ ନେଇ ବୁଡ଼ାଇ ମାରିଲେ ଜଳେ ।
ଧକ୍କା ମାରିଣ ମାରିଲେ କେତେକ ଅସୁର
ଧାଇଁ ଗୟାଁ କଲା ଯାଏଁ ପିଟନ୍ତି କାହାରେ ।୧୧ ।
କାଳ ତୁଲ୍ୟ ହନୁମାନ ସମର ଭୂଇଁରେ
କରି ସମର ନାଶିଲେ ଅନେକ ଅସୁରେ ।
କରି ସ୍ମରଣ ନାମକୁ କିଛି ନିଶାଚରେ
କରି ଅରି ଦେଖି ହାରିଲେ ଚେତା ଭୟରେ ।୧୨ ।
ପ୍ରଜ୍ୱଳିତ ଅଗ୍ନି ସମାନ ଦିଶଇ ତେଜ
ଶୈଳ ହସ୍ତେ ଲଢ଼ନ୍ତି ଯେସନେ ମତ୍ତଗଜ ।
ଯହିଁ ବାନର ସୈନ୍ୟଙ୍କ କ୍ଷୀଣ ହୁଏ ଓଜ
ତହିଁ ଆବିର୍ଭୁତେ ପ୍ରଦର୍ଶନ୍ତି ବଳବୀର୍ଯ୍ୟ ।୧୩ ।
ଅଶ୍ୱ ସାରଥି ଦଇତ ରଥକୁ ଆକାଶେ
ଫିଙ୍ଗନ୍ତି ତୀବ୍ର ବେଗରେ ଅତ୍ୟଳ୍ପ ପ୍ରୟାସେ ।
ଅସୁରଙ୍କ ହସ୍ତ ଶିର ପଦ ଧରି ରୋଷେ
ସମୁଦ୍ରେ ଉତ୍ପଳ ପ୍ରାୟ ଫିଙ୍ଗନ୍ତି ହରଷେ ।୧୪ ।
ବହି ଆଣି ବହୁ ଅବି* ବିଦ୍ୟୁତ ବେଗରେ *ପର୍ବତ
ଦାନବ ଦଳେ ଦଳନ୍ତି ପକାଇ ଉପରେ ।
ତ୍ରାହି ତ୍ରାହି ସର୍ବତ୍ର ଦନୁଜଙ୍କ ମଧ୍ୟରେ
ହୁରି ପଡ଼ିଗଲା ଭୀତ ସର୍ବେ ହୃଦୟରେ ।୧୫ ।
ଧୂମ୍ରାକ୍ଷ ଅବନି ଅତିକାୟ ଅକମ୍ପନ

ଦେବାନ୍ତକ ତ୍ରିଶିରାନ୍ତ କଲେ ହନୁମାନ ।
ସନ୍ଦେଶ ପ୍ରାପ୍ତେ ଅଧିର ହେବାରୁ ରାବଣ
ମେଘନାଦ ଯୁଦ୍ଧେ ଗଲା ଦେଇ ଆଶ୍ୱାସନ ।୧୬ ।
ଜାଣି ମାରୁତି ବୀରତା ସମର କୌଶଳ
ଜନମାଏ ପରାକ୍ରମ ମନରେ ବିକଳ ।
ଜିଣିବା ଦୁଷ୍କର ଜାଣି ଅଞ୍ଜନାର ବାଳ
ଯାଇ ଦୂରେ ଯୁଝେ ଦେଖି ଶାଖାମୃଗ ଦଳ ।୧୭ ।
ସଂହାରିଲା ଅନେକ ବାନର ସାରାଦିନ
ସୁଗ୍ରୀବ ଅଙ୍ଗଦ ନୀଳ ନଳ ଜାମ୍ବବାନ ।
ସୁଷେଣ ଋଷଭ ଦ୍ୱିବିଦ ଗନ୍ଧମାଦନ
ଶରଭାଦି ବୀରେ କ୍ଷତାକ୍ତ କଲା ତା' ବାଣ ।୧୮ ।
ବ୍ରହ୍ମାସ୍ତ୍ରେ ରାମ ଲକ୍ଷ୍ମଣ ହୋଇଲେ ମୂର୍ଚ୍ଛିତ
ବିଭୀଷଣ ବିକଳ ମନ ହୋଇ ଅତ୍ୟନ୍ତ ।
ବିଦ୍ଧଶର ଜାମ୍ବବାନ ପାଶେ ଉପଗତ
ବିସନ୍ନେ ପୁଛିଲେ ତା'ରେ ଶରୀର ବୃତାନ୍ତ ।୧୯ ।
ଅସ୍ତ୍ରାଘାତ ଯନ୍ତ୍ରଣାସିକ୍ତ ଦେହେ ଜାମ୍ବବ
ଅତି କଷ୍ଟେ ବୋଲିଲେ ହେ ସରମା ବାନ୍ଧବ ।
ଅନ୍ୱେଷ ମାରୁତି ଦେହେ ରହିଛି କି ଯିବ
ଆଣି ପହୁଞ୍ଚାଅ ଶୀଘ୍ର ଯଦିଷ୍ଟ ସମ୍ଭବ ।୨୦ ।
ଶ୍ରବଣେ ରାବଣ ଭ୍ରାତା ହୋଇଣ ଚକିତ
ସୁଗ୍ରୀବ ଅଙ୍ଗଦ ରାମ ସୁମିତ୍ରାଙ୍କ ସୁତ ।
ସମସ୍ତେ ଥାଉଣୁ ପୁଛ କେହ୍ନେ ହନୁମନ୍ତ
ସର୍ବାଧିକ ପ୍ରେମବଶେ ଦିଶେ ବିପରୀତ ।୨୧ ।
ବାଣବିଦ୍ଧ ଜାମ୍ବବାନ ବୋଇଲେ ଉତ୍ତର
ବୀରବର ହନୁମାନ ଜିବିତ ଶରୀର ।
ବାନର ଭାଲୁ ସଇନ ଜିଇଁବାର ଦ୍ୱାର
ପବନ ସୁତ ଅମୃତ କଳସ ଆମର ।୨୨ ।
ବଞ୍ଚି ଆମେ ମୃତ ଯଦି ମୃତ ହନୁମାନ
ବଞ୍ଚିଥିଲେ ବଞ୍ଚାଇବ ସବୁରି ଜୀବନ ।
ବାୟୁ ପୁତ୍ର ବେଗଶାଳୀ ଆଶାର କିରଣ
ବଞ୍ଚାଇବ ଦୈତ୍ୟ ଆକ୍ରମଣ କରି ଶୂନ୍ୟ ।୨୩ ।
ତତକ୍ଷଣେ ଅଞ୍ଜନା ତନୟ ସେହି ସ୍ଥାନେ

ଆବିର୍ଭୁତ ହୋଇ ବୃଦ୍ଧ ଜାମ୍ବବ ଚରଣେ ।
ବିନୟ ସହିତ ପ୍ରଣମିଲେ ଭକ୍ତି ମନେ
ସ୍ୱର୍ଣେ ଦୀପ୍ତିମାନ ଜାମ୍ବବାନ ସ୍ନେହେ ଭଣେ ।୨୪ ।
ବାନର ସିଂହ ବାନରେ ରକ୍ଷା କର ଯାଇ
ତୁମ୍ଭ ବିନା ଏ କାର୍ଯ୍ୟ କରଣେ ନାହିଁ କେହି ।
ଏ ସମୟେ ବିଭୁଦତ୍ତ ବିକ୍ରମ ଦେଖାଇ
ରକ୍ଷାକର ବାନର ସଇନେ ଦୟା ବହି ।୨୫ ।
ବିକରାଳ ରୂପ ଧରି ମରୁତ ନନ୍ଦନ
ରାବଣ ସୁତ ସମ୍ମୁଖେ ଉଭାହୁଅନ୍ତେଣ ।
ବିକଟାଳ ରୂପ ସଂଦର୍ଶନେ ଛାଡ଼ି ରଣ
ଚାଲିଗଲା ନଅରକୁ ହୋଇ ମ୍ରିୟମାଣ ।୨୬ ।
ଯେତେବେଳେ ନିଦ୍ରାସନୁ ଉଠି କୁମ୍ଭକର୍ଣ୍ଣ
ଅନିଚ୍ଛା ସତ୍ତ୍ୱେ ରଣରେ କଲା ଆଗମନ ।
ଭୀତ ଭଲ୍ଲୁକ ବାନରେ କରଣେ ରକ୍ଷଣ
ମୁଷ୍ଟି ଘାତେ ପାବନି ତାରେ କଲେ ପତନ ।୨୭ ।
ଶ୍ରୀରଘୁ ନନ୍ଦନ ତା'ର ଆତ୍ମାକୁ ମୁକତି
ଦାନ କଲେ ହୋଇ ପ୍ରିତ ଦେଖି ଭ୍ରାତୃଭକ୍ତି ।
ଦଶାନନ ଯୁଦ୍ଧେ ଯେବେ ହୋଇ କ୍ରୋଧ ଅତି
ପ୍ରବେଶିଲା ସମ୍ମୁଖରେ ଭେଟିଲେ ମାରୁତି ।୨୮ ।
ଦ୍ୱନ୍ଦ୍ୱ ଯୁଦ୍ଧେ ଥରାଇଲେ ରାବଣର ହିଆ
ଅଟଳ ହିମ ଆଳୟ ପ୍ରାୟ ହୋଇ ଠିଆ ।
କାନ୍ଧେ ଧରି ରାମ ଲକ୍ଷ୍ମଣ ଦୁଇ ବାଣ୍ଡୁଆ
ପୁଷ୍ପକ ରଥ ରଥିକୁ କରିଲେ ଛାନିଆଁ ।୨୯ ।
ମାରୁତି ମରୁତ ବେଗେ ଚଳଇ ଆକାଶେ
ନିଶାକର ଶିରେ ନିଶାକର ଯେ ପ୍ରକାଶେ ।
ରମଣୀୟ ରାମ ଲକ୍ଷ୍ମଣ ସ୍ୱରୂପ ଦିଶେ
ବୈନତେୟ ପୃଷ୍ଠେ ଯେହ୍ନେ ଶ୍ରୀପତି ବିକାଶେ ।୩୦ ।
ଅଞ୍ଜନା ନନ୍ଦନ କୃପା ଫଳରେ ତିରିଶ
ହନୁମାନଚରିତାମୃତ ଅଧ୍ୟାୟ ଶେଷ ।
ହନୁମାନ କରୁଣାରେ ଭକତିର ରସ
ପିଅ ହେ ଭକତେ ସୁଖେ ପରଷେ ସୁରେଶ ।୩୧ ।



# ଏକତ୍ରିଂଶ ଛାନ୍ଦ

ରାଗ-ବିଭାସ ଗୁଜ୍ଜରୀ

(ଲକ୍ଷ୍ମଣ ଶକ୍ତିଭେଦ ଓ ହନୁମାନଙ୍କର ସଞ୍ଜିବନୀ ଆନୟନ)

ବକ୍ରତୁଣ୍ଡ ଚରଣରେ ବନ୍ଦନ କରି ଭକ୍ତିରେ
ବିନୟ ସହ ବିନୟ କରେ ଯେ,
ବାୟୁ ସୁତ ବିଷୟରେ ବିନାୟକ କୃପା ଭରେ
ବର୍ତ୍ତମାନ ମୋ କୁହ କର୍ଣ୍ଣରେ ଯେ ।୧ ।

ବାନର ରକ୍ଷ ସମର ବଢ଼ି ହେଲା ଭୟଙ୍କର
ବାସବ ଜୟୀ ରଣେ ହାଜର ଯେ,
ବିଶାଳ ଧନୁଷ ଶର ବାହୁରେ ଧରି ତୟାର
ବୀର ରାମ ଅନୁଜ ଆଗର ଯେ ।୨ ।

ଭୟାନକ ହେଲା ରଣ ଭଲ୍ଲୁକେ ଲହୁ ଲୁହାଣ
ଭୀତତ୍ରସ୍ତ ହେଲେ କପିଗଣ ଯେ,
ଭୀଷଣ ରଡ଼ି ତା ଶୁଣି ଭୂକମ୍ପ କରି ପାବନି
ଭାରି ଶୈଳେ ଫିଙ୍ଗିଲା କ୍ରୋଧେଣ ଯେ ।୩ ।

ପ୍ରାଣ ରକ୍ଷାର୍ଥେ ଅସୁର ପଳାଇ ବାରିଦ ପୁର
ପାଇଲା ଜୀବନ ଦାନ ତା'ର ଯେ,
ପର୍ବତ ଚାପେ ତାହାର ପଶିଲେ ଭୂମି ଭିତର
ପରମ ରଥ ହୟ ଆବର ଯେ ।୪ ।

ରାବଣ ପୁତ୍ର ଭୟରେ ରହେ କପି ଠାରୁ ଦୂରେ
ରଡ଼ି ଯେତେ ଆହ୍ୱାନିଲେ ତା'ରେ ଯେ,
ରାମ ଅନୁଜ ସାଥିରେ ରଣେ ନିବେଶିଣ ଘୋରେ
ରାକ୍ଷସ ଭିନ୍ନ ଶସ୍ତ୍ର ପ୍ରହାରେ ଯେ ।୫ ।

ସବୁ ଶସ୍ତ୍ର ବ୍ୟର୍ଥ ଦେଖି ସୁଅନୀତି ଉପଲକ୍ଷୀ
ସମସ୍ତ ଛଳ କପଟ ଯୋଖି ଯେ,
ସୌମିତ୍ରୀଙ୍କୁ ଆଗେ ରଖି ସେ ରାକ୍ଷସ ନରଭକ୍ଷୀ
ସତାଇଣ ହେଲା ବଡ଼ ସୁଖି ଯେ ।୬ ।

କର୍ତ୍ତେ କ୍ରୁଦ୍ଧ ହୋଇଣ କରେ ନେଇ ତୀକ୍ଷ୍ଣ ବାଣ
କଲେ ରଥ ସାରଥି ନିଷ୍ପ୍ରାଣ ଯେ,
କ୍ରୋଧେ ଉନ୍ମତ୍ତ ରାବଣ କୁମର ବୀର ଲକ୍ଷ୍ମଣ
କରଇ ଉପରେ ଆକ୍ରମଣ ଯେ ।୭ ।

ସୌମିତ୍ରୀ ଯୁଦ୍ଧ କୌଶଳ ସଂଦର୍ଶନରେ ସକଳ

ସମଝି ସ୍ଥିତି ହୋଇ ବିକଳ ଯେ,
ସରିବାରୁ ସବୁ ବଳ ସୌମିତ୍ରୀଙ୍କ ବକ୍ଷସ୍ଥଳ
ଶକ୍ତି ପେଶିଲା ରାବଣ ବାଳ ଯେ ।୮ ।
ବ୍ରହ୍ମ ପ୍ରଦତ୍ତ ସେ ଶକ୍ତି ବର ରୂପେ ଯା'ର ପ୍ରାପ୍ତି
ବଢ଼େ ଆଗେ ପାଇ ତୀବ୍ର ଗତି ଯେ,
ବଳ ପଡ଼ିଲାରୁ ଛାତି ବେହୋସେ ପଡ଼ିଲେ କ୍ଷିତି
ବଜ୍ରଜିତ ମନେ ଅତି ଖୁସି ଯେ ।୯ ।
ମୂର୍ଛିତ ଲକ୍ଷଣେ ଧରି ମୌକା ପାଇ ନେବ ହରି
ମେଘନାଦ ଧରେ କୋଳ କରି ଯେ,
ମହାମେରୁ ମେରୁ ପରି ମହିମାରେ ଗୁରୁ କରି
ମହିରେ ଦୃଢ଼େ ସ୍ଥାପିଲେ ଶରୀରି ଯେ ।୧୦ ।
ଲଜ୍ଜା ପାଇ ଇନ୍ଦ୍ରଜିତ ଲଭିବାରୁ କ୍ଲେଶ ଚିତ୍ତ
ଲୁଆଇଁ ଶିର ଗଲା ଫେରସ୍ତ ଯେ,
ଲକ୍ଷ୍ମଣ ବାର୍ତ୍ତା ପ୍ରାପତ ଲେଉଟିଣ ହନୁମନ୍ତ
ଲହୁ ଲୁହାଣ ଦେଖି ଚକିତ ଯେ ।୧୧ ।
କ୍ରୋଧେ ଜର୍ଜରିତ ହୋଇ କରୁଣାକୁ ଭୁଲିଯାଇ
କଲେ ରଣ ପବନ ତନୟୀ ଯେ,
କରାଳ ସ୍ୱରୂପ ନେଇ କୃତାନ୍ତ ରକ୍ଷେ ମାରଇ
କିଛି ପଳାଇଲେ ଜୀବ ନେଇ ଯେ ।୧୨ ।
ଶ୍ରୀରାମାନୁଜେ କୋଳରେ ସହଜେ ଉଠାଇ ଧିରେ
ସୌମିତ୍ରୀ ମ୍ଳାନ ମୁଖ ନିହାରେ ଯେ,
ସରସର ନୀର ଝରେ ଶୋଣିତ ବର୍ଣ୍ଣ ନେତ୍ରରେ
ଶ୍ରୀରାମେ ଦେଲେ ସନ୍ଧ୍ୟା କାଳରେ ଯେ ।୧୩ ।
ବାନର ଭାଲୁ ଚିନ୍ତିତ ବକ୍ଷେ ଶକ୍ତି ଆଘାତିତ
ବୀର ଲକ୍ଷ୍ମଣେ ଦେଖି ମୂର୍ଚ୍ଛିତ ଯେ,
ବନରେ ବନଜ ନେତ୍ର ବହି ହୋଇଲା ପୂରିତ
ବିଧାତା କି ଦେଖାଇଲା ଅତ୍ର ଯେ ।୧୪ ।
ଶ୍ରୀରାମେ ଦେଖି ଅଧିର ସଜଳ ରୁଦ୍ରାବତାର
ଶୋକାଭିଭୂତ ହେଲେ ମନର ଯେ,
ସଭିଙ୍କୁ ଶୋକ ସାଗରୁ ସନ୍ତାପିତ ଅବସ୍ଥାରୁ
ସମ୍ଭାଳିବା ଅର୍ଥେ ବୋଲନ୍ତି ଗୀର ଯେ ।୧୫ ।
ପ୍ରଭୁ କର ନାହିଁ ଶୋକ ପ୍ରଦାନ ଆଜ୍ଞା ସ୍ୱଲୋକ

ପହଞ୍ଚି ଆଣିବି ଛାଡ଼ି ଦଜ ଯେ,
ପୀୟୁଷ ସଉମିତ୍ରୀଙ୍କ ପାଟିରେ ଧରି ମୃଗାଙ୍କ
ପକାଇବି ଚିପୁଡ଼ି ହସ୍ତେକ ଯେ ।୧୬ ।
ଅଥବା ଯିବି ପାତାଳେ ଆଣିବି ନାଗଠୁ ବଳେ
ଅମୃତ କୁଣ୍ଡ ମାରି ସକଳେ ଯେ,
ଅବା ବିଧ୍ୱଂସୀବି କାଳେ ଅଚିନ୍ତାରେ ସଦାକାଳେ
ଆନନ୍ଦେ ବଞ୍ଚିବା ମହୀତଳେ ଯେ ।୧୭ ।
ସ୍ୱରୂପ ପ୍ରଳୟଙ୍କର ସହଜେ ମାରୁତିଙ୍କର
ସ୍ୱତଃ ହେବା ଦେଖି ରଘୁବୀର ଯେ,
ସପ୍ରେମେ ବୋଲନ୍ତି ଗୀର ଶୁଣ ହନୁମନ୍ତ ବୀର
ସୌମିତ୍ରୀ ପାଇଁ ନୁହଁ ଆତୁର ଯେ ।୧୮ ।
ଜାଣି ରାମେ ଚିନ୍ତାଗ୍ରସ୍ତ ଜାମ୍ବବାନ ଯୋଡ଼ି ହସ୍ତ
ଜଣାଇଲେ ହୋଇଣ ବିନୀତ ଯେ,
ଜଗତେ ସର୍ବେ ବିଦିତ ଜନ୍ମିନି ଏପରି ସୁତ
ଯେମନ୍ତ ପାବନି ବଳବନ୍ତ ଯେ ।୧୯ ।
ଅସମ୍ଭବ ତୁମ ପାଇଁ ଅବଶ୍ୟ ସଂସାରେ ନାହିଁ
ଅନ୍ୟ ପରିତ୍ୟାଗୀ କର ଏହି ଯେ,
ଆଗୁସାର ଯାଅ ହୋଇ ଅଛି ଲଙ୍କା ମଧ୍ୟେ ତହିଁ
ଆଣ ବୈଦ୍ୟ ସୁଷେଣେ ଡ଼କାଇ ଯେ ।୨୦ ।
ବଡ଼ ଯୋଗ୍ୟ ସେ ବଇଦ ବତାଇବ ସିଏ ଭେଦ
ବଂଚିବେ ଯେହ୍ନେ ଲକ୍ଷ୍ମଣ ଅଦ୍ୟ ଯେ,
ବହୁତ ଶରୀର କ୍ଷୁଦ୍ର ବନାଇ ଯାଇ ନିଶବ୍ଦ
ବିଷ୍ଟ ଲଙ୍କା ଗଡ଼େ କରି ଭେଦ ଯେ ।୨୧ ।
ପହଞ୍ଚି ସୁଷେଣ ଦ୍ୱାରେ ପଡ଼ିଲେ ହନୁ ଦ୍ୱନ୍ଦ୍ୱରେ
ପରମାଦ ଗଣିଲେ ମନରେ ଯେ,
ପ୍ରଶ୍ନ ଜନ୍ମେ ମାନସରେ ପକ୍ଷ ଦେଖିଲେ ନୀତିରେ
ପ୍ରକୃତ ପକ୍ଷେ ଗଣା ଶତ୍ରୁରେ ଯେ ।୨୨ ।
ସ୍ୱୀକାରିବ କି ପ୍ରାର୍ଥନା ସେ ଅବା କରିବ ମନା
ସମୟ ବୃଥାରେ ଯିବ ସିନା ଯେ,
ସମୂଳେ ଚିନ୍ତି ଭବନ ସୁଷେଣ ସହ ଧରିଣ
ଶୂନ୍ୟେ ଚଳିଲେ ସେ ମହାମନା ଯେ ।୨୩ ।
ଶ୍ରୀରାମ ସମୀପେ ନେଇ ସୁଷେଣ ଭବନ ଥୋଇ

ସାବଧାନେ ରହିଲେ ଦୂରେଇ ଯେ,
ସୁଷେଣ ଚକିତ ହୋଇ ଶ୍ରୀରାମ ସେନା ଦେଖଇ
ସଦନରୁ ଯେବେ ବାହାରଇ ଯେ ।୨୪ ।
ବଇଦ ବୃତ୍ତି ତାଙ୍କର ବିଭୀଷଣ ସବିସ୍ତାର
ବୁଝାଇ କହିଲେ ସମାଚାର ଯେ,
ବୈଦ୍ୟ ନାଡ଼ି ଦେଖି ଖର ବୋଇଲେ ସ୍ଥିତି ଗମ୍ଭୀର
ବେଳଥାଉଁ ଶୀଘ୍ର ଉପାୟ କର ଯେ ।୨୫ ।
ଯଦି ରାତିକ ମଧ୍ୟରେ ଯାଇ କେହି ଆଣି ପାରେ
ଜୀବନ ଦାୟୀ ଶକ୍ତି ଯହିଁରେ ଯେ,
ଯଥାଶୀଘ୍ର ହିମାଦ୍ରିରେ ଯାଅ ମାରୁତି ଦ୍ୱରାରେ
ଯହିଁ ବୁଟି ଛନ୍ତି ଦ୍ରୋଣଶୈଳେ ଯେ ।୨୬ ।
ସଂଜିବନୀ ଓ ସଂନ୍ଧାନୀ ସୁବର୍ଣ୍ଣ କରଣୀ ପୁଣି
ସୁଦୀପ୍ତ ସେ ବିଶଲ୍ୟ କରଣୀ ଯେ,
ସୁଲଭ୍ୟ ଔଷଧ ଚିହ୍ନି ସୂର୍ଯ୍ୟୋଦୟ ପୂର୍ବୁ ଆଣି
ଶୀଘ୍ର ଦେଲେ ବହିବ ଉଜାଣି ଯେ ।୨୭ ।
ବଂଚିବେ ଲକ୍ଷ୍ମଣ ବୀର ବାନା ଉଡ଼ିବ ତୁମ୍ଭର
ବାତ ସୁତ ନ କର ଉଛୁର ଯେ,
ବନ୍ଦି ଶ୍ରୀରାମ ପୟର ବିକଟେ ଦେଇ ହୁଙ୍କାର
ବାହାରିଲେ ସେ ଦ୍ରୋଣ ଶିଖର ଯେ ।୨୮ ।
ହିମାଳୟ ପାଦଦେଶେ ହୃଦୟେ ଦୃଢ଼େ ଆକର୍ଷେ
ହନୁମାନ ଦେଖି ଚଳେ ହର୍ଷେ ଯେ,
ହୁନ୍ଦର ପଣରେ ଶୀର୍ଷେ ହୋଇ ଆଶ୍ରମ ପ୍ରକାଶେ
ହରି ନାମ ତହୁଁ ଭାସି ଆସେ ଯେ ।୨୯ ।
ସୁନ୍ଦର ସେ ତପୋବନ ସୁନ୍ଦର ବୃକ୍ଷେ ଶୋଭନ
ଶାଳ, କଦଳୀ ପଣସ ମାନ ଯେ,
ସୁରମ୍ୟ ଆଶ୍ରମ ସ୍ଥାନ ଶିବଙ୍କର ଆରାଧନ
ସେବା ପୂଜା ବ୍ରତୀ ତପୋଧନ ଯେ ।୩୦ ।
ଜଳ ଆଶ ତୃଷାତୁର ଯାଇ ଆଶ୍ରମ ଭିତର
ଜଣାଇଲା କପି ନମସ୍କାର ଯେ,
ଯାଉଛି ଦ୍ରୋଣ ଶିଖର ଜାନକୀବରର ଚର
ଯୋଗାଡ଼ି ଆଣିବି ବୁଟି ତା'ର ଯେ ।୩୧ ।
ଶୋଷ ମେଣ୍ଟାଇଣ ଯିବି ସୌମିତ୍ରୀରେ ବୁଟି ଦେବି

ସଂଜ୍ଞାନ ପ୍ରଦାନି ଉଠାଇବି ଯେ,
ସ୍ରୋତରୁ ଜଳ ପିଇବି ସୂଚନା ଦିଅ ମୁଁ ଯିବି
ସାହାଯ୍ୟ ସର୍ବଦା ସୁମରିବି ଯେ ।୩୨ ।
ପିଇ କମଣ୍ଡଳୁ ନୀର ପିପାସା ହର ତୁମ୍ଭର
ପର୍ଯ୍ୟାପ୍ତ ହେବନି ବୋଲେ ବୀର ଯେ,
ପାଶେ ଥିଲେ କାହିଁ ସର ପେଷ ମୋରେ ସେହି ଠାର
ପିଇ ତୃଷା ମେଣ୍ଟାଇବି ମୋର ଯେ ।୩୩ ।
ମୁନି ଛଦ୍ମ ବେଶୀ ଥିଲା ମନେ ଫନ୍ଦି ପାଞ୍ଚୁଥିଲା
ମାରୁତି କାର୍ଯ୍ୟେ କରିବ ଢ଼ିଲା ଯେ,
ମୁଁ ତ୍ରିକାଳଜ୍ଞ ବୋଲିଲା ମୋତେ ଧ୍ୟାନେ ଜଣାଗଲା
ମୂର୍ଚ୍ଛା ତେଣେ ଲକ୍ଷ୍ମଣ ତେଜିଲା ଯେ ।୩୪ ।
ହୁଅ ନାହିଁ ତରତର ହୋଇ ସ୍ଥିର ଶ୍ରମ ହର
ହେଲେ ସକାଳ ଫେରିବ ପୁର ଯେ,
ହନୁମାନ ବୋଲେ ଗୀର ହେ ମୁନି ଡେରି ନ କର
ହେଳା ନ କରି ପିଇବି ନୀର ଯେ ।୩୫ ।
ବିଶ୍ରାମରେ ନାହିଁ କାର୍ଯ୍ୟ ବିକ୍ଷିପ୍ତ ହେଲାଣି ଧୈର୍ଯ୍ୟ
ବିଭୁ କାର୍ଯ୍ୟରେ ହେଳା ଅକାର୍ଯ୍ୟ ଯେ,
ବିଫଳ ଜାଣି କୁକାର୍ଯ୍ୟ ବିରସେ ଛଦ୍ମି ଅନାର୍ଯ୍ୟ
ବିଳମ୍ବୀ ବିଳମ୍ବ କରେ କାର୍ଯ୍ୟ ଯେ ।୩୬ ।
ମୁନି ରୂପୀ ସେ ଅସୁର ମାୟାବୀ ବଡ଼ ଚତୁର
ମିଛୁଆ କାଳନେମୀ ନାଁ ତା'ର ଯେ,
ମନେ ପାଞ୍ଚି ଦୂରାଚାର ମନାଇ ପେଶଇ ସର
ମନ୍ତ୍ର ଦେବି ଯାଇ ସ୍ନାନ କର ଯେ ।୩୭ ।
ବନ ଔଷଧି ଯା' ଥିବ ବିନା ମନ୍ତ୍ରେ ନ ଦିଶିବ
ବନ ନୟନ ମୁଦି ପିଇବ ଯେ,
ବତାଇଲେ ଗୁରୁଦେବ ବଣା କପି ନ ହୋଇବ
ବନି ମୋ ଶିଷ୍ୟ ସଫଳ ହେବ ଯେ ।୩୮ ।
ଜଳାଶୟୁ ନେତ୍ର ମୁଦି ଜଳପାନେ ପାଦ ଛନ୍ଦି
ଜତନେ ମକରୀ କଲାବନ୍ଦୀ ଯେ,
ଜାଣି ମକରୀର ଜିଦି ଜଳି କ୍ରୋଧେ ତାରେ ବଧି
ଯମ ଦୂତେ ଦେଲେ ଜଲଦି ଯେ ।୩୯ ।
ଓହସା ବ୍ୟୋମେ ମାରୁତି ସୁନ୍ଦର ଦିବ୍ୟ ଯୁବତୀ

ସାକ୍ଷାତେ ଦେଖି ଭାବଇ ମତି ଯେ,
ଶାପରୁ ଅପ୍ସରା ମୁକ୍ତି ସତେ ପାଇଲା ଝଟତି
ଶୁଭ ନାମ ପୁଛେ କହ ଚିନ୍ତି ଯେ ।୪୦ ।
କହଇ ମୁଁ ଧାନ୍ୟମାଳୀ କପୀଶ୍ୱର ମହାବଳୀ
କୃପାରୁ ମୁକ୍ତ ମୁଁ ଦେବବାଳୀ ଯେ,
କାଳନେମୀ ମହାଛଳୀ କରି ଏ ଆଶ୍ରମ ସ୍ଥଳୀ
ବରଇ ବିଘ୍ନ ବଳକୁ କଳି ଯେ ।୪୧ ।
ଅସୁର ମାୟାବୀ ଯେ ସେ ଆସି ରାବଣ ନିର୍ଦ୍ଦେଶେ
ଆଶ୍ରମ ଏ ନୁହେଁ ଯେହ୍ନେ ଦିଶେ ଯେ,
ଅନଘ ପ୍ରୟାସ ନାଶେ ଆପଣଙ୍କ ଦିବ୍ୟ ସ୍ପର୍ଶେ
ଅପ୍ସରୀ ମୁଁ ଯିବି ବ୍ରହ୍ମ ଦେଶେ ଯେ ।୪୨ ।
ସମ୍ମୁଖେ କାଳନେମୀର ସାକ୍ଷାତ୍ ପହଞ୍ଚି ବୀର
ଶକ୍ତାଘାତେ ଛିଣ୍ଡାଇଲେ ଶିର ଯେ,
ଶ୍ରୀରାମଙ୍କର ନାମର ସ୍ମରଣ କରି ହୃଦର
ସହର୍ଷେ ଗଲେ ଦ୍ରୋଣ ଗିରିର ଯେ ।୪୩ ।
ବିଭିନ୍ନ ଔଷଧି ତହିଁ ବିଶେଷେ ପ୍ରକାଶେ ରହି
ବତାଇ ଥିଲା ସୁଷେଣ ତହିଁ ଯେ,
ବିଲକ୍ଷି ବିରକ୍ତ ହୋଇ ବୃକ୍ଷ ସହ ଉପୁଡ଼ାଇ
ବେଗେ ପର୍ବତ ନେଇ ଚଳଇ ଯେ ।୪୪ ।
ଦ୍ରୋଣାଚଳ ସହିତରେ ଦ୍ରୁତେ ଅଯୋଧ୍ୟା ଉପରେ
ଦେଖି ଭରତ ଭାବି ମନରେ ଯେ,
ଦୈତ୍ୟ ଏ ପର୍ବତ କରେ ଦଉଡ଼େ ନିଶ୍ଚେ ବ୍ୟୋମରେ
ଦୃଢ଼େ ପେଷିଲେ ବାଟୁଳୀ ଧିରେ ଯେ ।୪୫ ।
ମୁଖେ ଶ୍ରୀରାମ ଉଚ୍ଚାରି ମୂର୍ଚ୍ଛିତେ ପର୍ବତ ଧରି
ମାରୁତି ପଡ଼ିଲେ ଚେତା ହାରି ଯେ,
ମନେ ଭରତ ବିଚାରି ମହାକାୟ ଏହି ହରି
ମହାନ ଭକ୍ତ ଭଜଇ ହରି ଯେ ।୪୬ ।
ଦୁଇ ଓଠ ଥରି ଧିରେ ଦେଖନ୍ତେ ରାମ ଉଚ୍ଚାରେ
ଦୟାମୟଙ୍କ ନାମ ସୁମରେ ଯେ,
ଦ୍ରବିତ ହୋଇ ଦୟାରେ ଦ୍ୱିନେତ୍ରୁ ଝରାଇ ନୀରେ
ଦୌଡ଼ି ସଚେତ ପ୍ରଯତ୍ନ କରେ ଯେ ।୪୭ ।
ସବୁ ପ୍ରଚେଷ୍ଟା ବିଫଳ ଶତ୍ରୁଘ୍ନ ବିମାତା ବାଳ

ସାକ୍ଷାତ ଦେଖି ହୋଇ ବିକଳ ଯେ,
ଶୋକ ତେଜିଣ ଆକୁଳ ସାଧନାରୁ ଦେଇ ଫଳ
ଶପଥ କଲା ହୋଇ ସଜଳ ଯେ ।୪୮ ।
ଯେଉଁ ନିରିମମ ବିଧି ଯତ୍ନେ ରଖି ଅଭିସନ୍ଧି
ଜଗଦିଶ ରାମ ଅପାଂନିଧି ଯେ,
ଜୀବ ମୋ କରି ଅବିଧି ଯନ୍ତ୍ରଣା ଦେଇ ନ ବଧି
ଯୋରେ ଛଡ଼ାଇ ନେଲା ଦୁର୍ବୁଦ୍ଧି ଯେ ।୪୯ ।
ଆଜିର ଏ ଦୁଃଖ ଦିନ ଆଣିଲା ସେ ବିଧି ହୀନ
ଅଚଳ ଭକ୍ତି ରାମ ଚରଣ ଯେ,
ଅଛି ଯଦି ମୋର ମନ ଅନନ୍ୟ ରୂପେ ଦୃଢ଼େଣ
ଅଞ୍ଜନା ସୁତ ପାଉ ଜୀବନ ଯେ ।୫୦ ।
ପିଡ଼ାରୁ ମୁକତ ହୋଇ ପୂର୍ବବତ ଶକ୍ତି ନେଇ
ପାଉ ଏ ଚେତା ମୋ ପୁଣ୍ୟ ପାଇ ଯେ,
ପ୍ରଭୁ ନାମ ଉଚ୍ଚେ ଗାଇ ପବନ ଦେବ ତନୟୀ
ପୂର୍ଣ୍ଣ ସୁସ୍ଥ ଲଭି ଉଠିଲେ ଚେଇଁ ଯେ ।୫୧ ।
ସମ୍ମୁଖେ ଦେଖି ଭରତ ସମଝି ଶ୍ରୀ ରଘୁନାଥ
ସାଷ୍ଟାଙ୍ଗେ ହୋଇଲା ଦଣ୍ଡବତ ଯେ,
ସହସା ପାଇ ସଂବିତ ସଧିରେ ପୁଛେ ତୁରନ୍ତ
ଶ୍ରୀରଘୁନାଥ ଏଥେ କେମନ୍ତ ଯେ ।୫୨ ।
କେଉଁ ସ୍ଥାନ ଏ ଅଟଇ କେମନ୍ତେ ଆସିଲି ମୁହିଁ
କୁହ ପ୍ରଭୁ ହେ ମୋତେ ବୁଝାଇ ଯେ,
କହନ୍ତି ଭରତ ଭାଇ କଟକ ଅଯୋଧ୍ୟା ଏହି
କୈକେୟୀ ପୁତ୍ର ଭରତ ମୁହିଁ ଯେ ।୫୩ ।
ଦୁଇ ଭକ୍ତ ହେଲେ ଭେଟ ଦଇବର ଏହି ନାଟ
ଦେଲେ ପରସ୍ପରେ ନିଜ ଚିହ୍ନଟ ଯେ,
ଦୈବଯୋଗରେ ବିକଟ ଦଶାରେ ସୁମିତ୍ରା ଚାଟ
ଦେଇ ସଂଦେଶ କାନ୍ଦେ ମର୍କଟ ଯେ ।୫୪ ।
ମୂର୍ଚ୍ଛିତ ଲକ୍ଷ୍ମଣ ହୋଇ ମୃତ ପରାୟେ ଲୋଟଇ
ମେଘନାଦ ଶକ୍ତ୍ୟାଘାତ ପାଇ ଯେ,
ମୋହ ପ୍ରଶମନ ପାଇଁ ମହୌଷଧି ଆଣି ଯାଇ
ପର୍ବତ ଆଣିଛି ଉପୁଡ଼ାଇ ଯେ ।୫୫ ।
ରାତି ପାହିଲେ ଲକ୍ଷ୍ମଣ ରକ୍ଷା ନ ହେବ ଜୀବନ

ରାଘବେ କହିଛନ୍ତି ସୁଷେଣ ଯେ,
ରୋଦନ କରି ଶ୍ରବଣ ରାମ ଭକ୍ତେ ଆଲିଙ୍ଗନ
ରାମ ଅନୁଜ କଲେ ଦୃଢ଼େଣ ଯେ ।୫୬ ।
କହନ୍ତି ପାପାତ୍ମା ମୁହିଁ କୁକର୍ମକୁ ଆଚରଇ
କର୍ମ ଦୋଷେ ହରାଇଛି ଭାଇ ଯେ,
କେଉଁ ଦୋଷେ ଦୋଷୀ ହୋଇ କଲି ବାଧା ଦେଖ ଯହିଁ
କଷ୍ଟେ ଭ୍ରାତ ଲକ୍ଷ୍ମଣ ଅଛଇଁ ଯେ ।୫୭ ।
ବିଡ଼ମ୍ବନା କି ବିଧିର ବଳି ଗଲାଣି ମୋହର
ବିପଦ ଦୁଃଖ କଷ୍ଟର ଭାର ଯେ,
ବାଣେ ଆରୋହଣ କର ବହନ ଯାଇ ସେଠାର
ବଞ୍ଚାଇବ ଭ୍ରାତେ ମୋର ଯେ ।୫୮ ।
ନାସ୍ତି କରି ବିନମ୍ରରେ ନମି ଭରତ ପୟରେ
ନାମ ଶ୍ରୀରାମ ରଟି ଭକ୍ତିରେ ଯେ,
ନଭେ ଦ୍ରୋଣାଚଳ କରେ ନୟନର ପଲକରେ
ନ କରି ଡେରି ଚଳେ ସତ୍ୱରେ ଯେ ।୫୯ ।
ରାମ ରାଜୀବ ଲୋଚନ ରାତ୍ରୀ ହେବ ଅବସାନ
ରୋଦନ କରନ୍ତି ଚିନ୍ତି ମନ ଯେ,
ରାଜ୍ୟ, ଘରଣୀ, ଲକ୍ଷ୍ମଣ ରୋଷେ ଚଳିଲେ ତେଜିଣ
ରଖିବି କିମ୍ପା ହୀନ ଜୀବନ ଯେ ।୬୦ ।
ଶ୍ରୀରାମ ରୋଦନ ଦେଖି ସର୍ବେ ଭାଲୁ କପି ଦୁଃଖି
ସ୍ରବି ଲୋତକ ଦ୍ରବିତ ଆଖି ଯେ,
ସ୍ଥିତି ତହିଁ ପରି ଲକ୍ଷି ସୁଗ୍ରୀବ ଆଦି ନିରେଖି
ସୁରବତ୍ମନେ ରହିଲେ ଦେଖି ଯେ ।୬୧ ।
ଆଶା ହୋଇଲା ପୂରଣ ଆସି ଦିଶି ହନୁମାନ
ଆନନ୍ଦେ ରାମ ନାମ ଗାଇଣ ଯେ,
ଆଖିରୁ ଆନନ୍ଦ ବନ ଆସ୍ତେ ବହି ଗଣ୍ଡ ସ୍ଥାନ
ଅତ୍ୟନ୍ତ ଦିଶିଲା ଶୋଭାବନ ଯେ ।୬୨ ।
ରଖି ଦୂରେ ଦ୍ରୋଣାଚଳ ରଘୁ ନନ୍ଦନେ ଚଞ୍ଚଳ
ରୁଦ୍ରାଂଶ ନମେ ହୋଇ ସଜଳ ଯେ,
ରକ୍ଷେ ବସି ପାଦତଳ ରହିବା ପାଇଁ ବ୍ୟାକୁଳ
ଭକତ ସେବାରେ ସଦାକାଳ ଯେ ।୬୩ ।
ସର୍ବ ବାନର ପ୍ରସନ୍ନ ସେବାଯତ୍ନ ଅନୁକ୍ଷଣ

ସୁଖେ କରିଲେ ନେବାକୁ ମନ ଯେ,
ସସ୍ନେହେ କିଏ ଚରଣ ସପ୍ରେମେ କୋଳେ ନେଇଣ
ସୁସଙ୍ଗେ ମଞ୍ଚାଳେ ପୁଚ୍ଛ ଅନ୍ୟ ଯେ ।୬୪ ।
ସଞ୍ଜିବନୀ ବୁଟି ନେଇ ସୁଷେଣ ଦେଲେ ସୁଘାଇ
ସୌମିତ୍ରୀ ନିଦ୍ରୁ ଉଠିଲେ ଚେଇଁ ଯେ,
ସଚେତ ଉଠିଣ ହୋଇ ସମସ୍ତ ସନ୍ଦେଶ ପାଇ
ସ୍ନେହେ ଆଲିଙ୍ଗନ କଲେ ଯାଇ ଯେ ।୬୫ ।
ଅତ୍ୟନ୍ତ ହୋଇ ପ୍ରସନ୍ନ ଅଚ୍ୟୁତ ରଘୁ ନନ୍ଦନ
ଆଞ୍ଜନେୟେ ଗଳେ ଲଗାଇଣ ଯେ,
ଅଖଣ୍ଡ ଭକତି ଜ୍ଞାନ ଅଚିରେ ତୁମ୍ଭେ ଲଭିଣ
ଅନନ୍ତ କାଳ ଭକ୍ତେ ପାବନ ଯେ ।୬୬ ।
ଆନନ୍ଦେ କରି ଗମନ ଅଚିରେ ଗନ୍ଧମାଦନ
ଆଣିଣ ଜିଆଇଲ ଲକ୍ଷ୍ମଣ ଯେ,
ଆଜୀବନ ହନୁମାନ ଆଷ୍ଟେ ବାନ୍ଧିଲ ମୋ ପ୍ରାଣ
ଅତୁଳନୀୟ ଭକତପଣ ଯେ ।୬୭ ।
ସଉମିତ୍ରୀ ନିରାମୟ ସୁଷେଣ ଦେଖି ବିଦାୟ
ଶ୍ରୀରାମେ ମାଗେ ହୋଇ ବିନୟ ଯେ,
ସଚରାଚର ଆଶ୍ରୟସୁଷେଣେ କଲେ ଆଗ୍ରହ
ସାକ୍ଷାତେ ବର ମାଗିଣ ନିଅ ଯେ ।୬୮ ।
ସବିନୟ ସହକାରେ ସୁଷେଣ ଅତି ଶ୍ରଦ୍ଧାରେ
ସୁଦୃଢ଼ ଭକ୍ତି ଯାଜନା କରେ ଯେ,
ସୀତାପତି ସହଜରେ ସମର୍ପିଲେକ ତାହାରେ
ଶ୍ରବଣାଦି ନବଧାଭକ୍ତିରେ ଯେ ।୬୯ ।
ହନୁମାନ ସୁଷେଣରେ ହସ୍ତେ ଗୃହ ସହିତରେ
ହରି ସ୍ମରି ଥୋଇଲା ଲଙ୍କାରେ ଯେ,
ହରି ଗନ୍ଧମାଦନରେ ହଠାତରେ ନେଇ ଧିରେ
ହିମାଳୟେ ଥୋଇଲା ଯତ୍ନରେ ଯେ ।୭୦ ।
ଛାନ୍ଦ ନାମ ଏକତ୍ରିଂଶ ଛନ୍ଦରେ ହୋଇଲା ଶେଷ
ଛନ୍ଦା ଚରଣୁ ପାଇ ଆଶିଷ ଯେ,
ଛଳ ହୀନ ଏହି ରସ ଛଳ ନାଶନେ ସୁରେଶ
ଛଳପତି ଭଜେ ଅହର୍ନିଶ ଯେ ।୭୧ ।



# ଦ୍ୱାତ୍ରିଂଶ ଛାନ୍ଦ

ରାଗ-ଆଶାବରୀ

(ଅହିରାବଣ ବଧ)

କରକୁ ଯୋଡ଼ି କରଇ ଅଳି ହେ ବିଘ୍ନେଶ,
କର ସୁଦୟା କରୁଣା ବହି ଗଣ ଈଶ ।୧ ।
କରିଛି ଇଛା ପିମ୍ପୁଡ଼ି ଲଙ୍ଘିବ ଗିରୀଶ,
କୃପା କରି କର୍ଣ୍ଣ ଗହ୍ୱରେ ଶବଦ ଭାଷ ।୨ ।
କରୁଣା ମୂର୍ତ୍ତି ମାରୁତି ଚରିତ ପୀୟୁଷ,
କଲେ ଶ୍ରବଣ ନାଶ ଯିବ ସଂସାର ବିଷ ।୩ ।
କରି ଶ୍ରବଣ ମେଘନାଦ ମୃତ୍ୟୁ ସନ୍ଦେଶ,
କରି ଲଙ୍କାର ମୂର୍ଚ୍ଛିତ ବିପର୍ଯ୍ୟସ୍ତ ବେଶ ।୪ ।
ଖାଦ୍ୟ ପରିତ୍ୟାଗୀ ନୟନୁ ଝରାଏ ନୀର,
ଖର ପ୍ରଶ୍ୱାସ ବହଇ କ୍ରୋଧରେ ଆତୁର ।୫ ।
ଖିଅ ନ ପାଅଇ କାହିଁ ଜଳଇ ଅନ୍ତର,
ଖୁସି ଛଡ଼ାଇ ନେଇଛି ସଉମିତ୍ରୀ ଚୋର ।୬ ।
ଖାଦ୍ୟ ଖାଦକକୁ କେହ୍ନେ କରିଲା ଆହାର,
ଖାଣ୍ଟି ହୀରା ଖଣ୍ଡ ମୋର ହୋଇଲା ଅଙ୍ଗାର ।୭ ।
ଖିତିରେ ସମ୍ମାନ ମୋ କଲା ନାରଖାର,
ଖ୍ୟାତି ରକ୍ଷା ଅର୍ଥେ ସ୍ୱୟଂ କରିଲା ବିଚାର ।୮ ।
ଗଉରବ ରକ୍ଷା ହେବ ରହିବ ସମ୍ମାନ,
ଗମଗମ ବହେ ସ୍ୱେଦ ଛନଛନ ମନ ।୯ ।
ଗଭୀର ଚିନ୍ତା କରିଣ ଭାବଇ ଏସନ,
ଗୋଟିଏ ବୀର ରହିଛି ନାଁ ମହିରାବଣ ।୧୦ ।
ଗର୍ତ୍ତ ରୂପି ଚିନ୍ତାରୁ ଯେ କରି ଉଦ୍ଧାରଣ,
ଗଗନ କୁସୁମ ଜୟ କରିବ ପ୍ରଦାନ ।୧୧ ।
ଗଙ୍ଗାଧର ସ୍ମରି ଯାଇ ଗଉରୀ ସଦନ,
ଗାଇ ସ୍ତୁତି ହକାରଇ ବିଶ୍ରବା ନନ୍ଦନ ।୧୨ ।
ଘନଘନ ସ୍ମରିବାରୁ ଭ୍ରାତାକୁ ତାହାର,
ଘଣ୍ଟି ପ୍ରାୟ ବାଜିଲା ତା କର୍ଣ୍ଣ ଗହ୍ୱରର ।୧୩ ।
ଘଟଣା କିସ ଘଟିଲା ଚିନ୍ତିଣ ମନର,
ଘୁଞ୍ଚାଇବାକୁ ବିପଦ ଲଙ୍କାପତିଙ୍କର ।୧୪ ।

ଘଡ଼ିକ ମଧ୍ୟରେ ଆସି ହୋଇଲା ହାଜର,
ଘୋର ଚିନ୍ତାଗ୍ରସ୍ତ ମୁଖ ଦେଖି ରାବଣର ।୧୫ ।
ଘଣା ମଧ୍ୟେ ପଡ଼ି ପେଶି ହେବା ଭ୍ରାତା ତାର,
ଘଟଣା ଜାଣି କାରଣ ପୁଛଇ ଅସୁର ।୧୬ ।
ଉତ୍ତରରେ ଲଙ୍କା ସାଇଁ ଘଟଣା ସମସ୍ତ,
ଉତାରୁ ସୁପର୍ଣଖା ନାଶା କର୍ଣ୍ଣ ଖଣ୍ଡିତ ।୧୭ ।
ଉଦଣ୍ଡତା ଯେତେ କଲେ ଦଶରଥ ସୁତ,
ଉଖାଡ଼ି ଲଙ୍କା ଜାଳିଲା ଯେହ୍ନେ ହନୁମନ୍ତ ।୧୮ ।
ଉର୍ମିଳା ଅଗ୍ରଜା ହରି ଆଣିଲା ଯେମନ୍ତ,
ଉର୍ମିଳା ନାଥ କରିଲା ମେଘନାଦେ ହତ ।୧୯ ।
ଉତ୍‌କ୍ଷିପ୍ତ ରାବଣ କହେ ବୁଝାଇ ବୃତ୍ତାନ୍ତ,
ଉନ୍ନତ ଶିର ମୋ ବାବୁ ହୋଇ ଅଛି ନତ ।୨୦ ।
ଚାହିଁଲେ ତୁହିରେ ବାବୁ ରହିବ ସମ୍ମାନ,
ଚୋରୀ କରି ପାତାଳକୁ ଶ୍ରୀରାମ ଲକ୍ଷ୍ମଣ ।୨୧ ।
ଚାତୁରୀରେ ଗଲେ ନେଇ ନେତୃତ୍ୱ ବିହୀନ,
ଚାଲି ଯିବେ କପି ଭାଲୁ ଛାଡ଼ି କରି ରଣ ।୨୨ ।
ଚତୁର୍ଦ୍ଦିଗେ ହାହାକାର ଶୁଭିବ ବ୍ୟାପିଣ,
ଚଉଦଭୁବନେ ତୁ ହିଁ ମୋ ଅବଲମ୍ବନ ।୨୩ ।
ଚରଣ ବନ୍ଦନ କରିଣ ମହୀରାବଣ,
ଚକିତ କରିଣ ବୋଇଲା ଭ୍ରାତା ରାବଣ ।୨୪ ।
ଛାତି ଦମ୍ଭ କରି ଯୁଝୁଛ ରାମ ସଙ୍ଗତେ,
ଛାଡ଼ି ଭୋକ ଶୋଷ ଲାଗୁଛି ଏହା ଉଚିତ ।୨୫ ।
ଛଡ଼ାଇ ଜାନକୀ ଆଣିବା ଏ ବୀପରିତ,
ଛାଡ଼ିଲା ତୁମ୍ଭଙ୍କୁ ବିଧାତା ଏ ଅଟେ ସତ ।୨୬ ।
ଛଳିଲ ସାଧୁ ରୂପେ ଏ କର୍ମ ଅବିହିତ,
ଛଇଳି ହରଣ ଦୋଷରେ ଭ୍ରାତା ଦୁଷିତ ।୨୭ ।
ଛାମୁରେ ତଥାପି ହାଜର ମୁଁ ତୁମ୍ଭ ଭୃତ୍ୟ,
ଛଟକ ମାତ୍ରକେ ଆଦେଶ କରିବି ସତ୍ୟ ।୨୮ ।
ଯେ ଇନ୍ଦ୍ରଜିତାଦିଙ୍କୁ ପେଶିଛି ଯମପୁର,
ଜାଣ ଭ୍ରାତା ନୁହନ୍ତି ସିଏ ସାମାନ୍ୟ ନର ।୨୯ ।
ଜାଣି ତଦାର୍ଥେ କରିବି ଏକର୍ମ ଦୁଷ୍କର,
ଜଗତ ଜାଣିବ ଶକ୍ତି ରାବଣ ଭ୍ରାତାର ।୩୦ ।

ଜଗତି ପରେ ବସିଣ ଦେଖ କର୍ମ ମୋର,
ଜୟ ଲଙ୍କେଶ ଉଚ୍ଚାରି ଚଳିଲା ଅସୁର ।୩୧ ।
ଯାଇ ବିଭୀଷଣ ରୂପ ଧରିଣ ସତ୍ୱର,
ଯତ୍ନେ ପହଞ୍ଚିଲା ଶିବିରେ ସେ ନିଶାଚର ।୩୨ ।
ଝଟତିରେ ହରି ରୂପ କରିଣ ଧାରଣ,
ଝୁମିଲେ ନିଦ୍ରାରେ ପହଞ୍ଚୁ ବାନର ଗଣ ।୩୩ ।
ଝଟକନ୍ତି ବାନର ମେଳେ ରାମ ଲକ୍ଷ୍ମଣ,
ଝଳ ସୁନ୍ଦର ରୂପ ଆକର୍ଷଇ ମନ ।୩୪ ।
ଝକମରା* ନିଶାଚର ଉଭୟେ ଧରିଣ, *ନିର୍ବୋଧ
ଝଞ୍ଜନା ପରାୟେ ଚଳିଲା ଶୂନ୍ୟମାର୍ଗେଣ ।୩୫ ।
ଝଟକିବାରୁ ଆକାଶ ଜାଣିଲା ରାବଣ,
ଝାମେଲା ମୋ ସମାପ୍ତ କଲା ମହୀରାବଣ ।୩୬ ।
ନଭ ଦେଶେ ତୀବ୍ର ପ୍ରକାଶ ହେତୁ ସୁଗ୍ରୀବ,
ନିଦ ତ୍ୟାଗୀ ଖୋଜଇ ରଘୁକୁଳ ରାଜୀବ ।୩୭ ।
ନ ପାଇ ପାଶେ ଉଚ୍ଚସ୍ୱରେ କରିଲା ରାବ,
ନଳନୀଳ ଅଙ୍ଗଦ ବିଭୀଷଣ ଜାମ୍ବବ ।୩୮ ।
ନ ପାରିଲେ ରୋକି ଅଶ୍ରୁ ଚିନ୍ତିତ ସରବ,
ନୟନ ମଣି ବିହୁନେ ହେଲେ ହତମ୍ଭବ ।୩୯ ।
ନ ଦିଶଇ ବୁଦ୍ଧି କାରେ କିଏ ଉଦ୍ଧାରିବ,
ନ ପାଇ ବାଟ ମାରୁତି ପାଶରେ ଜାମ୍ବବ ।୪୦ ।
ଟଙ୍କିଳ ମୁଖ କରିଣ ପହଞ୍ଚିଲା ଯାଇ,
ଟଙ୍କଧର ଅଂଶ ଶୁଣ ହଗାରି କହଇ ।୪୧ ।
ଟମକ ବାଜୁଛି ନାମେ ସଂସାରେ ଏକଇ,
ଟଳିବ ବିପଦ କୃପା ଯେବେ ତୁମ୍ଭ ହୋଇ ।୪୨ ।
ଟାଣ କଲେ ମନ ତୁମ୍ଭେ ହେ ଅଞ୍ଜନୀ ପୋଇ,
ଟାଣୁଆ ବିପତ୍ତି ଟଳିବ ଆଶା ଦିଶଇ ।୪୩ ।
ଟାଙ୍ଗରା ହୃଦୟେ ମଳୟ ପାର ବୁହାଇ,
ଟେକ ରଖ ନାମେ ଖୋଜି ଆଣ ରାମେ ଯାଇ ।୪୪ ।
ଠ ପ୍ରାୟ ଘୁରେ ମୋ ମତି କେଣେ ଅବା ଯିବି,
ଠଉରି ପାରୁନି ଦିଗ କିପରି ଖୋଜିବି ।୪୫ ।
ଠିକଣା ଜାଣିଲେ ସତ୍ୱରେ ନେଇ ଆସିବି,
ଠିକ କୁହ ଜାଣିଥିଲେ ତତ୍କ୍ଷଣେ ଆଣିବି ।୪୬ ।

ଠକ କେ ଅପରିଚିତ ଆସିଛି ଗଇବି*, *ଲୁକ୍କାଇତ
ଠିକ କରି କୁହ ମୋତେ ହେ ମାରୁତି ଭାବି ।୪୭ ।
ଠାଉକା ଚୋର ଆସି ନାହିଁ କେହି ମାୟାବୀ,
ଠିକେଇଛି ବିଭୀଷଣଙ୍କୁ ଦେଖି ତାଙ୍କ ଛବି ।୪୮ ।
ଡେରି ହୋଇଲା ସଂଧ୍ୟା ପୂଜନେ ସେ କହିଲେ,
ଡରେ ବିଭୀଷଣ କାହା ଷଡ଼ଯନ୍ତ୍ର ବୋଲେ ।୪୯ ।
ଡକୈତ କେହି ମାୟାବୀର କର୍ମ ଏ ଭଲେ,
ଡଗର* ରାବଣର ଛଦ୍ମବେଶୀ ମୋ ତୁଲେ ।୫୦ । *ଗୁପ୍ତଚର
ଡମ୍ବରୁ ଧର ଘରଣୀ କରୁଣା ଯେ କଲେ,
ଡହରା ମହୀରାବଣ ମୋର ରୂପ ଗେଲେ ।୫୧ ।
ଡମ୍ବରୁଧର ଅଂଶକୁ ନିରେଖି କହିଲେ,
ଡଗରିବ* ଯାଅ ପାତାଳପୁରେ ଏଇଲେ ।୫୨ । *ଖୋଜିବ
ଢମ କୁହାର ଢମକୁ ସମୂଳେ ନାଶିବ,
ଢମଣାକୁ ଗାତରୁ ଟାଣି ଦୃଢ଼େ ମାରିବ ।୫୩ ।
ଢାକରି* ଦେଖି କରି ଗୁପ୍ତେ ସଯତ୍ନେ ଯିବ, *ଜଗୁଆଳ
ଢାଳେ* ଅସୁର ମାରି ରାଘବେ ଆଣିବ ।୫୪ । *ଅକ୍ଲେଶରେ
ଢିଲା ନ କରି ଢିଲା* ଖୋଲି ମୁକୁଳାଇବ, *ଦଉଡ଼ି
ଢେଲା ଆଖିଆ ମହୀରାବଣେ ସଂହାରିବ ।୫୫ ।
ଢଙ୍ଗାଢଙ୍ଗ ତା ନଗ୍ରର ଶୁଣ ନ ଭୁଲିବ,
ଢୌକ* ଶୀଘ୍ର କାହିଁ ପଥେ ଡେରି ନ କରିବ ।୫୬ । *ଗତି କରିବା
ନମି ସୁଗ୍ରୀବ ଚରଣେ ବୀର ହନୁମାନ,
ନ କରି ଡେରି ଚଳିଲା ପାତାଳେ ବହନ ।୫୭ ।
ନିର୍ଭୟେ ଯେ ନଗରେ ରହେ ମହୀରାବଣ,
ନିଯୁକ୍ତ ନିରେଖେ ତହିଁ ଅନ୍ୟ ହନୁମାନ ।୫୮ ।
ନେଇଛି ଆକାର ରୂପ ନିଜର ସମାନ,
ନିଜ ରୂପ ସୂକ୍ଷ୍ମ କରି ଗମେ ବାୟୁ ସୂନ ।୫୯ ।
ନିରେଖି ଦେଖି ବାନର କଲା ଉଚ୍ଚ ସ୍ୱନ,
ନିକଟେ ଆସି ବୋଲେ ମୁଁ ମାରୁତି ନନ୍ଦନ ।୬୦ ।
ତୋର କେଡ଼େ ବହପ ମକରଧ୍ୱଜ ଥାଉ,
ତୁ ଠକି ମୋରେ ନଗର ଭିତରକୁ ଯାଉ ।୬୧ ।
ତହୁଁ ଚକିତ ମାରୁତି ବୋଲେ କି ଶୁଣାଉ,
ତୋର ପିତା ବଜରଙ୍ଗୀ ହନୁମାନ କହୁ ।୬୨ ।

ତୋତେ ଅଜଣା ଆଜନ୍ମ ବ୍ରହ୍ମଚାରୀ ସେହୁ,
ତାହାର ପୁତ୍ର ଜନ୍ମିଛି ହେଉ କାଉ କାଉ ।୬୩ ।
ତନୟ ବୋଲଇ ଲଙ୍କା ପୋଡ଼ି ଯାଉ ଯାଉ,
ତାଙ୍କ ସ୍ୱେଦ ପିଇଲା ମୋ ମାତା ବହୁ ବହୁ ।୬୪ ।
ଥିଲି ତାର ଗର୍ଭେ ପାଳିଲା ଅହିରାବଣ,
ଥାପିଛି ବିଶ୍ୱାସେ କରୁଛି ଦ୍ୱାର ରକ୍ଷଣ ।୬୫ ।
ଥଟ୍ଟା କରୁଛୁ କି ମୋତେ ମୁହିଁ ହନୁମାନ,
ଥଣ୍ଡା ମିଜାଜରେ ତୁହି ମୋ କଥାକୁ ଘେନ ।୬୬ ।
ଥକ୍କାମରା ହୋଇ ଶୁଣି ମାରୁତି ବଚନ,
ଥଙ୍ଗେଇ ଥଙ୍ଗେଇ କହେ ମୋ ପ୍ରଣାମ ଘେନ ।୬୭ ।
ଥକାଅ ଯୁଦ୍ଧରେ ମୋତେ କରନ୍ତୁ ବନ୍ଧନ,
ଥନଥନ* ମକରଧ୍ୱଜ ଥମେ ବୋଲିଣ ।୬୮ । *କାନ୍ଦକାନ୍ଦ
ଦ୍ୱାର ଛାଡ଼ିଲେ ଧର୍ମଦ୍ରୋହୀ ତୁମ ନନ୍ଦନ,
ଦଇବ ଦ୍ୱାରେ ହେବି କେହ୍ନେ ଧରିବି ପ୍ରାଣ ।୬୯ ।
ଦୟାବନ୍ତ ବାୟୁ ନନ୍ଦନ ଦୟା କରିଣ,
ଦେଖାଇଲା ପ୍ରାୟ ସମରେ କଲେ ବନ୍ଧନ ।୭୦ ।
ଦେଲା ବତାଇ ଯହିଁ ଛନ୍ତି ରାମ ଲକ୍ଷ୍ମଣ,
ଦେବ ବଳୀ ଦୁହିଁଙ୍କୁ ସ୍ଥିର କରିଛି ମନ ।୭୧ ।
ଦେବୀ ମନ୍ଦିରେ ଯାଇ ଉଦ୍ଧର ତତକ୍ଷଣ,
ଦ୍ରୁତେ ଗମିଲେକ ତେହ୍ନେ ପବନ ନନ୍ଦନ ।୭୨ ।
ଧରି ସୂକ୍ଷ୍ମରୂପ ଚଳି ଚାମୁଣ୍ଡା ମନ୍ଦିର,
ଧୂପଦୀପ ରକ୍ତପୁଷ୍ପ ଦେଖିଲେ ସେଠାର ।୭୩ ।
ଧାରଣ କରିଣ ପୂଜାର ବେଶ ସମ୍ଭାର,
ଧେୟ ସମୀପେ ତହୁଁ ଆସିଲା ଅସୁର ।୭୪ ।
ଧାଇଁଣ ମାରୁତି ଲୁଚିଲେ ଦେବୀ ପଛର,
ଧିର ସ୍ପର୍ଶେ ଦେବୀ ଗମିଲେ ପାତାଳ ପୁର ।୭୫ ।
ଧରି ଦେବୀ ରୂପ ନିଜେ କେଶରୀ କୁମର
ଧୋକା ବିନା ଖାଇଲେ ଯା ଦେଲା ନିଶାଚର ।୭୬ ।
ନୈବେଦ୍ୟ ବିଭିନ୍ନ ଚଢ଼ାଏ ଦେବୀଙ୍କ ପାଇଁ,
ନିରବରେ ଭକ୍ଷନ୍ତି ହନୁମାନ ଗୋସାଇଁ ।୭୭ ।
ନବ ଉନ୍ମାଦେ ସାକ୍ଷାତେ ଖାଉଛନ୍ତି ମାଇ,
ନେଇ ମନରେ ଖୁସିରେ ଅସୁର ଦିଅଇ ।୭୮ ।

ନବୀନ ବସ୍ତ୍ର ଭୂଷଣେ ଭୂଷିତ କରାଇ,
ନବ ନୀରଦ ବର୍ଣ୍ଣ ରାମେ ଶେଷେ ଆଣଇ ।୭୯ ।
ନେଇଣ ସାଥିରେ ଲକ୍ଷ୍ମଣ ପୁଷ୍ଟେ ସଜାଇ,
ନୀତିରେ ଦେବୀ ସମ୍ମୁଖେ ସହର୍ଷେ ପୂଜଇ ।୮୦ ।
ପଚାରଇ ରକ୍ଷ ସ୍ୱଇଷ୍ଟ କର ସ୍ମରଣ,
ପ୍ରଭୁ ସ୍ମରିଲେ ଆନନ୍ଦେ ବୀର ହନୁମାନ ।୮୧ ।
ପ୍ରିୟ ମାରୁତିଙ୍କୁ ଦେବୀଙ୍କ ସ୍ଥାନେ ଦେଖିଣ,
ପ୍ରସନ୍ନ ହୋଇ ମୃଦୁ ହସି ବୋଇଲେ ଧନ୍ୟ ।୮୨ ।
ପରମ ଜୀବ ଚାରି ଚକ୍ଷୁ ହେଉଁ ମିଳନ,
ପ୍ରୀତିଭରେ ଘୋରେ ଗର୍ଜିଲେ ବାୟୁ ନନ୍ଦନ ।୮୩ ।
ପଡ଼ିଲା ରାକ୍ଷସ ଛିଟିକି ଛାଡ଼ି କୃପାଣ,
ପିଛୁଡ଼ାକେ ଶିର କାଟିଲେ ତା' ହନୁମାନ ।୮୪ ।
ଫିଟାଇ ବନ୍ଧନ ରାମ ସଉମିତ୍ରୀ କର,
ଫୋପାଡ଼ି ହୋମ କୁଣ୍ଡରେ ମୁଣ୍ଡ ରାକ୍ଷସର ।୮୫ ।
ଫଟକାର କରି ଦୁହିଁଙ୍କୁ ଧରି ସ୍କନ୍ଧର,
ଫଟାଇଲା ମୁଣ୍ଡ ଯେତେକ ଥିଲେ ଅସୁର ।୮୬ ।
ଫଗୁ ପ୍ରାୟ ତହିଁ ସର୍ବତ୍ର ଶୋହେ ରୁଧିର,
ଫୁଟି ଦିଶେ ଚାରିପାଶେ ଶକ୍ତି ବାନରର ।୮୭ ।
ଫଳ ପାଇଲା ଅହିରାବଣ ପରିବାର,
ଫାଟିଲା କପାଳ ଚଳିଲେ ଶମନପୁର ।୮୮ ।
ବହିଣ ସ୍କନ୍ଧରେ ବହନେ ଚଳେ ମାରୁତି,
ବାଟରେ ବନ୍ଧନେ ଦେଖିଣ ତା'ର ସନ୍ତତି ।୮୯ ।
ବହିଲା ବନ ନେତ୍ରୁ ଦେଖିଲେ ସୀତା ପତି,
ବତାଅ କାରଣ ପୁଛନ୍ତେ ଅଜଙ୍କ ନାତି ।୯୦ ।
ବିନୟେ ସମସ୍ତ ଘଟଣା କପି ଜଣାନ୍ତି,
ବନ୍ଧନୁ ଫେଇ ଶ୍ରୀରାମ ତାହାରେ ଘଟତି ।୯୧ ।
ବୋଇଲେ କରାଅ ତାହାକୁ ପାତାଳପତି,
ବସାଇଲେ ରାଜପଦରେ ଆନନ୍ଦେ ଅତି ।୯୨ ।
ଭକ୍ତିରେ ମକରଧ୍ୱଜ ରାଘବେ ନମିଣ,
ଭରତାଗ୍ରଜେ କହେ ରଖ ଦୀନ ଶରଣ ।୯୩ ।
ଭକତି ଭାବ ଜାଣେ ନାହିଁ ପ୍ରଭୁ କଅଣ,
ଭଣ୍ଡ ସେବାରେ ରହିଛି ଭ୍ରମେ ଏତେ ଦିନ ।୯୪ ।

ଭରିଛି ଉଦର କରି ପଙ୍କିଳ ଭୋଜନ,
ଭଳିଛି ଭେଳିକିରେ ମାୟା ସଂସାରେ ମନ ।୯୫ ।
ଭଣ୍ଡିଛି ସ୍ୱଆତ୍ମାକୁ ମିଛ ପଛେ ଧାଇଁଣ,
ଭ୍ରମିଅଛି ମରିଚିକାକୁ ସତ୍ୟ ମଣିଣ ।୯୬ ।
ମକରଧ୍ୱଜ କହଇ ଏ ସଙ୍ଗ ଦୋଷ,
ମନେ ନ ନେଇ ହୀରା କାଚକୁ କଲି ଆଶ ।୯୭ ।
ମୁଁ ଦୁର୍ଭାଗ୍ୟା ପାଇ ନାହିଁ ଗୁରୁ ସ୍ନେହାଶିଷ,
ମୋକ୍ଷ ପ୍ରାପ୍ତ କରିଥାନ୍ତି ପାଇ ତା' ପରସ ।୯୮ ।
ମୋତେ ବିଧି କୃପା ହେଲା ପ୍ରଭୁ ସୀତାଈଶ,
ମୋର ଉଦ୍ଧାରଣ ଅର୍ଥେ ପାତାଳେ ପ୍ରବେଶ ।୯୯ ।
ମାତା ସ୍ନେହ ପାଇ ନାହିଁ ପିତାଙ୍କ ଆଶିଷ,
ମନ ଭରି ପ୍ରାପ୍ତ କଲି ହୃଦ ହେଲା ତୋଷ ।୧୦୦ ।
ଯଜ୍ଞ ଶତ୍ରୁ ପାଶେ ଖଟି ଗଲା ମୋର ଦିନ,
ଯଜ୍ଞପତି ଦରଶନେ ଜୀବନ ମୋ ଧନ୍ୟ ।୧୦୧ ।
ଯଜ୍ଞ ପ୍ରଭୁ ଯଜ୍ଞା ତୁମ୍ଭ ଘେନିବ ଶରଣ,
ଯଜ୍ଞୁ ଯତ ଚିତ୍ତ ପ୍ରଭୁ ମୋ ପ୍ରଣାମ ଘେନ ।୧୦୨ ।
ଯତନେ ରଖିବି ସ୍ମୃତି ଥିବି ଯେତେ ଦିନ,
ଯିବି ତତକ୍ଷଣେ ଯେବେ କରିବ ସ୍ମରଣ ।୧୦୩ ।
ଯତି ପ୍ରାୟ ସମ୍ଭାଳିବି ଏହି ରାଜପଣ,
ଯତ୍ନକରି ପିତାଦେଶ କରିବି ପାଳନ ।୧୦୪ ।
ୟା ଶୁଣି ପବନ ସୁତ ମନେ ହେଲେ ଖୁସି,
ୟାଙ୍କୁ ସର୍ବଦା ଚିନ୍ତିବୁରେ ଦିବସ ନିଶି ।୧୦୫ ।
ୟାଙ୍କ ଦୟାରୁ ସଂସାରେ ଜିଣିବୁରେ ଶିଶି,
ୟେ ଅଛନ୍ତି ସଂସାରେ ସର୍ବ କଣରେ ପଶି ।୧୦୬ ।
ୟାଙ୍କ ନାମ ସାଧୁ ଭକ୍ତ ଯୋଗୀ ମୁନି ଋଷି,
ୟେ ମରଣ ଚକ୍ର ପାଶୁ ମୁକୁଳନ୍ତି ଘୋଷି ।୧୦୭ ।
ୟା ବୋଲି ପବନ ପୁତ୍ର ଆଶିଷ ବରଷି,
ୟେ ଠା କାମ ସରିଲା ବୋଲି କହିଲେ ହସି ।୧୦୮ ।
ରଖି ହସ୍ତ ମକରଧ୍ୱଜ ଶିର ଉପର,
ରାମ ଲକ୍ଷ୍ମଣ ବସାଇ ସ୍କନ୍ଧେ ହନୁବୀର ।୧୦୯ ।
ରମନ୍ତୁ ହୃଦରେ ଭାବେ ମାରୁତି ମନର,
ରାଜିବ ଲୋଚନ ରାମେ ରମେ ଯେ ସଂସାର ।୧୧୦ ।

ରାମନାମ ଗାଏ ଯିଏ ପୁତ ତା ଶରୀର,
ରଖେ ଯେ ଭରସା ପଦେ ଧନ୍ୟ ଜୀବ ତା'ର ।୧୧୧ ।
ରମଣୀୟ ସ୍ୱରେ ଗାଇ ନାମ ପ୍ରଭୁଙ୍କର,
ରାବଣର ଲଙ୍କା ଦିଗେ ଗମିଲେ ସତ୍ୱର ।୧୧୨ ।
ଲକ୍ଷ୍ୟକର ତେଣେ ଯା' ଘଟଣା ସୁଧିଜନ,
ଲକ୍ଷ୍ମଣ ରାମ ବିହୁନେ ଭାଲୁ କପି ଗଣ ।୧୧୩ ।
ଲକ୍ଷ୍ମୀ ସହଜ ବିହୁନେ କୁମୁଦ ଯେସନ,
ଲକ୍ଷ୍ମୀଛଡ଼ା ପ୍ରାୟ ସୁଃଖେ ବଞ୍ଚୁଥିଲେ ଦିନ ।୧୧୪ ।
ଲକ୍ଷ୍ୟ କରି ଯେଉଁ ପଥେ ଗଲେ ହନୁମାନ,
ଲଙ୍କାରିଙ୍କ ପ୍ରତ୍ୟାଗମନେ ଅପେକ୍ଷମାଣ ।୧୧୫ ।
ଲୁହ ବୁହାଇଣ ନେତ୍ରୁ କରିଣ କ୍ରନ୍ଦନ,
ଲକ୍ଷ୍ମଣ ଶ୍ରୀରାମେ ଚିନ୍ତୁ ଥିଲେ ପ୍ରତିକ୍ଷଣ ।୧୧୬ ।
ବରଜି ଅନ୍ନ ସଲିଳ ଭଲ୍ଲୁକ ବାନର,
ବିଭୀଷଣ ଜାମ୍ବବାନ ସୁଗ୍ରୀବ ଓଗେର ।୧୧୭ ।
ବହିଣ ଦୁଃଖ ନିନ୍ଦନ୍ତି ସ୍ୱୟଂକୁ ମନର,
ବିହି ବାମ ନେଲା ରାମେ ପାତାଳ ଅସୁର ।୧୧୮ ।
ବଞ୍ଚିଥାଉ ଥାଉ ଆମେ ଆସି ନିଶାଚର,
ବଞ୍ଚାଇ ନିଜକୁ ନେଲା ହୃଦୟଆମର ।୧୧୯ ।
ବାହୁନି କାନ୍ଦନ୍ତି ଗୁଣ ଗାଇ ବାରମ୍ବାର,
ବସିଥିଲେ ଯେହ୍ନେ ସତୀ ବିନା ପତି ତା'ର ।୧୨୦ ।
ସମ୍ଭାଳି ଥିଲେ ଏତିକି ହୃଦୟେ ଚିନ୍ତିଣ,
ସନ୍ଧାନେ ଯାଇଛି ଯେଣୁ ଅଞ୍ଜନା ନନ୍ଦନ ।୧୨୧ ।
ସଫଳତାର ସ୍ୱରୁପ ସାକ୍ଷାତ ଈଶାନ,
ସାଙ୍ଗରେ ନିଶ୍ଚେ ଆଣିବେ ଶ୍ରୀରାମ ଲକ୍ଷ୍ମଣ ।୧୨୨ ।
ସନ୍ତାପିତ ହୃଦୟରେ ହୋଇ ମ୍ରିୟମାଣ,
ସମୟ ବିତାଉଥିଲେ ତେଜି ଖାଦ୍ୟ ପାନ ।୧୨୩ ।
ସେକାଳେ ଜୟ ଶ୍ରୀରାମ ଶବଦେ ଗଗନ,
ସୁଖ ସ୍ୱରୂପ ସ୍ୱରରେ ପୂରିଗଲା କର୍ଣ୍ଣ ।୧୨୪ ।
ଷଡ଼ଗ୍ରହକୂଟ ଯୋଗ ହେଲା ରାବଣର,
ଷଡ଼୍ମୁଖ ପିତା କନ୍ଧେ ଦିଶିଲେ ରଘୁବୀର ।୧୨୫ ।
ଷଡ଼୍ ବିନ୍ଦୁ* ସାଥେ ଆଣିଛି ଲକ୍ଷ୍ମଣ କୁମାର, *ବିଷ୍ଣୁ/ରାମ
ଷଡ଼୍ଭୁଜା ସମ୍ମୁଖୁ ହନୁ କରିଣ ଉଦ୍ଧାର ।୧୨୬ ।

ଷ* କରିଣ ମହିରାବଣର ଅହଂକାର, *ନାଶ
ଷଣ୍ଢପତି ରକ୍ଷାକଲେ ପ୍ରାଣ ସବୁରିର ।୧୨୭ ।
ଶୋଭନ ଦିଶନ୍ତି ଖ'ରେ ଦିବ୍ୟ ଚାପଧର,
ଶୂନ୍ୟଚିରା ମାରିଲେ ଦେଖି ରକ୍ଷ ବାନର ।୧୨୮ ।
ଶରଣ ରକ୍ଷଣ ରଘୁନାଥ ଆଗମନ,
ଶଙ୍କର୍ଷଣ ଦର୍ଶନେ ପାଇଲେ ସର୍ବେ ପ୍ରାଣ ।୧୨୯ ।
ଶବରୁ ଶିବ ପାଲଟି ହେଲେ ଚଳମାନ,
ଶଙ୍କରାଂଶଙ୍କ କରିଲେ ସର୍ବେ ଗୁଣଗାନ ।୧୩୦ ।
ଶଚୀପତି ଆତ୍ମଜ ସୁତ ସୁଗ୍ରୀବ ସୁଷେଣ,
ଶଉରୀ* ଦର୍ଶନେ ବିହ୍ୱଳ ହେଲେ ବିଭୀଷଣ ।୧୩୧ । *ବିଷ୍ଣୁ
ଶକବ ପରାଏ ଶୋଭନ୍ତି ରାମ ଲକ୍ଷ୍ମଣ,
ଶକୁନ ଗୀତ ଗାଇ ସର୍ବେ କଲେ ନର୍ତ୍ତନ ।୧୩୨ ।
ହତ ହେବା ମହିରାବଣ ବାର୍ତ୍ତା ପ୍ରାପ୍ତେନ,
ହତଚକିତ ରାବଣ ହେଲା ଚେତା ଶୂନ୍ୟ ।୧୩୩ ।
ହୋଇ ସଚେତ ପୁନର୍ବାର ଭାବଇ ମନ,
ହାୟରେ ବିଧାତା ହୋଇଲ କିମ୍ପା ବିମନ ।୧୩୪ ।
ହନୁମାନଙ୍କର ଜୟ ବାନର ସଇନ,
ହ୍ଲାଦିତେ ଜୟ ଜୟ କଲେ ଜୟ ଲକ୍ଷ୍ମଣ ।୧୩୫ ।
ହୋଇ ଗୁଣ୍ଡ ଶୂନ୍ୟେ ଉଠାଇ ବାୟୁ ନନ୍ଦନ,
ହେଲେ ମସଗୁଲ ନର୍ତ୍ତନେ ଭୂଲି କଷଣ ।୧୩୬ ।
କ୍ଷମାର ସାଗର ଶ୍ରୀରାମ ଜାନକୀ ବର,
କ୍ଷଣ ଭଙ୍ଗୁର ଏ ସଂସାରୁ ପ୍ରଭୁ ଉଦ୍ଧର ।୧୩୭ ।
କ୍ଷଣ କ୍ଷଣରେ ବଦଳେ ଏ ମନ ମୋହର,
କ୍ଷର* ନିୟନ୍ତଣେ ସାମର୍ଥ୍ୟ ପ୍ରଦାନ କର ।୧୩୮ । *ପରମେଶ୍ୱର
କ୍ଷର[୧] ଏ କ୍ଷର[୨]କୁ ଭାବିଛି ପ୍ରଭୁ ଅକ୍ଷର, [୧]ବିନାଶଶୀଳ, [୨]ଦେହ
କ୍ଷଣେ କ୍ଷର* କାରଣୁ ନ ଘୋଷେ ନାମ ତୋର ।୧୩୯ । *ମୂର୍ଖତା
କ୍ଷୟ କଲ୍ମଷ ହନୁମାନ ହେ ଭକ୍ତ ବର,
କ୍ଷମ ସୁରେଶରେ ମକରଧ୍ୱଜ ପିଅର ।୧୪୦ ।



# ତ୍ରିତ୍ରିଂଶ ଛାନ୍ଦ

ରାଗ-ଶାରଙ୍ଗ

(ରାବଣ ବଧ, ବିଭୀଷଣଙ୍କ ରାଜ୍ୟାଭିଷେକ ଓ ମାତା ସୀତାଙ୍କ ସହ ମାରୁତିର ପୁନଃ ଭେଟ)

ପ୍ରଥମରେ ଗଉରୀ ନନ୍ଦନଙ୍କ ଚରଣ
ଭକ୍ତିପୂତ ହୃଦୟରେ କରୁଛି ବନ୍ଦନ
ମାଗୁଅଛି ଶୁଭ ଆଶିଷ,
ପଦ କୁହ କର୍ଣ୍ଣେ ପାଉ ମୂର୍ଖ ପଣ ନାଶ ।୧ ।

ମହିରାବଣ ନିଧନ ମହିତ ପ୍ରମୁଖ
ଅସୁର ଯୋଦ୍ଧା ଯେତେକ ଥିଲେ ମୁଖ୍ୟ ମୁଖ୍ୟ
ସବବେ ହେବାରୁ ସମାପ୍ତ,
ସ୍ୱୟଂ ଦଶାନନ ଯୁଦ୍ଧେ ହୋଇଲା ପ୍ରବୃତ୍ତ ।୨ ।

ପ୍ରବଳ ପରାକ୍ରମୀ ଅଦ୍‌ଭୁତ ଧୀର ବୀର
ରାବଣ ଆସି ଲଢ଼ିଲା ରଣ ଭୟଙ୍କର
ସୀତା ପତିଙ୍କ ସମ୍ମୁଖେ,
ନ ପାରିଲା ତିଷ୍ଠି ଏକୈକ ଅସ୍ତ୍ର ପରଖେ ।୩ ।

ବ୍ୟସ୍ତ ଥାଇ ଥାଉ ରଣେ ଦେଖୁଣୁ ନୟନେ
ଅମିତ ସୌନ୍ଦର୍ଯ୍ୟ ରାଶି ଶ୍ରୀବତ୍ସଲାଂଛନେ
ତ୍ରୈଲୋକ୍ୟ ତ୍ରାତା ରଘୁରାଣ,
ପାବନ ଶରାଘାତେ ଗଲା କାଳ ସଦନ ।୪ ।

ଦଶାନନ ନିର୍ଜୀବ ଶରୀର ଭୂଲୁଣ୍ଠିତ
ଦର୍ଶନେ ବାନର ଭାଲୁ ସଇନ ହର୍ଷିତ
ଜୟ ଶ୍ରୀରାମ ଶବଦରେ,
କଂପାଇଲେ ଗଗନ ପବନ ଆନନ୍ଦରେ ।୫ ।

ଉଲ୍ଲସିତେ ଲମ୍ଫଦେଲେ ପ୍ରତିଯୋଗିତାରେ
ପରସ୍ପରେ ଆଲିଙ୍ଗିଲେ ସ୍ୱଭାବାବେଗରେ
ଗଗନେ ଦେବେ ବିରାଜିଣ,
ବୃଷ୍ଟିକଲେ ହର୍ଷେ ନାନା ସ୍ୱର୍ଗୀୟ ସୁମନ ।୬ ।

ଆଞ୍ଜନେୟ ନେତ୍ର ଯୁଗ ହର୍ଷାଶ୍ରୁରେ ଭରି
ନିଖିଳ ସଂସାର ଜନନୀ ଭୁବନେଶ୍ୱରୀ
ଅମଳ ଚରଣ କମଳ,
ଚିନ୍ତଇ ହୃଦୟେ ଭରି ଭକତି ବିମଳ ।୭ ।

ଏ କାଳେ ସଂସାରାଧାର ରାମ ଭଗବାନ
ପ୍ରଶଂସି ଅଙ୍ଗଦ ବିଭୀଷଣ ହନୁମାନ
ରବି ନନ୍ଦନ ଜାମ୍ବବାନ,
ବୋଲନ୍ତି ତୁମ୍ଭ ବଳରେ ବଧିଲି ରାବଣ ।୮ ।
ସୂର୍ଯ୍ୟ ଚନ୍ଦ୍ର ଥିବା ଯାଏ ଏ ସାରା ସଂସାର
ଘୋଷିବ ପବିତ୍ର କୀର୍ତ୍ତି ଗାଥାକୁ ତୁମ୍ଭର
କଳି କଳ୍ମଶ ନାଶିନୀ,
କୀର୍ତ୍ତନ କରିବେ କଥା ତ୍ରୈଲୋକ୍ୟ ପାବନୀ ।୯ ।
ସ୍ୱାର୍ଥାର୍ଥେ ମୋର ଏ ରଣ ତୁମେ ସ୍ୱାର୍ଥ ହୀନ
ସଂସାର ଭାରା ଉଶ୍ୱାସେ ବିନିଯୋଗୀ ପ୍ରାଣ
ଧନ୍ୟ କରିଅଛ ଜୀବନ,
ପରମ ପଦ ଲଭିବେ ଶ୍ରୋତାବକ୍ତା ଗଣ ।୧ ୦ ।
ଲଙ୍କେଶ୍ୱର ମୃତପିଣ୍ଡ ଦେଖି ମନ୍ଦୋଦରୀ
ଅନ୍ୟ ଯେତେ ଯେତେ ରାଣୀ ତାର ଅଙ୍କେଶ୍ୱରୀ
ହା ନାଥ ହା ନାଥ ଉଚ୍ଚାରି,
ବିଳାପ କଲେ ଅଚେତାବସ୍ଥାରୁ ଉଭୁରି ।୧ ୧ ।
ନୀତି ନିଷ୍ଠ ବିଭୀଷଣ ଭ୍ରାତା ଶବ ଦେଖି
ରୋଦନ କରେ ଶୋକରେ ହୋଇ କରି ଦୁଃଖୀ
ଧୈର୍ଯ୍ୟ ସୀମା କୂଳ ଲଙ୍ଘିଣ,
ବହି ଉଦକ ତୁବାଇଲା ବେନି ନୟନ ।୧ ୨ ।
ଦେଖି ବିଭୀଷଣ ମୁଦ୍ରା ସୁମିତ୍ରା ନନ୍ଦନ
ପ୍ରେମପୂର୍ବକ ହୃଦୟେ କରି ଆଲିଙ୍ଗନ
ଏ ସଂସାରର ନଶ୍ୱରତା,
ବର୍ଣ୍ଣି ବୁଝାଇଲେ ଅବିନଶ୍ୱର ବାରତା ।୧୩ ।
ଦୁଃଖ କରନା ଲଙ୍କାଧିପତି ବିଭୀଷଣ
ଏ ଅଟଇ ବିଧାତାର ମାୟା ଆୟୋଜନ
ବୃଥାରେ ନ କର ରୋଦନ,
ମାୟାରେ ନୁହଁ ଆକ୍ରାନ୍ତ ଘେନ ମୋ ବଚନ ।୧୪ ।
ମାଟି ଘଟ ଏ ଶରୀର ବୁଦ୍ ବୁଦ୍ ପରାୟେ
ନଷ୍ଟ ସ୍ଥିରିକୃତ ତା'ର ଜନମ ସମୟେ
ବାଲୁତର ବାଲିର ଘର,
ଭାଙ୍ଗି ଯିବା ଥୟ ସୃଷ୍ଟି ସମୟରୁ ତା'ର ।୧୫ ।

ଶାସ୍ତ୍ରଜ୍ଞ ରାବଣାନୁଜ ଏକି ବିପରୀତ
ନପୁଂସକତ୍ୱ ଆବୋରେ କିମ୍ବା ତୁମ୍ଭ ଚିତ୍ତ
ତୁମ୍ଭେ ତ ଅଟ ସ୍ଥିତପ୍ରଜ୍ଞ,
ବିଜ୍ଞ ହୋଇ କାର୍ଯ୍ୟକର ସତେ ଯେହ୍ନେ ଅଜ୍ଞ ।୧୬ ।
ଏ ଶରୀର ରାବଣର ଯା' ଲୋଟିଛି ତଳେ
ରାବଣ ନୁହଁଇ ସିଏ ଜାଣ ଜ୍ଞାନ ବଳେ
ଏ ଲଙ୍କାପତିର ଶରୀର,
ଯେହ୍ନେ ପୋଷାକ କଠାଉ ବସ୍ତ୍ରାଦି ତାହାର ।୧୭ ।
ହସ୍ତ ଦ୍ୱୟ ପଦ ଦ୍ୱୟ ମସ୍ତକ ଆବର
କେହି ନୁହଁନ୍ତି ରାବଣ ସବୁ ରାବଣର
ଲଙ୍କନାଥ ଅଟଇ ସିଏ,
ଜନ୍ମ ମୃତ୍ୟୁ ଦୁଃଖ ସୁଖ କ୍ଳେଶୁ ଉର୍ଦ୍ଧ୍ୱ ସିଏ ।୧୮ ।
ଶରୀରରେ ଯେହ୍ନେ କୌମାର ଯୌବନ ଜରା
ଏକ ପରେ ଏକ ଆସଇ ନ ପଡ଼େ ଧରା
ଯୌବନ କୌମାର ନିମନ୍ତେ,
ରୋଦନ କେହି ନ କରେ ମାନସେ ନ ଚିନ୍ତେ ।୧୯ ।
ସେହିପରି ମୃତ୍ୟୁ ଏକ ଅବସ୍ଥା ଜୀବର
ପଣ୍ଡିତ ନ ଚିନ୍ତେ ଲବେ କ୍ଷଣିଏ ମାତର
ଶରୀରର ପରିବର୍ତ୍ତନ,
ଚାଲିଅଛି ଏ ଧରାରେ ନିତ୍ୟ ଚିରନ୍ତନ ।୨୦ ।
ସୁଖ ଦୁଃଖ ଥଣ୍ଡା ଉଷ୍ମ ଦିଏ ଯେ ଇନ୍ଦ୍ରିୟ
ଅନିତ୍ୟ କ୍ଷଣ ଭଙ୍ଗୁର ସଂଯୋଗ ବିଷୟ
ତତ୍ ଜନିତ ଆନନ୍ଦ କ୍ଳେଶ,
କ୍ଷଣିକ ମିଥ୍ୟା ଅଳିକ ନିଶ୍ଚେ ହୁଏ ନାଶ ।୨୧ ।
ଅପ୍ରମେୟ ନିତ୍ୟ ସ୍ୱରୂପ ନାଶ ରହିତ
ଜୀବାତ୍ମାର ଏ ଶରୀର ଅଟଇ ଅନିତ୍ୟ
ନାଶବାନ ଏହୁ ଯେଣୁ,
ଶୋକ କରିବା ତା ଅର୍ଥେ ବୃଥା ଜାଣ ତେଣୁ ।୨୨ ।
ହତ୍ୟା କରେ ବୋଲି ଆତ୍ମା ହୁଏ ବୋଲି ହତ
ଭାବନ୍ତି ଯେ ଅନଭିଜ୍ଞ ଜାଣ ଏ ଶାଶ୍ୱତ
ନାହିଁ ତା'ର ଜନ୍ମ ମରଣ,
ଅଜନ୍ମା ସେ ନିତ୍ୟ ସନାତନ ପୁରାତନ ।୨୩ ।

ନାଶଶୀଳ ଶରୀରକୁ କରିଦେଲେ ବଧ
ନିହତ ହୁଏନା ଆତ୍ମା ଏହା ସତସିଦ୍ଧ
ଜନ୍ମ ମୃତ୍ୟୁ ନାହିଁ ତାହାର,
ନିତ୍ୟ ସେ ଅଜନ୍ମା ଅବ୍ୟୟ ସ୍ୱରୂପ ଧର ।୨୪ ।
ତେଜି ବସ୍ତ୍ର ପୁରାତନ ଯେସନେ ନୂତନ
ଗ୍ରହଣ କରନ୍ତି ଭବରେ ଜନ ବିଭିନ୍ନ
ଜୀବାତ୍ମା ତେହ୍ନେ ପୁରାତନ,
ଦେହତ୍ୟାଗୀ ପ୍ରାପ୍ତ କରଇ ବପୁ ନୂତନ ।୨୫ ।
କୌଣସି ଶସ୍ତ୍ର ଆତ୍ମାକୁ ନପାରଇ କାଟି
ବୈଶ୍ୱାନର ଦହନେ ତାର ନାହିଁ ଶକତି
ଭିଜାଇ ନ ପାରେ ସଲିଳ,
ପ୍ରଭଞ୍ଜନ ଶୁଖାଇବାରେ ତା ହୀନବଳ ।୨୬ ।
ଆତ୍ମା ଅଶୋଷ୍ୟ ଅଚଳ ଅଦାହ୍ୟ ଅକ୍ଳେଦ୍ୟ
ସର୍ବଗତ ସ୍ଥିର ଅକ୍ଷର ନିତ୍ୟ ଅଛେଦ୍ୟ
ବିକାର ରହିତ ଅବ୍ୟକ୍ତ,
ସନାତନ ଅଚିନ୍ତ୍ୟ ଏ କଥା ଘେନ ଚିତ୍ତ ।୨୭ ।
ଆତ୍ମା ନିତ୍ୟ ନିଏ ଜନ୍ମ ନିତ୍ୟ ମରେ ବୋଲି
ସ୍ୱୀକାର କରୁଛ ଯଦି ତଥାପି ନ ଭୁଲି
କରନା ଅଜ୍ଞ ପ୍ରାୟ ଶୋକ,
ଜନ୍ମାର ମୃତ୍ୟୁ ହେବ ଜନ୍ମିବ ମୃତ ଲୋକ ।୨୮ ।
ଜନ୍ମ ପୂର୍ବୁ ଅପ୍ରକଟ ରୂପେ ଥାଏ ପ୍ରାଣୀ
ମୃତ୍ୟୁ ପରେ ଅପ୍ରକଟ ହୁଏ ସେହୁ ପୁଣି
ପ୍ରକଟେ ମଧ୍ୟବର୍ତ୍ତୀ କାଳେ,
ନିଷ୍ପ୍ରୟୋଜନ କରିବା ଶୋକ ଏହି ସ୍ଥଳେ ।୨୯ ।
ଆଶ୍ଚର୍ଯ୍ୟେ ଦେଖନ୍ତି ଥୋକେ ଆଶ୍ଚର୍ଯ୍ୟେ ବର୍ଣ୍ଣନ୍ତି
ଆଶ୍ଚର୍ଯ୍ୟେ ଶୁଣନ୍ତି କିଛି ଶୁଣି ନ ଜାଣନ୍ତି
ଏ ପରି ସ୍ୱରୂପ ଆତ୍ମାର,
ସବୁରି ଶରୀରେ ଥାଏ ଅବଧ୍ୟ ମାତର ।୩୦ ।
କରନାହିଁ ଆଉ ଶୋକ ଆହେ ଲଙ୍କ ପତି
ଲଙ୍କାକୁ ସମ୍ଭାଳ ତୁମ୍ଭେ ଦୃଢ଼କର ଛାତି
ସଦୁପଦେଶ ଶୁଣି କରି,
ବିଭୀଷଣ ହୃଦୟୁ ମୋହ ଗଲା ବାହାରି ।୩୧ ।

ଗଲେ ଲକ୍ଷ୍ମଣ ସହିତ ଶ୍ରୀରାମ ସମୀପେ
ପ୍ରଭୁ ଶାନ୍ତ୍ୱନା ପ୍ରଦାନ କରି ନାନା ରୂପେ
ଆଜ୍ଞା ଦେଲେ ତା'ରେ ତତ୍‌କ୍ଷଣ,
ରାବଣ ଅନ୍ତ୍ୟେଷ୍ଟି ସଂସ୍କାର କର ସମ୍ପନ୍ନ ।୩୨ ।
ମନ୍ଦୋଦରୀ ଆଦି ରାଣୀ ଯେତେ ରାବଣର
ବିଳାପ କରନ୍ତି ଦୁଃଖେ ବ୍ୟାକୁଳ ଅଧୀର
ନିଅ ସମଝାଇ ସଦନ,
ବନ୍ଧୁ ବାନ୍ଧବ ସହିତ ଯେତେ ଛନ୍ତି ଜନ ।୩୩ ।
ପିତାତୁଲ୍ୟ ଜ୍ୟେଷ୍ଠଭ୍ରାତା ଅନ୍ତିମ ସଂସ୍କାର
ବିଧି ପୂର୍ବକ କରିଣ ନମି ବାରବାର
ରାଣୀଙ୍କ ସହ ମନ୍ଦୋଦରୀ,
ରାଜ ଭବନେ ପେଶିଲେ ବୁଝାସୁଝା କରି ।୩୪ ।
ସ୍ୱୟଂ ପ୍ରଭୁଙ୍କ ସମୀପେ ବିନୀତ ଭାବରେ
ଦଣ୍ଡାୟମାନ ହୋଇଲେ ସେ ଯୋଡ଼ ହସ୍ତରେ
ଶ୍ରୀରାଘବେନ୍ଦ୍ର ମୃଦୁ ହସି,
ଧନ୍ୟ ଧନ୍ୟ କଲେ ସ୍ନେହେ ପିଠିକୁ ଆଉଁସି ।୩୫ ।
ସୁଗ୍ରୀବ ଅଙ୍ଗଦ ସହ ସୁମିତ୍ରା ନନ୍ଦନ
ଜାମ୍ବବାନ ନଳନୀଳ ପୁଣି ହନୁମାନ
ପ୍ରବେଶିଣ ଲଙ୍କା କଟକ,
ବିଧି ପୂର୍ବକ କରିଲେ ତା' ରାଜ୍ୟାଭିଷେକ ।୩୬ ।
ବିଭୀଷଣ ଲଙ୍କାପୁରେ ହେଲେ ଅଧୀଶ୍ୱର
ଦେଖିକରି ହରଷିତ ପବନ କୁମାର
କରିଲେ ଗାଢ଼େ ଆଲିଙ୍ଗନ,
ପ୍ରଭୁ ପୂର୍ଣ୍ଣ କରିଛନ୍ତି ପ୍ରଦତ୍ତ ବଚନ ।୩୭ ।
ଲଙ୍କାଗଡ଼ୁ ଧରି ସାଥେ ସମ୍ଭ୍ରାନ୍ତ ଯେତେକ
ଗୁଣି ମାନି ବିଭୁ ପ୍ରେମୀ ଭକ୍ତ ନାଗରିକ
ନାନାଦି ଉପହାର ନେଇ,
ପ୍ରଭୁ ଚରଣେ ସରବେ ପହଞ୍ଚିଲେ ଯାଇ ।୩୮ ।
ସାଦର ଦଣ୍ଡବତ ପ୍ରଣାମ କରି ପଦେ
କୃତଜ୍ଞତା ଜଣାଇଲେ ଶ୍ରୀରାଘବେ ମୋଦେ
ରାଜପଦରେ ଅଭିସିକ୍ତ,
ଦେଖି ଜାନକୀପତି ହୋଇଲେ ଆନନ୍ଦିତ ।୩୯ ।

ଏ ସମୟେ ଦୃଷ୍ଟିପଥାରୂଢ଼ ପ୍ରଭୁଙ୍କର
ପବନ ନନ୍ଦନ ହେଲେ ମହାବପୁଧର
ଦଣ୍ଡାୟମାନ ବିନୟେ,
ପାଶେ ରାଘବ ରାଇଲେ ସ୍ନେହ ଅତିଶୟେ ।୪୦ ।
ବୋଇଲେ ପବନ ସୁତ ଶୁଣ ମୋ ବଚନ
ମିଥିଳେଶ କୁମାରୀଙ୍କର ସ୍ନେହ ଭାଜନ
ତୁମେ ତ ପବନ କୁମାର,
ବିଭୀଷଣ ଆଜ୍ଞାରେ ଲଙ୍କା ପ୍ରବେଶ କର ।୪୧ ।
ପ୍ରାଣପ୍ରିୟା ଜନକ ଦୁଲାରୀ ପାଶେ ଯାଇ
ରାବଣ ବଧ ଯେବଣ ସଂନ୍ଦେଶ ଶୁଣାଇ
ସିଞ୍ଚ ସୁଶୀତଳ ସଲିଳ,
ଉତପ୍ତ ହୃଦୟେ ଭର ଘନୀଭୂତ ଜଳ ।୪୨ ।
କପିରାଜ ସୁଗ୍ରୀବ ଯୁବରାଜ ଅଙ୍ଗଦ
ନଳ ନୀଳ ଜାମ୍ବବାନ ମୈନ୍ଦ ଦୁଇବିନ୍ଦ
ବାନର ଭାଲୁ ବିଭୀଷଣ,
ଲକ୍ଷ୍ମଣାଦି ଶୁଭବାର୍ତ୍ତା କରିବ ପ୍ରଦାନ ।୪୩ ।
ଜୟ ଶ୍ରୀରାମ ଉଚ୍ଚାରି ହନୁମାନ ବୀର
ହର୍ଷେ ଭରି ହୃଦୟରେ ଆନନ୍ଦ ଅପାର
ଲଙ୍କା କଟକରେ ଚଳିଲେ,
ବିଭୀଷଣ ନିର୍ଦ୍ଦେଶେ ପ୍ରଖ୍ୟାତ ବୀରେ ଗଲେ ।୪୪ ।
ଲଙ୍କାବାସୀ ନିଶାଚରେ ଉଲ୍ଲାସେ ସ୍ୱାଗତ
ସାଦରେ ଅଭିନନ୍ଦନ କଲେ ହୋଇ ପ୍ରୀତ
ସାଥେ ନେଇଣ ପଚୁଆରେ,
ପହୁଁଚାଇଲେ ତାଙ୍କୁ ଅଶୋକ ବାଟିକାରେ ।୪୫ ।
ପୂର୍ବ ନିର୍ଦ୍ଧାରିତ ଅଶୋକ ତରୁ ତଳରେ
ମାତା ସୀତା ବସିଥିଲେ ନିଶ୍ଚିନ୍ତ ମନରେ
ଦ୍ରୁତେ ଧାଇଁ ଯାଇ ତ୍ୱରିତେ,
ଚରଣେ ପଡ଼ିଲେ ରୋଦନ୍ତି ମାରୁତି ସାକ୍ଷାତେ ।୪୬ ।
ହନୁମାନଙ୍କୁ ପୁନଶ୍ଚ ଦେଖି ଦୁଇ ଡୋଳେ
ମାତାଙ୍କ ନେତ୍ର ପୁରିଲା ଆନନ୍ଦର ଜଳେ
ବଦନ ହର୍ଷେ ପୁଲ୍ଲକିତ,
ଦିଶଇ ଯେହ୍ନେ ଶଶାଙ୍କ ଦିଶଇ ଶରତ ।୪୭ ।

କିଛି କ୍ଷଣ ପରେ ଉଠି ଅଞ୍ଜନା ନନ୍ଦନ
ଯୋଡ଼ ହସ୍ତେ ଗଦଗଦେ ବୋଲଇ ବଚନ
ଅସୁର ସମ୍ରାଟ ରାବଣ,
ମାରିଲେ ପ୍ରଭୁ ଶ୍ରୀରାମ କରି ଘୋର ରଣ ।୪୮ ।
ପ୍ରଭୁ ପ୍ରସାଦରୁ ବିଭୀଷଣ ଲଙ୍କେ ରାଟ
କୁଶଳେ ଅଛନ୍ତି ରାମ ଲକ୍ଷ୍ମଣ ସହିତ
ବାନର ସେନାନୀ ସଙ୍ଗରେ,
ଶ୍ରବଣେ ମାତା ହୃଦୟ ନାଚଇ ଖୁସିରେ ।୪୯ ।
ହର୍ଷାତିରେକେ ନିଃଶବ୍ଦ ରହି କିଛି କ୍ଷଣ
କୋକିଳକଣ୍ଠି ଗାଇଲେ ହନୁମାନ ଗୁଣ
ସନ୍ଦେଶ ସଦୃଶ ବିଶୁଦ୍ଧ,
ତ୍ରୈଲୋକେ ଦୁର୍ଲଭ ବସ୍ତୁ ନାହିଁ ସୁଖଦ ।୫୦ ।
ଏହା ବଦଳରେ ପୁତ୍ର ତୋରେ ଦେବା ପାଇଁ
ମନ ମସ୍ତିଷ୍କ ଜଡ଼ ସ୍ମରଣେ ଆସେ ନାହିଁ
ମୋହର ବଡ଼ ଉପକାର,
କରିଛ ଉରଣ  ନ ହେବି ବାତ କୁମର ।୫୧ ।
ବିନୀତାତ୍ମା ହନୁମାନ ମାତାଙ୍କ ଚରଣେ
ପଡ଼ି କୃତ୍ୟ କୃତ୍ୟ ମୁଦ୍ରାରେ ଆନନ୍ଦେ ଭଣେ
ସମ୍ମୁଖେ ଶ୍ରୀରାମ ବିଜୟ,
ରତ୍ନରାଶି ଦେବରାଜ୍ୟ ଅସାର ବିଷୟ ।୫୨ ।
ପୁତ୍ର ମାତୃ ଋଣୁ କେବେ ଉରଣ ବିଚାର
ସ୍ୱପନେ ବି ମାନସେ ଚିନ୍ତିବା ଅବିଚାର
ପଦସେବା ସୁଅବସର,
ପ୍ରାପ୍ତ ହେଉ ମାତା ପ୍ରଭୁଙ୍କର କୃପା କର ।୫୩ ।
ଶ୍ରଦ୍ଧା ଭକ୍ତିପୂର୍ଣ୍ଣ ବିନୀତ ବାଣୀ ଶୁଣିଣ
ଜନକ ନନ୍ଦିନୀ ହୋଇଲେ ଅତି ପ୍ରସନ୍ନ
ବୋଇଲେ ମରୁତ ନନ୍ଦନ,
ବିଚାର ବୁଦ୍ଧି ବିବେକ ତୁମ୍ଭର ଅନନ୍ୟ ।୫୪ ।
କରୁଛି ଆଶିଷ ସଦ୍ ଗୁଣେ ତୁମ୍ଭ ହୃଦୟ
ପୂର୍ଣ୍ଣ ରହୁ ସଦା ପୁତ୍ର ହୁଅନ୍ତୁ ସଦୟ
ଲକ୍ଷ୍ମଣ ସହିତ ରଘୁପତି,
ବଳୀୟାନ୍ ହୁଅ ତୁମ୍ଭେ ପାଇ ଭକ୍ତି ଶକ୍ତି ।୫୫ ।

ନିଖିଳ ଭୁବନେଶ୍ୱରୀ ଶୁଭ ଆଶୀର୍ବାଦ
ପ୍ରାପ୍ତ କରି ହନୁମାନ ହୋଇଣ ଆନନ୍ଦ
ପୁଣି ଦଣ୍ଡବତ ପଡ଼ିଣ,
ବାରମ୍ବାର ବନ୍ଦିଲେ ଜଗଦମ୍ବା ଚରଣ ।୫୬ ।
ପାଶେ କ୍ରୁର ଦୃଷ୍ଟି ବିକଟ ରାକ୍ଷସୀ ଗଣ
ଚିନ୍ତି ସେମାନଙ୍କ ପୂର୍ବ ସ୍ୱଭାବ ଦାରୁଣ
ବୋଇଲେ ଏହାଙ୍କ ଦର୍ଶନ
ଭକ୍ତେ ଭରଇ ଉତ୍ତାପ ନାଶ ଚାହେଁ ମନ ।୫୭ ।
ଦେଇଛନ୍ତି ଦେହେଗେହେ କେତେକେତେ କଷ୍ଟ
ଆଜ୍ଞା ଦେଲେ କରିବି ମା' ନାକ କାନ କାଟ
ଚୁଟି ଧରି ଘୋଷାରି ମାରି,
ଧୂଳିରେ ମିଶାଇ ଦେବି ଏହାଙ୍କ ଶରୀରୀ ।୫୮ ।
ରାକ୍ଷସୀଙ୍କୁ ଦେଖିଣ ଅତ୍ୟନ୍ତ ଭୟଭୀତ
ସେଥିରେ ପୁତ୍ର ନ ଥିଲା ଏହାଙ୍କ କର୍ତ୍ତୃତ୍ୱ
ସ୍ୱୟଂ ଥିଲେ ଆଜ୍ଞା ବାହକ,
ଭୟେ ଥରୁଥିଲେ ସମସ୍ତ ଚଉଦ ଲୋକ ।୫୯ ।
ଲଙ୍କପତି ରାବଣର ଅନ୍ତ ଉପରାନ୍ତେ
ମୋର ସନ୍ତୁଷ୍ଟେ ଲାଗିରହି ଥିଲେ ସମସ୍ତେ
ପ୍ରାରବ୍ଧରୁ ଲଭିଲି ଦୁଃଖ,
କ୍ଷମା ଯୋଗ୍ୟ ଏ ସମସ୍ତେ ପୁତ୍ର ଧୈର୍ଯ୍ୟ ରଖ ।୬୦ ।
ମାତାଙ୍କର ଦୟାପୂର୍ଣ୍ଣ ମଧୁର ବଚନ
ଶୁଣି ଆନନ୍ଦେ ଗଦ୍ ଗଦ ହନୁମାନ ମନ
ପାଦେ ପୁଣି କରି ପ୍ରଣାମ,
ଆଜ୍ଞା ମାଗି ଚଳିଲା ପାଶେ ପ୍ରଭୁ ଶ୍ରୀରାମ ।୬୧ ।
ହନୁମାନ ଚରିତାମୃତ ଛାନ୍ଦ ତ୍ରିତ୍ରିଂଶ
ଭାବେ ବର୍ଣ୍ଣନା ହୋଇଲା ଭକତିର ରସ
ସୁମନ ସୁମନେ ଘେନିବ,
ସେବକ ସୁରେଶ ଦୋଷାଦୋଷ ନ ଧରିବ ।୬୨ ।



# ଚତୁସ୍ତ୍ରିଂଶ ଛାନ୍ଦ

ରାଗ-ଖଣ୍ଡକୁମ୍ଭକାମୋଦୀ

ବିଘ୍ନ ବିନାଶନ ଗଉରୀ ନନ୍ଦନ ପଦେ ବନ୍ଦନ,
କରିଣ ଭକତି ରସପୂର୍ଣ୍ଣ ଗୀତି କରେ ବର୍ଣ୍ଣନ ।୧ ।
ଶୁଣ ହେ ସୁଜନ ସୁମନରେ ଘେନ ଶ୍ରୀ ହନୁମାନ,
ଚରିତ ଅମୃତ ଭାବରେ ବର୍ଣ୍ଣିତ ଅତି ପାବନ ।୨ ।
ଲଙ୍କେଶ ରାବଣ ଦିବ୍ୟ ଗତି ପ୍ରାପ୍ତ କରିବା ପରେ,
ଭ୍ରାତା ବିଭୀଷଣ ରାଜ୍ୟ ଅଭିଷେକ ହେବା ଉତ୍ତାରେ ।୩ ।
ଶ୍ରୀରଘୁନନ୍ଦନ ଜନକ ନନ୍ଦିନୀ ଭ୍ରାତା ଲକ୍ଷ୍ମଣ,
ସୁଗ୍ରୀବ ଅଙ୍ଗଦ ଜାମ୍ବବାନ ସହ ବାତ ନନ୍ଦନ ।୪ ।
ବାନର ଭଲ୍ଲୁକ କରି ଆରୋହଣ ପୁଷ୍ପକ ଯାନ,
ଆକାଶ ମାର୍ଗରେ କରିଣ ଗମନ ଗନ୍ଧମାଦନ ।୫ ।
ପର୍ବତ ଉପରେ ଆନନ୍ଦ ମନରେ ଅବତରଣ,
ସମସ୍ତେ କରିଣ ଜାନକୀ ନନ୍ଦିନୀ ଶୁଦ୍ଧି କରଣ ।୬ ।
କରିବା ଉତ୍ତାରେ ଦଣ୍ଡକା ଅରଣ୍ୟ ବାସୀ ଋଷିଏ,
ଅଗସ୍ତ୍ୟଙ୍କ ସହ ରାଘବ ସ୍ତୁତି ଗାଇଲେ ସଭିଏଁ ।୭ ।
ରାଜୀବ ଲୋଚନ ଶ୍ରୀମାନ ଶୀରାମ ରଘୁ ପୁଙ୍ଗବ,
ରାମଭଦ୍ର ସଦାଚାରୀ ରାଜେନ୍ଦ୍ର ହେ ଜାନକୀ ଧବ ।୮ ।
ବରଦାଗ୍ରଗଣ୍ୟ ପରମେଶ୍ୱର ନମସ୍ତେ ବରେଣ୍ୟ,
ଜନାର୍ଦ୍ଦନ ଜିତାମିତ୍ର ହେ ପରାର୍ଥୈକ ପ୍ରୟୋଜନ ।୯ ।
ବିଶ୍ୱାମିତ୍ର ପ୍ରିୟ ଦାନ୍ତ ଶତ୍ରୁଜିତ ଶତ୍ରୁ ତାପନ,
ସର୍ବଜ୍ଞ ଶରଣ୍ୟ ସର୍ବଦେବ ପ୍ରଭୁ ବାଳି ମର୍ଦ୍ଦନ ।୧୦ ।
ନମୋ ଜ୍ଞାନଭବ୍ୟ ଅପରିଛେଦ୍ୟ ବାଗ୍ମି ଦ୍ୟୁତିମାନ,
ଶୁଚି ଜ୍ଞାନଗମ୍ୟ ଦୃଢ଼ପ୍ରଜ୍ଞ ବୀର ପ୍ରତାପବାନ ।୧୧ ।
ଖରଧ୍ୱଂସି ସତ୍ୟବ୍ରତ ଆତ୍ମବାନ ଦୃଢ଼ ଶ୍ରୀମାନ୍,
ଜିତ କ୍ରୋଧ ବିଶ୍ୱରୂପ ବିଶାଳାକ୍ଷ ଅରି ମର୍ଦ୍ଦନ ।୧୨ ।
ଖଡ୍ଗଧର କୌସଲେୟ ମହୋରସ୍କ ପ୍ରଭବଈଶ,
ପରମେଷ୍ଠି ଅଜ ସୂର୍ଯ୍ୟକ ପରାୟଣ ବିପୁଳାଂଶ ।୧୩ ।
ପରିବୃଢ଼ୋ ଗୁରୁ ପରମ ଧାର୍ମିକ ହେ ସତ୍ୟସନ୍ଧ,
ଲୋକଜ୍ଞ ଲୋକାତ୍ମ ଲୋକକୃତ୍ପର ନମୋ ଲୋକବନ୍ଦ୍ୟ ।୧୪ ।
ସେବ୍ୟ ଜିତମାୟା ରଘୁଦ୍ୱହ ଅନାଦି ଭଗବାନ,
ରାମ ଦୟାକର ଦକ୍ଷ ସର୍ବଜ୍ଞ ସର୍ବପାବନ ।୧୫ ।

ବ୍ରହ୍ମଣ୍ୟ ସର୍ବଦେବମୟ ହରିଗୋପ୍ତା ନୀତିମାନ,
ନମୋ ପୀତବାସ ସୁନ୍ଦର ସୁତ୍ରକାର ପୁରାତନ ।୧୬ ।
ସୌମ୍ୟ ମହର୍ଷି କୋଦଣ୍ଡୀ ସର୍ବଜ୍ଞ ସର୍ବକୋବିଦ,
ସୁଗ୍ରୀବ ବରଦ ହେ କବି ସର୍ବପୁଣ୍ୟାଧିକପ୍ରଦ ।୧୭ ।
ଭବ୍ୟ ଜିତାରିଶବର୍ଗ ମହୋଦାର ଅଘନାଶନ,
ଅଧାତ୍ମ ଯୋଗନିଳୟ ସ୍ମୃତିମାନ ହେ ବୀର୍ଯ୍ୟବାନ ।୧୮ ।
ହେ ସ୍ମିତଭାଷୀ ଚତୁର୍ବାହୁ ଦୁରାସଦ ଅକଲ୍ମଶ,
ସୁକ୍ରୀଭ୍ୟାଦି ପୁରୁଷ ନିବୃତ୍ତାତ୍ମା ପ୍ରଭୁ ସର୍ବାବାସ ।୧୯ ।
ହେ ଧୀର ଦାନ୍ତ ସର୍ବାୟୁଦ୍ଧ ବିଶାରଦ ଘନଶ୍ୟାମ,
ସୁମନା ଲକ୍ଷ୍ମଣ ଅଗ୍ରଜ କାନ୍ତ ପୁଣ୍ୟକୃତାଗମ ।୨୦ ।
ସର୍ବ ତୀର୍ଥମୟ ସର୍ବସଂସ୍ତର ଫଳପ୍ରଦ ଶୂର,
ହେ ବିଭୀଷଣ ପ୍ରତିଷ୍ଠାତା ପରମାତ୍ମା ପରାତ୍ପର ।୨୧ ।
ଯଜ୍ଞ ସ୍ୱରୂପୀ ଯଜ୍ଞ ଈଶ ଜରାମରଣ ବର୍ଜିତ,
ବର୍ଣ୍ଣାଶ୍ରମକ ବର୍ଣ୍ଣୀ ପୁରୁଷୋତ୍ତମ ଶତ୍ରୁଜିତ ।୨୨ ।
ହେ ପ୍ରମାଣଭୁତ ଦୁର୍ଜ୍ଞେୟ ପୂର୍ଣ୍ଣ ପରପୁରଞ୍ଜୟ,
ବିଶ୍ୱକର୍ମା ବିଶାରଦ ଅଭିବନ୍ଦ୍ୟ ହେ ମହାକାୟ ।୨୩ ।
ହେ ଅନନ୍ତଦୃଷ୍ଟି ଆନନ୍ଦ ଧନୁର୍ବେଦ ଧନୁର୍ଦ୍ଧର,
ସତ୍‌ଚିତ ଆନନ୍ଦ ବିଗ୍ରହ ଗୁଣ ଶ୍ରେଷ୍ଠ ଗୁଣାକର ।୨୪ ।
ବିନୀତାତ୍ମା ଜନେଶ୍ୱର ବୀତରାଗ ତପସ୍ୱୀ ଈଶ,
ହେ କଲ୍ୟାଣ ପ୍ରକୃତି କଳ୍ପ ସର୍ବକାମଦ ସର୍ବେଶ ।୨୫ ।
ପୁରୁଷ ପୁରୁଷ ଉତ୍ତମ ସାକ୍ଷୀ କେଶବ ଅକ୍ଷୟ,
ଆନନ୍ଦ ବିଗ୍ରହ ଜ୍ୟୋତି ହନୁମତ ପ୍ରଭୁ ଅବ୍ୟୟ ।୨୬ ।
ମହାମାୟା ଲୋକ ଅଧକ୍ଷ ବିଭୀଷଣ ବରପ୍ରଦ,
ହେ ଭ୍ରାଜିଷ୍ଣୁ ଭୋକ୍ତା ସତ୍ୟବାଦୀ ବହୁଶ୍ରୁତ ସୁଖଦ ।୨୭ ।
ସହନ କାରଣ କର୍ତ୍ତା ଭବ ବନ୍ଧନ ବିମୋଚନ,
ଦେବ ଚୂଡ଼ାମଣି ନେତା ହେ ବ୍ରାହ୍ମଣ ବ୍ରହ୍ମବର୍ଧନ ।୨୮ ।
ରାମ ସର୍ବଦୁଃଖ ବିମୋକ୍ଷକାରୀ ସଂସାରୋତ୍ତାରକ,
କାକୁସ୍ଥ ପୁଣ୍ଡରୀକାକ୍ଷ ବିଶ୍ୱାମିତ୍ର ଭୟନାଶକ ।୨୯ ।
ବିରାଧବଧ ପଣ୍ଡିତ ହେ ରାମ ମାରୀଚ ମଥନ,
ରମ୍ୟ କିରୀଟୀ ତ୍ରିଦେଶ ଅଧିପ ଦୁଃସ୍ୱପ୍ନ ନାଶନ ।୩୦ ।
ମହାଧନୁ ମହାକାୟ ହେ ଭୀମ ଭୀମ ପରାକ୍ରମ,
ତତ୍ତ୍ୱ ସ୍ୱରୂପ ହେ ତତ୍ତ୍ୱଜ୍ଞ ତତ୍ତ୍ୱବାଦୀ ସୁବିକ୍ରମ ।୩୧ ।

କାଳଜ୍ଞାନୀ ମହାପଟୁ ଭୂତକୃତ ସ୍ୱାମୀ ଭୂତାତ୍ମା,
ଅଜେୟ ବିଶ୍ୱକ୍‌ସେନ ମହାତପା ସର୍ବଭୂତାତ୍ମା ।୩୨ ।
ଗୁଣଗ୍ରାହୀ ନିଷ୍କଳଙ୍କ କଳଙ୍କ ନାଶି ଅନିର୍ବିର୍ଣ୍ଣ,
ସ୍ୱଭାବଭଦ୍ର କେଶବ ସ୍ଥାଣୁରୀଶ୍ୱର ଶତ୍ରୁଘ୍ନ ।୩୩ ।
ସର୍ବାଦିଗୁଣସାଗର ଅନୁତ୍ତମ ଅପ୍ରମେୟାତ୍ମା,
ହେ ଜଟାମୁକୁଟ ମଣ୍ଡିତ ସମଗ ସମ ସମାତ୍ମା ।୩୪ ।
ଭୂତାଦି ଶମ୍ଭୁରାଦିତ୍ୟ ହେ ସ୍ଥବିଷ୍ଠ ଧ୍ରୁବ ଶାଶ୍ୱତ,
ସର୍ବଜିତ ସର୍ବଗୋଚର ଅମୃତ୍ୟୁ ଜନ୍ମ ରହିତ ।୩୫ ।
ଚକ୍ରୀ ଖଡ଼୍‌ଗୀ ଭକ୍ତ ଜନ ପ୍ରିୟ କବଚୀ କୁଣ୍ଡଳୀ,
ଅତୀନ୍ଦ୍ର ଊର୍ଜିତ ହେ ପ୍ରାଂଶୁ ଉପେନ୍ଦ୍ର ବାମନ ବଳୀ ।୩୬ ।
ଲୋକ ଅଧକ୍ଷ ମହାବାହୁ ବେଦବିତ୍ତମ ସଦ୍ଗତି,
ସହିଷ୍ଣୁ ଅମୃତ ଶାସ୍ତା ବିଶ୍ୱଯୋନି ହେ ମହାଦ୍ୟୁତି ।୩୭ ।
ବ୍ୟାସ ବାଚସ୍ପତି ସର୍ବ ଦର୍ପିତ ଅସୁର ମର୍ଦ୍ଦନ,
ଶ୍ରୀ ଜାନକୀ ବଲ୍ଲଭ ପୂଜ୍ୟ ପ୍ରକଟ ପ୍ରୀତି ବର୍ଦ୍ଧନ ।୩୮ ।
ସପ୍ତବୋତିନ୍ଦ୍ରିୟ ବୈଦ୍ୟ ନିର୍ଦ୍ଦେଶ ମଦନ ମଥନ,
ଜାମ୍ବବତ ପ୍ରଭୁ ବ୍ୟାପୀ ହେ ବିଶ୍ୱରୂପ ନିରଂଜନ ।୩୯ ।
ନମସ୍ତେ ବିଧାତା ବ୍ରହ୍ମା ବିଷ୍ଣୁ ଶଙ୍କର ଧନୁର୍ବେଦ,
ରତ୍ନଗର୍ଭା ମହାମତି ହଂସ ମରିଚି ହେ ଗୋବିନ୍ଦ ।୪୦ ।
ଜଗନ୍ନାଥ ଅଗ୍ରଣୀ ସାଧୁ ଜଟାୟୁ ପ୍ରୀତି ବର୍ଧନ,
ନୈକରୂପ ସୁରକାର୍ଯ୍ୟ ହିତ ସ୍ୱ ଭୂ ଶ୍ରୀ ନାରାୟଣ ।୪୧ ।
ଜିତକ୍ରୋଧ ଜିତ ଅରାତି ପ୍ଲବଗାଧିପରାଜ୍ୟଦ,
ସୁଭୁଜ ନୈକମାୟ ହେ ଭବ୍ୟ ପ୍ରମୋଦନ ବସୁଦ ।୪୨ ।
କଳ୍ପ ଶରଣାଗତ ବତ୍ସଳ ହେ ଚଣ୍ଡାଂଶୁ ସିଦ୍ଧିଦ,
ରୋଗହର୍ତା ମନ୍ତ୍ରଜ୍ଞ ମନ୍ତ୍ର ଭାବନ ନମୋ ଅଗଦ ।୪୩ ।
ବ୍ୟକ୍ତ ଅବ୍ୟକ୍ତ ରୂପଧୃକ୍ ଧୂର୍ଯ୍ୟ ସୌମିତ୍ରି ବତ୍ସଳ,
ବଶିଷ୍ଠ ଗ୍ରାମଣୀ ପ୍ରିୟଂବଦ ଶ୍ରୀମାନ ଅନୁକୂଳ ।୪୪ ।
ଧୀର ଶରାସନ ବିଶାରଦ ଅତୁଳ ସାତ୍ତ୍ୱିକ,
ଜ୍ୟେଷ୍ଠ ସର୍ବଗୁଣୋପେତ ଶକ୍ତିମାନଂସ୍ତାତକାନ୍ତକ ।୪୫ ।
ବୈକୁଣ୍ଠ ପ୍ରାଣୀଙ୍କ ପ୍ରାଣ କର୍ମଠ ଗୋବର୍ଦ୍ଧନଧର,
କମଳିନୀପତି ମତ୍ସ୍ୟସ୍ୱରୂପ କାରୁଣ୍ୟ ସାଗର ।୪୬ ।
ପିନାକ ମଥନ ବନ୍ଦ୍ୟ ହେ ସମର୍ଥ ଗରୁଡ଼ଧ୍ୱଜ,
ଲୋକତ୍ରୟାଶ୍ରୟ ଲୋକ ଚରିତ ଭରତ ଅଗ୍ରଜ ।୪୭ ।

କୁମ୍ଭକର୍ଣ୍ଣ ପ୍ରଚେତ୍ତା ହେ ଗୋପୀ ଗୋପାଳ ସଂବୃତ,
ଚାଣୁର ମର୍ଦ୍ଦନ ଦିବ୍ୟଶାନ୍ତ ହେ ଭରତ ବନ୍ଦିତ ।୪୮ ।
ମାୟାବୀ ବ୍ୟାପକ ବ୍ୟାପୀ ରେଣୁକେୟବଳାପହ,
ଅମୃତାଂଶୁ ମହାଗର୍ଭ ନିବୃତ ବିଷୟସ୍ପୃହ ।୪୯ ।
ସଦ୍ବୃତି ଲୋକସାକ୍ଷୀ ନାରାୟଣ ବୁଧ ଶ୍ରୀଧର,
ଶବ୍ଦାତିଗ ଗଭୀରାତ୍ମା କୋମଳାଙ୍ଗ ପ୍ରଜାଗର ।୫୦ ।
ମନୋବେଗୀ ମନୋରୂପୀ ପୁରୁଷପୁଙ୍ଗବ ପୂର୍ଣ୍ଣ,
ପର୍ଯ୍ୟନ୍ୟ କୁମୁଦ ଭୂତାବାସ ହେ କମଳ ଲୋଚନ ।୫୧ ।
ସୁବିକ୍ରମ ଯଦୁଶ୍ରେଷ୍ଠ ଯଦୁପତି ଭୂତ ଆବାସ,
ଲକ୍ଷ୍ମଣ ଅଗ୍ରଜ ବୀରହା ଶ୍ରୀବତ୍ସବକ୍ଷା ଶ୍ରୀବାସ ।୫୨ ।
ତେଜୋଧର ଧରା ଆଧାର ମହାନିଧି ଚତୁର୍ମୂର୍ତ୍ତି,
ତ୍ରିକାଳଜ୍ଞ ମୁନି ସାକ୍ଷୀ ବିହାୟ ସଗତି କୃତି ।୫୩ ।
ଆତ୍ମଯୋନି ଦୀନାତ୍ମା ସହସ୍ରାକ୍ଷ ସହସ୍ରପାତ,
ସନାତନ ତମ ମେଘ ଶ୍ୟାମଳ ରାକ୍ଷସାନ୍ତକୃତ ।୫୪ ।
ଲୋକାଭିରାମ ଲୋକାରିମର୍ଦ୍ଦନ ହେ ସେବକପ୍ରିୟ,
ଦିବ୍ୟାୟୁଧଧର ଶ୍ରୀମାନ ପ୍ରମେୟ ହେ ଜିତେନ୍ଦ୍ରିୟ ।୫୫ ।
ଶେଷଶାୟୀ କ୍ଷୀରାବ୍ଧିନିଳୟୋମଳ ହେ ଲୋକଗର୍ଭ,
ହେ ସୁଘୋଷ ସୁଖଦ ସୁଧି ସୁବ୍ରତ ସୂକ୍ଷ୍ମ ସୁଲଭ ।୫୬ ।
ଜନକ ପ୍ରିୟକୃତ ପ୍ରପିତାମହ ଭୂଦେବ ବନ୍ଦ୍ୟ,
ଉତ୍ତମ ସାତ୍ତ୍ୱିକ ତ୍ରିବିକ୍ରମ ସତ୍ୟ ହେ ସତ୍ୟସନ୍ଧ ।୫୭ ।
ଦାମୋଦର ଅଚ୍ୟୁତ ଶାର୍ଙ୍ଗୀ ମଧୁରାଧିପ ବାମନ,
ଦେବକୀ ନନ୍ଦନ ଶୌରି ଶୂର ହେ କୈଟଭ ମର୍ଦ୍ଦନ ।୫୮ ।
ନମସ୍ତେ ସପ୍ତତାଳପ୍ରଭେତ୍ତା ମିତ୍ରବଂଶ ପ୍ରବର୍ଦ୍ଧନ,
ହେ ଯୁଗ ସଂବତ୍ସର ଋତୁ ପକ୍ଷ ଦିବସ ଅୟନ ।୫୯ ।
କାଳସ୍ୱରୂପୀ କାଳାତ୍ମାକାଳ କବି କଲ୍ୟାଣପ୍ରଦ,
ନମସ୍ତେ ରଘୁବଂଶନାଥ ମହାକାଳ ଅଭୟଦ ।୬୦ ।
ସ୍ତବ୍ୟ ବିବିକ୍ତ ନିର୍ଲେପ ସର୍ବବ୍ୟାପୀ ନିରାକୁଳ,
ବର୍ଣ୍ଣଶ୍ରେଷ୍ଠ ବର୍ଣ୍ଣବାହ୍ୟ ବର୍ଣ୍ଣ ବର୍ଣ୍ଣଯୁଗ ଉଜ୍ଜ୍ୱଳ ।୬୧ ।
ରସ ରସଜ୍ଞ ସରଜ୍ଞ ଲୋକସାର ରସାତ୍ମକ,
ଶେଷ ବିଶେଷ ବିଗତ କଳ୍ମଷ ରଘୁନାୟକ ।୬୨ ।
କର୍ମସାକ୍ଷୀ ଅମର ଶ୍ରେଷ୍ଠ ଦେବ ଦେବ ସୁଖପ୍ରଦ,
ଅହଲ୍ୟା ପାବନ ସ୍ୱାମୀ ପିତୃଭକ୍ତ ବରପ୍ରଦ ।୬୩ ।

ଅନାଦି ନିଧନ ସର୍ବଲୋକପୂଜ୍ୟ ନିରାମୟ,
ଶାର୍ଙ୍ଗପାଣି ରଘୁତ୍ତମ ଚକ୍ରୀ ସର୍ବଦେବମୟ ।୬୪ ।
ସର୍ବଦୁଃଖାତିଗ ବିଦ୍ୟାରାଶି ପରମଗୋଚର,
ପ୍ରକୃତି ପୁରୁଷ ଅବ୍ୟୟ ମନୋବୁଦ୍ଧି ଅହଙ୍କାର ।୬୫ ।
ଦେବର୍ଷିର୍ଦେବାସୁର ନମସ୍କୃତ ଦେବାଧିଦେବ,
ନ୍ୟାୟୋ ନ୍ୟାୟୀ ନୟୀ ଶ୍ରୀମାନ ନୟୋ ନଗଧର ଧ୍ରୁବ ।୬୬ ।
ଲକ୍ଷ୍ମୀ ବିଶ୍ୱମ୍ବରାଭର୍ତା ଦେବେନ୍ଦ୍ର ବଳିମର୍ଦ୍ଦନ,
ଯଜ୍ଞାନୁତ୍ତମ ମୁନିସେବିତ ବାଣାରିମର୍ଦ୍ଦନ ।୬୭ ।
ଦେବାଗ୍ରଣୀ ଶିବଧ୍ୟାନ ତତ୍ପର ପରମ ପର,
ପୁଣ୍ୟକୀର୍ତ୍ତି ସୁଲୋଚନ ସାମଗେୟ ପ୍ରିୟ ଅକ୍ରୁର ।୬୮ ।
କଳାନିଧି କଳାନାଥକମଳା ଆନନ୍ଦ ବର୍ଦ୍ଧନ,
ଜୟୀ ଜିତାରି ସର୍ବାଦି ଶମନ ଭବଭଞ୍ଜନ ।୬୯ ।
ହେ କଲ୍ମଶଧ୍ୱାନ୍ତ ପ୍ରଭଞ୍ଜନ ବିଭାବସୁ ଜଟିଳ,
ହେ ରୋଚିଷ୍ଣୁ ବିକ୍ରମୋତ୍ତମ ଅଳଙ୍କାରିଷ୍ଣୁରଚଳ ।୭୦ ।
ହେ ଦଶାସ୍ୟଦ୍ୱିପକେଶରୀ ଅବ୍ୟକ୍ତଲକ୍ଷଣୋବ୍ୟକ୍ତ,
ହେ ଆତ୍ମଯୋନି ଅଯୋନି ସପ୍ତଜିହ୍ୱ ସହସ୍ରପାତ ।୭୧ ।
ପୁଣ୍ୟ ପୁଣ୍ୟ ଅଧିକ ପୂର୍ବ ପୂର୍ଣ୍ଣପୂରୟିତା ରବି,
ପେଶଳୋଜବିନାଂବର ସନାତନତମ ସ୍ରଗ୍ବୀ ।୭୨ ।
ହେ ନିଃଶବ୍ଦ ପ୍ରଣବ ମାଳୀ ସ୍ଥୂଳ ସୂକ୍ଷ୍ମ ବିଲକ୍ଷଣ,
ଆଶୁ ଶବ୍ଦପତି ଶବ୍ଦ ଅଗୋଚର ରଘୁ ରଞ୍ଜନ ।୭୩ ।
ଶକ୍ତିମାନ ଗଦାପଦ୍ମରଥାଙ୍ଗଭୃତ ନିର୍ବିକଳ୍ପ,
ଶଙ୍ଖଭୃନ୍ନାଥ ନିରୀହ ବୀତସାଧ୍ୱସ ଚିଦ୍ ରୂପ ।୭୪ ।
ସହସ୍ରାକ୍ଷ ଶତମୂର୍ତ୍ତି ଧନପ୍ରଭ ହେ ଶତାନନ,
ନମସ୍ତେ କଠିନ ଦ୍ରବ ହୃତ ପୁଣ୍ଡରୀକ ଶୟନ ।୭୫ ।
ଉଗ୍ର ଗ୍ରହପତି ଶ୍ରୀମାନ ସମର୍ଥୋନର୍ଥ ନାଶନ,
ପୁରୁହୂତ ପୁରୁଷ୍ଟୁତ ଅଧର୍ମ ହେ ଶତ୍ରୁ ରକ୍ଷୋଘ୍ନ ।୭୬ ।
ବ୍ରହ୍ମଗର୍ଭ ବୃହଦ୍ ଗର୍ଭୋ ଧର୍ମ ଧେନୁ ଧନାଗମ,
ହିରଣ୍ୟ ଗର୍ଭ ଜ୍ୟୋତିସ୍ମାନ ସୁଲଲାଟ ସୁବିକ୍ରମ ।୭୭ ।
ହେ ଶ୍ୟାମ ଭବାନୀ ପ୍ରିୟକୃଦ୍ବଶୀ ଶିବ ପୂଜାରତ,
ନର ନାରାୟଣ ଶ୍ରୀମାନ କପର୍ଦ୍ଦୀ ନୀଳ ଲୋହିତ ।୭୮ ।
ରୁଦ୍ର ପଶୁପତି ସ୍ଥାଣୁ ବିଶ୍ୱାମିତ୍ର ହେ ଦ୍ୱିଜେଶ୍ୱର,
ବାଳଖିଲ୍ୟ ମହାକଳ୍ପ କଳ୍ପବୃକ୍ଷ ହେ କଳାଧର ।୭୯ ।

ନିଦାଗସ୍ତପନୋଽମୋଘ ଶ୍ଳକ୍ଷ୍ଣ ପରବଳାହାରକ,
ଅସଂସୃଷ୍ଟ ଅତିଥି ଶୂର ପ୍ରମାଥୀ ପାପନାଶକ ।୮୦ ।
ଦିବ୍ୟ କମ୍ବୁଗ୍ରୀବ ଶିବପ୍ରିୟ କବନ୍ଧମଥନ,
ସୁଲଭ ଶିଶିରାତ୍ମକ ଶଙ୍ଖୋଽନିଳ ସୁନିଷନ୍ନ ।୮୧ ।
ମାତାମହ ମାତରିଶ୍ୱ ବିରିଞ୍ଚୀ ବିଷ୍ଟରଶ୍ରବା,
କବ୍ୟବାହ ପ୍ରତପ୍ତ ବିଶ୍ୱଭୋଜନ ବସୁଶ୍ରବା ।୮୨ ।
ଅକ୍ଷୋଭ ସର୍ବଭୂତଙ୍କ ଚଣ୍ଡ ସତ୍ୟ ପରାକ୍ରମ,
ଜ୍ଞାନସ୍କନ୍ଧ ମହାଦ୍ୟୁତି ରାମ ନୀଳୋତ୍ପଳ ଶ୍ୟାମ ।୮୩ ।
ପବିତ୍ର ପାଦ ପାପାରି ମଣିପୁର ନଭୋଗତି,
ଭର୍ଗ ବିବସ୍ୱାନାଦିତ୍ୟ ଯୋଗାଚାର୍ଯ୍ୟ ଦିବସ୍ପତି ।୮୪ ।
ଉତ୍ତାରଣ ଦୁଷ୍କୃତିହା ଦୁର୍ଧର୍ଷ ଦୁଃସହ ଅଭୟ,
ଉଦାର କୀର୍ତ୍ତି ଉଦ୍ୟୋଗୀ ବାଂଗମୟ ସଦସନ୍ମୟ ।୮୫ ।
ଅମୃତ ବପୁଧର୍ମୀ ଧର୍ମ କୃପାକର ଅମୃତେଶ,
ସ୍ୱାଧିଷ୍ଠାନ ପଦ୍ମାଶ୍ରୟ ହେ ନକ୍ଷତ୍ରମାଳୀ ନାକେଶ ।୮୬ ।
ନିଧାନ ଗର୍ଭ ନିର୍ବୀଜ ଗିରୀଶ ବ୍ୟାଳମର୍ଦ୍ଦନ,
ଭୂଶୟ ଭୂତିକୃରୀଭୂତି ଭୂଷଣ ଭୂତବାହନ ।୮୭ ।
ହେ ଶାନ୍ତିପ୍ରଦ ଫଳ ନିଧି ଚତୁର୍ବର୍ଗଫଳ ବର୍ଣ୍ଣୀ,
ନମୋ ମହାବଟୁ ଅକାୟ ଭକ୍ତକାୟ କାଳଜ୍ଞାନୀ ।୮୮ ।
ସମଞ୍ଜସ ଶ୍ରୀବଲ୍ଲଭ ଶିବାରମ୍ଭ ସ୍ୱଭାବଭଦ୍ର,
ନମୋ ସଂସାର ଭୟନାଶନ ମଧ୍ୟସ୍ଥ ଶାନ୍ତିଭଦ୍ର ।୮୯ ।
ହେ ପରାର୍ଥ ବୃତ୍ତି ଅଚଳ ବିବିକ୍ତ ଶ୍ରୁତି ସାଗର,
ବେଦ୍ୟ ବୈଦ୍ୟ ବିୟଦ୍‌ଗୋପ୍ତା ସର୍ବାମରମୁନୀଶ୍ୱର ।୯୦ ।
ନମୋ ସଂକଳ୍ପ ବିଭୁ ବନ୍ଦ୍ୟ ଧ୍ୟେୟ ଧୁର୍ଯ୍ୟ ଧରାଧୀଶ,
ବିଷ୍ଣୁ ଜିଷ୍ଣୁ ଶର୍ବରୀପତି ଯଜ୍ଞପାଳକ ଯଜ୍ଞେଶ ।୯୧ ।
ନମୋ ପ୍ରଭବିଷ୍ଣୁ ଗ୍ରସିଷ୍ଣୁ ଲୋକାତ୍ମା ଲୋକଭାବନ,
ନମୋ ଆଦିକର୍ତ୍ତା ବରାହ ମାଧବ ମଧୁସୂଦନ ।୯୨ ।
ହେ କାବ୍ୟ କବି କାରଣକାରଣ କେଶିହା କେଶବ,
ପୁରୁଷ୍ଟୁତ କାଳକର୍ତ୍ତା କାଳଶେଷ ବାସୁଦେବ ।୯୩ ।
ନାରାୟଣ ନର ହଂସ ବିଶ୍ୱକ୍‌ସେନ ଜନାର୍ଦ୍ଦନ,
ବିଶ୍ୱକର୍ତ୍ତା ମହାଯଜ୍ଞ ପୁରୁଷୋତ୍ତମ ଜ୍ୟୋତିଷ୍ମାନ ।୯୪ ।
ଶୁଚି ଆଶ୍ରିତବତ୍ସଳ ପରମାର୍ଥ ଗୁରୁ ବୃଦ୍ଧ
ନାରସିଂହ ମହାଭୀମ ବକ୍ରଦଂଷ୍ଟ୍ର ନଖ-ଆୟୁଧ ।୯୫ ।

ଆଦିଦେବ ଜଗତକର୍ତ୍ତା ଯୋଗୀଶ ଗରୁଡ଼ଧ୍ୱଜ,
ସୁରେନ୍ଦ୍ର କରଣକର୍ମ କର୍ମକର୍ତ୍ତା କର୍ମ୍ୟଧୋକ୍ଷଜ ।୯୬ ।
ହେ ଗୋବିନ୍ଦ ଗୋପତି ଗୋପ୍ତା ଭୂପତି ଭୁବନେଶ୍ୱର,
ପଦ୍ମନାଭ ହୃଷୀକେଶ ଧାତା ହେ ପ୍ରଭୁ ଦାମୋଦର ।୯୭ ।
ତ୍ରିବିକ୍ରମ ତ୍ରିଲୋକ-ଈଶ ବ୍ରହ୍ମେଶ ପ୍ରୀତିବର୍ଦ୍ଧନ,
ଗୋବିନ୍ଦ ଗୋପବଲ୍ଲଭ ବାମନ ହେ ଦୁଷ୍ଟ ଦମନ ।୯୮ ।
ବୈକୁଣ୍ଠ ପୁଣ୍ଡରୀକାକ୍ଷ କୃଷ୍ଣ ସୂର୍ଯ୍ୟ ସୁର-ଅର୍ଚ୍ଚିତ,
ସତ୍ୟସତ୍ୟ କୀର୍ତ୍ତିର୍ଧୃତି ସ୍ମୃତି ଭକ୍ତପ୍ରିୟ ଅଚ୍ୟୁତ ।୯୯ ।
କାରୁଣ୍ୟ କରୁଣ ସନ୍ୟାସୀ ପାପହା ଶାନ୍ତିବର୍ଦ୍ଧନ,
ନମୋ ବ୍ୟାସ ଶାସ୍ତ୍ରତତ୍ତ୍ୱଜ୍ଞ ମନ୍ଦରାଦ୍ରିନିକେତନ ।୧୦୦ ।
ବଦରୀ ନିଳୟ ଶାନ୍ତ ବୈଦ୍ୟୁତପ୍ରଭ ଭୂତାବାସ,
ନମୋ ତପସ୍ୱୀ ଶ୍ରିୟପତି ଗୁହାବାସ ଶ୍ରୀନିବାସ ।୧୦୧ ।
ତପୋବାସ ମୁଦାବାସ ସତ୍ୟବାସ ହେ ମହେଶ୍ୱର,
ସନାତନ ପୁରୁଷ ପୁଣ୍ୟ ପୁଷ୍କରାକ୍ଷ ହେ ପୁଷ୍କର ।୧୦୨ ।
ନମୋ ପୁରାଣଜ୍ଞ ପୁଣ୍ୟଦ ପ୍ରୀତିବର୍ଦ୍ଧନ ଲାଙ୍ଗଳୀ,
ପୂର୍ଣ୍ଣମୂର୍ତ୍ତି ଶଙ୍ଖୀ ଚକ୍ରୀ ଗଦୀ ଶାର୍ଙ୍ଗୀ ମୁଷଳୀ ହଳୀ ।୧୦୩ ।
ନମୋ ସମ କିରୀଟୀ କବଚୀ ଧ୍ୱଜୀ ହାରୀ ମେଖଳୀ,
ସାରଥି ସ୍ୱାମୀ ସାମବେଦପ୍ରିୟ ସାତ୍ତ୍ୱିକ କୁଣ୍ଡଳୀ ।୧୦୪ ।
ଶତ୍ରୁଜିତ ଶତ୍ରୁତାପନ ମହାବୀର୍ଯ୍ୟ ଯୋଦ୍ଧାଜେତା,
ହେ ଶାସ୍ତ୍ରକର ଶାସ୍ତ୍ର ଶଙ୍କର ଶଙ୍କର ସ୍ତୁତ ସବିତା ।୧୦୫ ।
ପବନ ସଂହତ ଶକ୍ତି ସଂପୂର୍ଣ୍ଣାଙ୍ଗ ସମୃଦ୍ଧିମାନ,
ସ୍ୱର୍ଗଦ କାମଦ ଶ୍ରୀଦ କୀର୍ତ୍ତିଦ ଅକୀର୍ତ୍ତିନାଶନ ।୧୦୬ ।
ମୋକ୍ଷଦ ପୁଣ୍ଡରୀକାକ୍ଷ କ୍ଷୀର-ଅବ୍ଧିକୃତ କେତନ,
ସର୍ବ-ଆତ୍ମା ସର୍ବଲୋକେଶ ପ୍ରେରକ ପାପନାଶନ ।୧୦୭ ।
ହେ ସର୍ବବ୍ୟାପୀ ଜଗନ୍ନାଥ ସର୍ବଲୋକ ମହେଶ୍ୱର,
ହେ ନିର୍ଲେପ ନିର୍ଗୁଣ ସୂକ୍ଷ୍ମ ନିରଂଜନ ନିର୍ବିକାର ।୧୦୮ ।
ଅକ୍ଷୟ ଶାଶ୍ୱତୋନନ୍ତ କ୍ଷୟବୃଦ୍ଧିବିବର୍ଜିତ,
ସର୍ବୋପାଧି ବିନିର୍ମୁକ୍ତ ସତ୍ତାମାତ୍ର ବ୍ୟବସ୍ଥିତ ।୧୦୯ ।
ସର୍ବଲୋକ ସୁଖାବହ ସର୍ଗସ୍ଥିତ୍ୟନ୍ତକୃତ୍ ଦେବ,
ଶ୍ରୀମାନ ଆଶ୍ରିତ ବତ୍ସଳ ସର୍ବେଶ୍ୱରେଶ୍ୱର ସର୍ବ ।୧୧୦ ।
ଅଧିକାରୀ ବିଭୁନିତ୍ୟ ସ୍ୱୟଂତେଜା ସୁଦୀପ୍ତବାନ,
ସତ୍ୟବାନ ଗୁଣସଂପନ୍ନ ପରମାତ୍ମା ସନାତନ ।୧୧୧ ।

ହେ ଅଚଳ ନିର୍ମଳ ବ୍ୟାପୀ ନିରାଶ୍ରୟ ନିତ୍ୟତୃପ୍ତ,
ବିଶ୍ୱସୃଡଂ ବିଶ୍ୱଗୋପ୍ତା ବିଶ୍ୱଭୋକ୍ତା ନମୋ ଶାଶ୍ୱତ ।୧୧୨ ।
ବିଶ୍ୱେଶ୍ୱର ବିଶ୍ୱମୂର୍ତ୍ତି ବିଶ୍ୱ ଆତ୍ମା ବିଶ୍ୱଭାବନ,
ସର୍ବଭୂତ ସୁହୃଦ୍‌ଛାନ୍ତ ସର୍ବଭୂତାନୁକମ୍ପନ ।୧୧୩ ।
ଭଗବାନ କାଳ କାଳଚକ୍ର ପ୍ରବର୍ତ୍ତକ କାଳାତ୍ମା,
ନାରାୟଣ ପରମ ଜ୍ୟୋତି ସନାତନ ପରମାତ୍ମା ।୧୧୪ ।
ନରସିଂହ ସର୍ବହୃଗ୍ୱଶୀ ସର୍ବ ଆତ୍ମା ହୃଶୀକେଶ,
ସର୍ବଭୂତାଶୟସ୍ଥିତ ସର୍ବଗ ସର୍ବଭୂତ ଈଶ ।୧୧୫ ।
ନାରାୟଣ ପର ଅଭ୍ୟନ୍ତରସ୍ତ୍ରସ୍ତମସଶ୍ଚୈତ୍ତା,
ସନାତନ ଜଗତସ୍ତସ୍ଥୁଷଶ୍ଚୈବ ପ୍ରଭୁର୍ନେତା ।୧୧୬ ।
ଦୀପ୍ତାଖ୍ୟ ମିତଭାଷଣ ଶ୍ୟାମ ଯୁବା ଲୋହିତାକ୍ଷ,
ପୁରାଣ ପୁରୁଷ ସ୍ରଷ୍ଟା ସହସ୍ରପାଦ ସହସ୍ରାକ୍ଷ ।୧୧୭ ।
ପରଂଜ୍ୟୋତି ପରମଧାମ ପରାକାଶ ପରାତ୍ପର,
ନମୋ ଅଚ୍ୟୁତ ପୁରୁଷ କୃଷ୍ଣ ଶାଶ୍ୱତ ଶିବେଶ୍ୱର ।୧୧୮ ।
ସିଂହସ୍କନ୍ଧ ମହାଭୁଜ ଆଜାନୁ ବାହୁ ସୁମୁଖ,
ସର୍ବଲୋକେଶ୍ୱର ଶ୍ରୀମାନ ସର୍ବଜ୍ଞ ସର୍ବତୋମୁଖ ।୧୧୯ ।
ଆଚାରବାଚ୍ୟ ଭଗବାନ ଉଗ୍ର ସାକ୍ଷୀ ପ୍ରଜାପତି,
ନିତ୍ୟ ସର୍ବଗତ ସ୍ଥାଣୁ  ଶ୍ରୀର୍ଭୁ ପୁମାନ ଲୀଳାପତି ।୧୨୦ ।
ବିଷ୍ଣୁ ବିଶ୍ୱହୃଗବ୍ୟୟ ସହସ୍ରମୂର୍ତ୍ତି ବିଶ୍ୱ ଆତ୍ମା,
ସଚିଦାନନ୍ଦ ବିଗ୍ରହ ପରମବ୍ରହ୍ମ ପରମାତ୍ମା ।୧୨୧ ।
ଲୋକକୃତ ଲୋକଭୃତ ବିଭୁ ହିରଣ୍ୟଗର୍ଭ ଶାସ୍ତା,
ନମସ୍ତେ ସର୍ବ ପ୍ରଭୁ ଈଶ୍ୱର କର୍ତ୍ତା ଧାତା ବିଧାତା ।୧୨୨ ।
ହେ ପ୍ରଜାପତି ପତିହରି ସ୍ରଷ୍ଟା ଅନାଦିନିଧନ,
ତତ୍ତ୍ୱାତ୍ମା ନାରାୟଣ ବିଷ୍ଣୁ ବାସୁଦେବ ସନାତନ ।୧୨୩ ।
ଶ୍ରୀମାନ ମହାବିଷ୍ଣୁ ଜିଷ୍ଣୁ ଦେବହିତାବହ ରାମ,
ନମୋ ଶାଶ୍ୱତ ସର୍ବ ସିଦ୍ଧିଦ ତତ୍ତ୍ୱ ତାରକ ବ୍ରହ୍ମ ।୧୨୪ ।
ସ୍ୱାମୀ ସୁଶୀଳ ସର୍ବଜ୍ଞ ସୁଲଭ ସର୍ବଶକ୍ତିମାନ,
ଅନନ୍ତ ଶ୍ରୀପତି ରାମ ଗୁଣଭୁର୍ନିଗୁଣ ମହାନ ।୧୨୫ ।
କୃପାପୀୟୁଷ ଜଳଧି ସର୍ବ ଦେହିଙ୍କର ଶରଣ୍ୟ,
ଜଗତପତି ଈଶ୍ୱର ସ୍ୱାମୀ ଶ୍ରୀମାନ ନାରାୟଣ ।୧୨୬ ।
ନମୋ ନୈସର୍ଗିକ ସୁହୃତ୍ ସୁଖୀ ସମ୍ପୂର୍ଣ୍ଣକାମ ନିତ୍ୟ,
ଶ୍ରୀଶ ଭୂତଙ୍କ ଶରଣ୍ୟ ଅଭୀଷ୍ଟଦାୟକ ସଂଶ୍ରିତ ।୧୨୭ ।

ହେ ରାବଣାନ୍ତକ ଦୁଷ୍ଟ ବିନାଶକ ଘେନ ପ୍ରଣାମ,
ନମସ୍ତେ ରାଘବ କରୁଣା ଅର୍ଣ୍ଣବ ପୁରୁଷୋତ୍ତମ ।୧୨୮ ।
ଧରାଭାରା ଉଶ୍ୱାସକ ଆହେ ପ୍ରଭୁ ରଘୁପୁଙ୍ଗବ,
ନମସ୍ତେ କ୍ଷତ୍ରୀୟ କୁଳରବି ନମସ୍ତେ ସୀତାଧବ ।୧୨୯ ।
ଋଷିଗଣ ସ୍ତୁତି କରିଣ ଶ୍ରବଣ ରଘୁନନ୍ଦନ,
ଶ୍ରଦ୍ଧାରେ ବନ୍ଦିଲେ ତପସ୍ୱୀ ମୁନିମାନଙ୍କ ଚରଣ ।୧୩୦ ।
କରିଲେ ନିବେଦନ ଅତ୍ୟନ୍ତ ବିନୟର ସହିତ,
ଆହେ ତପସ୍ୱୀ ବ୍ରାହ୍ମଣ ଗଣ ତୁମ୍ଭେମାନେ ମହତ ।୧୩୧ ।
କ୍ଷତ୍ରୀୟ କୁଳରେ ଜନମ ମୋହର ଦୁଷ୍ଟ ଦମନ,
ଧରମ ଅଟଇ ଧର୍ମ ମାନି କରୁଅଛି ଶାସନ ।୧୩୨ ।
ଦୁଷ୍ଟ ରାବଣର ଦୁଷ୍ଟତା ହୋଇଲା ଯେଣୁ ଅସହ୍ୟ,
ଦଣ୍ଡପାଣି ରୂପେ ଦଣ୍ଡିଅଛି ବ୍ରାହ୍ମଣର ତନୟ ।୧୩୩ ।
ବ୍ରହ୍ମହତ୍ୟା ଦୋଷେ ଦୋଷୀ ମୁହିଁ କରିବି ପ୍ରାୟଶ୍ଚିତ,
କୃପାକରି ବିଚାର ପୂର୍ବକ କୁହ ଯାହା ଉଚିତ ।୧୩୪ ।
ଶ୍ରୀରଘୁ ନନ୍ଦନ ଶ୍ରୀମୁଖୁ ଶୁଣିଣ ତପସ୍ୱୀ ଗଣ,
ବୋଲନ୍ତି ସାନନ୍ଦେ ଅତିଶୟ ମନେ ହୋଇ ପ୍ରସନ୍ନ ।୧୩୫ ।
ତୁମେ ପ୍ରଭୁ ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ଶ୍ରୀରାମ,
ପରମ ଈଶ୍ୱର ଜଗତ କରତା ପରମ ବ୍ରହ୍ମ ।୧୩୬ ।
ପାପର ହରତା ପାପ ତୁମ ସ୍ପର୍ଶ କରି ନ ପାରେ,
ପରମ ମଙ୍ଗଳ କରମ କରିଛ ତାରି ଅସୁରେ ।୧୩୭ ।
ମର୍ଯ୍ୟାଦା ପାଳନ ମର୍ଯ୍ୟାଦା ରକ୍ଷଣ ତୁମ୍ଭରି ଧର୍ମ,
ବ୍ରହ୍ମହତ୍ୟା ଦୋଷୁ ମୁକତି ନିମନ୍ତେ ପରମ କର୍ମ ।୧୩୮ ।
ଶିବଲିଙ୍ଗ ସ୍ଥାପି ତାଙ୍କର ପୂଜନ ଭକତି ଭରେ,
କରନ୍ତୁ ଲୋକ ସଂଗ୍ରହ ଉଦ୍ଦେଶେ ଏହି କ୍ଷେତ୍ରରେ ।୧୩୯ ।
ଅସୀମ ମହିମାବନ୍ତ ଶିବଲିଙ୍ଗ ତୁମ ନାମରେ,
ପ୍ରଖ୍ୟାତ ହୋଇ ବିସ୍ତାରିବ ସୁନାମ ସାରା ସଂସାରେ ।୧୪୦ ।
ଦର୍ଶନ ପୂଜନ କରଣେ ମନୁଷ୍ୟ ପରମ ପଦ,
ପ୍ରାପତ କରିବେ ତୁମ୍ଭରି ଦୟାରେ ହେବେ ଆନନ୍ଦ ।୧୪୧ ।
ରାବଣ ନିଧନ ଜନିତ ଦୂଷଣ ହୋଇବ ଲୋପ,
କର୍ମଫଳ ପ୍ରତି ଲୋକଶିକ୍ଷା ଲୋକେ ପାଇ ଅମାପ ।୧୪୨ ।
ମହାଜନଙ୍କର ଆଦୃତ ପଥରେ ଚାଲିବେ ନିତ୍ୟ,
ଅନିତ୍ୟ ସଂସାରେ ସଂସ୍ଥାପିତ ହେବ ସରଣୀ ନିତ୍ୟ ।୧୪୩ ।

ଲିଙ୍ଗ ସ୍ଥାପନର ପୂଣ୍ୟମୟ କାଳ ଦୁଇ ମୁହୂର୍ତ୍ତ,
ବାକି ଅଛି ରହି ସେକାଳେ ଶୁଭ ଅଟଇ ଅତ୍ୟନ୍ତ ।୧୪୪ ।
ଶିବଲିଙ୍ଗ ଶୀଘ୍ର ଆଣିବା ଲକ୍ଷ୍ୟେ କୈଳାସ ପର୍ବତେ,
ପେଷିଲେ ରାଘବ ପବନ ନନ୍ଦନ ପ୍ରିୟ ଭକତେ ।୧୪୫ ।
ଅଞ୍ଜନା କୁମର ଆନନ୍ଦେ ଅଧିର ହୋଇ ତତ୍କ୍ଷଣ,
ନମି ସୀତାରାମେ ପବନ ବେଗେ ଉଡ଼ିଲା ଗଗନ ।୧୪୬ ।
ପହଁଚି ଖୋଜେ କୈଳାସେ ଲିଙ୍ଗରୂପ ଧାରୀ ଶଙ୍କର,
ଦର୍ଶନ ନ ପାଇ ଶିବ ଅବତାର ହେଲେ ଆତୁର ।୧୪୭ ।
ଜ୍ଞାନିଗଣେ ଅଗ୍ରଗଣ୍ୟ ହନୁମାନ ନ ପାଇ ମାର୍ଗ,
ଆଷୁତୋଷ ଶିବେ ସଂତୁଷ୍ଟ କରଣେ ହୋଇଲେ ବ୍ୟଗ୍ର ।୧୪୮ ।
ଭାବରେ ବିହ୍ୱଳ ହୋଇଣ ମାରୁତି ଗାଇଲେ ସ୍ତୋତ୍ର,
ଯୋଗୀରାଜ ଆତ୍ମଜ ସ୍ମରି ଭକ୍ତିରେ ପ୍ରଭୁ ତ୍ରିନେତ୍ର ।୧୪୯ ।
ନମସ୍ତେ ଶିବ ହର ରୁଦ୍ର ପୁଷ୍କଲୋଚନ ପୁଷ୍କର,
ମୃଡ଼ ଅର୍ଥିଗମ୍ୟ ସଦାଚାର ସର୍ବ ବିଶ୍ୱେଶ୍ୱେଶ୍ୱର ।୧୫୦ ।
ଶମ୍ଭୁ ଚନ୍ଦ୍ରାପୀଡ଼ ଚନ୍ଦ୍ରମୌଳୀ ବିଶ୍ୱ ନୀଳଲୋହିତ,
ବେଦାନ୍ତସାର ସଂଦୋହ କପାଳୀ ପଟୁ ପ୍ରିୟଭକ୍ତ ।୧୫୧ ।
ଅପରିଛେଦ୍ୟ ଗୌରୀଭର୍ତ୍ତା ଗଣେଶ୍ୱର ଅଷ୍ଟମୂର୍ତ୍ତି,
ନମସ୍ତେ ଦୃଢ଼ ପ୍ରଜ୍ଞ ଜ୍ଞାନଗମ୍ୟ ଦୃଢ଼ ବିଶ୍ୱମୂର୍ତ୍ତି ।୧୫୨ ।
ଧ୍ୟାନାଧାର ତ୍ରିବର୍ଗ ସ୍ୱର୍ଗସାଧନ ହେ ଜ୍ଞାନଗମ୍ୟ,
ଦୃଢ଼ ପ୍ରଜ୍ଞ ପରିବୃଢ଼ ତ୍ରିଲୋଚନ ଶୁଚିସତ୍ତମ ।୧୫୩ ।
ଈଶ ବୃଶାଙ୍କ ବିଶ୍ୱରୂପ ଦେବଦେବ ମହାଦେବ,
ସର୍ବପ୍ରମାଣ ସଂବାଦୀ ବୃଷବାହାନ ବାମଦେବ ।୧୫୪ ।
ଖଟ୍ୱାଙ୍ଗ ପିନାକୀ ବିରୁପାକ୍ଷ କାଳକାଳ ବାଗୀଶ,
ଗୋପ୍ତା ବ୍ରହ୍ମା ଧୂର୍ଜଟି ପ୍ରଣବାତ୍ମକ ଜୁଷ୍ୟ ପୁରୁଷ ।୧୫୫ ।
ମହାଯୋଗୀ ଚିତ୍ରବେଷ କୁବେର ବନ୍ଧୁ ତମୋହର,
ଚିରନ୍ତନ କୃତ୍ତିବାସ ମୃଦୁ ସୁଭଗ ପରାତ୍ପର ।୧୫୬ ।
ଉନ୍ନଘ ଦୁର୍ବାସା ଦିବ୍ୟାୟୁଧ ଉଗ୍ର ପୁରଶାସନ,
ସ୍କନ୍ଧଗୁରୁ ଗିରିଜାଧବ ଅନାଦି ମଧ୍ୟ ନିଧନ ।୧୫୭ ।
ପରମେଷ୍ଠୀ ସମାଧିବେଦ୍ୟ ମୃଗବ୍ୟାଧ ନୀଳକଣ୍ଠ,
କୋଦଣ୍ଡୀ ପରଶ୍ୱଧୀ ବିଶାଳାକ୍ଷ ଗିରୀଶ ଶ୍ରୀକଣ୍ଠ ।୧୫୮ ।
କ୍ଷମାକ୍ଷେତ୍ର ଭଗନେତ୍ରଭେଦନକର୍ତ୍ତା ଧର୍ମଧାମ,
ପଶୁପତି ପରଂତପ ସୁରେଶ ଲୋକବର୍ଣ୍ଣୋତ୍ତମ ।୧୫୯ ।

ତାର୍କ୍ଷ୍ୟ ଶ୍ମଶାନ ନିଳୟ ଦୟାକର ସୂର୍ଯ୍ୟତାପନ,
କପର୍ଦ୍ଦୀ ଦକ୍ଷଦାତା ସୂକ୍ଷ୍ମ ମହୌଷଧି ଭଗବାନ ।୧୬୦ ।
ଶ୍ମଶାନସ୍ଥ ଲୋକକର୍ତ୍ତା ଜ୍ଞାନଗମ୍ୟ ଗୋପ୍ତା ଗୋପତି,
ମହାକର୍ତ୍ତା ଶୁଦ୍ଧାତ୍ମା ଅମୃତପ ସୋମପ ସୂନୀତି ।୧୬୧ ।
ମହେଶ୍ୱର ଉତ୍ତର ସୋମ ସୋମରତ ମୃଗପତି,
ସୁଖୀ ପୁରାତନ ସୌମ୍ୟ କାମଶାସନ ମହାଦ୍ୟୁତି ।୧୬୨ ।
ମହାତେଜା ଅଜାତ ଶତ୍ରୁ ସୁଧାପତି ତେଜୋମୟ,
ନୀତି ସମ୍ଭାବ୍ୟ ଆଲୋକ ଅନ୍ନମୟ ଅମୃତମୟ ।୧୬୩ ।
ନମସ୍ତେ ହବ୍ୟବାହନ ସର୍ବଗ ସୁଧୀ ବେଦକର,
ମହର୍ଷିକପିଳାଚାର୍ଯ୍ୟ ପିନାକପାଣି ଲୋକକର ।୧୬୪ ।
ବିଶ୍ୱଦୀପ୍ତି ବିଶ୍ୱସୃକ କର୍ଣ୍ଣିକାର ପ୍ରିୟ ଭୂଦେବ,
ସ୍ୱସ୍ତିଦ ସ୍ୱସ୍ତିକାରକ ସର୍ବଗୋଚର ସର୍ଗ ଶିବ ।୧୬୫ ।
ନମସ୍ତେ ଧାତୃଧାମା ବ୍ରହ୍ମସୃଜକ ଗୋଶାଖ ସ୍ଥିର,
ପୁଷ୍କଳ ସନାତନ ତ୍ରିଲୋଚନ କବି ସୁତ୍ରକାର ।୧୬୬ ।
ଧାମକର ଭିଷଗନୁତ୍ତମ ବିଜିତାତ୍ମା ବିଶାଖ,
ବିଧେୟାତ୍ମା ଛିନ୍ନସଂଶୟ ଗଙ୍ଗାପ୍ଲବୋଦକ ଶାଖ ।୧୬୭ ।
ଭୂତବାହନ ସାରଥି ଗଣକାୟ ଭବ୍ୟ ସ୍ଥପତି,
ଭସ୍ମୋଦ୍ ଧୂଳିତ ବିଗ୍ରହ ଦୁର୍ଗ କାମଦେବ ସୁକୀର୍ତ୍ତି ।୧୬୮ ।
ନମସ୍ତେ କାମପାଳ ଭସ୍ମପ୍ରିୟ କାମୀ ଅକଲ୍ମଷ,
ନମସ୍ତେ କାନ୍ତ କୃତାଗମ ସମାବର୍ତ୍ତ ଦୁରାବାସ ।୧୬୯ ।
ସଗଣ ଭସ୍ମଶାୟୀ ଦୁର୍ଲଭ ଦୁର୍ଗମ ଦୁରାସଦ,
ସଦାଶିବ ଅନିବୃତ୍ତାତ୍ମା ସର୍ବାୟୁଧ ବିଶାରଦ ।୧୭୦ ।
ଧର୍ମପୁଞ୍ଜ ଚତୁର୍ବାହୁ ଜଗଦୀଶ ଲୋକସାରଙ୍ଗ,
ଆଧ୍ୟାତ୍ମ ଯୋଗନିଳୟ ଭସ୍ମଶୁଦ୍ଧିକର ଶୁଭାଙ୍ଗ ।୧୭୧ ।
ଓଜସ୍ୱୀ ଶୁଦ୍ଧବିଗ୍ରହ ମେରୁ ବଳୀ ତନ୍ତୁବର୍ଦ୍ଧନ,
ସୁତନ୍ତୁ ଭୃତ୍ୟମର୍କଟ ରୂପଧାରକ ଜନାର୍ଦ୍ଦନ ।୧୭୨ ।
ହିରଣ୍ୟରେତା ମହାହ୍ରଦ ବ୍ୟାଳୀ ରିପୁଜୀବହର,
ଅସାଧ୍ୟ ସାଧୁସାଧ୍ୟ ମାହାଗର୍ତ୍ତ ବ୍ୟାଘ୍ରଚର୍ମାମ୍ବର ।୧୭୩ ।
ପୌରାଣ ମହାନିଧି ଅମୃତାଶ ଶୂର ମହାଭୂତ,
ଅମୃତବପୁ ପାଞ୍ଚଜନ୍ୟ ପରାବର ପାରିଜାତ ।୧୭୪ ।
ନମସ୍ତେ ପଞ୍ଚବିଂଶତି ତତ୍ତ୍ୱସ୍ଥ ନିଧି ପ୍ରଭଞ୍ଜନ,
ବ୍ରହ୍ମ ବେଦନିଧି ବର୍ଣ୍ଣାଶ୍ରମ ଗୁରୁ ଶତ୍ରୁତାପନ ।୧୭୫ ।

ବର୍ଣ୍ଣୀ ଆଶ୍ରମ ସୁଲଭ କ୍ଷଣପହେ ଶତ୍ରୁଜିତ,
ଅବଳେଶ୍ୱର ଜ୍ଞାନବାନ ଦୁର୍ଜ୍ଜେୟ କ୍ଷାମ ସୁବ୍ରତ ।୧୭୬ ।
ଗୁଣରାଶି ଧନୁର୍ବେଦ ଧନୁର୍ଧର ବାୟୁବାହନ,
ପ୍ରମାଣ ରୂପ ସୁପର୍ଣ୍ଣ ଦମୟିତା ଧର୍ମସାଧନ ।୧୭୭ ।
ବିଶ୍ୱକର୍ମ ବିଶାରଦ ସତ୍ୟ ଅଦୀନ ସତ୍ୟପର,
ଅନନ୍ତଦୃଷ୍ଟି ଅଭିବାଦ୍ୟ ମହାମାୟ ଗୁଣାକର ।୧୭୮ ।
ଧର୍ମାଙ୍ଗ ଆନନ୍ଦ ବୀତରାଗ ଦମ ଭୂତଭାବନ,
ଦଣ୍ଡ ତପସ୍ୱୀ ଉନ୍ମତ୍ତବେଷ ଜିତକାମ ପ୍ରଚ୍ଛନ୍ନ ।୧୭୯ ।
ବିନିତାତ୍ମା ଅଜିତପ୍ରିୟ ସର୍ବଲୋକ ପ୍ରଜାପତି,
ତରସ୍ୱୀ ତାରକ ଧୀମାନ ପ୍ରଭୁ କଲ୍ୟାଣ ପ୍ରକୃତି ।୧୮୦ ।
ନମସ୍ତେ କଳ୍ପ ଲୋକପାଳ ପ୍ରଧାନ ନିୟତାଶ୍ରୟ,
କଳ୍ପାଦି ବେଦଶାସ୍ତ୍ରାର୍ଥ ତତ୍ତ୍ୱଜ୍ଞ ବରାଙ୍ଗ ଅବ୍ୟୟ ।୧୮୧ ।
ଅନ୍ତର୍ହିତାତ୍ମା ଅନିୟମ ଅନଘ କମଳେକ୍ଷଣ,
ଚନ୍ଦ୍ର ସୂର୍ଯ୍ୟ ଶନି କେତୁ ମଙ୍ଗଲ୍ୟ ମୃଗବାଣାର୍ପଣ ।୧୮୨ ।
ବିଦ୍ରୁମଛବି ଭକ୍ତିବଶ୍ୟ ସ୍ଥବିଷ୍ଟ ଅଦ୍ରିଆଳୟ,
ପରବ୍ରହ୍ମ ଅଦ୍ରି ଜଗଦ୍ ଗୁରୁ ତୁଷ୍ଟ ମନ୍ତ୍ର ପ୍ରତ୍ୟୟ ।୧୮୩ ।
ପରମାତ୍ମା ସର୍ବକର୍ମାଳୟ ସ୍ଥବିର ଧ୍ରୁବ କାନ୍ତ,
ମହାତପା ଦୀର୍ଘତପା ପରମଂତପ ବ୍ୟାପ୍ତି ଶାନ୍ତ ।୧୮୪ ।
ପ୍ରମାଣ ଅହସଂବତ୍ସର ମହାରେତା ସର୍ବେଶ୍ୱର,
ମହାବଳ ସିଦ୍ଧ ସିଦ୍ଧି ସର୍ବାଦି ସଂବତ୍ସରକର ।୧୮୫ ।
ଅଜ ଯୋଗୀ ଯୋଗ୍ୟ ମଙ୍ଗଳାବୃତ ସୁକୀର୍ତ୍ତିଶୋଭନ,
ମହାତେଜା ବସୁ ବସୁମନା ସତ୍ୟ ସର୍ବଦର୍ଶନ ।୧୮୬ ।
ଲୋକନାଥ ଭୋକ୍ତା ଅଗ୍ରହ ସର୍ବପାପହରୋହର,
ଶ୍ରୀମାନ ବେଦାଙ୍ଗ ବେଦବିନ୍ମୁନି ଧନ୍ୱୀ ଦୁରାଧର ।୧୮୭ ।
ଭ୍ରାଜିଷ୍ଣୁ ଭୋଜନ ଅମୃତ ଶାଶ୍ୱତ ମନ୍ତ୍ର ସମାନ,
କମଣ୍ଡଳୁ ଧର ବୁଧ ବାଣହସ୍ତ ପ୍ରତାପବାନ ।୧୮୮ ।
ଅତିନ୍ଦ୍ରିୟୋ ମହାମାୟ ଚତୁଷ୍ପଥ ବୃଷବାହନ,
ଆବାଙ୍ ମନସଗୋଚର କାଳଯୋଗୀ ସର୍ବଶାସନ ।୧୮୯ ।
ନମସ୍ତେ ଇଷ୍ଟ ସର୍ବାବାସ ପ୍ରେତଚାରୀ ପୁରନ୍ଦର,
ଶ୍ରୀମାନ ମହୋତ୍ସାହୋ ମହାବଳ ହରି ନିଶାଚର ।୧୯୦ ।
ମହାନାଦ ମହାବୁଦ୍ଧି ଅମହାମାୟ ସ୍ୱଷ୍ଟାକ୍ଷର,
ମହାବୀର୍ଯ୍ୟ ଗୃହ ମହାଶକ୍ତି ମହାଦ୍ୟୁତି ଗମ୍ଭୀର ।୧୯୧ ।

ଭୂତଚାରୀ ସର୍ବାଚାର୍ଯ୍ୟ ମନୋଗତି ସାର ଶୋଧନ,
ଅନିର୍ଦ୍ଦେଶ୍ୟବପୁ ସୁଲଭ ଅବଲୋକ୍ଷ୍ଟ ଗହନ ।୧୯୨ ।
ବହୁଶ୍ରୁତ ନିୟତାତ୍ମା ସାରସମ୍ପ୍ଲବ ଅବିଶିଷ୍ଟ,
ଧ୍ରୁବୋ ଧ୍ରୁବ ଓଜସ୍ତେଜୋଦ୍ୟୁତିଧର କର୍ତ୍ତା ଶିଷ୍ଟେଷ୍ଟ ।୧୯୩ ।
ଯୁଗାଦିକର୍ତ୍ତା ଯୁଗାବର୍ତ୍ତ ପ୍ରକାଶାତ୍ମା ପ୍ରକାଶକ,
ନିତ୍ୟନୃତ୍ୟ ନୃତ୍ୟପ୍ରିୟ ଜୟକାଳବିତ୍ ଜନକ ।୧୯୪ ।
ତୀର୍ଥନାମା ତୀର୍ଥଦୃଶ୍ୟ ତୀର୍ଥଦ ବେତ୍ତା ତୀର୍ଥରୂପ,
ଅପାଂନିଧି ଅଧିଷ୍ଠାନ ଜଗଦାଦିଜ ବାଳରୂପ ।୧୯୫ ।
ହିରଣ୍ୟ କବଚ ପ୍ରମାଣଜ୍ଞ ଆଦିକର୍ତ୍ତା ଦୁର୍ଜୟ,
ପ୍ରତିଷ୍ଠିତ ବିମୋଚନ ସୁରଗଣ ବିନ୍ଦୁସଂଶ୍ରୟ ।୧୯୬ ।
ନମସ୍ତେ କରଣ କାରଣ ବିଦ୍ୟେଶ ବ୍ୟବସ୍ଥାନ,
ବ୍ୟବସାୟ ଲଳିତ ବୀରଭଦ୍ର ସଂବନ୍ଧ ବିମୋଚନ ।୧୯୭ ।
ବୀରାସନବିଧି ବୀରଚୂଡ଼ାମଣି ଖଗ ସ୍ଥାନଦ,
ବୀରେଶ୍ୱର ବିରାଟ ଶିବାଳୟ ଗୁରୁଦ ଅଭେଦ ।୧୯୮ ।
ଭାବାତ୍ମାରେ ସଂସ୍ଥିତ ଚିଦାନନ୍ଦ ତ୍ରିଶୂଳୀ ବଧିର,
ତିଗ୍ମାଂଶୁ ଶିପିବିଷ୍ଟ ନନ୍ଦୀଧର ଅଙ୍କାଧର ସାର ।୧୯୯ ।
ବାଳଖିଲ୍ୟ ମହାତାପ ଅଭିରାମ ସର୍ବସାଧନ,
ସୁଶରଣ ସୁବ୍ରହ୍ମଣ୍ୟ ସୁଧାପତି ବ୍ରାଘ୍ରଲୋଚନ ।୨୦୦ ।
ସଂସାର ଚକ୍ରଧାରୀ ଅମୋଘଦଣ୍ଡ ଶମ୍ବର ରଚି,
ବିରାମ ଲଲାଟାକ୍ଷ ବିଶ୍ୱଦେହ ହିରଣ୍ୟ ବିରଞ୍ଚି ।୨୦୧ ।
ମଘବାନ କୌଶିକ ମଧ୍ୟସ୍ଥ ପରମାର୍ଥ ଗୋମାନ,
ବ୍ରହ୍ମବର୍ଚସୀ ପରୋମୟୀ ସାନୁରାଗ ବିରୋଚନ ।୨୦୨ ।
ଶାସ୍ତା ବୈବସ୍ୱତ ଯମ ସ୍କନ୍ଧ ଯୁକ୍ତି ଉନ୍ନତକୀର୍ତ୍ତି,
ବାଚସ୍ପତି ବିଶ୍ୱଭର୍ତ୍ତା ସବିତା କୈଳାସାଧିପତି ।୨୦୩ ।
ସ୍ୱବନ୍ଧୁ ପରଂଜୟ ଦୂରଶ୍ରବା ଅହପତି ନିତ୍ୟ,
ବିଦ୍ୱତ୍ତମ ବିତଭୟ ବିଶ୍ୱସହ ବିଜ୍ଞେୟ କାନ୍ତ ।୨୦୪ ।
ନମସ୍ତେ ନିୟତ କଲ୍ୟାଣ ପୁଣ୍ୟଶ୍ରବଣ କୀର୍ତ୍ତନ,
ନମସ୍ତେ ଅନିବାରିତ ଦୁଷ୍କୃତିହା ରବିଲୋଚନ ।୨୦୫ ।
ଦୁସ୍ୱପ୍ନନାଶନ ଦୁସହ ତ୍ରିଦଶାଧିପ ଅନାଦି,
ଭୂର୍ଭୁର୍ବୋଲକ୍ଷ୍ମୀ ରଚିରାଙ୍ଗଦ ଧ୍ୟେୟଜନଜନ୍ମାଦି ।୨୦୬ ।
ନମସ୍ତେ ଉତ୍ତାରଣ ଅଭବ କିରୀଟି ନୀତିମାନ,
ବିଶ୍ୱଗୋପ୍ତା ବିଶ୍ୱକର୍ତ୍ତା ସୁବୀର ଧବ ଜନନ ।୨୦୭ ।

ବଶିଷ୍ଠ କଶ୍ୟପ ପ୍ରୀତିମାନ ଭାନୁ ପ୍ରଣବ ଭୀମ,
ସପ୍ତଥାଚାର ମହାକୋଶ ବିଭୁ ଭୀମ ପରାକ୍ରମ ।୨୦୮ ।
ଆତ୍ମଯୋନି ବିମଳୋଦୟ ସକଳାଗମ ପାରଗ,
ମହାଦେବ ଋଷି ଐଶ୍ୱର୍ଯ୍ୟ ଜନ୍ମ ମୃତ୍ୟୁ ଜରାତିଗ ।୨୦୯ ।
ଜନ୍ମାଧିପ ମହାଧନ ଅନାଦ୍ୟନ୍ତ ବିଶ୍ୱଭୂଷଣ,
ପଞ୍ଚଯଜ୍ଞ ସମୁତ୍ପତ୍ତି ତତ୍ତ୍ୱ ତତ୍ତ୍ୱବିତ ବ୍ରାହ୍ମଣ ।୨୧୦ ।
ଏକାତ୍ମା ବତ୍ସଳ ଭକ୍ତଲୋକଧାରକ ବିଶ୍ୱାବାସ,
ଗାୟତ୍ରୀବଲ୍ଲଭ ଗିରିରତ ପ୍ରଭାକର ବିଶ୍ୱେଶ ।୨୧୧ ।
ନମସ୍ତେ ପ୍ରାଂଶୁ ସୁଷେଣ ସୁର ଶତ୍ରୁହା ଅଚଞ୍ଚଳ,
ନମସ୍ତେ ଅମୋଘ ଅରିଷ୍ଟନେମୀ ସମ୍ରାଟ ପିଙ୍ଗଳ ।୨୧୨ ।
କପିଳଶ୍ମଶ୍ରୁ ଶିଶୁ ଭାଲନେତ୍ର ଶକ୍ର ଆତ୍ମଜ୍ୟୋତି,
ତ୍ରୟୀତନୁ ବିଗତଜ୍ୱର ସ୍ୱୟଂଜ୍ୟୋତିସ୍ତନୁଜ୍ୟୋତି ।୨୧୩ ।
ଶାନ୍ତ କୁମୁଦ ଉପପ୍ଲବ ଜ୍ଞାନସ୍କନ୍ଧ ମହନୀତି,
କଲ୍ୟାଣ ଗୁଣନାମା ସମର୍ଥ ପାପହା ଶିବୋତ୍ପତ୍ତି ।୨୧୪ ।
ପବିତ୍ର ପାପହାରୀ ସ୍ୱାଧିଷ୍ଠାନ ପଦାଶ୍ରୟ ଉଷ୍ମ,
ଭଗ ବିବସ୍ୱାନାଦିତ୍ୟ ଯୋଗପାର ନାକେଶ କୃଷ୍ଣ ।୨୧୫ ।
ଦିବସ୍ପତି ପୁଣ୍ୟଦର୍ଶନ ଉଦାର କୀର୍ତ୍ତି ଉଦ୍ୟୋଗୀ,
ନମସ୍ତେ ମଣିପୁର ନଭୋଗତି ଅଜ୍ଞେୟ ସଦ୍ୟୋଗୀ ।୨୧୬ ।
ସଦସନ୍ମୟ ନକ୍ଷତ୍ରମାଳୀ ବୃଷାକପି ସୁଗତ,
ଅନର୍ଥ ନାଶନ ଅରାଗ ଧ୍ୱନି ନାନାଭୂତରତ ।୨୧୭ ।
ନମସ୍ତେ ଗୃହପତି ଜଗଦ୍ଧିତୈଷୀ କୁଶଳାଗମ,
ନମସ୍ତେ ବ୍ରହ୍ମଗର୍ଭ ବୀର ମହାଜ୍ୟୋତି ଅନୁତ୍ତମ ।୨୧୮ ।
ବୃହତ୍ ଗର୍ଭ ଅନିରୁଦ୍ଧ ପୁରୁହୂତ ପୁରୁଶ୍ରୁତ,
ଧର୍ମଧେନୁ ଧନାଗମ କୁମାର ଅତ୍ରି ବିଶ୍ୱାମିତ୍ର ।୨୧୯ ।
ହିରଣ୍ୟବର୍ଣ୍ଣ ଜ୍ୟୋତିଷ୍ମାନ ପୁଲହ ନୟନାଧକ୍ଷ,
ବ୍ରହ୍ମଜ୍ୟୋତି ଧନେଶ୍ୱର ପୁଲସ୍ତ୍ୟ ବୀର କଳ୍ପବୃକ୍ଷ ।୨୨୦ ।
ବସୁଧାମା ମାତାମହ ବିଷ୍ଟରଶ୍ରବା ପରାଶର,
ଆତ୍ମଭୂ ଜାତୁକର୍ଣ୍ଣ ଚଣ୍ଡ ନିରାବରଣ ନିର୍ବାର ।୨୨୧ ।
ନମସ୍ତେ ନାଗହାରଧାରକ ଅଗସ୍ତ୍ୟ ମହାକଳ୍ପ,
ନମସ୍ତେ ବୈରଞ୍ଚୟ ସତ୍ୟପରାକ୍ରମ ବ୍ୟାଳାକଳ୍ପ ।୨୨୨ ।
ନମସ୍ତେ ଲୋକବୀରାଗ୍ରଣୀ ମହାଯଶା ଜ୍ଞାନମୂର୍ତ୍ତି,
ଅଚଳ ରୋଚିଷ୍ଣୁ ବିକ୍ରମୋନ୍ନତ ଆୟୁ ଶବ୍ଦାପତି ।୨୨୩ ।

କଳାଧାର ଅଳଙ୍କରିଷ୍ଣୁ ବେଗୀପ୍ଲବନ ଅତିଥି,
ଅସନ୍ତୁଷ୍ଟ ପ୍ରତପ୍ତ ଶିଶି ସାରଥି ଶକ୍ରପ୍ରମାଥି ।୨୨୪ ।
ସୁପ୍ରତୀକ ବସୁଶ୍ରବା ହବ୍ୟବାହ ବିଶ୍ୱଭୋଜନ,
ତମିସ୍ରହା ନଭୋଯୋନି ବୃହଦଶ୍ୱ ପାଦପାସନ ।୨୨୫ ।
ଜପ୍ୟ ଲୋହିତାତ୍ମା ତନନୁପାତ ଜରାଦିଶମନ,
ପରପୁରଞ୍ଜୟ ଅଙ୍ଗରା ଗୁରୁ ନିଦାଘସ୍ତପନ ।୨୨୬ ।
ମେଘ ସୁରଭି ଶିଶିରାତ୍ମକ ନଭସ୍ୟ ସୁଖାନିଳ,
ସୁନିଷ୍ପନ୍ନ ବସନ୍ତୋ ମାଧବ ସ୍ୱକ୍ଷ ଶ୍ରୀଷ୍ମ ବିମଳ ।୨୨୭ ।
ନମସ୍ତେ ମନୋବୁଦ୍ଧି ଅହଙ୍କାର କ୍ଷେତ୍ରଜ୍ଞ ପାବନ,
ବିଶ୍ୱବାହନ କ୍ଷେତ୍ରପାଳକ ଶୈଳ ବରବାହନ ।୨୨୮ ।
ତୈବିଦ୍ୟ ସୁମତି ବିଦ୍ୱାନ ବୀଜବାହନ ଆତ୍ରେୟ,
ଜମଦଗ୍ନି ଗଗନକୁନ୍ଦାଭ ଚତୁରସ୍ତୁରପ୍ରିୟ ।୨୨୯ ।
ବଳନିଧି ବିଶ୍ୱଗାଲବ ଦାନବାରି ଅନୁଚର,
ନିଶ୍ରେୟ ସପ୍ରଦ ରଜନୀ ଜନକ ଚାରୁ ଅଘୋର ।୨୩୦ ।
ନମସ୍ତେ ତୀର୍ଥଦେବ ଶିବାଳୟ ନିଶଲ୍ୟ ଆମ୍ନାୟ,
ନମସ୍ତେ ଯଜ୍ଞଶ୍ରେଷ୍ଠ ଅରିନ୍ଦମ ମୁଣ୍ଡ ସମାମ୍ନାୟ ।୨୩୧ ।
ଲୋକଶଲ୍ୟଧାରକ ଚତୁର୍ବେଦ ଦଣ୍ଡି ବହୁରୂପ,
ଚତୁର୍ଭାବ ସହସ୍ରମୂର୍ଦ୍ଧା ପିଙ୍ଗଳାକ୍ଷ ମହାରୂପ ।୨୩୨ ।
ନ୍ୟାୟନିର୍ମାୟକ ନ୍ୟାୟୀ ବିରୂପ ନିରାମୟ ଦାନ୍ତ,
ସର୍ବରୂପ ଚରାଚର ନ୍ୟାୟଗମ୍ୟ ଦିବ୍ୟ ବିକ୍ରାନ୍ତ ।୨୩୩ ।
ନୀଳଗ୍ରୀବ ସହସ୍ରବାହୁ ସର୍ବଶସ୍ତ୍ର ପ୍ରଭଞ୍ଜନ,
ଦେବେନ୍ଦ୍ର ସର୍ବଲୋକଧାରକ ଶରଣ୍ୟ ନିରଞ୍ଜନ ।୨୩୪ ।
ଜନାଧକ୍ଷ ଗଣୋତ୍ତମ ଅସୁର ବ୍ୟାଘ୍ର ପଦ୍ମାସନ,
ପାରମ୍ପର୍ଯ୍ୟ ଫଳପ୍ରଦ ସର୍ବେଶ ଶୁଚି ମହାସ୍ୱନ ।୨୩୫ ।
ପରମଜ୍ୟୋତି ପଦ୍ମଗର୍ଭ ଦେବସିଂହ ଦିବାକର,
ଧନାଧିପ ସୁରାଧକ୍ଷ ବରଦ ଦେବାସୁରେଶ୍ୱର ।୨୩୬ ।
ଦେବଦେବମୟ ଅଚିନ୍ତ୍ୟ ବିଶ୍ୱଗର୍ଭ ବିକ୍ଷେଣ,
ଦେବାସୁର ନମସ୍କୃତ ଶିବଜ୍ଞାନରତ ବରେଣ୍ୟ ।୨୩୭ ।
ପରାବରଜ୍ଞ ମହାଗର୍ଭ ଦେବାସୁର ମହାଶ୍ରୟ,
ଅର୍ଥ ବିଚ୍ଛମ୍ଭୁ ବଜ୍ରହସ୍ତ ଶିଖିଶ୍ରୀପର୍ବତପ୍ରିୟ ।୨୩୮ ।
ନମସ୍ତେ ଯୁଗାବହ ନନ୍ଦୀ ଦେବାସୁର ମହେଶ୍ୱର,
ଦେବାସୁର ମହାମିତ୍ର ସଦ୍ୟୋନୀ ନଗ୍ନବ୍ରତଧର ।୨୩୯ ।

ସ୍ୱଧର୍ମା ଶ୍ରୀମାନ ଅନନ୍ତ ଦେବାସୁର ଗୁରୁଦେବ,
ସ୍ୱରମୟସ୍ୱନ ସ୍ୱର୍ଗତ ଦେବଦେବାତ୍ମ ସମ୍ଭବ ।୨୪୦ ।
ବିବୁଧାଗ୍ରଚରଶ୍ରେଷ୍ଠ ନାଗଭୂଷଣ ଧର୍ମଚାରୀ,
ସର୍ବଦେବୋତ୍ତମୋତ୍ତମ ସକଳାଧାର ଲୋକଚାରୀ ।୨୪୧ ।
ସିଦ୍ଧ ଖଡ୍‌ଗ ବଜ୍ରହସ୍ତ ଯୋଗାଧକ୍ଷ ବୃର୍ଣ୍ଣ ଅଙ୍କୁର,
ସାମଗେୟପ୍ରିୟ ସିଦ୍ଧ ଖଡ୍‌ଗ ତ୍ର୍ୟମ୍ବକ ନନ୍ଦୀଶ୍ୱର ।୨୪୨ ।
ବଜ୍ରହସ୍ତ ଅକ୍ଷୟଗୁଣ ନରସିଂହ ନିପାତନ,
ଅପ୍ରତିମାକୃତି ଅଲୋଭ ବିଷ୍ଣୁକନ୍ଧରପାତନ ।୨୪୩ ।
ଲିଙ୍ଗାଧକ୍ଷ ଯୋଗାଧକ୍ଷ ଖଡ୍ଗପରଶୁ ବ୍ରହ୍ମଚାରୀ,
ବାଣାଧକ୍ଷ ଜୀବିତେଶ୍ୱର ବୀଜକର୍ତ୍ତା ଅନ୍ଧକାରୀ ।୨୪୪ ।
ନମସ୍ତେ ଦମ୍ଭ ମଖଦ୍ୱେଷୀ ସର୍ବଭୂତ ମହେଶ୍ୱର,
ଅନଘ ତ୍ରକ୍ଷ ପାଣ୍ଡୁରାଭ ଅନାମୟ ତୀର୍ଥକର ।୨୪୫ ।
ନମସ୍ତେ ସେତୁ ପୂରୟିତା ଧର୍ମକୃଦ୍ଧର୍ମ ସମ୍ଭବ,
ନମସ୍ତେ ପୂର୍ଣ୍ଣ ଅନାମୟ ପୂର୍ଣ୍ଣକୀର୍ତ୍ତି ମନୋଜବ ।୨୪୬ ।
ଦକ୍ଷାରି ପୁଷ୍ପଦନ୍ତଭିତ ଲୋକାନ୍ତର ସ୍ଫୁଟାଲୋକ,
ସ୍ୱର୍ଗସ୍ୱର ହୀନଦୋଷ ମୃଡ଼ୋ ନଟ ଖଳକଣ୍ଟକ ।୨୪୭ ।
ଶ୍ମଶାନ ନିଳୟ ଧୂର୍ଜଟି ବସୁରେତା ସୁକୁମାର,
ଜଟିଳ ଜୀବିତାନ୍ତକର ଅକାଳ ଜୀବିତେଶ୍ୱର ।୨୪୮ ।
ସକଳ ନିଷ୍କଳ ଅଙ୍କୁର ନିତ୍ୟ ପୁଣ୍ୟ ସୁଲୋଚନ,
ବସୁପ୍ରଦ ସଦ୍‌ଗତି କଳାଧାର ଶୋକନାଶନ ।୨୪୯ ।
ସିଦ୍ଧି ଲୋକ ଲାବଣ୍ୟକର୍ତ୍ତା ଜ୍ୟୋତିର୍ମୟ ଜଗନ୍ନାଥ,
ମହାକାଳଭୁତ ସତ୍କୃତି ଲୋକବନ୍ଧୁ ଲୋକନାଥ ।୨୫୦ ।
ସଜାତି ସତ୍ୟପରାୟଣ ସର୍ବଶବ୍ଦଭୃତାମ୍ବର,
ମହାଧିପ କୀର୍ତ୍ତିଭୂଷଣ ତେଜୋମୟ ଦ୍ୟୁତିଧର ।୨୫୧ ।
ନମସ୍ତେ ଅଣୁ ଲୋକୋତ୍ତର ସୁଖାଳୟ ବିଶାମ୍ପତି,
ଚନ୍ଦ୍ର ସଂଜୀବନ ଦୃପ୍ତ ସାର ଦୁର୍ଜେୟ ହଂସଗତି ।୨୫୨ ।
ଲୋକଗୂଢ଼ କୃତଜ୍ଞ ଭୟ ଅନପାୟ କ୍ଷର କାନ୍ତ,
ଲୋକମଧ୍ୟେ ଅଗ୍ରଣୀ ତ୍ରିଲୋକପ ବିଷ୍ଣୁ ଶୁଚିସ୍ମିତ ।୨୫୩ ।
ପ୍ରସନ୍ନାତ୍ମା ଦୁରତିକ୍ରମ ଡୁମ୍ବବିଣ ନିରାକାର,
ମହାକୋପ ବ୍ୟକ୍ତାବ୍ୟକ୍ତ ବ୍ରହ୍ମା ବିଶୋକ ଜଳେଶ୍ୱର ।୨୫୪ ।
ତ୍ରିଲୋକେଶ ଅଧୋକ୍ଷଜ ସ୍ରଷ୍ଟା ବେଧାବିଧାତା ଧାତା,
ଅବ୍ୟକ୍ତ ଲକ୍ଷଣ ଦେବ ବରଶୀଳ ଭୂପତି ହର୍ତ୍ତା ।୨୫୫ ।

ବରଗୁଣ ମାନଧନ ହଂସ ଚତୁର୍ମୁଖ ନିରହଙ୍କାର,
ସର୍ବାବାସୀ ସଦାଗତି ବୟ ବିଷମାକ୍ଷ ସୂକ୍ଷ୍ମ ସୁକର ।୨୫୬ ।
କୈଳାସଶିଖରବାସୀ ହିରଣ୍ୟଗର୍ଭ ନିଷ୍କଣ୍ଟକ,
ବ୍ରାହ୍ମଣପ୍ରିୟ ବିଶାଳାକ୍ଷ ସର୍ବର୍ତ୍ତୁପରିବର୍ତ୍ତକ ।୨୫୭ ।
ଦେବପ୍ରିୟ ଦେବନାଥ ଯୋଗବିଦ୍ୟୋଗୀ ଅକମ୍ପିତ,
ଦୃହିଣ ସଦ୍ୟୋଗୀ ଦୈବଜ୍ଞ ପରକାର୍ଯ୍ୟୈକ ପଣ୍ଡିତ ।୨୫୮ ।
ନମସ୍ତେ ଭୂତପାଳ ଦର୍ପହା ଦର୍ପଦ ସତ୍ୟବାନ,
ଦେବଚିନ୍ତକ ସତ୍ୟାକୀର୍ତ୍ତି ବୃଷଦୋ ବୃଷବର୍ଦ୍ଧନ ।୨୫୯ ।
ଭୂତଭବ୍ୟଭବନ୍ନାଥ ନୈକାତ୍ମା ନୈକ କର୍ମକର୍ତ୍ତା,
ନିର୍ବ୍ୟାଜ ବ୍ୟାଜମର୍ଦ୍ଦନ ବରଦ ମହାକୋଶ ଶାସ୍ତା ।୨୬୦ ।
ନିରୁପଦ୍ରବ ନିର୍ମୋହ ସହସ୍ରାଚି ଅର୍ଥ ନିର୍ମମ,
ସହସ୍ରାଜିତ ଅନର୍ଥ ସାତ୍ତ୍ୱିକ ସ୍ନେହକୃତାଗମ ।୨୬୧ ।
କୃଷ୍ଣାନନ୍ଦ ନିତ୍ୟ ସୁନ୍ଦର ସ୍ନିଗ୍ଧ ପ୍ରକୃତି ଦକ୍ଷିଣ,
ଗୁଣଗ୍ରାହୀ ଦକ୍ଷିଣାନିଳ ନିତ୍ୟଶାନ୍ତି ପରାୟଣ ।୨୬୨ ।
ସୁପ୍ରୀତ ସୁମୁଖ ପ୍ରଭବ ପ୍ରକଟ ପ୍ରୀତିବର୍ଦ୍ଧନ,
ନନ୍ଦି ସ୍କନ୍ଧଧର ଧୂର୍ଯ୍ୟ ସର୍ବସତ୍ତ୍ୱ ସତ୍ତ୍ୱବାହନ ।୨୬୩ ।
ବାରାହଶୃଙ୍ଗଧାରୀଶୃଙ୍ଗୀ ନୂତମୂର୍ତ୍ତି ଅନର୍ଥିତ,
ଏକବନ୍ଧୁ ଶୁଭନାମା ଶୁଭସ୍ୱୟଂ ନୀଳଲୋହିତ ।୨୬୪ ।
ନମସ୍ତେ ଗୋବିନ୍ଦ ଏକ ନାୟକ ଅଧୃତ ସ୍ୱଧୃତ,
ଶ୍ରୁତି ପ୍ରକାଶ ଅନେକକର୍ତ୍ତା ଶ୍ରୁତିମାନ୍ ବିରକ୍ତ ।୨୬୫ ।
ଅପରାଚିତ ସିଦ୍ଧ ଅକମ୍ପ ଶୁଭଦ ଶୁଭକର୍ତ୍ତା,
ପରାର୍ଥବୃତ୍ତିବରଦ ଯଶୋଧନ ସାକ୍ଷୀ ଅକର୍ତ୍ତା ।୨୬୬ ।
ଶ୍ରୀବତ୍ସଳଶିବାରମ୍ଭ କନକପ୍ରଭ ବଳବାନ,
ସତ୍ୟବ୍ରତ ମହାତ୍ୟାଗୀ ବିଯୋଗାତ୍ମା ଭୂତଭାବନ ।୨୬୭ ।
ମଧ୍ୟସ୍ଥ ପରାର୍ଥବୃତ୍ତିବରଦ ଯଶ ଶାନ୍ତଭଦ୍ର,
ଭୂଶୟ ଭୂଷଣ ଭୂତି ଭୂତକର୍ତ୍ତା ସ୍ୱଭାବଭଦ୍ର ।୨୬୮ ।
କାଳହାସମ ଶତ୍ରୁଘ୍ନ ବୈଦ୍ୟ ଜଟୀ ମୁଣ୍ଡୀ କୁଣ୍ଡଳୀ,
ଅମୃତ୍ୟୁ ସର୍ବଦୃକ ସିଂହ ଶିଖଣ୍ଡୀ କବଚୀ ଶୂଳୀ ।୨୬୭ ।
ତେଜୋରାଶି ମହାମଣି ବୀର୍ଯ୍ୟବାନ ବୀର୍ଯ୍ୟକୋବିଦ,
ଅସଂଖ୍ୟେୟ ଅପ୍ରମେୟାତ୍ମା ଶବ୍ଦବ୍ରହ୍ମ ବିଶାରଦ ।୨୬୮ ।
ଅନୁତ୍ତମ ଦୁରାଧର୍ଷ ନିଷ୍କଳଙ୍କ ବିଘ୍ନନାଶନ,
ଦ୍ୟୁମଣିତରଣି ନିର୍ବ୍ୟଙ୍ଗ ମଧୁରପ୍ରିୟ ଦର୍ଶନ ।୨୬୯ ।

ନିରବଦ୍ୟମୟୋପାୟ ନିରଙ୍କୁଶ ବ୍ୟଙ୍ଗନାଶନ,
ସୁରେଶ ଶରଣ ଅକ୍ଷୁର୍ଣ୍ଣ ସିଦ୍ଧିଦ ସିଦ୍ଧିସାଧନ ।୨୭୦ ।
ନମସ୍ତେ ବିଶ୍ୱତ ସଂବୃତ କାଳପକ୍ଷ କାଳକାଳ,
ପରାବର ମୁନୀଶ୍ୱର ରସଜ୍ଞ ସ୍ତବ୍ୟ ବିଶୃଙ୍ଖଳ ।୨୭୧ ।
ନମସ୍ତେ ଭକ୍ତିକାୟ ମହେଶ୍ୱାସ ସ୍ତୋତା ସ୍ତବପ୍ରିୟ,
କଙ୍କଣୀକୃତବାସୁକି ସଂଗ୍ରହୀ ସର୍ବରସପ୍ରିୟ ।୨୭୨ ।
ନମସ୍ତେ ମହିଭର୍ତ୍ତା ବ୍ୟୁଢ଼ୋରସ୍କ ଧନ୍ୟ ନିରଙ୍କୁଶ,
ନିର୍ଲେପ ନିଷ୍ପ୍ରପଞ୍ଚାତ୍ମା ଆଶ୍ରିତବତ୍ସଳ ଯାତ୍ରୀଶ ।୨୭୩ ।
ସର୍ବଯୋନି ନିରାତଙ୍କ ବିଦ୍ୟାରାଶି ଶର୍ବରୀପତି,
ନମସ୍ତେ ନରନାରାୟଣପ୍ରିୟ ସ୍ତୁତ୍ୟ ବ୍ୟାସମୂର୍ତ୍ତି ।୨୭୪ ।
ମହାଭୁଜ ପ୍ରଶାନ୍ତବୁଦ୍ଧି ସର୍ବସତ୍ତ୍ୱାବଲମ୍ବନ,
ପରମାର୍ଥ ଗୁରୁଦତ୍ତ ସୁରି ସୋମ ଭୁତିନାଶନ ।୨୭୫ ।
ନମସ୍ତେ ବୈୟାଘ୍ରଧୂର୍ଯ୍ୟ ଶାକଲ୍ୟ ରସଦ ଅଙ୍କୁର,
ହୃତ୍-ପୁଣ୍ଡରୀକ ଆସୀନ ଅଧର୍ମ ଶତ୍ରୁ ସୁରେଶ୍ୱର ।୨୭୬ ।
ନମସ୍ତେ ନମସ୍ତେ ବିଗାଳ ସିଦ୍ଧବୃନ୍ଦାର ବନ୍ଦିତ,
ନମସ୍ତେ ଗୃହପତି ପ୍ରଭୁ ସର୍ବଦେବଦେବୀସ୍ତୁତ୍ୟ ।୨୭୭ ।
ପବନସୁତ ସ୍ତୁତିରେ ସନ୍ତୁଷ୍ଟ ମହାଦେବ ହୋଇ,
କୃପା ସାଗର କରୁଣା କରିଲେ ଶିବଲିଙ୍ଗ ଦେଇ ।୨୭୮ ।
ଶିବଲିଙ୍ଗ ପ୍ରାପ୍ତେ ହିଁ ଅଞ୍ଜନାଜ ବିଦ୍ୟୁତ ବେଗରେ,
ଲେଉଟି ଚାଲିଲେ ଗଗନ ମାର୍ଗେ ବିନା ବିଳମ୍ବରେ ।୨୭୯ ।
ଏଣେ ସୁଜନଜନେ ଯା କଥା ଶୁଣ ହେ କର୍ଣ୍ଣ ଡ଼େରି,
ମାରୁତି ନିର୍ଦ୍ଧାରିତ କାଳେ ଅପହଞ୍ଚ ଲକ୍ଷ୍ୟ କରି ।୨୮୦ ।
ଲିଙ୍ଗ ସ୍ଥାପନା ମୂହୂର୍ତ୍ତ ବ୍ୟତୀତ ହେବା ଦେଖି କରି,
ତତ୍ତ୍ୱଦର୍ଶୀ ଋଷିଗଣ ଶ୍ରୀରାମ ପଦେ ଅନୁସରି ।୨୮୧ ।
ଭାଷିଲେ ହେ ରଘୁ ନନ୍ଦନ ପୁଣ୍ୟକାଳ ସମାପତ,
ହେବାକୁ ଯାଉଛି ପ୍ରଭୁ ଶୁଣ ଆମ୍ଭର ଯାହା ମତ ।୨୮୨ ।
ଖେଳ ଖେଳରେ ବୈଦେହୀ ଯେ ବାଲୁକା ଶଙ୍କର ଲିଙ୍ଗ,
କରିଛନ୍ତି ତାକୁ ସ୍ଥାପି ନିରିମାଣ ଧର୍ମର ଶୃଙ୍ଗ ।୨୮୩ ।
ସିଦ୍ଧ ମୁନିଙ୍କ ବଚନେ ଲକ୍ଷ୍ମଣାଗ୍ରଜ ଭଗବାନ,
ସହଧର୍ମିଣୀ ଜାନକୀ ସାଥିରେ ଧରି ଋଷିଗଣ ।୨୮୪ ।
ସେତୁବନ୍ଧର ସୀମାରେ ଗନ୍ଧମାଦନ ପରବତେ,
ଲିଙ୍ଗରୂପଧର ଉମାବଲ୍ଲଭେ ସ୍ଥାପିଲେ ସ୍ୱହସ୍ତେ ।୨୮୫ ।

ସ୍ୱୟଂ କର୍ପୂରଗୌର ଶିବ ପାର୍ବତୀଶ ଆଶୁତୋଷ,
ସାଥେ ହିମାଳୟ ତନୁଜା ଉଭା ହେଲେ ହୋଇ ତୋଷ ।୨୮୬ ।
ପ୍ରସନ୍ନତା ସହ ଶ୍ରୀରାମଚନ୍ଦ୍ରଙ୍କୁ ଭାଷି ମଧୁର,
ବୋଇଲେ ସ୍ୱହସ୍ତ ପ୍ରତିଷ୍ଠିତ ଲିଙ୍ଗ ଏ ରାମେଶ୍ୱର ।୨୮୭ ।
ଦର୍ଶନାର୍ଥୀ ଭକ୍ତ ପାପରାଶି ତକ ନିଶ୍ଚେ ଧ୍ୱଂସିବ,
କଳ୍ପ କଳ୍ପ ଯାଏଁ ଯଶର କେତନ ତୁମ ଉଡ଼ିବ ।୨୮୮ ।
ଏତେ କହି ପ୍ରଭୁ ତତ୍କ୍ଷଣେ ହେଉ ହେଉ ଅନ୍ତର୍ଦ୍ଧାନ,
କୈଳାସ ପର୍ବତୁ ଶିବଲିଙ୍ଗ ନେଇ ବାତ ନନ୍ଦନ ।୨୮୯ ।
ଅତି ବେଗେ ଆସି ଶ୍ରୀରାମ ଜାନକୀ ପାଦେ ନମିଲେ,
ବାଲୁକା ଶିବଲିଙ୍ଗ ପୂଜନ ଦେଖି ଦୁଃଖି ହୋଇଲେ ।୨୯୦ ।
ବିଷାଦ ହୃଦୟେ ପ୍ରଭୁଙ୍କ ପାଶରେ କରିଲେ ଅଳି,
ଆଦେଶେ ତୁମର ସନ୍ତୋଷି ଶଙ୍କର ଚନ୍ଦ୍ର ମଉଳି ।୨୯୧ ।
ଆଣିଛି ଏ ଲିଙ୍ଗ କି କରିବି ପ୍ରଭୁ ଦିଅ ବତାଇ,
ଉଦାସ ମାରୁତି ହୋଇଥିବା ଦେଖି ସ୍ନେହେ ବୁଝାଇ ।୨୯୨ ।
କହିଲେ ଶ୍ରୀରାମ ଶୁଣ ଦେଇ ଧ୍ୟାନ ଭକ୍ତପ୍ରବର,
ତୁମେ କରିଥିବା ସମସ୍ତ କରମ ଅଟେ ମୋହର ।୨୯୩ ।
ରାମେଶ୍ୱର ପାଶେ ହନୁମଦୀଶ୍ୱର ହେବେ ସ୍ଥାପିତ,
ତୁମ୍ଭରି ନାମରେ ଏହି ଶିବ ଲିଙ୍ଗ ହେବେ ବିଖ୍ୟାତ ।୨୯୪ ।
ଭକ୍ତଜନଗଣ ହନୁମଦୀଶ୍ୱର କରି ଦର୍ଶନ,
ତା'ପରେ ରାମେଶ୍ୱର ଲିଙ୍ଗଙ୍କର କରିବେ ପୂଜନ ।୨୯୫ ।
ରାବଣ ବିଶ୍ରବା କୂଳରେ ଜନମ ଜାତି ବ୍ରାହ୍ମଣ,
ତାହାର ଅନେକ ପୁତ୍ରଙ୍କର ତୁମେ ହରିଛ ପ୍ରାଣ ।୨୯୬ ।
କଳ୍ମଶ ଯଦିଚ ସ୍ପର୍ଶ ତୁମ୍ଭର ନ କରି ପାରଇ,
ତଥାପି ଏ ଲିଙ୍ଗ ସ୍ଥାପନାରେ ସର୍ବ ହୋଇବ ଧୋଇ ।୨୯୭ ।
ପ୍ରଭୁଙ୍କର ଆତ୍ମୀୟତା ପୂର୍ଣ୍ଣ ବାକ୍ୟ କରି ଶ୍ରବଣ,
ଦୃଷ୍ଟତା ମାର୍ଜନା କର ପ୍ରଭୁ କହେ ଧରି ଚରଣ ।୨୯୮ ।
ପ୍ରଭୁଙ୍କ ନିର୍ଦ୍ଦେଶେ ହନୁମଦୀଶ୍ୱର ଲିଙ୍ଗ ମହତ,
ରାମେଶ୍ୱରଙ୍କର ଉତ୍ତର ଦିଗରେ ହେଲେ ସ୍ଥାପିତ ।୨୯୯ ।
ପ୍ରଭୁଙ୍କର ଲୀଳା ଅଟଇ ଅପୂର୍ବ ଭକ୍ତ ବିଦୁଷ,
ହରଇ କଳ୍ମଶ କରେ ପାପ ନାଶ ଦୁଃଖ ଅଶେଷ ।୩୦୦ ।
ଚତୁତ୍ରିଂଶ ଅଧ୍ୟା ପୁଣ୍ୟମୟ ଗାଥା ହୋଇଲା ଶେଷ,
ଶୁଣି ନାମ ରସ ମନକର ତୋଷ କହେ ସୁରେଶ ।୩୦୧ ।



# ପଞ୍ଚତ୍ରିଂଶ ଛାନ୍ଦ

ରାଗ-ରସକେଦାର

(ରାମ ଭରତ ମିଳନ)

ଶୁଣ ହେ ସୁଜନେ ଦେଇଣ ଚିତ୍ତ,
ଦିବ୍ୟ ହନୁମାନ ଚରିତାମୃତ ।
ପବନ ନନ୍ଦନ ହସ୍ତ ଆନୀତ,
ଶିବଲିଙ୍ଗ ହେବାରୁ ପ୍ରତିଷ୍ଠିତ ।
ପ୍ରଭୁ ଭକ୍ତ ଦୁହେଁ ହେଲେ ଖୁସି,
ତାଙ୍କରି ଖୁସିରେ ସରବେ ଖୁସି ।୧ ।
ନିଜ ପ୍ରାଣ ପ୍ରିୟ ଭାଇ ଭରତ,
ସାଥେ ଶୀଘ୍ର ହେବା ପାଇଁ ମିଳିତ ।
ଅଧିର ଦେଖି ରାଜା ବିଭୀଷଣ,
ରତ୍ନାଦି ଉପହାର ସଜାଇଣ ।
ବସାଇ ପୁଷ୍ପକ ବିମାନରେ,
ସହର୍ଷ ବିଦାୟ ଦେଲେ ରାମରେ ।୨ ।
ବିଭୀଷଣ ସହ ମାରୁତି ବୀର,
ସୁଗ୍ରୀବ ଅଙ୍ଗଦ ଭାଲୁବାନର ।
ସର୍ବେ ବିରାଜିଲାରୁ ଶୂନ୍ୟମାର୍ଗେ,
ଯାନ ଚଳିଲା ଅତିଶୟ ବେଗେ ।
ସୀତାଙ୍କୁ ଆକାଶୁ ରଘୁବୀର,
ଦେଖାଇଲେ ଶୋଭା ଭୂଦେବୀଙ୍କର ।୩ ।
ତ୍ରିକୁଟ ପର୍ବତେ ଲଙ୍କା ବିଶାଳ,
ଅସୁରମାନଙ୍କର ବଧସ୍ଥଳ ।
ସେତୁବନ୍ଧ ରାମେଶ୍ୱର ସ୍ଥାପନା,
ବାରତା ଶୁଣାଇଲେ ସ୍ନେହେ ନାନା ।
କିଷ୍କିନ୍ଧ୍ୟା ଗଗନରୁ ବିମାନ,
ରାମାଜ୍ଞାରେ କଲା ଅବତରଣ ।୪ ।
ସୁଗ୍ରୀବାଜ୍ଞାରେ ତାରା ଆଦି ରାଣୀ,
ପ୍ରଣମିଲେ ଶ୍ରୀରାମଙ୍କ ଘରଣୀ ।
ଜାନକୀ ଇଚ୍ଛାରେ ସର୍ବେ ବିମାନେ,
ଆରୋହି ଚଳିଲେ ଆନନ୍ଦ ମନେ ।
ରାଜ୍ୟାଭିଷେକ ଦର୍ଶନ ପାଇଁ,

ତହୁଁ ଯାନ ଖ' ମାର୍ଗେ ଚଳେ ଯାଇ ।୫ ।
ଏ ସମୟେ ଅଞ୍ଜନାର ନନ୍ଦନ,
ଏକ ଲକ୍ଷ୍ୟେ ଚାହିଁ ରଘୁ ନନ୍ଦନ ।
କହିବା କହିବା ମୁଦ୍ରାରେ ଚାହିଁ,
ଦେଖିଲେ ରାମ ବାକ୍ୟ ନ ସ୍ଫୁରଇ ।
ମୁଖ ଦେଖି ଜାଣି ରଘୁବୀର,
ସହସ ବଦନେ ଭାଷିଲେ ଗୀର ।୬ ।
କୁହ ପ୍ରାଣପ୍ରିୟ ବାତ ନନ୍ଦନ,
କିସ କହିବାକୁ କରିଛ ମନ ।
ଯୋଡ଼ ହସ୍ତେ ହନୁ କଲେ ବିନୟ,
ହରି ହରି ପରେ ହୁଅ ସଦୟ ।
ମାତାଙ୍କ ଚରଣ ସ୍ପର୍ଶେ ମନ,
ଶୁଣି ତୋଷ ସୀତୟା ପ୍ରାଣଧନ ।୭ ।
ପୁଷ୍ପକ ବିମାନ ପ୍ରଭୁ ଆଜ୍ଞାରେ,
ଗଲା ତତ୍କ୍ଷଣେ କାଞ୍ଚନ ଗିରିରେ ।
ଅବତରଣ କରିଣ ମାରୁତି,
ମାତା ଚରଣେ ନମିଲା ଝଟତି ।
ରାଘବେନ୍ଦ୍ର ଜାନକୀ ଲକ୍ଷ୍ମଣ,
ପ୍ରଣାମ କଲେ ସୁଗ୍ରୀ ବିଭୀଷଣ ।୮ ।
ବିଭୀଷଣ ସୁଗ୍ରୀବ ରାଣି ଗଣ,
ବାନର ଭଲ୍ଲୁକ ସହ ସୁଷେଣ ।
ସମସ୍ତେ ଭୂଇଁରେ ଶିର ଲଗାଇ,
ପ୍ରଣମିଲେ ହୃଦୟେ ସ୍ନେହ ବହି ।
ସ୍ୱୟଂ ସ୍ୱୟଂ ଭାଗ୍ୟକୁ ପ୍ରଶଂସି,
ମାତା ପୁତ୍ର ଶିର ଦେଲେ ଆଉଁସି ।୯ ।
ତହୁଁ ପୁଷ୍ପକ ଶୀଘ୍ର ଉଡ଼ିଗଲା,
ତୀର୍ଥରାଜ ପ୍ରୟାଗେ ପହଞ୍ଚିଲା ।
ତ୍ରିବେଣୀରେ ସର୍ବେ କଲେ ସ୍ନାହାନ,
ବ୍ରାହ୍ମଣଙ୍କୁ ଦେଲେ ପୁଷ୍କଳ ଦାନ ।
ଭକ୍ତ ହନୁମାନେ ପାଶେ ରାଇ,
ବୋଲିଲେ ରାମ ଶୁଣ ମନ ଦେଇ ।୧୦ ।

ଅତିଶୀଘ୍ର ଅଯୋଧ୍ୟା ନଗ୍ରେ ଯିବ,
କୁଶଳ ଖବର ନେଇ ଆସିବ ।
ତପ୍‌ରେ ଯିବ ଶୃଙ୍ଗବେର ପୁର,
ନିଶାଦ ରାଜ ଗୁହେ ସମାଚାର ।
ଦେବ ସକୁଶଳେ ଫେରିବାର,
ନିଶ୍ଚେ ଖୁସି ହେବେ ମିତ୍ର ମୋହର ।୧୧ ।
ଭ୍ରାତା ଭରତ ପାଶେ ତହୁଁ ଯିବ,
କୁଶଳାଦି ସମାଚାର ପୁଛିବ ।
ବୋଲିବ ଲକ୍ଷ୍ମଣ ସୀତା ସହିତ,
କୁଶଳେ ଫେରିଛନ୍ତି ଜ୍ୟେଷ୍ଠ ଭ୍ରାତ ।
ମୁଖ ମୁଦ୍ରା ଲକ୍ଷିବ ଶୁଣାଇ,
ମନେ ରାଜ୍ୟ ଲୋଭ ଅଛି କି ନାହିଁ ।୧୨ ।
ମୁଖ ଅଟଇ ମନର ଦର୍ପଣ,
ଯଦି ଥିବ ତହିଁ କାମନା ଚିହ୍ନ ।
ନିଷ୍କଣ୍ଟକ କରିବାକୁ ଶାସନ,
ଯିବି ବଞ୍ଚିବି ତପସ୍ୱୀ ଜୀବନ ।
ମୋର ଅଭିଷ୍ଟ ଭରତ ସୁଖ,
ନ ପାରିବି ଦେଖି ତାହାର ଦୁଃଖ ।୧୩ ।
ଜୟ ଶ୍ରୀରାମ କହି ଛୁଇଁ ପାଦ,
ବ୍ରାହ୍ମଣ ବେଶେ କପି ପୁଣ୍ୟପାଦ ।
ଆକାଶ ମାର୍ଗେ ଗମିଲା ତ୍ୱରିତେ,
ଶୃଙ୍ଗବେର ପୁର ରାଜା ଅଗ୍ରତେ ।
ଶୁଣାଇଲା ସର୍ବ ସମାଚାର,
ନିଷାଦ ରାଜ ଖୁସିରେ ବିଭୋର ।୧୪ ।
ହର୍ଷ ଉଲ୍ଲାସ ଭରା ତା'ର ମନ,
ଦୁଃଖ ଘୁଞ୍ଚିଲା ଆଶାର କିରଣ ।
ଆସିବେ ସ୍ୱୟଂ ଶ୍ରୀ ରଘୁ ନନ୍ଦନ,
ସ୍ୱାଗତ ପାଇଁ କି ମନ ଉଚ୍ଛନ୍ନ ।
ପ୍ରସ୍ତୁତିରେ ହୋଇଲେ ନିମଗ୍ନ,
ରାଜ୍ୟବାସୀଙ୍କୁ କରିଣ ଆହ୍ୱାନ ।୧୫ ।
ସେଠାରୁ ଅଯୋଧ୍ୟା ଦିଗରେ ଗଲେ,
ମାର୍ଗେ ଭିନ୍ନ ଭିନ୍ନ ତୀର୍ଥ ଦେଖିଲେ ।

ନନ୍ଦିଗ୍ରାମରେ ଆଶ୍ରମେ ଭରତ,
ଜପୁଥିଲେ ନାମ ସେ ଅବିରତ ।
ରାଜ୍ୟ ସୁଖକୁ ଦେଇ ତିଳାଞ୍ଜଳୀ,
ବଞ୍ଚୁଥାନ୍ତି ସ୍ୱୟଂ ତପସ୍ୱୀ ଭଳି ।
କରି ତପ ଶ୍ଚରଣ କଠୋର,
କରୁଥାନ୍ତି ଫଳ ମୂଳ ଆହାର ।୧୬ ।
ଶ୍ରୀରାମ ଚରଣ ପାଦୁକା ଦୁଇ,
ସପ୍ରେମେ ପୂଜନ୍ତି ଆସନେ ଥୋଇ ।
ମନ୍ତ୍ରୀ ସେନାପତି ଓ ପୁରୋହିତ,
ପାଶେ ଛନ୍ତି ପିନ୍ଧି ଗେରଆ ବସ୍ତ୍ର ।
ପ୍ରଭୁଙ୍କ ଚଉଦ ବର୍ଷ କାଳ,
କାଟୁଥାନ୍ତି ଗଣି ପଳକୁ ପଳ ।୧୭ ।
ସମ୍ମୁଖେ ରଘୁତିଳକ ପାଦୁକା,
କୁଶାସନେ ବସି ପକାଇ ଡକା ।
ନେତ୍ରୁଝରେ ବାରି ଅନବରତ,
ଅଧର ଗାଉଥାଏ ନାମାମୃତ ।
ଏ ସମୟେ ଅଞ୍ଜନା ନନ୍ଦନ,
ପହୁଞ୍ଚିଲା ତହିଁ ବେଶେ ବ୍ରାହ୍ମଣ ।୧୮ ।
ଭରତଙ୍କ ବିରହି ବେଶ ଦେଖି,
ମନେ ମନେ ମାରୁତି ହେଲେ ଖୁସି ।
ନମ୍ରତା ପୂର୍ବକ ଯୋଡ଼ ହସ୍ତରେ,
କହିଲେ ଭରତେ ମଧୁର ସ୍ୱରେ ।
ପ୍ରଭୁ ତୁମେ ଯା' ପାଇଁ ଅଧିର,
ଆସୁଛନ୍ତି ସେହି ଜଗତେଶ୍ୱର ।୧୯ ।
କରି ହତ ନିଶାଚର ରାବଣ,
ସାଥେ ନେଇ ବଇଦେହୀ ଲକ୍ଷ୍ମଣ ।
ସୁଗ୍ରୀ ବିଭୀଷଣ ଭାଲୁବାନର,
ଅନୁଜେ ଭେଟିବା ପାଇଁ ଆତୁର ।
କାଲି ଆସୁଛନ୍ତି ସକୁଶଳେ,
ପୁଷ୍ୟା ନକ୍ଷତ୍ରେ ଭେଟ ପ୍ରାତଃକାଳେ ।୨୦ ।
ରାମଙ୍କ ଆସିବା ଖବର ଶୁଣି,
ଚାତକ ଯେହ୍ନେ ହୁଏ ପାଇ ପାଣି ।

ରଙ୍କକୁ ଯେବେ ମିଳିଲା ମାଣିକ,
ଶିଶୁଙ୍କୁ ମିଳିଗଲା ମାତା ଅଙ୍କ ।
ଭରତ ମନୋବସ୍ଥା ସେପରି,
ଆନନ୍ଦାତିଶଯ୍ୟେ ନେତ୍ରୁ ବହେ ବାରି ।୨୧ ।
ଅମୃତମୟ ସୁଖଦ ସନ୍ଦେଶ,
ଶୁଷ୍କ କାଷ୍ଠ ଦେହେ ଭରିଲା ରସ ।
ଭରତେ ଭରିଲା ନବ ଜୀବନ,
ବୋଲିଲେ ଧନ୍ୟ ଧନ୍ୟ ହେ ବ୍ରାହ୍ମଣ ।
କିଏ ତୁମ୍ଭେ କିସ ପରିଚୟ,
ଆସି କାହୁଁ ଦେଲ ବାର୍ତ୍ତା ଅମିୟ ।୨୨ ।
ଯୋଡ଼ ହସ୍ତେ ମାରୁତି ବୋଲେ ଗିର,
ଶ୍ରୀରାମ ଦୁତ ପୁତ୍ର ପବନର ।
ନାମ ମୋର ହନୁମାନ ଅଟଇ,
ପ୍ରଭୁଙ୍କ ନିର୍ଦ୍ଦେଶେ ଆସି ଅଛଇଁ ।
ତୁମ୍ଭର କୁଶଳ ସମାଚାର,
ସଂଗ୍ରହ ପାଇଁ ଦୋଷ କ୍ଷମାକର ।୨୩ ।
ଶୁଣି ଭରତ ହୃଦୟେ ଲଗାଇ,
ଦୃଢ଼େ ଆଲିଙ୍ଗନ କରିଲେ ଯାଇ ।
ବୋଲିଲେ ହନୁମାନ ମୋର ମିତ୍ର,
ଆଲୋକ ମରିଲ ମୋ ଅନ୍ଧ ନେତ୍ର ।
ପ୍ରଭୁ ରାମଙ୍କ ସ୍ୱରୂପ ତୁମେ,
ସୁଖ ଭରିଲ ମୋର ଲୋମେ ଲୋମେ ।୨୪ ।
ସାରା ଦୁଃଖ ମୋର ପାଇଲା ଲୋପ,
କ୍ଷତ ହୃଦେ ଦେଲ ଅମୃତ ଲେପ ।
ସୁଝି ପାରିବିନି ତୁମ୍ଭର ଋଣ,
କେ ନାହିଁ ସଂସାରେ ତୁମ୍ଭ ସମାନ ।
ପ୍ରଭୁ ଚରିତ୍ରାବଳୀ ବଖାଣ,
ଶୁଣି ଧନ୍ୟ ହେଉ ମୋହର ପ୍ରାଣ ।୨୫ ।
ଭାରତଙ୍କ ଆଗ୍ରହ ଅନୁଭବି,
ବର୍ଣ୍ଣିଲେ ଭକ୍ତି ଭାବେ ଭାବି ଭାବି ।
ଶୁଣି ଭରତ ମନ ଆନନ୍ଦିତ,
ସାରା ଶରୀର ହେଲା ରୋମାଞ୍ଚିତ ।

ସନ୍ତର୍ପଣେ ପୁଛିଲେ ଭରତ,
ପ୍ରଭୁ ଭାବନ୍ତି କି ମୋ କଥା ଚିତ୍ତ ।୨୬ ।
ମାରୁତି ହୋଇ ଅତ୍ୟନ୍ତ ବିନୀତ,
ବୋଇଲେ କହେ ମୁଁ ସର୍ବଦା ସତ୍ୟ ।
ପ୍ରଭୁଙ୍କ ତୁମେ ପ୍ରାଣତୁଲ୍ୟ ପ୍ରିୟ,
ସଦା ଆଲୋଚନ୍ତି ତୁମ୍ଭ ବିଷୟ ।
କରିଣ ତୁମ୍ଭର ଗୁଣଗାନ,
ଆତ୍ମ ବିଭୋର ହୁଅନ୍ତି ତତ୍କ୍ଷଣ ।୨୭ ।
ଏତେ କହିଣ ପବନ ନନ୍ଦନ,
ମାଗିଲେ ମେଲାଣି ଯିବି ବହନ ।
ଆଲିଙ୍ଗନ କରି ଭ୍ରାତା ଭରତ,
ଶ୍ରୀରାମେ ସ୍ମରିଲେ ମୁଦିଣ ନେତ୍ର ।
କରି ଭରତଙ୍କୁ ଦଣ୍ଡବତ,
ରାମଙ୍କ ପାଶେ ଚଳିଲେ ତ୍ୱରିତ ।୨୮ ।
ଏଣେ ଯାହା ରସ ଶୁଣ ବିଦୁଷ,
ଭରଦ୍ୱାଜ ଆଶ୍ରମରେ ସୀତେଶ ।
ପହଞ୍ଚି ସୀତା ଲକ୍ଷ୍ମଣ ସହିତ,
ଋଷି ଚରଣେ କରି ପ୍ରଣିପାତ ।
ପୁଛିଲେ କୁହ ହେ ମୁନିନାଥ,
ସକୁଶଳେ ଅଛି କି ଭ୍ରାତା ଭ୍ରଥ ।୨୯ ।
ମୁନି ବୋଲନ୍ତି ଶୁଣ ରଘୁମଣି,
ବିଚିତ୍ର କର୍ମା ତୁମ୍ଭ କର୍ମ ଜାଣି ।
ପୃଥ୍ୱି ଭାର କରି ଅଛ ଉଶ୍ୱାସ,
ପ୍ରସନ୍ନ କରିଛ ସାଧୁ ସନ୍ୟାସ ।
ସମସ୍ତ ଲୋକେ ତୁମ୍ଭେ ବନ୍ଦିତ,
ଇଚ୍ଛାରେ ତୁମ୍ଭ ଜଗତ ଚାଳିତ ।୩୦ ।
ସର୍ବାନ୍ତର୍ଯାମୀ ବିଷ୍ଣୁ ଭଗବାନ,
ସୀତା ଲକ୍ଷ୍ମୀ ଶେଷ ନାଗ ଲକ୍ଷ୍ମଣ ।
ତୁମ୍ଭରି ସ୍ମରଣେ ଭ୍ରାତା ଭରତ,
କାନ୍ଦି କରେ ପ୍ରତି କ୍ଷଣ ବ୍ୟତୀତ ।
ମାତ୍ର ଦର୍ଶନ ଆଶେ ବଞ୍ଚିଛି,
ସାରା ଅଯୋଧ୍ୟା ପ୍ରତୀକ୍ଷାରେ ଅଛି ।୩୧ ।

ମୁନିଙ୍କ ମୁଖରୁ ଶୁଣି ବଚନ,
ବ୍ୟାକୁଳିତ ହେଲା ଶ୍ରୀରାମ ମନ ।
ନେତ୍ରୁ ଅବାରିତ ବହିଲା ନୀର,
ଏ କାଳେ ଫେରି ଆସି ହନୁବୀର ।
କଲା ଚରଣରେ ପ୍ରଣିପାତ,
ବାର୍ତ୍ତା ଶୁଣି ରାମ ହେଲେ ବ୍ୟଥିତ ।୩୨ ।
ମୁନିଙ୍କ ପାଶରୁ ମାଗି ବିଦାୟ,
ପୁଷ୍ପକ ଯାନରେ ହେଲେ ବିଜୟ ।
ଉଡ଼ି ଗଗନେ ତ୍ୱରିତେ ବିମାନ,
ଚାଲିଲା ଗର୍ବେ ସଭିଙ୍କୁ ଘେନିଣ ।
ତେଣେ ମାରୁତି ହୁଁ ବାର୍ତ୍ତା ପାଇ,
ଭରତ ଗୁରୁଙ୍କୁ କହିଲେ ଯାଇ ।୩୩ ।
ମାତା ଗଣ ବନ୍ଧୁଗଣ ଶୁଣିଣ,
ମନେ ମନେ ସର୍ବେ ହେଲେ ପ୍ରସନ୍ନ ।
ନଗର ଦେଶ ବାସୀଏ ସମସ୍ତେ,
ଆନନ୍ଦେ ସଜାଇଲେ ଯେଝା ମତେ ।
ପଥ,ଘର ଦ୍ୱାର ଉତ୍ସାହରେ,
ମୂର୍ତ୍ତ ଆନନ୍ଦ ଯେହ୍ନେ ନୃତ୍ୟ କରେ ।୩୪ ।
ପ୍ରଭୁଙ୍କ ଦର୍ଶନ ଆଶୟୀ ଜନ,
ରାଜମାତା ରାଜ ମହିଳା ଗଣ ।
ଶତ୍ରୁଘ୍ନ ସହିତ ଭାଇ ଭରତ,
ପାଦୁକା ମୁଣ୍ଡାଇ ଲୋତକ ନେତ୍ର ।
ନଗରବାସୀଗଣ ସହିତ,
ନଗର ବାହାରେ ହେଲେ ମିଳିତ ।୩୫ ।
ପ୍ରଭୁଙ୍କ ଆଗମନେ ଉତ୍କଣ୍ଠିତ,
ଗାଇଲେ ଗନ୍ଧର୍ବେ ସ୍ୱାଗତ ଗୀତ ।
ମଙ୍ଗଳ ବାଦ୍ୟ ବାଦ୍ୟକାରେ ବାଇ,
ନାଚିଲେ ସର୍ବେ ଆନନ୍ଦିତ ହୋଇ ।
କାନ୍ତିମାନ ପୁଷ୍ପକ ବିମାନ,
ଏ କାଳେ ଦୂରୁ ହେଲା ଦୃଶ୍ୟମାନ ।୩୬ ।
ରାମ ସୀତା ଲକ୍ଷ୍ମଣ ଜୟକାର,
ଶବ୍ଦେ କମ୍ପିତ ଧରା ସସାଗର ।

ବିମାନୁ ଓହ୍ଲାଇ ପ୍ରଭୁ ଶ୍ରୀରାମ,
ଦୌଡ଼ି ଗୁରୁ ପାଦେ କଲେ ପ୍ରଣାମ ।
ବ୍ରାହ୍ମଣ ଦେବଙ୍କୁ ନମସ୍କାର,
ରଘୁନାଥ କଲେ କରି ଆଦର ।୩୭ ।
ଭରତ ପାଦୁକା ଶିରୁ ଓହ୍ଲାଇ,
ଶ୍ରୀରାମ ସମ୍ମୁଖେ ସପ୍ରେମେ ଥୋଇ ।
ଲମ୍ବଦଣ୍ଡ ପ୍ରାୟ ଭୂମିରେ ପଡ଼ି,
ଚରଣ ଦ୍ୱୟ ଧରିଲେ ଜାବୋଡ଼ି ।
ନେତ୍ରୁ ନୀର ବହି ଝର ଝର,
ପ୍ରଭୁ ପାଦ ଧୋଇଲା ବରାବର ।୩୮ ।
ଜାନକୀ ନାଥ କାନ୍ଦି କଇଁ କଇଁ,
ହୃଦୟେ ଭିଡ଼ି ଧରିଲେ ଉଠାଇ ।
ବିଚିତ୍ରବସ୍ଥା ଦୁଇ ଭାଇଙ୍କର,
ବାଷ୍ପରୁଦ୍ଧ କଣ୍ଠ ଉଭୟଙ୍କର ।
ଦୃଶ୍ୟ ଏ ଅଲଭ୍ୟ ଦେବେ,
ମିଳନ ପର୍ବ ଦେଖି ଧନ୍ୟ ଜୀବେ ।୩୯ ।
ଅଞ୍ଜନା ନନ୍ଦନ ଦେଖି ଏ ଦୃଶ୍ୟ,
ହୃଦୟେ ଲଭିଲେ ସୁଖ ଅଶେଷ ।
ଉଚ୍ଚସ୍ୱରେ କରିଲେ ଜୟକାର,
ଧନ୍ୟ ଚକ୍ଷୁ ଦେଖିଲା ଚମତ୍କାର ।
ଛାନ୍ଦ ପଞ୍ଚତ୍ରିଂଶ ହେଲା ଶେଷ,
ପ୍ରଭୁ ସ୍ମରି ବର୍ଣ୍ଣେ ମୂଢ଼ ସୁରେଶ ।୪୦ ।



# ଷଟ୍‌ତ୍ରିଂଶ ଛାନ୍ଦ

**ରାଗ-ଗୁଜ୍ଜରୀ ଖେମଟା(ହନୁମାନଙ୍କ ହୃଦୟ ମଧ୍ୟରେ ରାମସୀତା ଦର୍ଶନ)**

ବକ୍ରତୁଣ୍ଡ ପଦ କରି ବନ୍ଦନ
ବନ୍ଦୁଛି ବାତ ନନ୍ଦନ ଚରଣ
କୃପାକର ଦୀନେ ବାରେ ଯେ,
ହନୁମାନ ଚରିତାମୃତ ବର୍ଣ୍ଣିବି ପଦ କୁହ ମୋ କର୍ଣ୍ଣରେ ଯେ ।୧ ।
ଜଗଜ୍ଜନନୀ ଜାନକୀ ସହିତ
ଜଗତ୍ତ୍ରାତା ପ୍ରଭୁ କୌଶଲ୍ୟା ସୁତ
ରାଜ ସିଂହାସନ ପରେ ଯେ,
ଆସୀନ ହେବାର ଦରଶନ କରି ସର୍ବେ ସୁଖି ଅଯୋଧ୍ୟାରେ ଯେ ।୨ ।
ଆନନ୍ଦ ଆନନ୍ଦେ ନାଚେ ସର୍ବତ୍ର
ସ୍ୱର୍ଗେ ଦେବଗଣ ହର୍ଷେ ମୋଦିତ
ବୃଷ୍ଟି କରିଲେ ସୁମନ[୧] ଯେ,
ସୁମନେ[୨] ସୁମନେ[୩] ସୁମନ[୪] ହେଲେ ସୁମନ[୫] ଅଯୋଧ୍ୟା ଦର୍ଶନେ ଯେ ।୩ ।
ଧର୍ମ ବିଗ୍ରହ ଶ୍ରୀରଘୁ ନନ୍ଦନ
ମୁନି ବ୍ରାହ୍ମଣେ ଦେଲେ ବହୁ ଦାନ
କରି ସରବେ ପ୍ରସନ୍ନ ଯେ,
ଆଶୀର୍ବାଦ ପ୍ରାପ୍ତ କରିବାର ଅନ୍ତେ ପାଶେ ଡକାଇଲେ ମିତ୍ରଗଣ ଯେ ।୪ ।
ଦିଅ ସୁବର୍ଣ୍ଣମାଳା ମଣି ଯୁକ୍ତ
ରବିକର ସମ ଯେ ପ୍ରକାଶିତ
ଭେଟି ସୁଗ୍ରୀବଙ୍କୁ ଦେଲେ ଯେ,
ଅଙ୍ଗଦେ ଅଙ୍ଗଦ ଉପଢଉକନ ଦେଇ ସମ୍ମାନିତ କଲେ ଯେ ।୫ ।
ରାକ୍ଷସ ରାଜ ବିଭୀଷଣ
ନଳ ମୈନ୍ଦଦ୍ୱିବିନ୍ଦ ଜାମ୍ବବାନ
ନୀଳାଦି ଭାଲୁ ବାନର ଯେ,
ସର୍ବେ ହର୍ଷାପ୍ଲୁତ ପାଇ ମନଲାଖି ବହୁ ମୂଲ୍ୟ ଉପହାର ଯେ ।୬ ।
ମହାରାଣୀ ମାତା ଜାନକୀ ହସ୍ତ
ଅର୍ପିଲେ ଦିବ୍ୟ ଆଭୁଷଣ ବସ୍ତ୍ର
ବହୁମୂଲ୍ୟ ମୁକ୍ତାହାର ଯେ,
ଗଳାରେ ସ୍ନେହରେ ଲମ୍ବାଇଣ ଦେଲେ ପ୍ରଭଞ୍ଜି ଉପହାର ଯେ ।୭ ।
ବୈଦେହୀ ଦେଖିଲେ ପ୍ରଭୁ ଶ୍ରୀରାମ
ସର୍ବେ ଭେଟି ଦେଲେ ରଖିଣ ପ୍ରେମ

୧-ପୁଷ୍ପ,୨-ପଣ୍ଡିତ,୩-ଉତ୍ତମ ମନ,
୪-ଆନନ୍ଦିତ ହେଲେ,୫-ଅତିମନୋହର

କିନ୍ତୁ ପବନ କୁମାର ଯେ,
ଚରଣରେ ଲୟ ନିଶ୍ଚଳେ ରଖି ବି ପାଇ ନାହିଁ ଉପହାର ଯେ ।୮ ।
ପ୍ରିୟ ସେବକ କଥା ଚିନ୍ତା କରି
ମାତାଙ୍କ ହୃଦୟ ଉଠିଲା ଥରି
ପ୍ରଭୁଙ୍କୁ ଚାହିଁଣ ଧିରେ ଯେ,
ପ୍ରଭୁ ପ୍ରଦତ୍ତ ଦୁର୍ଲଭ ମୁକ୍ତା ହାର ଉତାରି ଧରିଲେ କର ଯେ ।୯ ।
ମାତାଙ୍କ ମନୋବସ୍ଥା ଅନୁମାନି
ବୋଇଲେ ସୀତେ ସୌଭାଗ୍ୟଶାଳିନୀ
ସ୍ୱେଚ୍ଛାରେ ପ୍ରଦାନ କର ଯେ,
ଅନନ୍ଦର ବେଳା ଚାହଁ ଯା'ରେ ଦିଅ ତୁମ୍ଭର ଏ ମୁକ୍ତା ହାର ଯେ ।୧୦ ।
ପ୍ରଭୁଙ୍କ ଠାରୁ ପାଇଣ ସ୍ୱୀକୃତି
ସିଂହାସନୁ ଯାଇ ମାରୁତି କତି
କଣ୍ଠରେ ଦେଲେ ଲମ୍ବାଇ ଯେ,
ପବନ ନନ୍ଦନ ଶରୀରର ଶୋଭା ଦେଲା ସେ ମାଳା ବଢ଼ାଇ ଯେ ।୧୧ ।
ହନୁମାନଙ୍କର ଭାଗ୍ୟକୁ ନେଇ
ସର୍ବେ ପ୍ରଶଂସା କଲେ ଖୁସି ହୋଇ
ମାତାଙ୍କ ହସ୍ତ ପ୍ରଦତ୍ତ ଯେ,
ବହୁମୂଲ୍ୟ ମୁକ୍ତା ହାର ପାଇ ମଧ୍ୟ ହନୁମାନ ନୁହେଁ ପ୍ରୀତ ଯେ ।୧୨ ।
ମୁଖ ପରେ ନାହିଁ ହରଶ ଚିହ୍ନ
ହାର କାଢ଼ି କଣ୍ଠୁ ବାତ ନନ୍ଦନ
ଓଲଟ ପାଲଟ କରି ଯେ,
ଖୋଜିବା ଖୋଜିବା ନୟନେ ମାରୁତି ଖୋଜେ ଗୋଟି ଗୋଟି କରି ଯେ ।୧୩ ।
ପ୍ରତିଟି ମୁକ୍ତା କରେ ନିରୀକ୍ଷଣ
ଏକ ଏକ ଦେଖଇ ଦେଇ ଧ୍ୟାନ
ନ ମିଳିବାରୁ ଅଭିଷ୍ଟ ଯେ,
ସମ୍ଭବତଃ ମୁକ୍ତା ଭିତରେ ଅଛନ୍ତି ଭାବେ ମାରୁତି ମୋ ଇଷ୍ଟ ଯେ ।୧୪ ।
ବଜ୍ରତୁଲ୍ୟ ଦାନ୍ତେ ଚୋବାଇ ରତ୍ନ
ଭାଙ୍ଗି ଦେଖଇ ଅଛନ୍ତି କି ରତ୍ନ
ଫିଙ୍ଗି ଦେଲେ ଗୋଟି ଗୋଟି ଯେ,
ଯହିଁରେ ନାହାଁନ୍ତି ତା' ଜୀବନ ସ୍ୱାମୀ ଭାବି ତା' ପାଇଁ ସେ ମାଟି ଯେ ।୧୫ ।
ସଭାସଦ ବର୍ଗ ଦେଖି ଏ ରୀତି
ଚିନ୍ତିଲେ ହୃଦେ ବାନର ମାରୁତି

ରତ୍ନ ମୂଲ୍ୟ କି ବୁଝିବ ଯେ,
ଘୁଷୁରି ନିମନ୍ତେ ପାଚିଲା କଦଳୀ ଯେମନ୍ତ ସେମନ୍ତ ଭାବ ଯେ ।୧୬ ।
ବିଭୀଷଣ ସ୍ୱୟଂ ଧୈର୍ଯ୍ୟ ହରାଇ
ପୁଚ୍ଛିଲେ ଜିଜ୍ଞାସାର ପୂର୍ତ୍ତି ପାଇଁ
କୁହ ମୋତେ ହନୁମାନ ଯେ,
ଯାହା ବିନିମୟେ ରାଜ୍ୟ ମିଳିପାରେ ଫାଡୁଛ କିମ୍ପା ସେ ରତ୍ନ ଯେ ।୧୭ ।
ଏକ ରତ୍ନକୁ କାମୁଡ଼ି ଦାନ୍ତରେ
ଧ୍ୟାନ ପୂର୍ବକ ଦେଖନ୍ତେ ତାହାରେ
କହିଲେ ହେଲଙ୍କେଶ୍ୱର ଯେ,
ଦେଖୁଅଛି ରତ୍ନେ ମୋ ପ୍ରଭୁ ଙ୍କ ଛବି ରହିଛି କି ବରାବର ଯେ ।୧୮ ।
ଖୋଜୁଛି ରତ୍ନରେ ମୋ ସର୍ବେଶ୍ୱର
ମିଳୁନି ସେଥିରେ ଛବି ତାଙ୍କର
ନାହାଁନ୍ତି ପ୍ରଭୁ ଯହିଁରେ ଯେ,
ସେ ଅଯୋଗ୍ୟ ବସ୍ତୁ ଫୋପଡ଼ା ଓ ଭଙ୍ଗା ହେବାର ଯୋଗ୍ୟ ବିଧିରେ ଯେ ।୧୯ ।
ମୂଲ୍ୟବାନ ରତ୍ନ ନଷ୍ଟ ହେବାର
ଦେଖି ବିଭୀଷଣ ଅସୁର ବୀର
କ୍ଷୁବ୍ଧ ହୋଇ ମାନସରେ ଯେ,
ବୋଇଲେ ରତ୍ନେ ପ୍ରଭୁ ଯଦି ନାହାଁନ୍ତି ଛନ୍ତି କି ତୁମ ଶରୀରେ ଯେ ।୨୦ ।
ରତ୍ନ ଯଦି ଭଙ୍ଗା ଫୋପଡ଼ା ଯୋଗ୍ୟ
ବିରାଟ ଶରୀର କିମ୍ପା ଅଯୋଗ୍ୟ
ଧରିଛ କେହ୍ନେ ତାହାରେ ଯେ,
ତାଙ୍କୁ ନଷ୍ଟ ତୁମେ କରିକି ପାରିବ ଛନ୍ତି କି ପ୍ରଭୁ ତହିଁରେ ଯେ ।୨୧ ।
ଦୃଢ଼ ବିଶ୍ୱାସ ସହ ହନୁମାନ
ନିଶ୍ଚୟ ବୋଲି କହିଲେ ବଚନ
ପ୍ରାଣନାଥ ପ୍ରଭୁ ମୋର ଯେ,
ହୃଦୟେ ବିରାଜନ୍ତି ସଦା ନଚେତ ଅଯୋଗ୍ୟ ତୁଚ୍ଛ ଶରୀର ଯେ ।୨୨ ।
ସାକ୍ଷାତରେ ଦେଖ ନିଜ ନୟନ
ଫାଡୁଛି ଶରୀର ମୁଁ ତତକ୍ଷଣ
ପ୍ରଭୁ ନ ଦିଶିବେ ଯଦି ଯେ,
ନିମିଷକେ ଯାରେ କରିଦେବି ନଷ୍ଟ ନ ଭାବ ଏ ହାକୁ ଗଦ୍ଦି* ଯେ ।୨୩ । *ଥଟ୍ଟା/ପରିହାସ
ବୋଲି ଏସନ ପବନ ନନ୍ଦନ
ଫାଡ଼ିଲେ ହୃଦ କରାଗ୍ରଜେ ତୀକ୍ଷ୍ଣ

ଦୁଇଭାଗ ହୋଇ ବକ୍ଷ ଯେ,
ରୁଧିର ବହଇ ଝରଝର ହୋଇ ସର୍ବେ ଦେଖିଲେ ପ୍ରତ୍ୟକ୍ଷ ଯେ ।୨୪ ।
ଶ୍ରୀରାମ ସହ ମାତା ଭଗବତୀ
ସଭାସଦ ଦେଖି ଆଶ୍ଚର୍ଯ୍ୟ ଅତି
ବିଭୀଷଣ ମୂହ୍ୟମାନ ଯେ,
ମାରୁତି ହୃଦୟ କନ୍ଦର ମଧ୍ୟରେ ରାମସୀତା ବିଦ୍ୟମାନ ଯେ ।୨୫ ।
ହନୁମାନ ତନୁର ପ୍ରତି ଲୋମ
ମୂଳୁ ନିଶ୍ରୁତ ହୁଏ ରାମ ନାମ
ଦଣ୍ଡ ପ୍ରାୟ ଲଙ୍କେଶ୍ୱର ଯେ,
ମାରୁତି ଚରଣ ତଳେ ପଡ଼ି ଧରି କାନ୍ଦେ କହି କୃପା କର ଯେ ।୨୬ ।
ଭକ୍ତରାଜ ହନୁମାନଙ୍କୀ ଜୟ
ଜୟଘୋଷେ ହୋଇଲା ଜୟମୟ
ସଭାଗୃହ ମୁଖରିତ ଯେ,
ଭକତ ଭକ୍ତିରେ ପ୍ରଭୁ ରାଘବେନ୍ଦ୍ର ହୋଇଗଲେ ଦ୍ରବିଭୁତ ଯେ ।୨୭ ।
ସହସା ସିଂହାସନରୁ ଓହ୍ଲାଇ
ପବନ ନନ୍ଦନ ପାଶକୁ ଯାଇ
ଦେଲେ ଲଗାଇ ହୃଦୟ ଯେ,
ଭକତ ବତ୍ସଳ କର ପରଶରେ ହନୁ ହେଲା ନିରାମୟ ଯେ ।୨୮ ।
ପୂର୍ବବତ ହେଲା ତା'ର ଶରୀର
ସରବେ ହୃଦୟେ କଲେ ସ୍ୱୀକାର
ଧନ୍ୟ ଅଞ୍ଜନା କୁମର ଯେ,
ଅନନ୍ୟ ଭକତ ଭିତରେ ବାହାରେ ଛନ୍ତି ତ୍ରୈଲୋକ୍ୟ ଈଶ୍ୱର ଯେ ।୨୯ ।
ଭକ୍ତରାଜ ହନୁମାନ ଆଶିଷ
ଫଳେ ପଞ୍ଚତ୍ରିଂଶ ଅଧ୍ୟାୟ ଶେଷ
କଥାଗାଥା ତାହାଙ୍କର ଯେ,
ଭକତି ଭାବରେ ଭାଷଇ ସୁରେଶ ଚିନ୍ତି ପଦ ମାରୁତିର ।୩୦ ।



# ସପ୍ତତ୍ରିଂଶ ଛାନ୍ଦ

**ରାଗ-ମଙ୍ଗଳ କେଦାର(ମାରୁତିଙ୍କର ସିନ୍ଦୁର ଧାରଣ ଚରିତ)**

ସୁଜ୍ଞଜନ ଶୁଣ ଏଥୁ ଅନନ୍ତରେ ରସ
ଶ୍ରୀହନୁମାନ ଚରିତ ଛାନ୍ଦ ସପ୍ତତ୍ରିଂଶ
ଭାବୁକ ଭକତ,
ସ୍ୱରୂପ ହେବ ବର୍ଣ୍ଣିତ ।୧ ।
ଏକ ଦିବସର କଥା ମଙ୍ଗଳ ବାସରେ
ପ୍ରାତେ କ୍ଷୁଧାତୁର ହନୁ ମାତାଙ୍କ ପାଶରେ
ପହଞ୍ଚି ବୋଲଇ,
ଦିଅ ମା' ଭୁଞ୍ଜିବା ପାଇଁ ।୨ ।
ମାତା ସ୍ନେହେ ବୋଇଲେ ମାରୁତିରେ ଶୁଣ
ସ୍ନାନ ସାରି ଆସୁଅଛି ମୁହିଁ ତତକ୍ଷଣ
ସାରିଲେ ସ୍ନାହାନ,
ତୋତେ ଦେବି ଜଳପାନ ।୩ ।
ମାତାଙ୍କର ବଚନକୁ କରି ଶିରୋଧାର୍ଯ୍ୟ
ରାମନାମ ଗାଇ କପି ଦୃଢ଼େ ଧରି ଧୈର୍ଯ୍ୟ
ମାତାଙ୍କ ପ୍ରତୀକ୍ଷା,
କଲେ ରଖି ଖାଦ୍ୟାକାଂକ୍ଷା ।୪ ।
ଜଗଦମ୍ବା ଜାନକୀ ସ୍ନାନ କରିଣ ଶୃଙ୍ଗାର
କରିବା ପ୍ରାରମ୍ଭ କଲେ ସିମନ୍ତେ ସିନ୍ଦୁର
ଲଗାଇବା ବେଳେ,
କପି ଦେଖି କୌତୁହଳେ ।୫ ।
ଭୋଳା ଅବତାର ହନୁମାନ ଭୋଳା ପଣେ
ସିନ୍ଦୁର ସିମନ୍ତେ ଲଗାଉଛ କି କାରଣେ
ପୁଛିଲେ ସରଳେ,
ମାତା ହସି ସେତେବେଳେ ।୬ ।
ପ୍ରବୋଧି ବୋଇଲେ ଅବୋଧ ବାତ ନନ୍ଦନେ
ସ୍ୱାମୀ ଆୟୁ ବୃଦ୍ଧି ଅର୍ଥେ ନାଇ ନାରୀମାନେ
ହୁଅନ୍ତି ସିମନ୍ତିନୀ,
ସୌଭାଗ୍ୟ ସ୍ୱରୂପ ଜାଣି ।୭ ।
ସିନ୍ଦୁର ନାଇଲେ ପ୍ରଭୁ ଆୟୁଷ ବଢ଼ିବ
ହନୁମାନଙ୍କୁ ଆବୋରିଲା ଭାବୁକ ଭାବ
ଚିନ୍ତିଲେ ଗଭୀରେ,

ନିଶ୍ଚୟ କଲେ ମନରେ ।୮ ।
ଜଳପାନ କଥା ଭୁଲି ଉଠିଣ ସହସା
ସିନ୍ଦୁର ଖୋଜିବା ତାଙ୍କ ହୋଇଗଲା ନିଶା
ପ୍ରଥମେ ତୈଳରେ,
ତିନ୍ତାଇଲେ କଳେବରେ ।୯ ।
ତପ୍ରରେ ସିନ୍ଦୁର ନେଇ ଆପାଦ ମସ୍ତକ
ପୋତି ପକାଇଲେ ମହାନନ୍ଦେ ଏକାଏକ
ସିନ୍ଦୁର ସିନ୍ଦୁର,
ସିନ୍ଦୁରେ ସ୍ନାତ ଶରୀର ।୧୦ ।
ସିନ୍ଦୁର ଲେପ ହେତୁ ମୋ ପ୍ରଭୁଙ୍କ ଆୟୁଷ
ବଢ଼ିବ ବୋଲି ମନରେ ବହିଣ ଉଲ୍ଲାସ
ବିଚିତ୍ର ବେଶରେ,
ଗମିଲେ ରାଜସଭାରେ ।୧୧ ।
ସିନ୍ଦୁର ପୂରିତ ଅଙ୍ଗ ଅଦଭୁତ ବେଶ
ଦରଶନେ ସଭାରେ ଶୁଭିଲା ଅଟହାସ୍ୟ
ସ୍ୱୟଂ ଭଗବାନ,
ଆମୋଦିତ ହେଲେ ମନ ।୧୨ ।
ମନ୍ଦ ମନ୍ଦ ହସି ପୁଛିଲେ ଶାରଙ୍ଗଧର
ମାରୁତି ସର୍ବାଙ୍ଗେ କିମ୍ପା ଲେପିଛ ସିନ୍ଦୁର
ଉନ୍ମୋଚି ରହସ୍ୟ,
ସଂଶୟ ମୋ ନାଶ ।୧୩ ।
ବିନମ୍ରତା ପୂର୍ବକ ଯୋଡ଼ିଣ ବେନି କର
ଶିଶୁତୁଲ୍ୟ ହନୁମାନ ବୋଲନ୍ତି ଉତ୍ତର
ସିନ୍ଦୁର ସିମନ୍ତେ,
ଧାରଣ କରନ୍ତି ମାତେ ।୧୪ ।
ଟୋପାଏ ସିନ୍ଦୁର ଲଗାଇବାରୁ ସିମନ୍ତେ
ପ୍ରଭୁଙ୍କର ଆୟୁ ବଢ଼େ ବୋଲୁଛନ୍ତି ମାତେ
କାରଣରୁ ସେହି,
ସିନ୍ଦୁର ନାଇଛି ଦେହି ।୧୫ ।
ସାରା ଶରୀରରେ ବୋଳି ହୋଇଲେ ସିନ୍ଦୁର
ଅଧିକ ଆୟୁଷ ବୃଦ୍ଧି ହେବ ମୋ ପ୍ରଭୁର
ଏମନ୍ତ ଚିନ୍ତିଣ,
ଦେହେ କରିଛି ଧାରଣ ।୧୬ ।

ହନୁମାନ ସରଳତା କରି ଅନୁଭବ
ମୁଗ୍ଧ ହୋଇ ଉଦ୍‌ଘୋଷଣା କରିଲେ ରାଘବ
ଆଜି ଭୌମବାର,
ଭକ୍ତପାଇଁ ଶୁଭଙ୍କର ।୧୭ ।
ଭବିଷ୍ୟରେ ଭୌମବାରେ ଯେଉଁ ଭକ୍ତମାନେ
ତୈଳ ଓ ସିନ୍ଦୁର ଚଢ଼ାଇବେ ଶୁଦ୍ଧମନେ
ପବନ କୁମରେ,
ହୃଷ୍ଟ ମୁଁ ହେବି ତା'ପରେ ।୧୮ ।
କାମନା ଯା' ମନେ ତାହାର ଥିବ ସମସ୍ତ
ପୂର୍ତ୍ତି ସ୍ୱୟଂ କରାଇବି ଏ ତ୍ରିବାର ସତ୍ୟ
ଅନ୍ତେ ମୋର ପୁରେ,
ଗମି ବଞ୍ଚିବ ଶାନ୍ତିରେ ।୧୯ ।
ନିସ୍ତରିଲି ନିସ୍ତରିଲି ଉଚ୍ଚସ୍ୱରେ କହି
ଜାବୋଡ଼ିଲା କପି ପ୍ରଭୁଙ୍କ ଚରଣ ଦୁଇ ।୨୦ ।
ସର୍ବଜନ ଆନନ୍ଦରେ ଶତମୁଖ ହୋଇ
ଅଞ୍ଜନା ନନ୍ଦନ ସ୍ତୋତ୍ର ଉଚ୍ଚସ୍ୱରେ ଗାଇ
ଉଠିଲେ ସହର୍ଷ,
ପ୍ରଭୁ ଦେଲେ ସ୍ମିତ ହାସ୍ୟ ।୨୧ ।
ଗୁରୁ ପଦ ରଜେ ଧୋଇ ମନ ଦରପଣ
ଶ୍ରୀରାଘବ ପୁଣ୍ୟ ଯଶ କରୁଛି ଚିନ୍ତନ
ଚଉବର୍ଗ ଫଳ,
ଦିଏ ଭକତି ବିମଳ ।୨୨ ।
ବୁଦ୍ଧିହୀନ ଜାଣି ପ୍ରଭୁ ପବନ ନନ୍ଦନ
ବଳବୁଦ୍ଧି ବିଦ୍ୟା ଦିଅ ହରି କ୍ଳେଶମାନ
ଜ୍ଞାନୀ ଅଗ୍ରଗଣ୍ୟ,
ରଖ ପ୍ରଭୁ ହେ ଶରଣ ।୨୩ ।
ତିନି ଲୋକେ ଯଶ କୀର୍ତ୍ତି ପ୍ରଭୁ ହେ ତୁମର
ପ୍ରଚାରିତ ବାତସୁତ ଜ୍ଞାନଗୁଣାଗାର
ଦଣ୍ଡବତ ଘେନ,
ଚରଣରେ ରହୁ ମନ ।୨୪ ।
ସାରା ସଂସାରରେ ତୁମେ ଏକା ତୁମ ପରି
ବଳରେ ସଂସାରେ କେ ନାହାଁନ୍ତି ତୁମ ପରି
ଅଞ୍ଜନା ନନ୍ଦନ,

ପ୍ରଭୁ ପବନ ନନ୍ଦନ ।୨୫ ।
ମହାବୀର ବଜରଙ୍ଗୀ ଅମିତ ବିକ୍ରମୀ
ସୁମତିର ସାଥି ତୁମ୍ଭେ ମହା ପରାକ୍ରମୀ
ନିବାର କୁମତି,
ବସ ସଦା ସାଧୁ କତି ।୨୬ ।
ସୁବର୍ଣ୍ଣ ବରନ ସୁନ୍ଦର ବସ୍ତ୍ରେ ଶୋଭିତ
କୁଞ୍ଚିତ କେଶ ଦିଶଇ ସୁନ୍ଦର ଅତ୍ୟନ୍ତ
କୁଣ୍ଡଳ କର୍ଣ୍ଣର,
ଆକର୍ଷକ ମନୋହର ।୨୭ ।
ଗଦା ଧ୍ୱଜା ଦୁଇ ହସ୍ତେ ତୁମ୍ଭ ବିରାଜଇ
ମୁଞ୍ଜ ଘାସର ପଇତା କାନ୍ଧରେ ଶୋଭଇ
ଦିଶେ ଶୋଭାବନ,
ପ୍ରଣାମ ମାରୁତି ଘେନ ।୨୮ ।
ମହେଶ୍ୱର ଅବତାର କେଶରୀ କୁମାର,
ବିସରିତ ପରାକ୍ରମ ଯଶ ସଂସାରର
କରଇ ବନ୍ଦନ,
ଜଗତ ତୁମ୍ଭ ଚରଣ ।୨୯ ।
ଅତ୍ୟନ୍ତ କାର୍ଯ୍ୟ କୁଶଳ ମହାଗୁଣବାନ
ବିଦ୍ୟା ନିଧାନ ଚତୁର ରାମ କାର୍ଯ୍ୟେ ମନ
ପ୍ରକାଣ୍ଡ ବିଦ୍ୱାନ,
ଜ୍ଞାନୀ ମଧ୍ୟେ ଅଗ୍ରଗଣ୍ୟ ।୩୦ ।
ସଦାରୁହ ମସ୍ତ ଶୁଣ ପ୍ରଭୁଙ୍କ ଚରିତ
ହୃଦୟେ ସର୍ବଦା ରାମ ଜାନକୀ ସହିତ
ଅନୁଜ ଲକ୍ଷ୍ମଣ,
କରିଥାନ୍ତି ଅବସ୍ଥାନ ।୩୧ ।
ସୂକ୍ଷ୍ମରୂପେ ଦେଖା ଦେଲ ଜାନକୀ ମାତାଙ୍କୁ
ଭୟଙ୍କର ରୂପ ଧରି ଜାଳିଲ ଲଙ୍କାକୁ
ସର୍ବଥା ସମର୍ଥ,
କଳିବ କିଏ ସାମର୍ଥ୍ୟ ।୩୨ ।
ଭୀମରୂପ ଧରି ବହୁ ଅସୁର ମାରିଛ
ରଘୁନାଥଙ୍କ ଉଦ୍ଦେଶ୍ୟ ସଫଳ କରିଛ
ଶକତି ଅନନ୍ତ,
ସର୍ବଦା ନମେ ଭକତ ।୩୩ ।

ଜୀବନ ଦେଲ ଲକ୍ଷ୍ମଣେ ଆଣି ସଞ୍ଜିବନୀ
ଖୁସି କରାଇଲ ଶ୍ରୀରାଘବ ରଘୁମଣୀ
ହରଷିତ ହୋଇ,
ହୃଦେ ଲଗାଇଲେ ନେଇ ।୩୪ ।
ପ୍ରଶଂସା କରିଲେ ରାମ ତୁମର ବହୁତ
ବୋଇଲେ ମାରୁତି ତୁମ୍ଭେ ମୋ ଭ୍ରାତା ଭରତ
ସହିତ ସମାନ,
ନାହିଁ କିଛି ଭିନ୍ନାଭିନ୍ନ ।୩୫ ।
ହଜାର ମୁଖରେ ତୁମ୍ଭ ଯଶ ପ୍ରକାଶିତ
ପ୍ରଭୁ ଆଲିଙ୍ଗିଲେ ହୋଇ ହରଶ ଅତ୍ୟନ୍ତ
କହି ଏହିପରି,
ବିଶ୍ୱେ ନାହିଁ ତୁମ ପରି ।୩୬ ।
ନାରଦ ସନକ ସନାତନ ସରସ୍ୱତୀ
ସନତ କୁମାର ଶେଷନାଗ ପ୍ରଜାପତି
ମୁନି ସନନ୍ଦନ,
ସରବେ ଗାଆନ୍ତି ଗୁଣ ।୩୭ ।
ଯମ କୁବେରାଦି ଯେତେ ଦିଗରକ୍ଷାକାରୀ
ଯଶ ବର୍ଣ୍ଣନେ ଅକ୍ଷମ ପ୍ରଭୁ ହେ ତୁମ୍ଭରୀ
କବି ଓ ବିଦ୍ୱାନ,
କରିବେ କେହ୍ନେ ବର୍ଣ୍ଣନ ।୩୮ ।
ସୁଗ୍ରୀବ ନିମନ୍ତେ ପ୍ରଭୁ କଲ ଉପକାର
ମିଳାଇଲ ନେଇ ସାଥେ ପ୍ରଭୁ ରଘୁବୀର
ରାଜପଦ ପ୍ରାପ୍ତ,
ହୋଇଲା ପତ୍ନୀ ସହିତ ।୩୯ ।
ତୁମ୍ଭରି ସୁଉପଦେଶ ମାନି ବିଭୀଷଣ
ନିରଂକୁଶ ରୂପେ ହେଲା ଲଙ୍କାରେ ରାଜନ
ସମସ୍ତ ସଂସାର,
ଜାଣେ ଏହି ସମାଚାର ।୪୦ ।
ଯେ ସୂର୍ଯ୍ୟ ଅଛନ୍ତି ସହସ୍ର ଯୋଜନ ଦୂରେ
ପାଶେ ଯିବା ପାଇଁ ଲାଗଇ ଯୁଗ ହଜାରେ
ମିଠା ଫଳ ଭାବି,
ଗିଳିଲ ତା'ରେ ଅବାବି* ।୪୧ ।

*ହଠାତ୍

ଶ୍ରୀରାମ ମୁଦ୍ରିକା ମୁଖ ମଧ୍ୟେ ରଖି କରି

ମହାସାଗର ଲଙ୍ଘଣ ଗଲ ହୋଇ ପାରି
ପ୍ରଭୁ ତୁମ ପାଇଁ,
ଆଶ୍ଚର୍ଯ୍ୟ କାର୍ଯ୍ୟ ନୁହଁଇ ।୪୨ ।
କଠିନୁ କଠିନ କାର୍ଯ୍ୟ ଯେତେ ସଂସାରରେ
ହୋଇ ଯାଏ ସହଜରେ ତୁମ କରୁଣାରେ
ଭକତର କଷ୍ଟ,
ଦୟାରେ ହୁଅଇ ନଷ୍ଟ ।୪୩ ।
ପ୍ରଭୁ ତୁମେ ଦ୍ୱରପାଳ ଶ୍ରୀରାମଙ୍କ ଦ୍ୱାରେ
ଆଜ୍ଞାବିନା ନ ମିଳଇ ପ୍ରବେଶ କାହାରେ
ପ୍ରସନ୍ନତା ବିନା,
ଦୁଷ୍ପାପ୍ୟ ରାମ କରୁଣା ।୪୪ ।
ପ୍ରଭୁ ତୁମ ଶରଣରେ ଆସେ ଯେଉଁ ଭକ୍ତ
ଭୟ ନଷ୍ଟ ହୋଇ ତା' ଆନନ୍ଦ ହୁଏ ପ୍ରାପ୍ତ
ସଂରକ୍ଷଣେ ତୁମ,
ଥିଲେ ତା'ରେ ଡରେ ଯମ ।୪୫ ।
ବେଗକୁ ତୁମ୍ଭେ ସମ୍ଭାଳ ପ୍ରଭୁ ହେ ତୁମ୍ଭର
ଗର୍ଜନ ଶୁଣି ତୁମ୍ଭର କମ୍ପେ ତିନି ପୁର
ପ୍ରଭୁ ତୁମ୍ଭେ ଧନ୍ୟ,
ତିନି ଲୋକରେ ଅନନ୍ୟ ।୪୬ ।
ମହାବୀର ନାମ ଶୁଣା ଯାଏ ଯେଉଁ ଠାରେ
ଭୁତ ପିଶାଚ ଆସନ୍ତି ନାହିଁ ସେ ଠାବରେ
ଛାଡ଼ି ସେହି ସ୍ଥାନ,
ପଳାନ୍ତି ନେଇ ଜୀବନ ।୪୭ ।
ନାମ ତୁମ ପ୍ରଭୁ ଜପ କଲେ ନିରନ୍ତର
ଯାପକର ସମସ୍ତ ବେମାରି ହୁଏ ଦୂର
ତ୍ରିତାପ ଦହଇ,
କରମ ଫଳ ନାଶଇ ।୪୮ ।
ମନକର୍ମ ବଚନେ ତୁମଠି ଯା'ର ଧ୍ୟାନ
ସଙ୍କଟ ଯେତେକ ଆସେ ତା' ସାରା ଜୀବନ
କରିଥାଅ ଦୂର,
ହନୁମାନ ମହାବୀର ।୪୯ ।
ତପସ୍ୱୀ ମାନଙ୍କ ରାଜା ପ୍ରଭୁ ରଘୁରାଣ
ସର୍ବ କାର୍ଯ୍ୟ କରିଅଛ ପ୍ରଭୁଙ୍କ ଆପଣ

ସହଜ ସରଳ,
ଜାନକୀଶଙ୍କର ବଳ ।୫୦ ।
ଯାହାପରେ ପ୍ରଭୁ ତୁମ କୃପା ବରଷଇ
ଜୀବନେ ତା' ଅଭିଳାଷ ବାସ୍ତବେ ଫଳଇ
ମିଳଇ ଏମନ୍ତ,
ଫଳ ଅସୀମ ଅନନ୍ତ ।୫୧ ।
ଯଶ ପ୍ରଭୁ ତୁମ୍ଭ ଚାରି ଯୁଗେ ପରିବ୍ୟାପ୍ତ
କୀରତି ପ୍ରକାଶମାନ ଜଗତେ ସର୍ବତ୍ର
ପ୍ରଭୁ ହନୁମନ୍ତ,
ଘେନ ମୋର ପ୍ରଣିପାତ ।୫୨ ।
ରଘୁନାଥଙ୍କର ଗେହ୍ଲା ସଜ୍ଜନ ରକ୍ଷକ
ଜାନକୀଙ୍କ ପ୍ରିୟ ପୁତ୍ର ଦୁଷ୍ଟ ନିବାରକ
ସଂହାର ଅସୁର,
ଭକତ ପ୍ରିୟ ତୁମର ।୫୩ ।
ଜାନକୀ ମାତା ପ୍ରଦାନ କରିଛନ୍ତି ବର
ଭକ୍ତେ ଅଷ୍ଟ ସିଦ୍ଧି ନବ ନିଧି ଦେଇପାର
ସାମର୍ଥ୍ୟ ତୁମର,
ସୁରାସୁରେ ଅଗୋଚର ।୫୪ ।
ତୁମ୍ଭ ଭଜନ କରାଏ ଶ୍ରୀରାମଙ୍କ ପ୍ରାପ୍ତି
ଜନ୍ମଜନ୍ମାନ୍ତରର ଦୁଃଖ ହୁଏ ସମାପ୍ତି
ଭକ୍ତ ତାଙ୍କ ପ୍ରିୟ,
ଭକ୍ତରେ ଦିଅନ୍ତି ଶ୍ରେୟ ।୫୫ ।
ଅନ୍ତ ସମୟେ ଯାଏ ଶ୍ରୀରଘୁନାଥ ଧାମ
ପୁନର୍ଜନ୍ମ ହେଲେ ହୁଏ ଭକ୍ତ ରୂପେ ଜନ୍ମ
ଭକତ ଭକତି,
ଟାଣେ ତୁମ୍ଭଙ୍କୁ ତା' କତି ।୫୬ ।
ପ୍ରଭୁ ତୁମ୍ଭରି ସେବା ଯେ ଭକତ କରଇ
ଅନ୍ୟ ଦେବତା ପୂଜିବା ତା'ର ଲୋଡ଼ା ନାହିଁ
ସବୁ ସୁଖ ଦିଅ,
ଦୁଃଖ କଷ୍ଟ ହରି ନିଅ ।୫୭ ।
ଆହେ ବୀର ହନୁମାନ ତୁମ୍ଭଙ୍କୁ ଯେ ସ୍ମରେ
ସଙ୍କଟ କଟେ ତା' ପିଡ଼ା ହଟି ଯାଏ ଦୂରେ
ଡରରେ ତୁମ୍ଭର,

ପ୍ରଭୁ ଅଞ୍ଜନା କୁମର ।୫୮ ।
ଜୟ ଜୟ ଜୟ ପ୍ରଭୁ ଜୟ ହନୁମାନ
କୃପା କର ଦୀନ ପ୍ରତି ଶ୍ରୀଗୁରୁ ସମାନ
ଦୟାର ସାଗର,
କରୁଣା ଊଣା ନ କର ।୫୯ ।
ଏକ ସହସ୍ରବାର ଯେ ନାମକୁ ଜପଇ
ସମସ୍ତ ବନ୍ଧନୁ ସେହି ମୁକତି ଲଭଇ
ପାଏ ମହାନନ୍ଦ,
ସ୍ୱରୂପ ତୁମ୍ଭ ଆନନ୍ଦ ।୬୦ ।
ଗୌରୀଶ ସାକ୍ଷୀ ହେ ପ୍ରଭୁ ଶଙ୍କର ସ୍ୱରୂପ
ଗାଥା ଗଥା ପଢ଼ିଲେ ଶୁଣିଲେ କଟେ ପାପ
ତ୍ରିବାର ଏ ସତ୍ୟ,
ଓଫଳତା ହୁଏ ପ୍ରାପ୍ତ ।୬୧ ।
ହେ ନାଥ ମାରୁତି ତୁମ ଦାସର ମୁଁ ଦାସ
କୃପା କରି ହୃଦୟ କନ୍ଦରେ କର ବାସ
ଏୟନେ ସ୍ୱପନେ,
ଦେଖୁଥିବି ଜାଗରଣେ ।୬୨ ।
ସଙ୍କଟ ମୋଚନ ପ୍ରଭୁ ପବନ କୁମର
ଆନନ୍ଦ ମଙ୍ଗଳ ମୂର୍ତ୍ତି ଉସ୍ତ ହରଣର
ଭକତର ବନ୍ଧୁ,
କୃପାକର କୃପାସିନ୍ଧୁ ।୬୩ ।
ଶ୍ରୀଚରଣେ ପ୍ରଭୁ ତୁମ୍ଭ କରେ ନିବେଦନ
ଶ୍ରୀରଘୁନାଥ ସହିତ ବୈଦେହୀ ଲକ୍ଷ୍ମଣ
ହୃଦେ ବସ ମୋର,
ପ୍ରଭୁ ପବନ କୁମର ।୬୪ ।
ସପ୍ତତ୍ରିଂଶ ଛାନ୍ଦ ଏଥେ ହୋଇଲା ସମ୍ପୂର୍ଣ୍ଣ
ସୁରେଶ ବର୍ଣ୍ଣେ କୃପାରେ ପବନ ନନ୍ଦନ
ରସମୟ କଥା,
ଭକତ ଭକତି ଗାଥା ।୬୫ ।



# ଅଷ୍ଟତ୍ରିଂଶ ଛାନ୍ଦ

**ରାଗ-ଦୀର୍ଘ କାମୋଦୀ(ରାମ ହନୁମାନ ଯୁଦ୍ଧ)**

ନମୋ ଲମ୍ବୋଦର ପ୍ରଭୁ ହିମଶୈଳ ଆତ୍ମଜା ନନ୍ଦନ,
ଶ୍ରୀହନୁମାନ ଚରିତାମୃତ ରସ କରିବି ବର୍ଣ୍ଣନ ।୧ ।
ଭକତ ରାଜଙ୍କ କଥା ସୁଦୁର୍ଲଭ ଭକ୍ତିରସେ ପୂର୍ଣ୍ଣ,
ବିଦ୍ୟାଦାତା ବିଘ୍ନହର୍ତ୍ତା କହିଦିଅ ପଦ ମୋର କର୍ଣ୍ଣ ।୨ ।
ମାତା ଅଞ୍ଜନା ଦର୍ଶନ ଇଚ୍ଛା ରଖି ଦିନେ ହନୁମାନ,
ଶ୍ରୀରଘୁନାଥ ଚରଣେ ସବିନୟ କଲେ ନିବେଦନ ।୩ ।
ଭକ୍ତଙ୍କର ଅଭିଳାଷ କର୍ଣ୍ଣପୁଟେ ଶୁଣି ବୈଦେହୀଶ,
ତତକ୍ଷଣେ ଆଜ୍ଞା ଦେଲେ ହନୁମାନେ ରାଘବ ସହର୍ଷ ।୪ ।
କିଛି କ୍ଷଣ ଅନ୍ତେ କାଶୀ ନରରାଣ ଦର୍ଶନ ନିମନ୍ତେ,
ଅଯୋଧ୍ୟା ରାଜ ସଭାରେ ପହଞ୍ଚିଲେ ଆହ୍ଲାଦିତ ଚିତ୍ତେ ।୫ ।
ଶ୍ରୀରଘୁନାଥ ଚରଣେ ଶ୍ରଦ୍ଧାଭକ୍ତି ପୂର୍ବକ ପ୍ରଣାମ,
ଜଣାଇଲେ କରି ରଘୁ ବଂଶ ପ୍ରତି ହୃଦୟର ପ୍ରେମ ।୬ ।
ବଶିଷ୍ଠାଦି ପ୍ରାଜ୍ଞ ଗଣେ ଅରପିଲେ ସଶ୍ରଦ୍ଧ ପ୍ରଣତି,
ଅସାବଧାନ କାରଣୁ ଭୁଲିଗଲେ ବିଶ୍ୱାମିତ୍ର ଯତି ।୭ ।
କାଶି ନରେଶ ଉପେକ୍ଷା ବିଶ୍ୱାମିତ୍ର ନ ପାରିଲେ ସହି,
ଏକାନ୍ତେ ଶ୍ରୀରାମେ ଭେଟି ଜଣାଇଲେ ଅତିକ୍ରୋଧ ବହି ।୮ ।
ମର୍ଯ୍ୟାଦା ପୁରୁଷୋତ୍ତମ ବୋଲାଉଛ ସାରା ସଂସାରରେ,
ମର୍ଯ୍ୟାଦା ଅବହେଳନା ସହ୍ୟକଲ କେହ୍ନେ ସମ୍ମୁଖରେ ।୯ ।
ତୁମ୍ଭରି ରାଜସଭାରେ କାଶୀରାଜ ସର୍ବଥା ମୋହର,
ଉପେକ୍ଷା କରିଲା ଥାଉଁ ହେ ରାଘବ ତୁମ୍ଭେ ସେ ସଭାର ।୧୦ ।
ବିଶ୍ୱାମିତ୍ର ତିରସ୍କାର ନିଜ ଶିରେ ନେଇ ଜାନକୀଶ,
ସୂର୍ଯ୍ୟାସ୍ତ ସୁଦ୍ଧା ବୋଇଲେ ଛିଣ୍ଡାଇବି କାଶିରାଜ ଶିଶ ।୧୧ ।
ଆପଣଙ୍କ ସମ୍ମୁଖରେ ରଖୁଅଛି ତିନି ତୀକ୍ଷ୍ଣ ବାଣ,
ଦେଉଛି ବଚନ ଆଜି ନିଶ୍ଚେ ହେବ ତାହାର ମରଣ ।୧୨ ।
ପରାକ୍ରମୀ ସତ୍ୟବ୍ରତୀ ରାବଣାରି ଅବଧ ନରେଶ,
ପ୍ରତିଜ୍ଞା ମୁଖରୁ ମୁଖ ବ୍ୟାପିଗଲା ତୀବ୍ରେ ଦେଶୁ ଦେଶ ।୧୩ ।
କାନରୁ କାନ ହୋଇଣ କାଶିରାଜା ଏ ପ୍ରତିଜ୍ଞା ଶୁଣି,
ବରଡ଼ା ପତ୍ର ପରାୟେ ଥରିଲା ସେ ମୃତ୍ୟୁ ନିଶ୍ଚେ ଜାଣି ।୧୪ ।
ରଘୁକୂଳ ରୀତି ସଦା ଯାହା ଚଳି ଆସିଅଛି ଭବେ,
ଜୀବନ ବିନିମୟରେ ବଚନକୁ ଶ୍ରୀରାମ ରଖିବେ ।୧୫ ।

ଜୀବନ ରକ୍ଷା ନିମନ୍ତେ ବ୍ୟତିବ୍ୟସ୍ତ ହୋଇ ନରରାଣ,
ମନ୍ତ୍ରଣା କରିଲେ ଡାକି ସାରା ଦେଶୁ ବିଜ୍ଞ ବିଜ୍ଞଜନ ।୧୬ ।
ସାମାନ୍ୟ ଅବହେଳାରୁ ଘଟିଗଲା ଏଡ଼େ ଅଘଟଣ,
ନସ୍ଥୁରଇ ବାହାବୁଦ୍ଧି କେଉଁ ପରି ରହିବ ପରାଣ ।୧୭ ।
ଏପରି ସମୟେ ସାହା ଏକମାତ୍ର ଦେବର୍ଷି ନାରଦ,
ଦଉଡ଼ିଲେ କାଶିରାଜ ତତକ୍ଷଣେ ଚିନ୍ତାକରି ହୃଦ ।୧୮ ।
ନାରଦଙ୍କ ଚରଣରେ ଅତିଦୁଃଖେ କରି ପ୍ରଣିପାତ,
ଶ୍ରୀରଘୁନାଥ ପ୍ରତିଜ୍ଞା ସଂପର୍କରେ କଲେ ଅବଗତ ।୧୯ ।
ସବିନୟେ ପୁଚ୍ଛା କଲେ ଭୋ ଦେବର୍ଷି ପଥ ଦିଅ କହି,
କେହ୍ନେ ପ୍ରାଣ ବଞ୍ଚାଇବି କେଣେ ଯିବି କୁହ ଦୟା ବହି ।୨୦ ।
ନାରଦ ବୋଇଲେ ବାବୁ ଯାଅ ଶୀଘ୍ର ଅଛି ଏକ ସ୍ଥାନ,
ସଶ୍ରଦ୍ଧ ପ୍ରଣାମ କରି ପାଦେ ତାଙ୍କ ପଶ ହେ ଶରଣ ।୨୧ ।
କେସରୀ ରାଜାଙ୍କ ରାଣୀ ହନୁମାନ ଜନନୀ ଅଞ୍ଜନା,
ବିପଦୁ ପାଇବ ରକ୍ଷା ଲଭେ ମାତ୍ର କଲେ ସେ କରୁଣା ।୨୨ ।
ତୁମ୍ଭରି ସୁରକ୍ଷା ନେଇ କୌଶଳରେ ବଚନ ଆଣିବ,
ବଚନ ପାଇଲେ ନିଶ୍ଚେ ରାମବାଣୁ ଜୀବନ ରହିବ ।୨୩।
ଚରଣ ଧରି ପଡ଼ିବ ଲମ୍ବଦଣ୍ଡ ପରାୟେ ମାତାର,
ଛାଡ଼ିବ ନାହିଁ ଚରଣ ନ କରିଲେ ପ୍ରତିଜ୍ଞା ତ୍ରିବାର ।୨୪ ।
ସୁରକ୍ଷା ବଚନ ମାତା ସାକ୍ଷାତରେ କରିଲେ ପ୍ରଦାନ,
ମୃତ୍ୟୁ ନ ଦେଇ ପାରିବ ଶକ୍ତିଶାଳୀ ଶ୍ରୀରାଘବ ବାଣ ।୨୫ ।
ପ୍ରାଣ ରକ୍ଷା ସୂତ୍ର ପାଇ ଅତ୍ୟୁତ୍ସାହେ ନ ପ୍ରଣମି ଯତି,
ପ୍ରାଣ ପାଇଁ ପ୍ରାଣମୂର୍ଚ୍ଛା ଦଉଡ଼ିଲେ କାଶି ନରପତି ।୨୬ ।
ସିଧା ଯାଇ ଅଞ୍ଜନାଙ୍କ ସମ୍ମୁଖରେ ହେଲେ ଉପସ୍ଥିତ,
ଜପୁଥିଲେ ଭଗବାନ ନାମ ମାତା ହୋଇ ଆତ୍ମଗତ ।୨୭ ।
ଉଚ୍ଚସ୍ୱରେ କାନ୍ଦି କାନ୍ଦି କାଶିରାଜ ମାତାଙ୍କ ଚରଣେ,
ଲମ୍ବଦଣ୍ଡ ପ୍ରାୟ ପଡ଼ି ପାଦ ଧରି କରୁଣେ ବଖାଣେ ।୨୮ ।
ଆଜି ସନ୍ଧ୍ୟା ହେଲେ ମୋର ପ୍ରାଣ ରକ୍ଷା ଆଉ ନ ହୋଇବ,
ସମର୍ଥ ବ୍ୟକ୍ତିଏ ଦୃଢ଼େ କରି ପଣ ବସିଛି ବଧିବ ।୨୯ ।
ତୁମ୍ଭ ବିନା ନାହିଁ କେହି ଏ ସଂସାରେ ବଞ୍ଚାଇବ ମୋତେ,
ରକ୍ଷାକର ରକ୍ଷାକର ଶକ୍ତିରୂପା ନିବେଦୁଛି ତୋତେ ।୩୦ ।
ସ୍ନେହମୟୀ ଜନନୀ ଗୋ କୃପାମୟୀ ଦିଏ ତୁ ଆଶିଷ,
ତୋର ଦୟା ବଳେମୋତ ଘୁଞ୍ଚିଯାଉ କଷ୍ଟ ପାଉ ନାଶ ।୩୧ ।

ଶୁଣିଣ ମାତା କଲ୍ୟାଣୀ ପ୍ରଶ୍ନ କଲେ ହେ କାଶି ନରେଶ,
କିଏ ସିଏ ସମରଥ କରିଅଛି ଏତେ ଦୁଃସାହସ ।୩୨ ।
ଅଧିକ ଉଚ୍ଚ ସ୍ୱରରେ ପୁନର୍ବାର କରିଣ ରୋଦନ,
ସୁରକ୍ଷା ବଚନ ଦିଅ ମାତା ମୋତେ କହିଲେ ରାଜନ ।୩୩ ।
କରୁଣା ମୂର୍ତ୍ତି ଅଞ୍ଜନା କଷ୍ଟ ତା'ର ନ ପାରିଲେ ସହି,
ମୁଁ  ଥାଉ କେ କି କରିବ କାଶିରାଜ ମଣିବ ଅତ୍ରାହି ।୩୪ ।
କାଶି ନରେଶ ଆଗ୍ରହ କରିବାରୁ ମାତା ବାରମ୍ବାର,
ଦୃଢ଼ ପ୍ରତିଜ୍ଞା କରିଲେ ସଂରକ୍ଷଣ କରିବେ ତ୍ରିବାର ।୩୫ ।
ପୁନଶ୍ଚ କରିଲେ ପ୍ରଶ୍ନ ଏବେ କୁହ କାଶି ପରପତି,
ନିର୍ଭୟ ଚିତ୍ତରେ ମୋତେ କିଏ ସେହି ଅଟେ ମୂଢ଼ମତି ।୩୬ ।
ତୁମ୍ଭରି ବିନାଶ  ପାଇଁ ବଳାଇଛି ମନ କରି ଟାଣ,
ବୁଝାଇ କୁହ ତା' ସଙ୍ଗେ ଅଘଟଣ ତାହାର କାରଣ ।୩୭ ।
ନିର୍ଭୟ ପାଇ ନରେଶ ଦୀର୍ଘଶ୍ୱାସ ପରିତ୍ୟାଗୀ ଭାଷେ,
ରଘୁକୂଳ ଶିରୋମଣି ଭଗବାନ ରାମ ରାଘବ ସେ ।୩୮ ।
ମୂଢ଼ମତି ମୁହିଁ ମାତ ଅବହେଳା କଲି ବିଶ୍ୱାମିତ୍ରେ,
ଗୁରୁ ଆଜ୍ଞାରେ ଶ୍ରୀରାମ ତୁଣିରରୁ କାଢ଼ି ତିନି ଅସ୍ତ୍ରେ ।୩୯ ।
ପ୍ରାଣ ନାଶନ ନିମନ୍ତେ ରଖିଛନ୍ତି ସନ୍ଧ୍ୟା ସୁଦ୍ଧା ମୋର,
କି କରିବି କୁହ ଶରଣରେ ଆସିଲି ହୋଇ ନାଚାର ।୪୦ ।
ଚିନ୍ତିତ ମାତା ବୋଇଲେ ଶ୍ରୀରାମଙ୍କ ଅଟ ତୁମ୍ଭେ ଦୋଷୀ,
ବଚନ ଦେଇଛି ଯତ୍ନ ନିଶ୍ଚେ କରିବି ରହିବ ଶିଶି ।୪୧ ।
ଏ କାଳେ ଶ୍ରୀ ହନୁମାନ ଆବିର୍ଭାବ ହୋଇ ସେ ସ୍ଥାନରେ,
ପ୍ରଣମିଲେ ମାତା ପାଦେ ଆନନ୍ଦରେ ସଜଳ ନେତ୍ରରେ ।୪୨ ।
ଶୁଭ ଆଶୀର୍ବାଦ ଦେଇ ମାତା ସ୍ନେହେ ଚୁମ୍ବିଲେ ମସ୍ତକ,
ବୋଇଲେ ପୁତ୍ର ଦଂଶଇ ହୃଦୟକୁ ମୋର ଚିନ୍ତା ଏକ ।୪୩ ।
ଚିନ୍ତା ହରଣ ନିମନ୍ତେ କରୁଥିଲି ତୁମର ସ୍ମରଣ,
କାର୍ଯ୍ୟ ସିଦ୍ଧ ହେଲେ ମନ ମୋ ହୋଇବ ଅବଶ୍ୟ ପ୍ରସନ୍ନ ।୪୪ ।
ମାତୃ ଚରଣେ ପ୍ରଣମି ପୁନର୍ବାର ବୋଇଲେ ମାରୁତି,
ଆଜ୍ଞା ଦିଅ ମାତ କାର୍ଯ୍ୟ ସମାପନ କରିବି ଝଟତି ।୪୫ ।
ଜନ୍ମଦାତ୍ରୀ ମାତା ମୋର ଅପ୍ରସନ୍ନ ଯଦି ତୋର ମନ,
କିସ ଲାଭ ବଞ୍ଚିଥାଉ ଏ ଅଧମ ପୁତ୍ର ହନୁମାନ ।୪୬ ।
ବକ୍ଷ ସୁଧା ପିଆଇ ଯେ ସର୍ବସ୍ୱ ତା' ବଞ୍ଚାଇଛି ଦେଇ,
ତା' ସେବା ବିମୁଖ ଜନେ କିସ ଲାଭ ଏ ସଂସାରେ ଥାଇ ।୪୭ ।

ବୃଷଭ ଚୂଳ ଛାଗଳ ଗଳସ୍ତନ ପ୍ରାୟେକ ଶୋଭଇ,
ଜୀବ ଥାଉ ଥାଉ ସେହୁ ସଂସାରରେ ନିନ୍ଦା ଅରଜଇ ।୪୮ ।
ମାତା ସେବା କରେ ନାହିଁ ଯେଉଁ ପ୍ରାଣୀ ଏ ଧରାଧାମରେ,
ଅନ୍ତକାଳେ ପଡ଼େ ଯାଇ ଭୟଙ୍କର ରୌରବ ନର୍କରେ ।୪୯ ।
ଆଦେଶ ପ୍ରଦାନ କର ଅବିଳମ୍ବେ ସର୍ବଦା ପ୍ରସ୍ତୁତ,
ତନୁମନ ନିରବଧି ମୋର ସଦା ତୁମ ଅନୁଗତ ।୫୦ ।
ଅଞ୍ଜନା ବୋଲନ୍ତି ପୁତ୍ର ମୋର କାର୍ଯ୍ୟ ଅତ୍ୟନ୍ତ କଠିନ,
ଘାରିଛି ମନ ମସ୍ତିଷ୍କ ଆବୋରିଛି ହୃଦ ଏ ଚିନ୍ତନ ।୫୧ ।
ମାତା ଅଞ୍ଜନା ବଚନ କର୍ଣ୍ଣେ ଶୁଣି କେଶରୀ ନନ୍ଦନ,
ଆଶ୍ୱସ୍ତ କରିଣ ବୋଲେ ତୁମ୍ଭ ପୁତ୍ର ସର୍ବ ଶକ୍ତିମାନ ।୫୨ ।
ବିଦ୍ୟାବୁଦ୍ଧି ପରାକ୍ରମ ଶୌର୍ଯ୍ୟବୀର୍ଯ୍ୟ ବଳ ପଉରୁଷ,
କେଉଁଥିରେ ହୀନ ନୁହେଁ ମାତା ପାଇ ତୁମ୍ଭର ଆଶିଷ ।୫୩ ।
ଆଜ୍ଞା ଦିଅ ମାତା ମୋତେ ଅନ୍ୟକିଛି ନ ଚିନ୍ତି କିଞ୍ଚିତେ,
ନିର୍ବିଚାରେ ପୂରାଇବି ତୁମ୍ଭ ଇଚ୍ଛା ନିଶ୍ଚିତ ତ୍ୱରିତେ ।୫୪ ।
ପୁଣି ମାତା ପଶ୍ଚାତ୍‌ପଦ ବୋଲିବାକୁ ହେବାରୁ ପାବନୀ,
ତ୍ରିବାର ପ୍ରତିଜ୍ଞା କଲେ ତତକାଳେ ପାଣି ଘେନି ପାଣି ।୫୫ ।
ମାରୁତିର ମାତୃଭକ୍ତି ପରାକ୍ରମ ବଳ ପରଶଂସି,
ଅଞ୍ଜନା ବୋଇଲେ ବାବୁ କର୍ଣ୍ଣେଘେନ ନରପତି କାଶି ।୫୬ ।
ଆସି ମୋ ପାଶେ ଶରଣ ପଶିଅଛି ଜୀବନ ବିକଳେ,
ବଚନ ଦେଇଛି ତା'ରେ ରକ୍ଷା କରିବି ତୋହର ବଳେ ।୫୭ ।
ଆଜି ସନ୍ଧ୍ୟା ସୁଦ୍ଧା ବଧ କରିବେ ଶ୍ରୀରାମ ରଘୁନାଥ,
ପ୍ରତିଜ୍ଞା କରି ଅଛନ୍ତି ତିନି ଶରେ କାଟିବେ ତା' ମାଥ ।୫୮ ।
ରାମଙ୍କ ପ୍ରତିଜ୍ଞା କଥା ହନୁମାନ ଘେନି ଶ୍ରବଣରେ,
କିଂକର୍ତ୍ତବ୍ୟ ବିମୂଢ଼ ହୋଇ ରହିଲେ ତାହିଁ ଆଶ୍ଚର୍ଯ୍ୟରେ ।୫୯ ।
ଧର୍ମ ସଙ୍କଟରେ ପଡ଼ି ଧନ୍ଦି ହେଲେ ମନ ମଧ୍ୟେ ବୀର,
ମୂର୍ତ୍ତି ପରାୟେ ରହିଲେ କିଛି ଶବ୍ଦ ନ ପଶେ କର୍ଣ୍ଣରେ ।୬୦ ।
ଅଞ୍ଜନାଙ୍କ ସ୍ନେହବୋଳା ଡାକଶୁଣି ପାଇଣ ସମ୍ବିତ,
ବ୍ୟବସ୍ଥା କରୁଛି ବୋଲି ଭାଷିଲେକ ଧିରେ ହନୁମନ୍ତ ।୬୧ ।
ଆଜ୍ଞା ଦିଅ ଯିବି ମାତେ କହି ନମି ଚରଣେ ତାଙ୍କର,
ସନ୍ଧ୍ୟା ଯାଏଁ କଷ୍ଟ ଅଛି ଯାଉଛି ମା' ଆଶୀର୍ବାଦ କର ।୬୨ ।
କାଶୀ ପରେଶଙ୍କୁ ସାଥେ ହନୁମାନ ଅଯୋଧ୍ୟା ନେଇଣ,
ବୋଇଲେ କହୁଛି ଯାହା ରାଜା ତୁମ୍ଭେ ମନ ଧ୍ୟାନେ ଶୁଣ ।୬୩ ।

ସରଜୁ ମଧ୍ୟରେ ପଶି ଅଣ୍ଟା ଯାଏଁ ସଲିଳ ମଧ୍ୟରେ,
ବୁଡ଼ି ରହି ରାମ ନାମ ଅହରହ ଜପ ନିର୍ଦ୍ୱନ୍ଦ୍ୱରେ ।୬୪ ।
କ୍ଷଣକ ପାଇଁବି କେବେ ନ ରୋକିବ ରାମନାମ ଜପ,
ରୋକିଲେ ଶ୍ୱାସ ରୋକିବେ ଧର୍ମରାଜ ପ୍ରେତଲୋକ ଭୂପ ।୬୫ ।
କମର ପର୍ଯ୍ୟନ୍ତ ଜଳେ ହୋଇ କରିଣ ଦଣ୍ଡାୟମାନ,
ଅବିରାମ ଜପୁଥାଅ ରାମନାମ ନାମେ ରଖି ଧ୍ୟାନ ।୬୬ ।
କାଶିରାଜ ଶିରୋଧାର୍ଯ୍ୟ ଆଞ୍ଜନେୟ ବାଣୀକୁ କରିଣ,
ପ୍ରାରମ୍ଭିଲେ ନାମଜପ ଯଥାରୀତି ସ୍ୱରୂପ ଚିନ୍ତିଣ ।୬୭ ।
ହନୁମାନ ତେଣେ ଯାଇ ଶ୍ରୀରାମଙ୍କ ସମୀପେ ପହୁଞ୍ଚି,
ଚରଣ ଧରି ବୋଇଲେ କୃପାକର ଦୁଃଖ ଯାଉ ଘୁଞ୍ଚି ।୬୮ ।
ମାଗି ନାହିଁ କେବେ କିଛି ଏକ ବର ଦିଅ ପ୍ରଭୁ ଆଜ,
ସାରା ସଂସାରେ ଉଡ଼ିବ ରଘୁପତି ତୁମ୍ଭ ଯଶ ଧ୍ୱଜ ।୬୯ ।
ଉତ୍ସାହେ କହିଲେ ରାମ ତୁମ ପାଇଁ ଅଦେୟ ବା କିସ,
ଯାହା ଇଚ୍ଛା ସମ୍ମୁଖରେ ନିଃସଂକୋଚେ କର ହେ ପ୍ରକାଶ ।୭୦ ।
ପ୍ରଭୁଙ୍କ ସ୍ୱୀକୃତି ପାଇ ମାରୁତି ବୋଲନ୍ତି କରୁଣା ସାଗର,
ଅମିତ ମହିମା ମୟ ନାମ ଜପ କରିବ ଯେ ନର ।୭୧ ।
ତାହାର ସୁରକ୍ଷା ଭାର ମୋ କନ୍ଧରେ ରହିଣ ନିକର,
ତା'ରେ କେବେ କାହିଁ କେହି ନ କରିବେ ଶସ୍ତ୍ରରେ ପ୍ରହାର ।୭୨ ।
ଦୁର୍ଭାଗ୍ୟ ବଶତଃ ସ୍ୱୟଂ ପ୍ରଭୁ ମୋର ବାଣ ନିକ୍ଷେପିଲେ,
ସେ ବାଣ ବ୍ୟର୍ଥ ହୋଇବ ନିରନ୍ତର ଜାପକର ତୁଲେ ।୭୩ ।
ଦୟାମୂର୍ତ୍ତି ଭକ୍ତ ବନ୍ଧୁ ରାମଚନ୍ଦ୍ର ଆଶିଷ ତୁରନ୍ତ,
ଦେଇ ସହାସ୍ୟେ ଭାଷିଲେ ଧନ୍ୟ ଧନ୍ୟ ତୁମ୍ଭେ ହନୁମନ୍ତ ।୭୪ ।
ନାମ ଜାପକେ ସୁରକ୍ଷା ପ୍ରଦାନରେ ସମର୍ଥ ହୋଇବ,
ତୁମର ଉପସ୍ଥିତିରେ ଅମୋଘାସ୍ତ୍ର ବ୍ୟର୍ଥ ସିଦ୍ଧ ହେବ ।୭୫ ।
ସହର୍ଷେ ଜୟ ଶୀରାମ ନାଦ କରି ଅଞ୍ଜନା ନନ୍ଦନ,
ସରଜୁ ତଟେ ଚଳିଲେ ପ୍ରଭୁ ପାଦେ କରିଣ ନମନ ।୭୬ ।
ଗଦା ହସ୍ତେ ଠିଆ ହୋଇ ଉତ୍ସାହରେ କାଶିରାଜ ପାଶ,
ବୋଇଲେ ଶ୍ରୀରାମ ନାମ ନିରନ୍ତର ଉଚ୍ଚସ୍ୱରେ ଘୋଷ ।୭୭ ।
ସ୍ଥିତି ହୋଇଲା ବିଚିତ୍ର ସତ୍ୟସନ୍ଧ ଅଯୋଧ୍ୟାର ଈଶ,
ଅଟଳ ପ୍ରତିଜ୍ଞା ଯା'ର କାଶିରାଜ ନିଧନରେ ଆଶ ।୭୮ ।
ଭକ୍ତରାଜ ହନୁମାନ ପ୍ରାଣରକ୍ଷା କରିବା ନିମନ୍ତେ,
ତା'ର ସୁରକ୍ଷାରେ ରହିଛନ୍ତି ଭକ୍ତ ଶ୍ରେଷ୍ଠ ଗଦାହସ୍ତେ ।୭୯ ।

ସରଜୁ ଜଳରେ ବୁଡ଼ି ଅଣ୍ଟାଯାଏଁ କାଶି ନରଈଶ,
ଜୀବନ ଭୟରେ ଜପେ ରାମନାମ ହନୁମନ୍ତ ଶିଷ୍ୟ ।୮୦ ।
କାନୁ କାନ ଏ ବୃତ୍ତାନ୍ତ ବିସ୍ତାରିଲା ବିଦ୍ୟୁତ ବେଗରେ,
ଅଯୋଧ୍ୟା ବାସୀଏ ରୁଣ୍ଡ ଆସି ହେଲେ ସରଜୁ କୂଳରେ ।୮୧ ।
ବାଳ ବୃଦ୍ଧ ଯୁବା ନର ନାରୀଗଣ କୌତୁହଳ ବଶ,
ଦେଖିବାକୁ ପ୍ରଭୁ ସେବକ ପ୍ରତିଜ୍ଞା ପାଳନର ଦୃଶ୍ୟ ।୮୨ ।
ଧିରେ ଧିରେ ଦିନକର ଅସ୍ତାଚଳ ଉହାଡ଼େ ଚଳିଲେ,
ବିହଗେ କାକଳୀ ସହ ଖୁସି ମନେ ନୀଡ଼ରେ ଫେରିଲେ ।୮୩ ।
ଦୂର ଦେବାଳୟ ଗର୍ଭୁ ଭାସି ଆସେ ଘଣ୍ଟ ଘଣ୍ଟା ଧ୍ୱନି,
ସବୁରି କର୍ଣ୍ଣେ ଶୁଣାଏ ମଧୁମୟ ସନ୍ଧ୍ୟା ଆଗମନୀ ।୮୪ ।
ଗୋଗୋଷ୍ଠ ଫେରିଲେ ବନୁ ସାଥେ ନେଇ ଧୂଳିକୁଜ୍ଝଟିକା,
ସନ୍ତୋଷେ ଫେରିଲା ଚଷା ଦିନକର କାମ ସାରି ଏକା ।୮୫ ।
ତୁଳସୀ ମୂଳେ ପ୍ରଦୀପ କୂଳବଧୂ ଶୁଭ ପାଞ୍ଚେ,
ପତି ପରିବାର ପାଇଁ ପ୍ରଣମଇ ପୁଣ୍ୟ ଧର୍ମ ସଞ୍ଚେ ।୮୬ ।
ବାଲି ଖେଳ ସାରି ବାଳେ ହସିହସି ଫେରିଲେ ସକଳେ,
ପ୍ରାର୍ଥନା ଗାଇଲେ ବସି ସୁମଧୁରେ ଜନନୀର କୋଳେ ।୮୭ ।
ଶ୍ରୀଭାଗବତ ଟୁଙ୍ଗୀରୁ ନବାକ୍ଷରୀ ଭାଗବତ ସ୍ୱର,
ରହି ରହି କର୍ଣ୍ଣପୁଟେ ଭରିଲା ସେ ଯେହ୍ନେ ସୁଧା ନୀର ।୮୮ ।
ଅଶାନ୍ତ ରାଘବ ମନ କେଉଁ ପରି ପ୍ରତିଜ୍ଞା ନିଜର,
ପୁରାଇବେ ରାସ୍ତାରୋକି ରହିଅଛି ହନୁ ଭକ୍ତବର ।୮୯ ।
ପବନ ନନ୍ଦନ କାର୍ଯ୍ୟ ସମାଚାର ଦୂତ ମୁଖୁ ଶୁଣି,
ଅତିଶୟ କ୍ରୋଧରେ ଆବେଶ ହେଲେ ପ୍ରଭୁ ରଘୁମଣି ।୯୦ ।
ରାଗେ ଜରଜର ହୋଇ ଅଭିମନ୍ତ୍ରି ଶରେକ ଛାଡ଼ିଲେ,
କାଶିରାଜା ମୁଣ୍ଡକାଟି ଆଣ ଶୀଘ୍ର ତା'ରେ ଆଦେଶିଲେ ।୯୧ ।
ଘୋର ରଡ଼ି କରି ସେହି ତୀକ୍ଷ୍ଣ ଶର ସରଜୁର ତୀରେ,
ପହଞ୍ଚି ଘୁରିଲା ମାତ୍ର କାଶିରାଜ ଚାରି ପାରୁଶରେ ।୯୨ ।
ଅଖଣ୍ଡ ନାମ ପ୍ରଭାବେ ଶ୍ରୀରାମଙ୍କ ବର ବଳେ ବଳୀ,
ପ୍ରଭୁ ବଳେ ବଳୀୟାନ ସେ ନାରାଚ ନ ପାରିଲା ବଳୀ ।୯୩ ।
ବିଫଳ ମନୋରଥ ହୋଇଣ ରାମ ପାଶରେ ଫେରିଲା,
ପାରିଲିନି ମହାପ୍ରଭୁ କହି ଅସାମର୍ଥ୍ୟ ପ୍ରକାଶିଲା ।୯୪ ।
ଲୀଳାମୟ ପ୍ରଭୁ ଲୀଳା ପ୍ରକାଶିଣ ଦ୍ୱିତୀୟ ନାରାଚ,
କ୍ରୋଧବଶ କୋଦଣ୍ଡରେ ଚଢ଼ାଇଣ ପେଶିଲେ ଅଥଚ ।୯୫ ।

ସେ ଶର ବି ଲେଉଟିଲା ରାମ ନାମ ଯାପକଙ୍କୁ ନମି,
ଅକ୍ଷମଣୀୟ ଦୋଷୀର ଦୋଷାଦୋଷ ସାକ୍ଷାତରେ କ୍ଷମି ।୯୬ ।
କ୍ରୋଧରେ ଉନ୍ମତ୍ତ ହୋଇ ସୀତାପତି କୋଦଣ୍ଡ ହସ୍ତରେ,
ତ୍ୱରିତ ବେଗରେ ଯାଇ ପହଞ୍ଚିଲେ ସରଜୁ କୂଳରେ ।୯୭ ।
ବଶିଷ୍ଠ ମହର୍ଷି ଦେଖି ରାମଙ୍କର ରୂପ ଏତାଦୃଶ,
ତତକ୍ଷଣେ ପହଞ୍ଚିଲେ ଯାଇ କାଶି ନଗ୍ର ଭୂପ ପାଶ ।୯୮ ।
ବୋଇଲେ ରାଜନ ତୁମ୍ଭେ ଶୀଘ୍ର ଯାଇ ବିଶ୍ୱାମିତ୍ର ପାଦ,
ଶରଣ ପଶ ନିଦ୍ୱନ୍ଦ୍ୱେ ଶାନ୍ତକର ବ୍ରହ୍ମର୍ଷିଙ୍କ ହୃଦ ।୯୯ ।
ଶ୍ରୀରାମ ସମ୍ମୁଖେ ଯାଇ ରାଜଗୁରୁ କଲେ ବହୁ ସ୍ତୁତି,
ଅନୁକୂଳ କାର୍ଯ୍ୟକର ତୁମ୍ଭେ ଏବେ ଭକତ ମାରୁତି ।୧୦୦ ।
ସମସ୍ତଙ୍କୁ ବୁଝାଇଣ ବହୁ ହିତ ବଚନ କହିଲେ,
କାଶିରାଜ ହନୁମାନ ଇସାରାରେ ତତକ୍ଷଣେ ଗଲେ ।୧୦୧ ।
ବିଶ୍ୱାମିତ୍ର ପଦଧରି ବିନମ୍ରରେ କରିଲେ ବିନତି,
ରକ୍ଷାକର ରକ୍ଷାକର କ୍ଷମି ମୋର ସବୁଦୋଷ ଯତି ।୧୦୨ ।
ଅବହେଳାରୁ ଅବଜ୍ଞା କଲି ତୋରେ ଆହେ ଋଷିବର,
ବହୁତ ଦୁଃଖ ଲଭିଲି କୁକର୍ମରୁ ଏବେ କ୍ଷମା କର ।୧୦୩ ।
ତୁମେ ତ ସର୍ବ ସମର୍ଥ ମକ୍ଷିକା ମୁଁ ତୁମ୍ଭେ କ ନ ଜାଣ,
ଅଜ୍ଞଙ୍କ କାରଣୁ ପ୍ରଭୁ ଦୋଷ କଲି ଅନ୍ୟଥା ନ ମଣ ।୧୦୪ ।
ରାଜାର ପ୍ରାର୍ଥନା ଶୁଣି ହୃଦୟରେ ଲଭିଣ ସନ୍ତୋଷ,
ରଘୁନାଥଙ୍କ ସମୀପେ କହିଲେ ମୁଁ ଏବେ ହେଲି ତୋଷ ।୧୦୫ ।
କ୍ଷମାକର ରାବଣାରି କ୍ରୋଧତ୍ୟାଗ ହୋଇଲି ନୃପତ,
କ୍ଷମା ଦିଅ କାଶିରାଜେ ସହିତରେ ଭକ୍ତ ହନୁମନ୍ତ ।୧୦୬ ।
ସଂସାରରେ ଆଜିଠାରୁ ଏହି କଥା ହୋଇବ ପ୍ରସିଦ୍ଧ,
ନିରନ୍ତର ରାମନାମ ଯାପକଟି ହୋଇବ ଅବଧ୍ୟ ।୧୦୭ ।
ତାହାର ସୁରକ୍ଷା ଭାର ସ୍ୱୟଂ ନେବେ ଅଞ୍ଜନା ନନ୍ଦନ,
ତାହା ପାଶେ ନ ପଶିବ କାହା ବାଣ ନ ହରିବ ପ୍ରାଣ ।୧୦୮ ।
ହେ ଭକତେ କଳିଯୁଗେ ରାମନାମ ଶ୍ରେଷ୍ଠ ଗଣ୍ଠିଧନ,
ନାମ ଘୋଷ ନିରନ୍ତର ନିସ୍ତରିବ ଯଦି ନିଶିଦିନ ।୧୦୯ ।
ଭାବେ ଅଷ୍ଟତ୍ରିଂଶ ଛାନ୍ଦ ଏହିଠାରେ ହୋଇଲା ସମ୍ପୂର୍ଣ୍ଣ,
ରଚେ ସୁରେଶ ହୃଦେ ଯା ଉଦ୍ଭାଷିତ କଲେ ହନୁମାନ ।୧୧୦ ।



# ଉନଚତ୍ୱାରିଂଶ ଛାନ୍ଦ

ରାଗ-ବିଚିତ୍ର ଦେଶାକ୍ଷ(ଅଶ୍ୱମେଧ ଯଜ୍ଞାରମ୍ଭ)

ଗଉରୀ ସୁତ ଚରଣ ପ୍ରଥମେ କରି ବନ୍ଦନ
ସବିନୟେ ନିବେଦନ କରେ ହେ,
ହନୁମାନଙ୍କ ଚରିତ ଭକତି ରସେ ଭକତ
କରିବି ପଦ କୁହ କର୍ଣ୍ଣରେ ହେ ।୧ ।

ସ୍ୱୟଂ ଅଞ୍ଜନା ନନ୍ଦନ ଚରଣ କରେ ଚିନ୍ତନ
ବସ ପ୍ରଭୁ ସ୍ଥିରେ ମୋ ହୃଦରେ ହେ,
ଯେତେ ତୁମ୍ଭ ଲୀଳାମାନ ବଦ ଦୟା ବହି କର୍ଣ୍ଣ
ଶବଦ ସ୍ଫୁରୁ ମାନସ ପଟ୍ଟରେ ହେ ।୨ ।

ଉନଚତ୍ୱାରିଂଶ ଛାନ୍ଦେ ବର୍ଣ୍ଣିତ ହୋଇବ ଛନ୍ଦେ
ଅଶ୍ୱମେଧ ଅଶ୍ୱ ଦିଗ୍ୱିଜୟ ହେ,
ସାଥିରେ ରହି ମାରୁତି ନିଷ୍କଣ୍ଟକ ତା'ର ଗତି
କଲେ ଯେହ୍ନେ ଗାଥା ପୁଣ୍ୟମୟ ହେ ।୩ ।

ଶ୍ରୀରାମ ରଘୁ ନନ୍ଦନ ସିଂହାସନ ଆରୋହଣ
କରିବାର କିଛି ଦିନାନ୍ତରେ ହେ,
ଧର୍ମ ବିଗ୍ରହ ସାକ୍ଷାତ ମହାନ ଋଷି ଅଗସ୍ତ୍ୟ
ପହଞ୍ଚି ଆସି ରାଜସଭାରେ ହେ ।୪ ।

ବୋଇଲେ ଶ୍ରୀରାମ ଶୁଣ ଯଜ୍ଞ କରିବା ଭିଆଣ
ଅଶ୍ୱମେଧ ନାମେ ଯଜ୍ଞବର ହେ,
ସଂକଳ୍ପ କରାଇ ରାଜା ବଶିଷ୍ଠେ କରିଲେ ପୂଜା
ଅଶ୍ୱେକ ଗୁଣଯୁକ୍ତ ସୁନ୍ଦର ହେ ।୫ ।

ଧ୍ୱଜା ବାନ୍ଧିଲେ ପୃଷ୍ଠରେ ରାଜ ସଂକେତ ତହିଁରେ
ଉଚିତ ଭାବେ କଲେ ଚିହ୍ନିତ ହେ,
ଶ୍ରୀରାମଙ୍କ ଯଶୋଗାନ କଲେ ତହିଁରେ ଉତ୍କୀର୍ଣ୍ଣ
ଉଦ୍ଦେଶ୍ୟ ସେଥେ କଲେ ଲିଖିତ ହେ ।୬ ।

ଅଶ୍ୱମେଧ ଅଶ୍ୱ ପରେ ସନ୍ଦେଶ ସ୍ୱଷ୍ଟ ଭାବରେ
ଉଲ୍ଲେଖ ଥିଲା ପତ୍ର ରୂପରେ ହେ,
ଯେଉଁ ନରେଶ ମନରେ ଭାବେ ଅଧିକ ଶକ୍ତିରେ
ଶ୍ରୀରାମଙ୍କ ଠାରୁ ଏ ମହୀରେ ହେ ।୭ ।

ରତ୍ନାଳଂକାରେ ଭୂଷିତ ଯଜ୍ଞାଶ୍ୱ ବାନ୍ଧିବ ଦୃପ୍ତ
କରିବ ତା'ରେ ଯୁଦ୍ଧେ ପରାସ୍ତ ହେ,

ଅଶ୍ୱର ରକ୍ଷା ଦାୟିତ୍ୱ ସମର୍ପି ଶତ୍ରୁଘ୍ନ ହସ୍ତ
ପାଶକୁ ଡାକିଲେ ହନୁମନ୍ତ ହେ ।୮ ।
ବୋଇଲେ ବାତ ନନ୍ଦନ ଅଟେ ଏ ତୁମରି ଦାନ
ନିଷ୍କଣ୍ଟକ ରାଜା ଅଯୋଧାରେ ହେ,
ବିଶାଳ ମହାସାଗର ଲଙ୍ଘି ହରାଇ ଅସୁର
ଫେରାଇ ଆଣିଲେ ବୈଦେହୀରେ ହେ ।୯ ।
ସବୁ ହେଲା ଫଳବତି ତୁମ୍ଭ ପାଇଁ ମହାମତି
ଶତ୍ରୁଘ୍ନ ସାଥେ ରକ୍ଷକ ହୋଇ ହେ,
ଯିବ ସାଥେ ସଦା ଥିବ କର୍ତ୍ତବ୍ୟ ଯା' ବୁଝେଇବ
ମୋର ସ୍ୱରୂପ ମନକୁ ନେଇ ହେ ।୧୦ ।
ପ୍ରିୟ ଭାଇ ମୋ ଶତ୍ରୁଘ୍ନ ସେ ମୋ ରୂପ ନୁହେଁ ଅନ୍ୟ
ସୁରକ୍ଷା ଦେବ ମୋତେ ଯେସନ ହେ,
ନେତ୍ରୁ ଦୂର ନ କରିବ ସଦା ଆଖି ରଖିଥିବ
ଜାଣେ କେ ନୁହେଁ ତୁମ ସମାନ ହେ ।୧୧ ।
ଶ୍ରୀରାମଙ୍କ ଆଜ୍ଞା ପାଇ ମନେ ପୁଲ୍ଲକିତ ହୋଇ
ମେଲାଣି ମାଗି ଚଳେ ମାରୁତି ହେ,
କାଳଜିତ ସେନାପତି ପୁଷ୍କଳ ଭ୍ରତ ସନ୍ତତି
ଜାମ୍ବବାନ ଆଦି ଯୁଥପତି ହେ ।୧୨ ।
ସୁଗ୍ରୀବ ବାନର ରାଜ ତାରାପୁତ୍ର ଯୁବରାଜ
ଦଧିମୁଖ ଶତବଳୀ ନୀଳ ହେ,
ମନୋବେଗ ଅଭିମନ୍ତା ଏକୁ ଏକ ବଳବନ୍ତା
ଗବୟ ଆଗ୍ନିକ କପି ନଳ ହେ ।୧୩ ।
ପ୍ରତାପାଗ୍ର୍ୟ ନୀଳରତ୍ନ ଲକ୍ଷ୍ମୀନିଧି ବଳବାନ
ଉଗ୍ରାଶ୍ୱ ଶସ୍ତ୍ରବିତ ସହିତ ହେ,
ଚତୁରଙ୍ଗିଣୀ ସେନାନୀ ନିଜ ଅସ୍ତ୍ର ଶସ୍ତ୍ର ଘେନି
ଚଳିଲେ ଯଜ୍ଞ ଅଶ୍ୱ ପଶ୍ଚାତ ହେ ।୧୪ ।
ଆଗେ ଆଗେ ଯଜ୍ଞ ହରି ପଛେ ଚଳେ ଶ୍ରେଷ୍ଠ ହରି
ରଥି ଅଶ୍ୱାରୋହୀ ଗଜାରୋହୀ ହେ,
ବିଶାଳ ସୈନ୍ୟ ବାହିନୀ ଶୂରବୀରେ ହୋଇ ଧନୀ
ପଦାଘାତରେ ଥରଇ ମହୀ ହେ ।୧୫
ଯଜ୍ଞ ଅଶ୍ୱ ଯାଏ ଯହିଁ ସ୍ୱାଗତ କରନ୍ତି ତହିଁ
ରାଜା ମହାରାଜା ଖୁସି ମନେ ହେ,

ଶ୍ରୀରାମାନୁଜ ଶତ୍ରୁଘ୍ନ ବାତସୁତଙ୍କ ଦର୍ଶନ
ପ୍ରାପ୍ତେ କେକୀ ଦେଖି ଯେହ୍ନେ ଘନ ହେ ।୧୬ ।
ପଥେ ବହୁ ଋଷି ମୁନି ଦେଖି ଶ୍ରୀରାମ ସେନାନୀ
ଧର୍ମୋନ୍ନତିରେ ହୃଦେ ହର୍ଷିତ ହେ,
ଚ୍ୟବନ ଋଷି ଆଶ୍ରମ ଶାନ୍ତକାନ୍ତ ଅନୁପମ
ଶତ୍ରୁତା ଯହିଁ ହୋଇଛି ହତ ହେ ।୧୭ ।
ସେ ପୁଣ୍ୟ ଆଶ୍ରମେ ଯାଇ ପଦେ ପ୍ରଣାମ ଜଣାଇ
ନିମନ୍ତ୍ରିଲେ ଚ୍ୟବନ ଋଷିଙ୍କୁ ହେ,
ବୋଇଲେ ହେ ଋଷିବର ଏତେମାତ୍ର କୃପାକର
ଧନ୍ୟକର ଆସିଣ ଯଜ୍ଞକୁ ହେ ।୧୮ ।
ନିମନ୍ତ୍ର ପାଇ ଋଷି ବାହାରିଲେ ହୋଇ ଖୁସି
ପାଦେ ଚାଲି ସପରିବାରରେ ହେ,
ଦେଖି ପବନ ନନ୍ଦନ ଶତ୍ରୁଘ୍ନେ ଆଜ୍ଞା ମାଗିଣ
ଛାଡ଼ିଲେ ନେଇ ଯଜ୍ଞ ସ୍ଥଳରେ ହେ ।୧୯ ।
ମହର୍ଷି ହୋଇ ପ୍ରସନ୍ନ କରିଲେ ବହୁ କଲ୍ୟାଣ
ମରୁତାତ୍ମଜ ମଣିଲେ ଧନ୍ୟ ହେ,
ଅତିଶୀଘ୍ର ଫେରି ଯାଇ ଯଜ୍ଞ ଅଶ୍ୱ ପାଶେ ହୋଇ
ଗଲେ ଶତ୍ରୁଘ୍ନେ ପ୍ରସନ୍ନ ହେ ।୨୦ ।
ରାମ ସାନୁଜ ଶତ୍ରୁଘ୍ନ ସାୟୁଧ ଧରି ସଇନ
ଯଜ୍ଞାଶ୍ୱ ସାଥେ ଆନନ୍ଦ ମନେ ହେ,
ଚକ୍ରାଙ୍ଗା ନାମେ ନଗର ମିଳିଲେ ସୁବାହୁ ଯା'ର
ରାଜା ପାଳେ ପ୍ରଜା ପୁତ୍ର ଯେହ୍ନେ ହେ ।୨୧ ।
ସମ୍ପର୍ଣ୍ଣ ଆଉ ସୁନ୍ଦର ଧର୍ମାତ୍ମା ତା' ନରବର
ଏକପତ୍ନୀ ବ୍ରତୀ ବିଷ୍ଣୁ ଭକ୍ତ ହେ,
ସର୍ବ ସଦ୍ ଗୁଣ ସମ୍ପନ୍ନ ଯୁଦ୍ଧ କୌଶଳେ ନିପୁଣ
ପ୍ରଜା ପାଳକ ପ୍ରଜାନୁରକ୍ତ ହେ ।୨୨ ।
ସେହି ରାଜାର ନନ୍ଦନ ବୀର ଅଗ୍ରଣୀ ଦମନ
ଆଖେଟ ପାଇଁ ଯାଉଣୁ ବନ ଯେ,
ପଥେ ଦେଖି ଅଶ୍ୱବର ଧରିଲା ରାଜା କୁମର
ଶତ୍ରୁଘ୍ନ ସହ କରିଲା ରଣ ହେ ।୨୩ ।
ଦେଖି ତା ରଣ କୌଶଳ ସର୍ବେ ହୋଇଲେ ବିହ୍ୱଳ
ବହୁ ସଇନ ହେଲେ ନିହତ ଯେ,

ବୀର ଭରତ ନନ୍ଦନ ପୁଷ୍କଳ ଛାଡ଼ିଣ ବାଣ
ସୁବାହୁ ସୁତେ କଲେ ମୂର୍ଚ୍ଛିତ ହେ ।୨୪ ।
ସୁବାହୁ ଶୁଣି ଖବର ଚଢ଼ି ସ୍ୱର୍ଣ୍ଣ ରଥ ବର
ସମର କ୍ଷେତ୍ରେ ହେଲା ଆଗତ ହେ,
ପ୍ରବୀଣ ଗଦା ଯୁଦ୍ଧରେ ସୁକେତୁ ଭାଇ ସାଥିରେ
ପହଞ୍ଚିଲା ଯାଇ ଯୁଦ୍ଧ କ୍ଷେତ୍ର ହେ ।୨୫ ।
ଚିତ୍ରାଙ୍ଗ ଆଉ ବିଚିତ୍ର ସୁକେତୁର ଦୁଇ ପୁତ୍ର
ସ୍ୱ ସ୍ୱ ଆୟୁଧ କରି ଧାରଣ ହେ,
ସଜାଇଣ କ୍ରୌଞ୍ଚ ବ୍ୟୁହ ସାବଧାନେ ସୈନ୍ୟ ସହ
ରହିଲେ ଜଗି ବିଭିନ୍ନ ସ୍ଥାନ ହେ ।୨୬ ।
ପୁତ୍ର ଦମନକୁ ନେଇ କ୍ରୌଞ୍ଚ ବ୍ୟୁହ ମଧ୍ୟେ ଥୋଇ
ନିଜେ ଜଗିଲା ପୁଚ୍ଛେ ଜାଗ୍ରତ ହେ,
ସୁକେତୁ ମୁଖ ସ୍ଥାନରେ ଚିତ୍ରାଙ୍ଗ କଣ୍ଠ ଦେଶରେ
ଡେଣା ଦ୍ୱୟେ ଦମନ ବିଚିତ୍ର ହେ ।୨୭ ।
ଭୟାନକ ରଣ ହେଲା ଯୁଦ୍ଧେ ଚିତ୍ରାଙ୍ଗ ମରିଲା
ଭରତ ପୁତ୍ର ପୁଷ୍କଳ ହସ୍ତେ ହେ,
ଦେଖି ତାହାର ମରଣ ସୁବାହୁ କ୍ରୋଧେ ଭୀଷଣ
ସଂହାରେ ଯେହ୍ନେ ଯମ ସାକ୍ଷାତେ ହେ ।୨୮ ।
ଭୟଙ୍କର ରୂପ ତା'ର ଦେଖି ହନୁମାନ ବୀର
ପଶ୍ଚାତ୍ ଭାଗୁ ଧାଏଁ ସମ୍ମୁଖେ
ନଖାୟୁଧ ହନୁମାନେ ସୁବାହୁ ସାମନେ
ଦଶନାରାଚ ପେଷିଲା ଲକ୍ଷ୍ୟେ ହେ ।୨୯ ।
ତ୍ୱରିତେ ନାରାଚେ ଧରି ସରଳେ ଦିଗଡ଼ କରି
ସାବଲୀଳ ଢ଼ଙ୍ଗରେ ଫିଙ୍ଗିଲେ ହେ,
ଲାଞ୍ଜେ ରଥକୁ ତୁରିତ ଗୁଡ଼େଇ ରାଜା ସହିତ
ଖେଳନା ଯେହ୍ନେ ଧରି ଚାଲିଲେ ହେ ।୩୦ ।
ହନୁମାନ ନେବା ଦେଖି ସୁବାହୁ ହୋଇଣ ଦୁଃଖି
ବରଷା କଲା ତୀକ୍ଷଣ ବାଣ ହେ,
ବାଣାଘାତେ ହନୁମାନ ହୋଇଲେ ଲହୁଲୁହାଣ
ଚିନ୍ତିଲେ କ୍ଷଣେ ଜାନକୀ ପ୍ରାଣ ହେ ।୩୧ ।
ତତ୍କ୍ଷଣେ ଲମ୍ଫ ପ୍ରଦାନ କରି ଉଠିଣ ଗଗନ
ସୁବାହୁ ହୃଦେ କଲେ ପ୍ରହାର ହେ,

ଚରଣ ଆଘାତେ ବୀର ମୁଖୁ ବୁହାଇ ରୁଧିର
ମୂର୍ଚ୍ଛିତ ହେଲା ପଡ଼ି ଭୂମିର ହେ ।୩୨ ।
ହନୁ ଚରଣ ପରଶେ ସ୍ୱପ୍ନେ ସୁବାହୁକୁ ଦିଶେ
ସରଜୁ ତୀର ଯଜ୍ଞ ମଣ୍ଡପ ହେ,
ତହିଁ କୌଶଲ୍ୟା ନନ୍ଦନ ବେଷ୍ଟିତ ହୋଇ ବ୍ରାହ୍ମଣ
ଶୋଭଇ ଯଜ୍ଞ ପୁରୁଷ ରୂପ ହେ ।୩୩ ।
ବ୍ରହ୍ମାଦି ଦେବତା ଗଣ ଦିଗପାଳ ବସୁଗଣ
ଯୋଡ଼ ହସ୍ତରେ ଦଣ୍ଡାୟମାନ ହେ,
ବୀଣା ବାଆନ୍ତି ନାରଦ ମୂର୍ତ୍ତିମାନ ହୋଇ ବେଦ
କରନ୍ତି ରାମ ସୁଯଶ ଗାନ ହେ ।୩୪ ।
ରୋମେ ରୋମେ ଅନୁଭବ କରିଲେ ନରପୁଙ୍ଗବ
ପରମ ବ୍ରହ୍ମ ପ୍ରଭୁ ଶ୍ରୀରାମ ହେ,
ହେଲା କୃପା ପ୍ରଭୁଙ୍କର ମୂର୍ଚ୍ଛା ହୋଇଲା ଅନ୍ତର
ଉଠି ହନୁଙ୍କୁ କଲେ ପ୍ରଣାମ ହେ ।୩୫ ।
ନେତ୍ରୁ ଅବାରିତ ନୀର ପ୍ରେମେ ବହେ ଝରଝର
ବୋଲେ ମାରୁତି ହୋଇଲି ଧନ୍ୟ ହେ,
ତୁମ୍ଭରି ଚରଣ ସ୍ପର୍ଶେ ଜାଣିଲି ରାମ କିଏ ସେ
ହଟିଣ ଅମା ଦୃଶ୍ୟ ଅରୁଣ ହେ ।୩୬ ।
ଭ୍ରାତା ପୁତ୍ରେ ଭ୍ରାତାପୁତ୍ରେ କଲେ ସଂକେତ ସଂକେତେ
ସମର ବନ୍ଦ କର ତୁରିତେ ହେ,
ଆଜ ପୁଣ୍ୟମୟ ଦିନ ଦେଖିଲି ରଘୁନନ୍ଦନ
ମୋ ପ୍ରାଣ ପ୍ରାଣ ସିଏ ସାକ୍ଷାତ ହେ ।୩୭ ।
ପ୍ରେମେ ହୋଇ ଗଦଗଦ ସୁବାହୁ ବୋଲେ ସମ୍ବାଦ
ପ୍ରାଚୀନ କଥା ଜୀବନ ଗାଥା ହେ,
ତତ୍ତ୍ୱଜ୍ଞାନ ଜିଜ୍ଞାସାରେ ଗଲି ତୀର୍ଥରୁ ତୀର୍ଥରେ
ଆସି ତାଙ୍କ ପାଦେ ଥୋଇଲି ମଥା ହେ ।୩୮ ।
ବୀତରାଗୀ ସେ ମହାତ୍ମା ପରଂବ୍ରହ୍ମ ପରମାତ୍ମା
ବୋଲିଲେ ଦଶରଥ ନନ୍ଦନ ହେ,
ତାଙ୍କ ଉପାସନା ବିଧି ଯେହ୍ନେ ସୀତାରାମେ ସାଧି
ସବିସ୍ତାରେ କରିଲେ ବର୍ଣ୍ଣନ ହେ ।୩୯
ଅଜନ୍ମା କେହ୍ନେ ଜନ୍ମିବ ଅକ୍ଷର କ୍ଷର ହୋଇବ
ମାନବ ପରଂବ୍ରହ୍ମ କି ହେବ ହେ,

ସନ୍ଦେହ କରିଲି ଯେଣୁ ଶୁଣି ମହାଋଷି ତେଣୁ
ବୋଇଲେ ଅଭିଶାପ ଫଳିବ ହେ ।୪୦ ।
ପରଂବ୍ରହ୍ମଙ୍କୁ ମାନବେ ଗଣିଲୁ ଆତ୍ମ ଗରବେ
କରିଲୁ ଉପହାସ ଅଧମ ହେ,
ନ ହେବ ତୋ ତତ୍ତ୍ୱଜ୍ଞାନ ରହିବୁ ସଦା ଅଜ୍ଞାନ
ଉଦର ପୋଷଣ ହେବ କର୍ମ ହେ ।୪୧ ।
ବ୍ୟାକୁଳ ହୃଦୟେ ମୁହିଁ କାନ୍ଦି କାନ୍ଦି ମୁଖ ଚାହିଁ
ହୋଇ ଦୁଃଖେ କାକୁତି ମିନତି ହେ,
ଦୁଇ ଚରଣଙ୍କୁ ଧରି ରକ୍ଷାକର ବୋଲି କରି
ଆତୁରେ ବୋଇଲି ମୁହିଁ ଆର୍ତ୍ତ ହେ ।୪୨ ।
ଅଜ୍ଞଙ୍କ ମୁଁ କଲି ଦୋଷ ବାକ୍ୟେ କଲି ଅବିଶ୍ୱାସ
ଖମା ଗୁଣରେ କର ମାର୍ଜନ ହେ,
କର୍ମ ଏହେ୍ନ ଭବିଷ୍ୟତେ କହୁଛି ତୁମ୍ଭ ଅଗ୍ରତେ
ଆଉ ନ କରିବି କଦାଚନ ହେ ।୪୩ ।
ମୁନି ହୃଦେ ମୋ କ୍ରନ୍ଦନ କରିବାରୁ ଆଲୋଡ଼ନ
କାରୁଣିକ କରିଲେ କରୁଣା ହେ,
ବୋଇଲେ ରଘୁ ନନ୍ଦନ ଅଶ୍ୱମେଧ ଆୟୋଜନ
କରି ବାଜି ଛାଡ଼ିବେ ଅଜିଣା ହେ ।୪୪ ।
ସେ ଯଜ୍ଞ ଅଶ୍ୱକୁ ପଥେ ବାନ୍ଧିବୁ ନିଜ ସାମର୍ଥେ
ଯଜ୍ଞେ ଭିଆଇବୁ ଯେବେ ବିଘ୍ନ ହେ,
ଯୁଦ୍ଧ କ୍ଷେତ୍ରେ ପରବେଶ ହୋଇଣ ପବନ ଶିଷ୍ୟ
ବକ୍ଷେ ତୀବ୍ରେ ସ୍ଥାପିବେ ଚରଣ ହେ ।୪୫ ।
ପବନ ନନ୍ଦନ ସ୍ପର୍ଶ କରିବ ତତ୍ତ୍ୱ ପ୍ରକାଶ
ହୃଦେ ତୁଟିଯିବ ସର୍ବ ଭ୍ରାନ୍ତି ହେ,
ଆଜି ତୁମ ପଦାଘାତ ହରିଲା ମୋର ଦୂରିତ
ଜ୍ଞାନମୂର୍ତ୍ତି ଦେଲ ସଦଗତି ହେ ।୪୬ ।
ତତ୍ତ୍ୱଜ୍ଞାନ ଗଲା ମିଳି ଅହଂକାରେ ଥିଲି ଭଳି
ବୁଦ୍ଧି ପ୍ରଭୁ ହୋଇ ଗଲା ଶୁଦ୍ଧ ହେ,
ଧନ୍ୟ ହେଲି ଥିଲି ବନ୍ୟ ସାକ୍ଷାତେ ଜଗଜୀବନ
ଦର୍ଶନ ଦେଇ କଲେ ବିମୁଗ୍ଧ ହେ ।୪୭ ।
ଅଶ୍ୱସାଥେ ଏତେ କହି ଯେତେକ ପାରିବେ ବହି
ଧରି ମନ ଭରି ଧନରତ୍ନ ହେ,

ଗଲେ ଗଦଗଦ ହୃଦେ ଶୂରବୀର ସହ ପାଦେ
ଚାଲି ଶତ୍ରୁଘ୍ନ ପାଶେ ରାଜନ ହେ ।୪୮ ।
ଶୁଣି ବାର୍ତ୍ତା ଦେଖି ଦୂରୁ ରାମାନୁଜ ଆସନରୁ
ଉଠି ଉଷ୍ମେ କରିଲେ ସ୍ୱାଗତ ହେ,
ଆତ୍ମଜ ସମରାରମ୍ଭ ନିଜ ପ୍ରଦର୍ଶିତ ଦମ୍ଭ
ପାଇଁ ରାଜା ହେଲେ ଅନୁତପ୍ତ ହେ ।୪୯ ।
ବୋଇଲେ ସର୍ବସ୍ୱ ମୋର ସବର୍ପୁଛି କ୍ଷମାକର
ଭ୍ରମରୁ ଭ୍ରମରେ ଥିଲି ମୁହିଁ ହେ,
ସୁବାହୁ ଅଧିର ହୋଇ ଆତୁର ହୋଇ ଖୋଜଇ
କେଣେ ଗଲେ ପବନ ତନୟୀ ହେ ।୫୦ ।
କୃପା ବଳରେ ତାଙ୍କର ପାଇଲି ସାକ୍ଷାତକାର
ନୀଳ ଜୀମୂତ ଶରୀରଧାରୀ ହେ,
ତାହାଙ୍କୁ ସାକ୍ଷାତେ ପାଇ ଦଣ୍ଡପ୍ରାୟ ତଳେ ଶୋଇ
ନମିଲେ ଚରଣ ଦୁଇ ଧରି ହେ ।୫୧ ।
ବିନିତାତ୍ମା ହନୁମାନ ବାହୁ ଦୁଇକୁ ଧରିଣ
ହୃଦୟରେ ନେଲେ ଆଉଜାଇ ହେ,
ଚାରି ନୟନରୁ ନୀର ବହୁଥିଲା ଝରଝର
ଭକତି ଭାବରେ ବନ୍ଧା ଦୁଇ ହେ ।୫୨ ।
ସେଠାରୁ ସସୈନ୍ୟେ ଯାଇ ନର୍ମଦା ତଟରେ ପାଇ
ପ୍ରଣମିଲେ ଆରଣ୍ୟକ ଋଷି ହେ,
ଦେଖି ରଘୁପତି ଅଶ୍ୱ ମୁନି ହୃଦୟେ ପ୍ରକାଶ
ଅନିର୍ବଚନୀୟ ଶୁଦ୍ଧ ଖୁସି ହେ ।୫୩ ।
ଉଚ୍ଚେ କରି ନାମ ଧ୍ୱନି ବୋଇଲେ ଆଜି ମୁଁ ଧନୀ
କୁଟୀରେ ବିଜେ ମୋ ହନୁମାନ ହେ,
ରୋମାଞ୍ଚିତ ସାର ତନୁ ଅଶ୍ରୁ ବହଇ ନୟନୁ
କରନ୍ତି ଶ୍ରୀରାମ ଗୁଣଗାନ ହେ ।୫୪ ।
ବୋଲନ୍ତି ସଂସାରେ ସାରା ଦେବତା ଗୋଟିଏ ପରା
ସତ୍ୟ ପାଳକ ପ୍ରଭୁ ଶ୍ରୀରାମ ହେ,
ସଂସାରେ ଗୋଟିଏ ବ୍ରତ ଶ୍ରୀରାମ ଯହିଁ ଅର୍ଚ୍ଚିତ
ଗୋଟିଏ ମନ୍ତ୍ର ଶ୍ରୀରାମ ନାମ ହେ ।୫୫ ।
ସଂସାରେ ଗୋଟିଏ ଶାସ୍ତ୍ର ଶ୍ରୀରାମ ଯହିଁରେ ସ୍ତୁତ୍ୟ
ଭଜନ କର ଭଜନ କର ହେ,

ଶ୍ରୀରାମ ମହାତ୍ମ୍ୟ ଶୁଣି ପ୍ରଫୁଲ୍ଲିତ କପିମଣି
ନୟନୁ ଝରିଲା ତାଙ୍କ ନୀର ହେ ।୫୬ ।
ପ୍ରେମାପ୍ଲୁତ ହନୁମାନେ ଦେଖି ଋଷି ସନ୍ନିଧାନେ
ଆବଦ୍ଧ କରିଲେ ଆଲିଙ୍ଗନେ ହେ,
ଦୁଇଭକ୍ତ କୁଣ୍ଢାକୁଣ୍ଢି ମନ ନାଚେ ଯେହ୍ନେ ଶୁଣ୍ଢି* *ପଦ୍ମ
ନାଚଇ ଦେଖି ବାଳ ଅରୁଣେ ହେ ।୫୭ ।
ସେ ଦୃଶ୍ୟର ଦରଶନେ ସୁରେଶ ଭାଳଇ ମନେ
ଧନ୍ୟ ଭକତ ଧନ୍ୟ ଭକତି ହେ,
ହେ ପ୍ରଭୁ ସୀତା ରମଣ ସଂସାର ଆଦି କାରଣ
ସଦୟେ ଦିଅ ବିଶୁଦ୍ଧ ମତି ହେ ।୫୮ ।
ମନ ଚରଣେ ତୁମ୍ଭର ଥାଉ ମୋର ନିରନ୍ତର
କର କରୁଣା କୃପା ସାଗର ହେ,
ଊନଚତ୍ୱାରିଂଶାଧ୍ୟାୟ ବର୍ଣ୍ଣିଲି ରକ୍ଷିଣ ଲୟ
ଦୟାରେ ତୁମ୍ଭ ଜାନକୀଶ୍ୱର ହେ ।୫୯ ।



# ଚତ୍ୱାରିଂଶ ଛାନ୍ଦ

ରାଗ-କୌଶିକ(ଶିବ ହନୁମାନ ଯୁଦ୍ଧ)

ଗଉରୀ ନନ୍ଦନ ଚରଣ ବନ୍ଦନ କରି ହନୁମାନ ଚରିତ
ବର୍ଣ୍ଣନା କରୁଛି ଚାଳିଶି ଅଧାୟେ ଅପୂର୍ବ ସମର ଚରିତ
ରୁଦ୍ରାବତାର
ରୁଦ୍ର ପ୍ରତିପକ୍ଷେ ସମରେ
ଭକ୍ତ ପାଇଁ ଜଣେ ଅବତୀର୍ଣ୍ଣ ରଣେ ଅନ୍ୟ ଲଢ଼େ ପ୍ରଭୁ ପକ୍ଷରେ ।୧ ।

ଅଶ୍ୱମେଧ ଯାଗ ଅଶ୍ୱ ଯାଇ ବେଗ ପ୍ରବେଶିଲା ଦେବ ପୁରରେ
ଅମିତ ବୈଭବ ସଂପନ୍ନ ନଗର ବୀରମଣି ରାଜା ସେଠାର
ତପ କଠୋର
କ୍ଷିପ୍ରା ତଟେ ସେ ନରବର
ମହାକାଳ ଶିବ ଆଳୟେ କରିଣ ରୁଦ୍ରୁ ଲଭିଣ ଥିଲା ବର ।୨ ।

ଦେବଙ୍କର ଦେବ ପ୍ରଭୁ ମହାଦେବ ବରେ ଥିଲେ ଦେଇ ଅଭୟ
ଦେବପୁର ରାଜ୍ୟ ଭୋଗ କର ସୁଖେ ମନେ ନ ରଖିଣ ସଂଶୟ
ସୁରକ୍ଷା ଭାର
ଘେନିଲି ନିବାସୀ ଏଠାରେ
ଶ୍ରୀରାମଙ୍କ ଅଶ୍ୱ ମେଧଯଜ୍ଞ ଅଶ୍ୱ ଆସିବା ଯାଏଁ ପ୍ରତୀକ୍ଷାରେ ।୩ ।

ଶମ୍ଭୁ ଉମାମଣି ଯେଣୁ ବୀରମଣି ନଗରେ ରହିଲେ ନିଶ୍ଚିନ୍ତେ
ଧନଧାନ୍ୟେ ପରିପୂର୍ଣ୍ଣ ରାଜ୍ୟେଜନ ବଞ୍ଚନ୍ତି ଧର୍ମ ଧରି ଚିତ୍ତେ
ସଦା ସୁଲଭ
ସମସ୍ତ ଭୋଗ ବଇଭବ
ଚୋରି ଭ୍ରଷ୍ଟାଚାର ବିହୀନ ରାଜ୍ୟରେ ବରଷେ କାଳରେ ବାସବ ।୪ ।

ଭଗବତୀ ଲୀଳା ଅଟଇ ଅତୁଳା ଅଶ୍ୱମେଧ ଯଜ୍ଞ ଘୋଟକେ
ରାଜା ବୀରମଣି ପୁତ୍ର ରକ୍ମାଙ୍ଗଦ ବାନ୍ଧିଲା ଛଟକ ମାତ୍ରକେ
ଜାଣି ଶତ୍ରୁଘ୍ନ
ସମରେ ହେଲେ ଆଗଭର
ଶୁଣି ବୀରମଣି ତା ଚତୁରଙ୍ଗିଣୀ ସୈନ୍ୟସାଥେ ହେଲା ତୈୟାର ।୫ ।

ସେନାପତି ତା'ର ବୀର ରିପୁବାର ବୀରସିଂହ ଆତ୍ମ ସୋଦର
ପୁତ୍ର ରକ୍ମାଙ୍ଗଦ ପୁଣି ଶୁଭାଙ୍ଗଦ ବଳମିତ୍ର ପୁତ୍ର ଭଗ୍ନିର
ହୋଇ ଆରୁଢ଼
ରଥେ ବୀରମଣି ରାଜନ
ବୀରବାଦ୍ୟ ଶବ୍ଦେ ପୃଥ୍ୱୀ ଥରହର ରଣ କ୍ଷେତ୍ରେ କଲେ ଗମନ ।୬ ।

ଭୟାନକ ରଣ ହୋଇଲା ଘଟଣ ବିଧାତା ବିହିଲା ଯେଣୁ
ରଥି ମହାରଥି ସୁଦକ୍ଷ ସାରଥି ସମରେ ବ୍ୟାପୃତ ତେଣୁ
ପବନ ପୁତ୍ର
ଶତ୍ରୁପକ୍ଷର ସଂହାରଣ
କରିଣ ପୁଷ୍କଳ ଶତ୍ରୁଘ୍ନ ସୁରକ୍ଷା କରନ୍ତି ଚିନ୍ତି ରାମ ମନ ।୭ ।
ବୀରମଣୀ ଭାଇ ବୀରସିଂହ ଯାଇ ମାରୁତି ସମ୍ମୁଖେ ମିଳି
ତୀକ୍ଷ୍ଣ ଶରଦ୍ୱାରା କଲାରୁ ଆଗାତ କ୍ରୋଧେ ବାତାତ୍ମଜ ଜଳି
ବଜ୍ର ସମାନ
ମୁଷ୍ଟିକାଘାତ ବକ୍ଷେ ତା'ର
କଲାରୁ ମୂର୍ଚ୍ଛିତ ହୋଇଣ ଭୂମିରେ ପଡ଼ିଲା ନ ସହି ପ୍ରହାର ।୮ ।
ପିତୃବ୍ୟ ମୂର୍ଚ୍ଛିତ ଦର୍ଶନେ କ୍ରୋଧିତ ରୁକ୍ମାଙ୍ଗଦ ଶୁଭାଙ୍ଗଦ
ଆସିଲେ ଦଉଡ଼ି କରିବାକୁ ରଣ ଦେଖି ଅଞ୍ଜନାଜ ମୋଦ
ରଥ ସହିତ
ପୁଚ୍ଛେ ଗୁଡ଼ାଇ ଅତି ବେଗେ
ଶୂନ୍ୟେ ବୁଲାଇଣ ଭୂମିରେ ପିଟିଲେ ଦୁହେଁ ମୂର୍ଚ୍ଛିତ ସଙ୍ଗେ ସଙ୍ଗେ ।୯ ।
ଭଗିନୀର ପୁତ୍ର ବୀର ବୀରମିତ୍ର ଧରାଶାୟୀ ହେଲା ଯୁଦ୍ଧରେ
ରାଜା ବୀରମଣି ପୁଷ୍କଳ ଶରରେ ମୂର୍ଚ୍ଛିତେ ଶୋଇଲା ଭୂଇଁରେ
ମୂର୍ଚ୍ଛିତ ଭକ୍ତେ
ଦେଖି ଭଗବାନ ଶଙ୍କର
ପାର୍ଷଦ ସହିତ ଶିବଗଣେ ଧରି ସମରେ ହୋଇଲେ ହାଜର ।୧୦ ।
ଶିବଙ୍କ ଇଚ୍ଛାରେ ପୁଷ୍କଳ ସାଥିରେ ବୀରଭଦ୍ର ଯାଇ ତ୍ୱରିତେ
ରଣ ଭିଆଇଣ ଧରିତା ଚରଣ ବୁଲାଇ ଯେହ୍ନେ ଚକ୍ରବାତେ
ପିଟିଲା ତଳେ
ପ୍ରାଣ ଗଲା ଛାଡ଼ି ଶରୀରୁ
କ୍ରୋଧେ ତ୍ରିଶୂଳରେ ଶିରକୁ କାଟିଣ ଅଲଗା କରିଲା ଗଣ୍ଡିରୁ ।୧୧ ।
ବିକଟ ଗର୍ଜନ ଛାଡ଼ିବା ଦେଖିଣ ବୀରଭଦ୍ର ଶତ୍ରୁଘ୍ନ ବୀର
ଅତ୍ୟନ୍ତ କ୍ରୋଧିତେ ତ୍ରିନେତ୍ର ସହିତ ଆରମ୍ଭିଲେ ଘୋର ସମର
ଶିବ ଶଙ୍କର
ଅଗ୍ନି ସମ ତେଜସ୍ୱୀ ବାଣ
ଶତ୍ରୁଘ୍ନ ବକ୍ଷରେ ଭୂସି କ୍ରୋଧଭରେ କଲେ ମୂର୍ଚ୍ଛିତ ଅଚେତନ ।୧୨ ।
ପୁଷ୍କଳ ଶତ୍ରୁଘ୍ନ ଅଭାବେ ସଇନ ମଧ୍ୟେ ପଡ଼ିଲା ହାହାକାର
ଦେଖି ହନୁମାନ ଦୁହିଁଙ୍କ ଶରୀର ରଖି ସ୍ୱୟଂ ରଥ ଉପର

ରକ୍ଷା ବ୍ୟବସ୍ଥା
ଅତ୍ୟନ୍ତ ସୁଦୃଢ଼ ଭାବରେ
ପ୍ରଳୟଙ୍କର ରୂପ  କରି ଧାରଣ ପହଞ୍ଚିଲେ ଶିବ ଆଗରେ ।୧୩ ।
ମହେଶ୍ୱର ଆଗେ ସମ୍ଭାଷିଲେ ବ୍ୟଗ୍ରେ ଶୁଣିଛି ବହୁଧା କର୍ଣ୍ଣରେ
ଶ୍ରୀରାମ ଚରଣ ସର୍ବଦା ସ୍ମରଣ କର ତୁମ୍ଭେ ଧ୍ୟାନ ଯୋଗରେ
ରାମ ଭକତ
ବଧ କରିବାରେ ତତ୍ପର
ଦେଖି ଆଜ ମୋର ବିଶ୍ୱାସ ହୋଇଲା ଶୁଣା ବାକ୍ୟ ମିଥ୍ୟା ମୋହର ।୧୪ ।
ଶୁଣି ମହେଶ୍ୱର ବୋଲନ୍ତି ଉତ୍ତର ସତସିଦ୍ଧ ତୁମ୍ଭ ବଚନ
ଦେବତା ଦାନବ ବନ୍ଦିତ ରାଘବ ପ୍ରିୟ ସ୍ୱାମୀ ହୃଦୟ ଧନ
କିନ୍ତୁ ଭକତ
ସ୍ୱୟଂ ଭଗବାନ ସ୍ୱରୂପ
ରାଜା ବୀରମଣି ଭକ୍ତ ମଥାମଣି ହେବି କେହ୍ନେ ତା'ରେ ଅକୃପ ।୧୫ ।
ଭକତ ବାନ୍ଧବ ଶମ୍ଭୁ ମହାଦେବ ବଚନ ଶ୍ରବଣେ ମାରୁତି
ବିଶାଳ ଶିଳାଏ ଶିବ ରଥପରେ ପକାଇଲେ ନେଇ ଝଟତି
ସାରଥି ସହ
ରଥାଶ୍ୱ ଧ୍ୱଜା ଧୂଳିସାତ
ଶୀଘ୍ର ନନ୍ଦିପର ହୋଇଣ ସବାର ପୁଣି ଯୁଦ୍ଧେ ହେଲେ ଆଗତ ।୧୬ ।
କରୁଣା ସାଗର ପ୍ରଭୁ ମହେଶ୍ୱର ଅଦ୍‌ଭୁତ ଲୀଳାର ନାୟକ
ରାମପକ୍ଷେ କପି ରୂପରେ ଲଢ଼ନ୍ତି ଅନ୍ୟପକ୍ଷେ ଭକ୍ତ ରକ୍ଷକ
ଦୁଇ ପକ୍ଷରୁ
ଦୁଇ ରୂପ କରି ଧାରଣ
ଆରାଧ ଭକତ ଦୁହିଙ୍କର ପାଇଁ ଲଢ଼ିହୁନ୍ତି ଲହୁଲୁହାଣ ।୧୭ ।
ରଥ ଅଭାବରେ ବୃଷଭ ଉପରେ ଆରୁଢ଼ ହୋଇ ତ୍ରିଲୋଚନ
ରଣେ ବ୍ୟସ୍ତ ଦେଖି ମରୁତ ନନ୍ଦନ କ୍ରୋଧେ ହୋଇ ରକ୍ତ ନୟନ
ବିଶାଳ ଶାଳ
ଉପାଡ଼ି ଶଙ୍କର ବକ୍ଷରେ
ପିଟିଲାରୁ ଶିବ ଫିଙ୍ଗିଲେ ତ୍ରିଶୂଳ ଲିପ୍ତ ଦୁହେଁ ଘୋର ସମରେ ।୧୮ ।
ଶିବେ ହନୁମାନ ପୁଚ୍ଛେ ଗୁଡ଼ାଇଣ ପ୍ରହାରଇ ପ୍ରହାର ପରେ
ପ୍ରହାରେ ବ୍ୟାକୁଳ ହୋଇ କାଳକାଳ କହିଲେ ଧନ୍ୟ ଭକ୍ତବର
ଦିବ୍ୟ ସ୍ୱରୂପ
ସୁଲଭ ଯାହା ଦୁଷ୍ପାପ୍ୟ ଅନ୍ୟେ

ପ୍ରସନ୍ନ ମୁଁ ଅତି ମାଗି ନିଅ ବର ଯେତେ ଇଚ୍ଛା ରହିଛି ମନେ ।୧୯ ।
ଊମଶୈଳସୁତା ପତିଙ୍କର କଥା ଶୁଣି ହସି ହସି ମାରୁତି
ରଘୁବଂଶ ନାଥ ଚରଣ ଆଶ୍ରିତ କରୁଣାରୁ ନାହିଁ ଅପ୍ରାପ୍ତି
ମାଗେ ତଥାପି
ମୋ ପକ୍ଷର ମୃତ ଜୀବିତ
ରକ୍ଷା କରୁଥାଅ ମୋ ଫେରିବା ଯାଏଁ ଛନ୍ତି ଅବା ଯେତେ ମୂର୍ଚ୍ଛିତ ।୨୦ ।
ଗମି ଦ୍ରୋଣ ଗିରି ଅଉଷଧି ଧରି ଆସିଲେ ବଞ୍ଚିବେ ମୋ ସୈନ୍ୟେ
ରଖ ସେତେ ଯାଏଁ ସୁରକ୍ଷା ବଳୟେ ସତର୍କେ ଧରି ଶିବଗଣେ
ଶିବ ଶଙ୍କର
କଲାରୁ ମାଗୁଣି ସ୍ୱୀକାର
ଅତ୍ୟନ୍ତ ବେଗରେ କ୍ଷୀରୋଦଧି ତୀରେ ପହଞ୍ଚିଲେ ବାତ କୁମର ।୨୧ ।
ହସ୍ତେ ଦ୍ରୋଣ ଗିରି ଦୃଢ଼ ଭାବେ ଧରି  ଉପାଡ଼ିଲେ ଯେଉଁ କାଳେ
ଡରେ ପ୍ରକମ୍ପିତ ହେବାରୁ ପର୍ବତ ରକ୍ଷକ ଦେବତା ସକଳେ
ସ୍ୱରୂପ ନେଇ
ପୁଚ୍ଛା କରିଲେ ଉଭା ହୋଇ
କି କାରଣେ ନଗେ ଉପାଡୁଛ ବ୍ୟଗ୍ରେ ପ୍ରକାଶ ପରିଚୟ ଦେଇ ।୨୨ ।
ଅଞ୍ଜନା କୁମାର ବୋଲନ୍ତି ଉତ୍ତର ଶ୍ରୀରାଘବଙ୍କର ମୁଁ ଦାସ
ରାମାନୁଜ ସାଥେ ସୁରକ୍ଷା ଦେଇଣ ଅଶ୍ୱମେଧ ଯଜ୍ଞର ଅଶ୍ୱ
ଦେବପୁରରେ
ବୀରମଣି ସହ ସମରେ
ଶତ୍ରୁଘ୍ନ ପୁଷ୍କଳ ସହିତ ଅନେକ ମୃତ ପଡ଼ିଛନ୍ତି ଭୂମିରେ ।୨୩ ।
ଦ୍ରୋଣାଚଳେ ଅବା ମୃତ ସଞ୍ଜିବନୀ ନେବି ନ ପାରିବ କେ ରୋଧି
ରୋଧିଲେ ମୋତେ
ରୁନ୍ଧିବି ସବୁରି ଜୀବନ
ସହର୍ଷେ ପ୍ରଣାମ କରି ଦେବଗଣ ଔଷଧ କରିଲେ ପ୍ରଦାନ ।୨୪ ।
ମୃତ ସଞ୍ଜିବନୀ ଧରିଣ ପାବନୀ ପହଞ୍ଚି ସମର ପ୍ରାଙ୍ଗଣେ
ପୁଷ୍କଳ କବନ୍ଧେ ଶିରକୁ ଲଗାଇ ପ୍ରାର୍ଥନା କରି ମନେ ମନେ
ସ୍ଥିର ଚିତ୍ତରେ
ବୋଇଲେ କ୍ରିୟା ବାଣୀ ମନେ
ଶ୍ରୀରଘୁ ନାଥଙ୍କୁ ସ୍ୱାମୀ ଚିନ୍ତୁଥିଲେ ବଞ୍ଚି ଉଠୁ ବୀର ଏଇନେ ।୨୫ ।
ପୁଷ୍କଳ ତୁରନ୍ତ ନିଦ୍ରାରୁ ଯେମନ୍ତ ଉଠି ବୀରଭଦ୍ରେ ଖୋଜଇ
ଯାଇ ହନୁମାନ ମୂର୍ଚ୍ଛିତ ଶତ୍ରୁଘ୍ନେ ଉଠାଇଲା ଔଷଧି ଦେଇ

ରାମ ଅନୁଜ
ମୂର୍ଚ୍ଛା ତେଜି ଖୋଜେ ଶଙ୍କର
ଏ ସମୟେ କପି ପତି ନାମ ଜପି ଜୀବିତ କଲେ ମୃତ ବୀର ।୨୬ ।
ସର୍ବେ ମୂର୍ଚ୍ଛା ତେଜି ରଥରେ ବିରାଜି ଯୁଦ୍ଧ ପାଇଁ ପୁନଃ ତୟାର
ଦେଖି ମହେଶ୍ୱର ହୋଇ କ୍ରୋଧ ଭର ସମରେ ହୋଇଲେ ବାହାର
ଘୋର ସମରେ
ଶତ୍ରୁଘ୍ନ ଶିବେ ସମକକ୍ଷ
ନ ହେବାରୁ ହନୁ ମାନ ଉପଦେଶେ ସ୍ମରିଲେ ସୀତାନାଥ ରଖ ।୨୭ ।
ମୃଗଶୃଙ୍ଗ ହସ୍ତ ଆହବ ଦୀକ୍ଷିତ ପୁରୁଷ ବେଶେ ଉପସ୍ଥିତ
କମଳ ନୟନ ନବଦୁର୍ବାଦଳ ଶ୍ୟାମ ସ୍ୱରୂପୀ ରଘୁନାଥ
ଦେଖି ସାକ୍ଷାତେ
ଆନନ୍ଦ ଶତ୍ରୁଘ୍ନ ମାରୁତି
ପାବନୀ ଶଙ୍କର ଦେଖି ସୀତାବର ଦୁହେଁ କଲେ ପଦେ ପ୍ରଣତି ।୨୮ ।
ପ୍ରଭୁ ଦରଶନ ପ୍ରାପ୍ତେ ତ୍ରିଲୋଚନ ଆନନ୍ଦେ ଗଦଗଦ ହୋଇ
କରିଲେ ବିନତି ଆହେ ସୀତା ପତି ମୋର ଭକତ ହିତ ପାଇଁ
ଆପଣଙ୍କର
ଯଜ୍ଞକାର୍ଯ୍ୟେ କଲି ବ୍ୟାଘାତ
ନରେଶଙ୍କୁ ପୂର୍ବେ ଦେଇଥିଲି ବର କ୍ଷମାକର ଜାନକୀକାନ୍ତ ।୨୯ ।
ସତ୍ୟେ ବନ୍ଧା ମୁହିଁ ବାକ୍ୟ ଅଛି ଦେଇ ସତ୍ୟସନ୍ଧ ପ୍ରଭୁ ଆପଣ
ଦେଉଛି ବଚନ ଭକତ ରାଜନ ଉପଦେଶ କରି ପାଳନ
ତୁମ ସେବାରେ
ନିଜର ସମ୍ପୂର୍ଣ୍ଣ ଜୀବନ
କରି ସମର୍ପଣ ବନ୍ଧୁ ପ୍ରିୟଜନ ସମେତ ବନ୍ଦିବ ଚରଣ ।୩୦ ।
ଶଙ୍କର ବଚନ ଶ୍ରବଣେ ଶ୍ରବଣ କରି ପ୍ରଭୁ ରଘୁନନ୍ଦନ
ଭକତ ରକ୍ଷଣ ଦେବତାଙ୍କ ଧର୍ମ କାର୍ଯ୍ୟେ ତୁମ ଖୁସି ମୋ ମନ
ଅତି ଉତ୍ତମ
ତୁମେ ଆଉ ମୁଁ ଅଭିନ୍ନ
ମୋ ହୃଦୟେ ତୁମେ ତୁମ ହୃଦେ ମୁହିଁ ଭେଦ ଚିତ୍ତ ଚିନ୍ତେ ଅଜ୍ଞାନ ।୩୧ ।
ତୁମ୍ଭର ଭକତ ଅଟେ ମୋର ଭକ୍ତ ଭେଦ ବୁଦ୍ଧି କରେ ଯେ ମୂଢ଼
ସହସ୍ର କଳପ କୁମ୍ଭୀପାକେ ସଢ଼େ ବିବେକ ବିଦ୍ୟା ତା'ର ଜଡ଼
ଘେନ ବଚନ
ଅମୃତମୟ କର ସ୍ପର୍ଶେ

ଜୀବିତ କରାଅ ରାଜା ବୀରମଣି ଶୁଦ୍ଧ ଭକ୍ତି ଲଭୁ ଆଶିଷେ ।୩୨ ।
ପାଇଣ ଆଦେଶ ପ୍ରଭୁ ଲଙ୍କେଶ ଅମୃତ ମୟ କର ସ୍ପର୍ଶେ
ରାଜା ବୀରମଣି ପୁତ୍ର ଭ୍ରାତା ପୁଣି ଭଗ୍ନିପୁତ୍ରେ ସୈନ୍ୟେ ସହର୍ଷେ
ଦେଲେ ଜୀବନ
ଆନନ୍ଦିତ ସର୍ବେ ଦର୍ଶନେ
ରାଜା ଧରି ପୁତ୍ର ଭ୍ରାତା ଓ କଳତ୍ର ପ୍ରଣମିଲା ରାମ ଚରଣେ ।୩୩ ।
ଆଦର ପୂର୍ବକ ହବନ ଘୋଟକ ଧନରତ୍ନ ଆଦି ସହିତ
ପ୍ରଭୁଙ୍କ ସମ୍ମୁଖେ କରି ଉପସ୍ଥିତ ଚରଣେ କଲେ ପ୍ରଣିପାତ
ଦେଖି ମାରୁତି
ହୋଇଲେ ଆନନ୍ଦେ ମଗନ
ସ୍ମରଇ ସୁରେଶ ପଦ ଲଙ୍କେଶ ଭକ୍ତ ରକ୍ଷକ ତ୍ରିଲୋଚନ ।୩୪ ।



# ଏକଚତ୍ୱାରିଂଶ ଛାନ୍ଦ

**ରାଗ-ଘଣ୍ଟାରବ(ସୁରଥ ରାଜା କଥା)**

ହିମଶୈଳ ସୁତା ସୁତ
ପଦେ କରି ଦଣ୍ଡବତ
ମାଗଇ ଆଶିଷ କରଣେ ବର୍ଣ୍ଣନ ଶ୍ରୀହନୁମାନ ଚରିତ ।୧ ।
ପ୍ରଭଞ୍ଜନଙ୍କ ନନ୍ଦନ
ପଦ କରୁଛି ବନ୍ଦନ
ପଦ ପରେ ପଦ କର୍ଣ୍ଣ ପୁଟେ ବଦ ଘେନି ମମ ନିବେଦନ ।୨ ।
ଭକ୍ତ ଭଗବାନ ଲୀଳା
ସଂସାର ସାଗରେ ଭେଳା
ଭକତି ସ୍ରୋତରେ ସ୍ନାନ କର ଧୀରେ ପ୍ରଭୁଙ୍କ କଥା ଅନୁଲା ।୩ ।
ଶ୍ରୀରାମାଶ୍ୱମେଧ ଅଶ୍ୱ
ଭ୍ରମି ବନପ୍ରାନ୍ତ ଦେଶ
କୁଣ୍ଡଳ ପୁରରେ ପହଞ୍ଚିଲା ଯାଇ ସୁରଥ ଯହିଁ ନରେଶ ।୪ ।
ବୀର ଧୀର ବୁଦ୍ଧିମାନ
ପରାକ୍ରମ ତା' ଅନନ୍ୟ
ମହାନ ଭକତ ସେହି ମହିକ୍ଷିତ ରାମ ପଦେ ସଦା ମନ ।୫ ।
ଭୃଙ୍ଗ ପ୍ରାୟ ମନ ତା'ର
ରାମ ଚରଣ ପୁଷ୍କର
ରମେ ଦିବାନିଶି ଭକ୍ତି ସୁଧାନ୍ୱେଷି ବିଭୁ ଚିନ୍ତେ ନିରନ୍ତର ।୬ ।
ରାଜ୍ୟ ଅଧିବାସୀଗଣ
ସମ ଧର୍ମ ପରାୟଣ
ଶ୍ରୀରଘୁ ନନ୍ଦନ କମଳ ଚରଣ ସଦା କରନ୍ତି ସ୍ମରଣ ।୭ ।
ରାଜ୍ୟସାରା ଘରଘର
ଅଶ୍ୱତ୍ଥ ତୁଳସୀଙ୍କର
କରନ୍ତି ପୂଜନ ଅର୍ଚ୍ଚନ ବନ୍ଦନ ସୀତା କୌଶଲ୍ୟା କୁମର ।୮ ।
ଶ୍ରୀରାମ ପବିତ୍ର କଥା
ବାଚନ ସର୍ବତ୍ର ଯଥା
ଦୁଆର ଦେଶରେ ପ୍ରତ୍ୟେକ ସ୍ଥାନରେ ପ୍ରଭୁ ପାଦେ ଯେଣୁ ଆସ୍ଥା ।୯ ।
ଅନୀତି କୁକର୍ମକାରୀ
ଦେଶରୁ ଯାନ୍ତି ବାହାରି
ପାପପରାୟଣ ଅଧର୍ମାଚରଣ କାରୀ ଯେତେ ନରନାରୀ ।୧୦ ।

ଦେଖି ରାଜାର ଭକତି
ଧର୍ମରାଜ ଜନ୍ତୁପତି
ହୋଇଣ ପ୍ରସନ୍ନ କରିଲେ ପ୍ରଦାନ ସ୍ୱୟଂ ବର ହୃଷ୍ଟେ ଅତି ।୧୧ ।
ବୋଇଲେ ହୋଇ ନିର୍ଭୟ
ରାଜ୍ୟରେ କର ବିଜୟ
ଶ୍ରୀରାମ ଦର୍ଶନ ନ କରିଲେ ପ୍ରାଣ ନ ଯିବ ଏ କଥା ଥୟ ।୧୨ ।
ନଗରର ସମୀପରେ
ଦେଖି ଦିବ୍ୟ ଅଶ୍ୱବରେ
ସେବକେ ଯାଇଣ ନରେଶ ଅଗ୍ରେଣ ଜଣାଇଲେ ତୁରିତରେ ।୧୩ ।
ଚନ୍ଦନ ଚର୍ଚ୍ଚିତ ଅଶ୍ୱ
ଦର୍ଶନେ ହରଇ କ୍ଳେଶ
ହରିଭକ୍ତିପ୍ଲୁତରାଜା ଆନନ୍ଦିତ ମନରେ କଲେ ଆଦେଶ ।୧୪ ।
ଆମେ ସର୍ବେ ଭାଗ୍ୟବାନ
ଜୀବନ ଆମର ଧନ୍ୟ
ଏ ଅଶ୍ୱ ନିମିତ ପ୍ରଭୁ ରଘୁନାଥ ଦେବେ ନିଶ୍ଚେ ଦରଶନ ।୧୫ ।
ଅଶ୍ୱକୁ ଦେଇ ସମ୍ମାନ
ଶୀଘ୍ର ବାନ୍ଧି ଧରି ଆଣ
ମୁକତି ପ୍ରଦାନ କରିବା ଦର୍ଶନ ଦେଲେ ଶ୍ରୀରଘୁ ନନ୍ଦନ ।୧୬ ।
ଅଶ୍ୱ ହୋଇଲା ବନ୍ଧନ
ରାମ ଅନୁଜ ଶତ୍ରୁଘ୍ନ
ରାଜା ଭକ୍ତି ଜାଣି ରାଇ ବୀରମଣି ଅଙ୍ଗଦେ କଲେ ପ୍ରେରଣ ।୧୭ ।
ଅଙ୍ଗଦେ ରାଜା ସୁରଥ
ବୋଲେ ପ୍ରଭୁ ରଘୁନାଥ
ଚାହେଁ ଦରଶନ ଲୋଡ଼ା ନାହିଁ ଅନ୍ୟ କରନ୍ତୁ ମୋତେ କୃତାର୍ଥ ।୧୮ ।
ଅଙ୍ଗଦ ପ୍ରଦର୍ଶି ଭୟ
ବର୍ଣ୍ଣେ ଶୁଣ ନରରାୟ
ଏ ଅଶ୍ୱ ରକ୍ଷକ ଲଙ୍କା ବିଧ୍ୱଂଶକ କେଶରୀ ରାଜା ତନୟ ।୧୯ ।
ଜାଣ କି ତାଙ୍କର ବଳ
ବୁଦ୍ଧି ଜ୍ଞାନେ ଯେ ଅଚଳ
ସମରେ ଅଗ୍ରଣି ଶକ୍ତି ପରିମାଣି ଚିନ୍ତି ନ ଡାକ ଅକାଳ ।୨୦ ।
ଶୁଣି ରାଜା ବାଳୀ ସୁତେ
ବୋଲନ୍ତି ଯଦି ମୁଁ ଚିତ୍ତେ

ଶ୍ରୀରାମ ଚରଣ ଚିନ୍ତନ ମନନ କରୁଅଛି ଶାସ୍ତ୍ର ମତେ ।୨୧ ।
ପ୍ରଭୁ କରୁଣା ନିଧାନ
ସ୍ୱୟଂ ଆସି ସନ୍ନିଧାନ
କୃତାର୍ଥ କରିବେ ମନ ମୋ ତୋଷିବେ ଦେଇ ନିଶ୍ଚେ ଦରଶନ ।୨୨ ।
ଯଦି ସେପରି ନ ହେବ
ବଳେ ମୋତେ ବାନ୍ଧି ନେବ
ଅଶ୍ୱମେଧ ଅଶ୍ୱେ ଶତ୍ରୁଘ୍ନ ରାମାଂଶେ କୃପାକରି ନିବେଦିବ ।୨୩ ।
ଏ ମୋର ଶେଷ ନିଷ୍ପତି
ନ ଦେଖିଲେ ସୀତା ପତି
ନ ଛାଡ଼ିବି ଅଶ୍ୱ ଯୁଦ୍ଧେ କରି ବଶ ପାର ଯଦି ନିଅ ଜିତି ।୨୪ ।
ଅଙ୍ଗଦ ମୁଖୁ ବାରତା
ଶୁଣି ଶ୍ରୁତକିର୍ତ୍ତୀ ଭର୍ତ୍ତା
ସମର ନିମନ୍ତେ ସଇନ ସାମନ୍ତେ ପ୍ରସ୍ତୁତ କଲେ ଆଗତା ।୨୫ ।
ଭକ୍ତ ସୁରଥ ରାଜନ
ପ୍ରାପ୍ତାର୍ଥେ ପ୍ରଭୁ ଦର୍ଶନ
ଯିବା ପାଇଁ ରଣେ ଘେନି ବୀର ଗଣେ ସଜ୍ଜିତ କଲେ ସଇନ ।୨୬ ।
ଅନୁତାପନ ଚମ୍ପକ
ରିପୁଞ୍ଜୟ ଓ ମୋହକ
ପ୍ରତାପୀ ଦୁର୍ବାର ସହଦେବ ବୀର ଦର୍ଯକ୍ଷ ବଳମୋଦକ ।୨୭ ।
ଭୁରି ଦେବ ଆଦି ଦଶ
ସୁରଥ ନରେଶ ଶିଶ
ପିତା ସଙ୍ଗେ ଯାଇ ସଂଗ୍ରାମ ଭିଆଇ ପ୍ରଦର୍ଶିଲେ ପଉରୁଷ ।୨୮ ।
ପୁଷ୍କଳ ଭରତ ସୁତ
ରଣେ ଚମ୍ପକ ସହିତ
ଉତ୍ସାହରେ ଅତି ଦୃଢ଼ କରି ଛାତି ଲଢ଼େ ଦେଖାଇ ବୀରତ୍ୱ ।୨୯ ।
ଦୁହେଁ ସମରେ ପ୍ରବୀଣ
କୌଶଳେ ଦୁହେଁ ସମାନ
ପ୍ରତ୍ୟେକେ ପ୍ରତ୍ୟେକେ ଦକ୍ଷତା ବିରତ୍ୱ ପ୍ରଶଂସନ୍ତି ଶୁଦ୍ଧ ମନ ।୩୦ ।
ଘଟିଗଲା ଅଘଟଣ
ଦେଖୁଁ ସୁରଥ ନନ୍ଦନ
ରଥେ ବସାଇଲା ପୁଷ୍କଳକୁ ନେଇ ଶରରେ କରି ବନ୍ଧନ ।୩୧ ।
ସେନା ମଧ୍ୟେ ହାହାକାର

ଦେଖି ଅଞ୍ଜନା କୁମର
ହୋଇଣ କୁପିତ ଚମ୍ପକ ଅଗ୍ରତ ଆରମ୍ଭିଲେ ରଣ ଘୋର ।୩୨ ।
କପିଶଙ୍କ ଆକ୍ରମଣ
ସ୍ମରି ଶ୍ରୀରାମ ଚରଣ
ସୁରଥ କୁମର କରିଲେ ବେକାର ଜାଣି କ୍ରୁଦ୍ଧ ହନୁମାନ ।୩୩ ।
କୋପେ ହୋଇ ଜର୍ଜରିତ
ଚମ୍ପକକୁ ଧରି ହସ୍ତ
ଆକାଶେ ଉଠିଣ ଭୂମିରେ ପିଟିଣ ଆଘାତେ କଲେ ମୂର୍ଚ୍ଛିତ ।୩୪ ।
ସୁରଥ ରାଜାର ସୁତେ
ଭକତ ପିତା ସହିତେ
ରାମଚନ୍ଦ୍ର ପ୍ରତି କେତେ ଯେ ଭକତି ଜ୍ଞାତ ଥାଇ ହୃଦଗତେ ।୩୫ ।
ଚାହୁଁଥିଲେ ମନେ ମନେ
ଦେଖନ୍ତୁ ରାମେ ନୟନେ
ଯଜ୍ଞ ଅଶ୍ୱ ରକ୍ଷା କର୍ତ୍ତବ୍ୟ ଆହ୍ୱାନ ପେଶିଥିଲା ତାଙ୍କୁ ରଣେ ।୩୬ ।
ଏମନ୍ତ କାଳେ ନରେଶ
ଧରିଣ ଦିବ୍ୟ ଧନୁଷ
ବୋଇଲେ ମାରୁତି ତୁମେ ମହାମତି ମୋ ପ୍ରଭୁଙ୍କ ଭକ୍ତଈଶ ।୩୭ ।
ପ୍ରଭୁଙ୍କ କରୁଣା ବଳେ
ବାନ୍ଧିନେବି ଅବହେଳେ
ହୋଇ ସାବଧାନ ରଣେ ଦିଅ ମନ ଦେବେ ଦେଖିବେ ସକଳେ ।୩୮ ।
ନିଜର ପ୍ରଭୁ ରାଘବେ
ପ୍ରାଣ ପ୍ରିୟ ଯିଏ ଭାବେ
ସେମନ୍ତ ଭକତ ସମ୍ମୁଖରେ ପାଇ କପି ସୁଖ ଅନୁଭବେ ।୩୯ ।
ମନକୁ ମନ ମୋଦିତ
ହୋଇ ପ୍ରଭଞ୍ଜନ ସୁତ
ବୋଲନ୍ତି ଉତ୍ତର ଏ ତ ଭାଗ୍ୟ ମୋର ପ୍ରଭୁ ହୋଇ ଉପଗତ ।୪୦ ।
ତୁମ ହସ୍ତୁ ମୁକୁଳାଇ
ନେବେ ଜାନକୀଙ୍କ ସାଇଁ
ସ୍ୱପ୍ରତିଜ୍ଞା ପୂର୍ଣ୍ଣ କର ନରରାଣ ଅନ୍ୟ ଚିନ୍ତା ଚିନ୍ତ ନାଇଁ ।୪୧ ।
ବାତ ସୁତେ ପରଶଂସୀ
କୁଣ୍ଡଳ ନଗର ଶଶୀ
ସୁରଥ ନରେଶ ତୀକ୍ଷ୍ଣ ତମ ଶରେ ବ୍ୟତିବ୍ୟସ୍ତ କଲେ ପେଶି ।୪୨ ।

ସହି ନ ପାରି ମାରୁତି
କ୍ରୋଧରେ ଉଠିଲେ ତାତି
ନରେଶ ଧନୁଷ ନେଇ କଲେ ଧ୍ୱଂସ ଗୋଟାକୁ ଗୋଟା ଝଟତି ।୪୩ ।
ବହୁ ଅସ୍ତ୍ର ଶସ୍ତ୍ର ରଥ
ନାଶିବା ଦେଖି ସୁରଥ
ବ୍ରହ୍ମାସ୍ତ୍ର ପେଶୁଣୁ ଗିଳି ବାତ ସୁନୁ ରଣେ ଦେଖାନ୍ତି ସାମର୍ଥ୍ୟ ।୪୪ ।
ଶେଷେ ଶ୍ରୀରାମ ସ୍ମରିଣ
ରାମାସ୍ତ୍ରରେ ନିମନ୍ତ୍ରିଣ
ପ୍ରୟୋଗି ରାଜନ ବାନ୍ଧି ହନୁମାନ ନେଲା ରଥେ ବସାଇଣ ।୪୫ ।
ବାନ୍ଧିବା କାଳେ କପୀଶ
ବୋଲନ୍ତି ଧନ୍ୟ ନରେଶ
ମୋ ପ୍ରଭୁ ଅସ୍ତ୍ରରେ କରିଲ ବନ୍ଧନ ତେଣୁ ହେଲି ତୁମ ବଶ ।୪୬ ।
ପ୍ରଭୁ ଅସ୍ତ୍ରକୁ ସମ୍ମାନ
ଭକ୍ତ ହିତ ଚିନ୍ତି ମନ
କରୁଣା ସାଗର ପବନ କୁମର ହୋଇଲେ ଅସ୍ତ୍ର ଅଧୀନ ।୪୭ ।
ହନୁମାନଙ୍କୁ ବନ୍ଧନେ
ଦେଖି ପୁଷ୍କଳ ତକ୍ଷଣେ
ରାଜନ ସମ୍ମୁଖେ ପହଞ୍ଚିଣ ଲିପ୍ତ ହୋଇଲା ଭୀଷଣ ରଣେ ।୪୮ ।
ପ୍ରଭୁକୃପା ରାଜା ପରେ
ମୂର୍ଚ୍ଛା କଲା ବୀର ଶରେ
ଶତ୍ରୁଘ୍ନ ସୁଗ୍ରୀବ ଆଦି ମୂର୍ଚ୍ଛା ହେଲେ ଲଢ଼ି ଏକ ଏକ ପରେ ।୪୯ ।
ବିଜୟୀ ହୋଇ ରାଜନ
ଘେନି ରଥେ ବୀରଗଣ
ଶତ୍ରୁଘ୍ନ ପକ୍ଷର ମୂଖ୍ୟ ଯୋଦ୍ଧା ବାନ୍ଧି ଚଳିଲେ ନିଜ ସଦନ ।୫୦ ।
ରାଜା ସଭା ମଧ୍ୟେ ବସି
ହନୁମାନେ କହେ ହସି
ହେ ଭକ୍ତ ପ୍ରବର ଶ୍ରୀକୋଦଣ୍ଡ ଧରମୁକତି ନିମନ୍ତେ ସ୍ମର ।୫୧ ।
କରନ୍ତୁ ଏଥେ ବିଜୟ
କୃପାସିନ୍ଧୁ ଦୟାମୟ
ଦେଇ ଦରଶନ କମଳ ନୟନ ଶାନ୍ତ କରନ୍ତୁ ହୃଦୟ ।୫୨ ।
ବନ୍ଧନଯୁକ୍ତ ପାବନୀ
ବନ୍ଧନେ ଦେଖି ସଇନି

ପ୍ରଧାନ ପ୍ରଧାନ ଯୋଦ୍ଧା ନିଜ ପକ୍ଷ ଜଣାଏ ସ୍ମରି ଦୟିନୀ ।୫୩ ।
ହେ ନାଥ ପୁରୁଷୋତ୍ତମ
ଦୟାଳୁ ସୀତେଶ ରାମ
ଚକ୍ଷୁପଥେ ଆସ ମୋ କଷଣ ନାଶ ଆହେ ନୟନାଭିରାମ ।୫୪ ।
ମୁଖ ଦିଶଇ ସୁନ୍ଦର
କୁଣ୍ଡଳ ଝଳି କର୍ଣ୍ଣର
ମୁଖ ଦରଶନେ ପିଡ଼ା ନାଶ ହୁଏ ରୂପ ତୁମ ମନୋହର ।୫୫ ।
ଗ୍ରାହୁ ରଖିଅଛ ଗଜ
ବନ୍ଧନେ ପଡ଼ିଛି ଆଜ
ଫେଇ ମୋ ବନ୍ଧନ ହେ ରଘୁ ନନ୍ଦନ ତୀବ୍ର କର ପଦ ବ୍ରଜ ।୫୬ ।
ଯଜ୍ଞ କର୍ମେ ଅଛ ବ୍ୟସ୍ତ
ପୀଡ଼ଇ ଏଥେ ବନ୍ଦିତ୍ୱ
ଦେବେଶ୍ୱର ପୂଜ୍ୟ ମୂହୂର୍ତ୍ତେ ବିରାଜ କୃପାକର ଜାଣି ଆର୍ତ୍ତ ।୫୭ ।
ମୁହିଁ ଦୀନ ଅକିଞ୍ଚନ
ଅମାନାଶି ଦିଅ ଦିନ
ଏତେ ଡାକ ପରେ ଉଦ୍ଧାର ନ କଲେ ନିନ୍ଦା ହୋଇବ ରଟନ ।୫୮ ।
ସୁରଥ ବନ୍ଧନୁ ମୁକ୍ତି
ଶୀଘ୍ର ଦିଅ ସୀତାପତି
ଅନ୍ୟଥା ସଂସାରେ ଅସମର୍ଥ ବୋଲି ବିସ୍ତରିବ ସାରା କ୍ଷିତି ।୫୯ ।
ପ୍ରାଣପ୍ରିୟ ବାତ ସୁତ
ଶୁଣି ପ୍ରାର୍ଥନା ତ୍ୱରିତ
ପୁଷ୍ପକେ ଶ୍ରୀରାମ ତେଜି ଯଜ୍ଞକର୍ମ ସଭାରେ ହେଲେ ଆଗତ ।୬୦ ।
ବୀତରାଗ ଋଷିଗଣ
ଭାଇ ଭରତ ଲକ୍ଷ୍ମଣ
ପ୍ରଭୁ ପଶ୍ଚାତରେ ପହଁଚିଲେ ଆସି କରିଣ ଅନୁଧାବନ ।୬୧ ।
ଗଦ୍‌ଗଦ ହୋଇ କପୀଶ
ବୋଇଲେ ଦେଖ ନରେଶ
ଭକ୍ତକୁ ସଙ୍କଟୁ ଉଦ୍ଧାରିବା ପାଇଁ ସ୍ୱୟଂ ବିଜେ ଜଗଦିଶ ।୬୨ ।
ହନୁମାନଠୁଁ ସଙ୍କେତ
ସୁରଥ କରୁଣୁ ପ୍ରାପ୍ତ
ତେଜି ସିଂହାସନ ଧରିଣ ଚରଣ କାନ୍ଦି କଲା ଦଣ୍ଡବତ ।୬୩ ।
ପ୍ରେମାଶ୍ରୁରେ ପାଦଦୁଇ

ସାନନ୍ଦରେ ଦେଲା ଧୋଇ
ହୃଦକମଳକୁ ଅର୍ପିଲା ସାଗ୍ରହେ ବୋଲେ ରଖ ପାପୀ ମୁହିଁ ।୬୪ ।
କହେ ଆଖିରେ ଆଖିରେ
ମୁଖରୁ ଶଵ୍ଦ ନ ସ୍ଫୁରେ
ଅନ୍ତର୍ଯାମୀ ଜାଣି ଚତୁର୍ଭୁଜ ଧରି ତୋଳି ଧରିଲେ ଛାତିରେ ।୬୫ ।
ଭକ୍ତ ଭଗବାନ ମେଳି
କପି ଗଭୀରତା କଳି
କୁରୁଳା ହୃଦୟେ ନୟନରୁ ବାରି ଉଲ୍ଲସିତ ହୁଏ ଢ଼ାଳି ।୬୬ ।
ସୁରଥ ଝରାଇ ନୀର
ବୋଲେ ଦୋଷୀ ମୁଁ ତୁମର
ଏଡ଼େ ଦୋଷ କଲି ବାଧା ଭିଆଇଲି ଯଜ୍ଞେ ପ୍ରଭୁ କ୍ଷମା କର ।୬୭ ।
କେବଳ ଦର୍ଶନ ଆଶେ
ବୃଥା ଅହଂ ପରକାଶେ
ହେ କ୍ଷମା ସାଗର ଶିଶୁ ବୋଲି ଭାବି କ୍ଷମାକର ଅନାୟାସେ ।୬୮ ।
ପ୍ରଭୁ ବୋଇଲେ ରାଜନ
ଊଣା କରନାହିଁ ମନ
ଅତ୍ୟନ୍ତ ଉତ୍ତମ କ୍ଷତ୍ରିୟ ଧରମ କରିଛ ତୁମେ ପାଳନ ।୬୯ ।
ନିକ୍ଷେପୀ କରୁଣା ଦୃଷ୍ଟି
କରିଣ ଅମୃତ ବୃଷ୍ଟି
ବନ୍ଧିତ ମୂର୍ଚ୍ଛିତ ମୃତ ଯୋଦ୍ଧାଗଣେ ବଂଚାଇଲେ ପରମେଷ୍ଠୀ ।୭୦ ।
ରାଜା ସୁରଥ ହର୍ଷିତ
ପୂଜେ ହୋଇ କୃତ୍ୟକୃତ୍ୟ
ଧରିଣ ସାଙ୍ଗରେ ରାଣୀ ବଧୂ ପୁତ୍ର କଳତ୍ର ଆଦି ସହିତ ।୭୧ ।
ସଭାସଦ ମନ୍ତ୍ରୀ ସୈନ୍ୟ
ଦେଶବାସୀ ଜନଗଣ
ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ଧନ୍ୟ ପାଇ ଦରଶନ ।୭୨ ।
ଭକ୍ତ ରାଜ ହନୁମାନ
ଚରଣେ ସୁରେଶ ମନ
ଏକଚତ୍ୱାରିଂଶ ଛାନ୍ଦ ଏହିଠାରେ ଛନ୍ଦେ ହୋଇଲା ସମାପନ ।୭୩ ।



# ଦ୍ୱିଚତ୍ୱାରିଂଶ ଛାନ୍ଦ

ରାଗ-ଗୌରୀ

ଶୁଣ ଧୀରେ ଧିରେ ମାରୁତି ଦ୍ୱାପରେ କରିଥିଲେ ଯେଉଁ କର୍ମମାନ,
ଗଉରୀ ନନ୍ଦନ ଚରଣ ବନ୍ଦନ କରି ଲେଖୁଛି ସେ ବିବରଣ ।୧ ।
ଅଞ୍ଜନା ନନ୍ଦନ ସ୍ୱରୂପ ଚିନ୍ତନ  ପୂର୍ବକ ମିତନି କରେ ପଦ,
ହୋଇବ ବର୍ଣ୍ଣନ ଚରିତ ଅନନ୍ୟ କୁହନ୍ତୁ କର୍ଣ୍ଣେ ପଦକୁ ପଦ ।୨ ।
ଅରଣ୍ୟ ବାସରେ ଦ୍ରୌପଦୀ ସାଥିରେ ଥିଲେ ଯେ କାଳେ ପାଣ୍ଡବ ଗଣ,
ଫାଲଗୁନି ସାଥିରେ ମିଳନ ଇଚ୍ଛାରେ ସର୍ବେ ଗଲେ ନର ନାରାୟଣ ।୩ ।
ଆଶ୍ରମେ ଏକତ୍ର ରହିଲେ ଏକାନ୍ତ ପବିତ୍ର ପ୍ରକୃତିର କୋଳରେ,
ମନୋରମ ଦୃଶ୍ୟ ମନରେ ପ୍ରକାଶ ଦିବ୍ୟ ସ୍ୱର୍ଗୀୟ ଚେତନା ଭରେ ।୪ ।
ଦିନେ ପ୍ରଭଞ୍ଜନ ଆଣି ଉଡ଼ାଇଣ ସୌଗନ୍ଧିକ ନାମକ କମଳ,
ପକାଇଲା ନେଇ ଯାଜ୍ଞସେନୀ ଯହିଁ ବସିଥିଲେ ତାହାଙ୍କର କୋଳ ।୫ ।
ସେ ସହସ୍ରଦଳ ତେଜସ୍ୱୀ କମଳ ମନ ମୋହକ ସୁଗନ୍ଧେ ଭରା,
ପତ୍ନୁପତ୍ନୁ ନେତ୍ର କଲା ଆକର୍ଷିତ ହୃଦ ପାଣ୍ଡବ ନୟନତାରା ।୬ ।
ସରାଗେ ଭୀମଙ୍କୁ ଆମନ୍ତ୍ରି ପାଖକୁ ବୋଇଲେ ହେ ଦ୍ୱିତୀୟ ପାଣ୍ଡବ,
ବାସ୍ତବିକ ପ୍ରେମ ଯଦି ମନେ ତୁମ ମୋ ପ୍ରତି ରହିଛି ଆଣି ଦେବ ।୭ ।
ଦିବ୍ୟ ସୁଗନ୍ଧିତ କମଳ ଅଦ୍ଭୁତ ଅଧିକ ଦିଅ ଆଣି ଏପରି,
ମୋହଇ ମନକୁ ସଙ୍ଗେ ଆଶ୍ରମକୁ ପ୍ରିୟ ଲାଗେ ଯିବି ନେଇ କରି ।୮ ।
ନିଜ ପ୍ରାଣ ପ୍ରିୟା ଦ୍ରୁପଦ ତନୟା ପ୍ରସନ୍ନତା ପାଇଁ ଭୀମସେନ,
ହସ ହସ ମୁଖେ ଅତ୍ୟଧିକ ସୁଖେ ବାହାରିଲେ କରି ଅନ୍ୱେଷଣ ।୯ ।
ସୁବର୍ଣ୍ଣ ଜଡ଼ିତ ରତ୍ନ ବିଜଡ଼ିତ ରକ୍ତମୁଖ ଗଦା ଧରି ହସ୍ତେ,
ଯେଉଁ ଦିଗୁ ବାତ କମଳ ଅଦ୍ଭୁତ ଆଣିଥିଲା ଗଲେ ସେହି ପଥେ ।୧୦ ।
ଯାଉଣୁ ମାର୍ଗେଣ ଗର୍ଜନ ଭୀଷଣ କରି ଚଳନ୍ତି ପବନସୁତ,
ଦିଗ ବିଦଗରେ ଗର୍ଜନ ଗୁଞ୍ଜରେ ହିଂସ୍ର ପ୍ରାଣୀ ହେଲେ ଭୟଭୀତ ।୧୧ ।
ଡରେ ପ୍ରାଣୀକୂଳ ହୋଇଣ ବ୍ୟାକୁଳ ପଥୁ ହଟି ଲୁଚିଲେ ଅରଣ୍ୟେ,
ଆଗେ ଯାଇ ଗନ୍ଧମାଦନ ଅରଣ୍ୟ ଶୀର୍ଷେ ମିଳିଲେ କଦଳୀ ବନେ ।୧୨ ।
କଦଳୀର ବନ ଅନେକ ଯୋଜନ ଲମ୍ବା ଚୌଡ଼ା ଭାବରେ ବିସ୍ତୃତ,
ଭୀଷଣ ଗର୍ଜନ କରି ଭୀମସେନ ପ୍ରବେଶି ହୋଇଲେ ଆନନ୍ଦିତ ।୧୩ ।
ସେ କଦଳୀ ବନେ ଆନନ୍ଦିତ ମନେ ବସନ୍ତି ଭକତ ହନୁମାନ,
ଭୀଷଣ ଗର୍ଜନ ଶୁଣି ମନେ ମନ ଜାଣିଲେ ଏ ଭାଇ ଭୀମସେନ ।୧୪ ।
ଏହି ସ୍ୱର୍ଗ ପଥ ଦୁର୍ଗମ ଅତ୍ୟନ୍ତ ଜାଣି ଚିରଂଜୀବୀ କପିଈଶ,
ପଥକୁ ଆବୋରି ବୃଦ୍ଧ ରୂପ ଧରି ଶୋଇ ରହିଲେ ଯେହ୍ନେ ଅବଶ ।୧୫ ।

ଦେଖି ବୃଦ୍ଧ ହରି ପଥେ ମତ୍ତ କରି ବୋଇଲେ ପଥ କର ପ୍ରଶସ୍ତ,
କୁହ କି ଉଦ୍ଦେଶ୍ୟେ ଯାଉଛ ଏ ଦିଶେ ଜନାଗମ୍ୟ କୁହେ ହନୁମନ୍ତ ।୧୬ ।
ବିରକ୍ତି ପ୍ରକାଶି ପଣ୍ଡୁ ପତ୍ନୀ ଶଶି ବୋଇଲେ ଶୁଣ ରେ ମୂଢ଼ମତି,
ନ ପଚାରୁଣୁ ତୁ ହୋଇ କୁତୁକୁତୁ କହୁ କିଆଁ କିସ ମନେ ଚିନ୍ତି ।୧୭ ।
ଆଗକୁହା ଗୁଣ ବିପଦାବାହନ ଛାଡ଼ି ଛାଡ଼ ଶୀଘ୍ର ପଥ ମୋର,
ଅକାରଣେ କାଳ ନକର ଦୁର୍ବଳ ନଷ୍ଟ ଗରମ ହେଲାଣି ଶିର ।୧୮ ।
ଭୀମ ବାକ୍ୟେ ଧ୍ୟାନ ନ ଦେଇ ସାମାନ୍ୟ ମାରୁତି ବୋଇଲେ ଆହେ ଭ୍ରାତା,
ବହୁ ଦୂର ପଥ ଅତିକ୍ରମୀ ଏଥ ଆସିଛ ମନରୁ ଫେଡ଼ ଚିନ୍ତା ।୧୯ ।
କନ୍ଦ ଫଳ ମୂଳ ମିଳଇ ପ୍ରବଳ ସ୍ୱାଦିଷ୍ଟ ଏ ବନର ଅତ୍ୟନ୍ତ,
କ୍ଷୁଧା କର ଶାନ୍ତି ତେଜି ସବୁ ଭ୍ରାନ୍ତି ବିଶ୍ରାମ ଏଥେ କେଇ ମୁହୂର୍ତ୍ତ ।୨୦ ।
କି କାର୍ଯ୍ୟ ଏମନ୍ତ ବିଚାରିଣ ଚିତ୍ତ ଆସିଛ ଉତ୍ତରାଖଣ୍ଡ ବନେ,
କିଏ ତୁମେ ବୀର ଲାଗ ପରିବାର ପରିଚୟ ଦିଅ ଖୁସିମନେ ।୨୧ ।
ହେ ବାନର ରାଜ ବୃଥା କାର୍ଯ୍ୟ ତେଜ ମାଗୁ ନାହିଁ ମୁହିଁ ପରାମର୍ଶ,
ନିଶାକର ବଂଶ ଅନ୍ତର୍ଗତ ବଂଶ କୁରୁ ପଣ୍ଡୁ ପତ୍ନୀ କୁନ୍ତୀ ଶିଶ ।୨୨ ।
ନାମ ଭୀମସେନ ନ ପୁଛି ପ୍ରସନ୍ନ ପଥ ଛାଡ଼ ଯିବି ଲକ୍ଷ୍ୟ ସ୍ଥାନ,
ବ୍ୟର୍ଥ ଉପଦେଶ ବୃଦ୍ଧିକରେ ରୋଷ ହଟ ଛାଡ଼ ନ ବସ ମାର୍ଗେଣ ।୨୩ ।
ଭୀମ ରୋଷ ଦେଖି ପାବନୀ ଉପେକ୍ଷୀ ବୋଲନ୍ତି ଆଗେ ଅଛି ସଙ୍କଟ,
ଏ ପଥେ ଚଳିଲେ ମନା ନ ମାନିଲେ ବିପଦ ସହ ହୋଇବ ଭେଟ ।୨୪ ।
ଶୁଣି କ୍ରୋଧେ ଭୀମ ହୋଇ ତମ ତମ ବୋଲେ ତୁମେ ଛାଡ଼ ଚିନ୍ତା ମୋର,
ମାର୍ଗୁ ଉଠି ଶୀଘ୍ର ଯିବାକୁ ମୁଁ ବ୍ୟଗ୍ର ବିଳମ୍ବ ବ୍ୟର୍ଥେ କିମ୍ପାଇ କର ।୨୫ ।
ଅବୁଝା ପଥିକ ବୃଦ୍ଧ ଥକମକ ମୁହିଁ ଲଙ୍ଘି ଯାଅ ସ୍ୱଇଚ୍ଛାରେ,
ନିରାଶ ହୋଇଣ ଅଞ୍ଜନା ନନ୍ଦନ କହିଲେ ଭୀମସେନେ ଶେଷରେ ।୨୬ ।
ଦ୍ୱିତୀୟ ପାଣ୍ଡବ ଚିନ୍ତି ବ୍ରହ୍ମଭାବ ବୋଲନ୍ତି ହେ କପିଶ୍ରେଷ୍ଠ ଶୁଣ,
ପ୍ରାଣୀ ଶରୀରରେ ସମଗ୍ର ରୂପରେ ବସିଛନ୍ତି ପ୍ରଭୁ ନାରାୟଣ ।୨୭ ।
ଲଙ୍ଘିବି କେସନ ଶାସ୍ତ୍ରର ବଚନ ଶ୍ରୀଭଗବାନ ସ୍ୱରୂପ ଜ୍ଞାନ,
ମୋତେ ଅଛି ଜ୍ଞାତ ଅଳପ ବହୁତ ଲଙ୍ଘି ପାରେ ଏ ଗନ୍ଧ ମାଦନ ।୨୮ ।
ଯେଉଁ ପରକାରେ ଗୋଟିଏ ଲମ୍ଫରେ ଲଙ୍ଘିଲେ ବାତ ନନ୍ଦନ ସିନ୍ଧୁ,
ସେହି ପରକାରେ ମୁହିଁ ଲମ୍ଫକରେ ତୋଳି ଆଣି ପାରେ ନଭୁ ଇନ୍ଦୁ ।୨୯ ।
ମୃଦୁ୍ୟ ମୃଦୁ୍ୟ ହସି କୁନ୍ତୀରାଣୀ ଶିଶିରେ ବୋଲେ ସିନ୍ଧୁ ଲଙ୍ଘନକାରୀ,
କିଏ ସେ ମାରୁତି କୁହ ମୋର କତି ସଂଶୟ ମୋ ନାଶ କୃପାକରି ।୩୦ ।
ସେ କପି ପୁଙ୍ଗବ ଶକ୍ତିର ଅର୍ଣ୍ଣବେ ଅଗ୍ରଜ ମୋ ପ୍ରେରଣାର ସ୍ରୋତ,
ଅନୁପମ ବଳୀ ମହାଜ୍ଞାନଶାଳୀ ଭକତ ମାନଙ୍କ ଭକ୍ତି ପୋତ ।୩୧ ।

ଲଙ୍କାରେ ବନ୍ଦିନୀ ଜନକ ନନ୍ଦିନୀ ରାମ ପ୍ରିୟା ଖୋଜିବାକୁ ଯାଇ,
ଶତେକ ଯୋଜନ ଉଦଧି ଲଙ୍ଘିଣ ଗୋଟିଏ ଲମ୍ଫରେ ଥିଲେ ଡେଇଁ ।୩୨ ।
ବୀର ଅଗ୍ରଗଣ୍ୟ ସେହି ହନୁମାନ ମହାମହୀମଙ୍କ ମୁହିଁ ଭ୍ରାତା
ବଚନ ମୋ ଘେନ ଶମନ ସଦନ ପେଶିବି ବୃଦ୍ଧି କରିଲେ ଚିନ୍ତା ।୩୩ ।
କହୁଛି ଭଲରେ ନ ରହି ଭୂଲରେ ରାସ୍ତା ଦିଅ ଶୀଘ୍ର ଯିବି ଦୂର,
ନ ପରଖ ମୋର ସୀମା ଧଇର୍ଯ୍ୟର ସଂଯମ ବନ୍ଧ କରନା ଚୂର ।୩୪ ।
ହନୁମାନ ଧିରେ ଉତ୍ତର ଛଳରେ ବୋଇଲେ ଭାଇ କରନା ରୋଷ,
ବୃଦ୍ଧ ରୋଗୀ ମୁହିଁ ଉଠି ନ ପାରଇ ଅସମର୍ଥେ କରୁଣା ମରଷ ।୩୫ ।
ପୁଚ୍ଛ ମୋ ହଟାଇ ଯାଅ ଖୁସି ହୋଇ ନିଜ ପଥେ ଯେଣେ ତୁମ୍ଭ ଇଚ୍ଛା,
ବୟସାଧିକ୍ୟରୁ ପାରୁନି ପଥରୁ ଉଠି ଅଶକ୍ତତା ଟାଣେ କାଛା ।୩୬ ।
କ୍ଷୁବ୍ଧ ମନେ ଭୀମ ପୁଚ୍ଛ ଧରି ବାମ ହସ୍ତେ ଇଛିଲେ ଦେବେ ଘୁଞ୍ଚାଇ,
ହେଲେ ଆଶ୍ଚର୍ଯ୍ୟିତ ଦେଖି ବିପରୀତ ପୁଚ୍ଛ ସାମାନ୍ୟ ନ ହଲେ ଯହିଁ ।୩୭ ।
ପ୍ରୟୋଗି ଶକତି ପୁଚ୍ଛକୁ ମାରୁତି ବିଫଳ ହେଲାରୁ ଟେକିବାରେ,
ଭୂଜ ଦ୍ୱୟ ଥାପି ପୂର୍ଣ୍ଣଶକ୍ତ୍ୟାରୋପି ଅସଫଳ ବି ହେଲେ ଲକ୍ଷ୍ୟରେ ।୩୮ ।
ମୁଖ ମଣ୍ଡଳରୁ ସମଗ୍ର ଶରୀରୁ ସ୍ୱେଦବାରୀ ବହି ଝରଝର,
ହୋଇଲା ଆରକ୍ତ ବେଦନାରେ ସିକ୍ତ ଲଜ୍ଜାରେ ନତ ହୋଇଲା ଶିର ।୩୯ ।
ଯୋଡ଼ି ଦୁଇ ହସ୍ତ ପ୍ରଭଞ୍ଜନ ସୁତ ବାତ ସୁତେ କହିଲେ ବିନୟେ,
ଦୁର୍ବଚନ ପାଇଁ କୃପା ପ୍ରାର୍ଥୀ ମୁହିଁ କ୍ଷମାକର ପ୍ରସନ୍ନ ହୃଦୟେ ।୪୦ ।
ପ୍ରଭୁ କପି ବେଶେ ଆପଣ କିଏସେ ସିଦ୍ଧ ଗୁହ୍ୟକ ଦେବ ଗନ୍ଧର୍ବ,
ପଶୁଛି ଶରଣ ଧନ୍ୟ ମୋ ଜୀବନ କରିଲ ହରି ହରି ଗରବ ।୪୧ ।
ମୋରେ କୃପା ବହି ପରିଚୟ ଦେଇ ଜିଜ୍ଞାସାଗ୍ନି କର ନିର୍ବାପିତ,
କରୁଣା କରିଣ ଲେପିଣ ଚନ୍ଦନ ଶୀତଳ କର ଅଶାନ୍ତ ଚିତ୍ତ ।୪୨ ।
ଦେଇ ପରିଚୟ ଅଞ୍ଜନା ତନୟ ବୋଇଲେ ଶୁଣ ପାଣ୍ଡୁ ନନ୍ଦନ,
ବାନର ରାଜନ କେଶରୀ ମହାନ କ୍ଷେତ୍ରେ ପ୍ରଭଞ୍ଜନ ହୁଁ ଉତ୍ପନ୍ନ ।୪୩ ।
ହନୁମାନ ନାମ ଦାଶରଥି ରାମ ଭକତ ଅଧମ ମୁଁ ବାନର,
ପ୍ରଭୁଙ୍କ ଚରଣ ସଦା ଚିନ୍ତେ ମନ ପ୍ରଭୁ କାର୍ଯ୍ୟେ ସଦା ତତପର ।୪୪ ।
ଏ କଦଳୀ ବନେ ବସେ ଖୁସି ମନେ ରାମକଥା ଶୁଣାନ୍ତି ଗନ୍ଧର୍ବେ,
ମାତା ସୀତାଙ୍କର କୃପା ଶିରେ ମୋର ପ୍ରାପ୍ତ ହୁଏ ଦିବ୍ୟ ଭୋଗ ସର୍ବେ ।୪୫ ।
ଏ ମାର୍ଗରେ ଦେବେ ନିବାସନ୍ତି ସର୍ବେ ଅଗମ୍ୟ ନର ମାନଙ୍କ ପାଇଁ,
ରୋଷର ଶିକାର କାଳେ ହେବ କା'ର ତେଣୁ ରୋକୁ ଥିଲି ପଥ ମୁହିଁ ।୪୬ ।
କାଳେ କେହି ଦେବ ଅଭିଶାପ ଦେବ ଅବା କରିଦେବେ ତିରସ୍କାର,
ସୁରକ୍ଷାକୁ ଚିନ୍ତି ମନେ ଭରି ଭିତି ମାର୍ଗ ନିରୋଧୁ ଥିଲି ତୁମର ।୪୭ ।

ଯାଅ ସ୍ୱଇଚ୍ଛାରେ ଆନନ୍ଦ ମନରେ ଆଗେ ଅଛି ତଡ଼ାଗ ଇଚ୍ଛିତ,
ନେଇ ଶତପତ୍ର ଦ୍ରୌପଦୀଙ୍କୁ ପ୍ରୀତ କରାଅ ଅନୁଜ ବଳବନ୍ତ ।୪୮ ।
ପାଇ ପରିଚୟ କୁନ୍ତୀଙ୍କ ତନୟ ମନେ ମନେ ହୋଇଲେ ମୋଦିତ,
ଅଗ୍ରଜ ଚରଣେ ପଡ଼ି ତତକ୍ଷଣେ ସ୍ନେହଭରେ କଲେ ପ୍ରଣିପାତ ।୪୯ ।
ବୋଲେ ସଉଭାଗ୍ୟ ଆଜ ମୋ ଉଦୟ ହୋଇଛି ମିଳିଲା ଦରଶନ,
ଆଉ କାଣିଚାଏ କୃପା କପିରାଏ କରି କର ମୋ ଆଶା ପୂରଣ ।୫୦ ।
ଯେଉଁ ରୂପ ଧରି ମହୋଦଧି ପାରି କରି ହରି ଗଲ ଲଙ୍କାପୁର,
ସେ ରୂପେ ଦର୍ଶନ କରିବାରେ ମନ ଦେଖାଅ ସେ ରୂପ ଦୟାକର ।୫୧ ।
ହସି ହନୁମାନ ଭାଇ ଭୀମସେନ ବୋଲନ୍ତି ଦ୍ୱାପରେ ଅସମ୍ଭବ,
ତୁମ୍ଭରି ପକ୍ଷରେ ଅନ୍ୟ ମାନବରେ ସେ ରୂପ ସାକ୍ଷାତରେ ଦେଖିବ ।୫୨ ।
ଯୁଗ ଅନୁସାରେ ମର୍ତ୍ତ୍ୟ ମଣ୍ଡଳରେ ଘଟଣା ବିଧି କରେ ଘଟିତ,
ତହୁଁ କିଛି ଅନ୍ୟ ଘଟଣା ସାମାନ୍ୟ ହୋଇ ପାରେ ନାହିଁ ସଂଘଟିତ ।୫୩ ।
ସେ ରୂପ ଦର୍ଶନ କରିବାରେ ମନ ପରିତ୍ୟାଗୀ ନିଜ ପଥେ ଯାଅ,
ସ୍ୱକାର୍ଯ୍ୟ ସଂପାଦି ସୁଖି ହୁଅ ହୃଦିଆଶିଷ ଦେଉଛି ହର୍ଷେ ରୁହ ।୫୪ ।
ପଣ୍ଡୁଙ୍କ ନନ୍ଦନ ଅଗ୍ରଜ ବଚନ ଶ୍ରବଣେ ଘେନି କଲେ ପ୍ରାର୍ଥନା,
କରୁ ଅଛି ପଣ ଛାଡ଼ିବିନି ସ୍ଥାନ ଦିବ୍ୟ ସ୍ୱରୂପ ଦର୍ଶନ ବିନା ।୫୫ ।
କୁନ୍ତୀ ସୁତ ହଟ ଦେଖି ବାତ ଚାଟ ପ୍ରଦର୍ଶିଲେ ସ୍ୱରୂପ ବିଶାଳ,
ଯେଉଁ ରୂପ ଧରି ସିନ୍ଧୁ ହୋଇ ପାରି ନାଶିଥିଲେ ରାବଣର ବାଳ ।୫୬ ।
ଜାନକୀଙ୍କ ଠାବ କରିଣ ଅର୍ଣ୍ଣବ ଲଙ୍ଘି ଫେରି ରାମେ ଦେଲେ ବାର୍ତ୍ତା,
ପର୍ବତ ସମାନ ସ୍ୱରୂପ ଅନନ୍ୟ ତେଜେ ବଳୀ ସରୋରୁହ ଭର୍ତ୍ତା ।୫୭ ।
ପ୍ରକାଶେ ତାଙ୍କର ଆକାଶ ମଣ୍ଡଳ ଦୃଶ୍ୟମାନ ଯେହ୍ନେ ପ୍ରଜ୍ୱଳିତ,
ବିନ୍ଧ୍ୟଗିରି ସମରୂପ ଦେଖି ଭୀମ ମନେ ମନେ ହେଲା ଆଶ୍ଚର୍ଯ୍ୟିତ ।୫୮ ।
ତା'ର ଦୁଇ ନେତ୍ର ହୋଇଲା ମୁଦ୍ରିତ ବିକଳରେ ଯୋଡ଼ି ହସ୍ତ ଦୁଇ,
ଧନ୍ୟ ମୋ ଜୀବନ ବୋଲେ ଭୀମସେନ ନିସ୍ତରିଲି ନିସ୍ତରିଲି ମୁହିଁ ।୫୯ ।
ସ୍ୱରୂପ ଅଦ୍ଭୁତ ଦେଖି ଭ୍ରାତ ଭୀତ ଆଶ୍ଚର୍ଯ୍ୟ ଜନକ ଭୟାନକ,
ସାମର୍ଥ୍ୟ ସଂପନ୍ନ କର ସଂହରଣ ଏ ସ୍ୱରୂପ ଅଚଳ ମୈନାକ ।୬୦ ।
ସ୍ୱରୂପ ବିଚିତ୍ର ଦେଖିବାକୁ ନେତ୍ର କ୍ଳାନ୍ତ ଅସାମର୍ଥ୍ୟ ପ୍ରକାଶଇ,
ତୁମ ପରି ବୀର ଥାଉଣୁ ଅସୁର ନାଶନେ ଶ୍ରୀରାମ ରଘୁସାଇଁ ।୬୧ ।
କି କାରଣେ ରଣେ ଗଲେ ଅକାରଣେ ଭାବନା ଆନ୍ଦୋଳଇ ହୃଦୟ,
ଏହାର ବୃତ୍ତାନ୍ତ କହି ମୋର ଚିତ୍ତ ଶାନ୍ତ କରନ୍ତୁ ହୋଇ ସଦୟ ।୬୨ ।
ସ୍ୱସ୍ୱରୂପେ ଆସି ମୃଦ୍ୟୁ ମୃଦ୍ୟୁ ହସି ସମଝାଇଲେ ଅଞ୍ଜନା ବାଳ,
ଏକେଲା ସମର୍ଥ ନାଶନେ ସମସ୍ତ ଲଙ୍କା ନିବାସୀ ରାକ୍ଷସ କୁଳ ।୬୩ ।

ବିଧିର ବିଧାନ କେ କରିବ ଆନ କରିଥିଲେ ସେହି ପରକାର,
ଶ୍ରୀରାମଙ୍କ କୀର୍ତ୍ତି ବୃଦ୍ଧି ପାଇ କ୍ଷିତି ବକ୍ଷେ ହୋଇଥାନ୍ତା କି ବିସ୍ତାର ।୬୪ ।
ପ୍ରଭୁ ଗୁଣ ଗାଇ ଜୀବେ ମୁକ୍ତି ପାଇ ଉଦ୍ଧାର କେହ୍ନେ ବା ହୋଇଥାନ୍ତେ,
ଧରମର ପଥ କରିଣ ପ୍ରଶସ୍ତ କି ଧର୍ମ ଧ୍ୱଜା ଉଡ଼ାଇ ଥାନ୍ତେ ।୬୫ ।
ପାତକି ମୋ ପରି କାହା ରାହା ଧରି କପି ଯୋନୀରୁ ମୁକ୍ତି ପାଆନ୍ତା,
ମାନି ପିତୃ ସତ୍ୟ ଆଉ କେଉଁ ପୁତ୍ର ବନକୁ ଗମନ କରିଥାନ୍ତା ।୬୬ ।
ପାଖରେ ବସାଇ ହୃଦୟେ ଲଗାଇ ସୌଗନ୍ଧିକ ବନ ଯିବା ରାସ୍ତା,
ପାବନୀ ବତାଇ ଶିରେ ହସ୍ତ ଫେଇ ବର୍ଣ୍ଣିଲେ ଚାରି ବର୍ଣ୍ଣ ବାରତା ।୬୭ ।
ଭୀମ ହନୁମାନ ଏକ ଅଂଶୁ ଜନ୍ମ ଦେହ ମନ ଦୁଇ ଏକାକାର,
ରୁଦ୍ର ଅବତାର ଅଞ୍ଜନା କୁମର ସ୍ପର୍ଶେ ଭୀମ ଥକ୍କା ହେଲା ଦୂର ।୬୮ ।
କେଶରୀ ଆତ୍ମଜ ସସ୍ନେହେ ଅନୁଜ ଭୀମଙ୍କୁ ବୋଇଲେ ବାବୁ ଶୁଣ,
ମାଗି ନିଅ ବର ଯାହା ଇଚ୍ଛା ତୋର ବ୍ୟର୍ଥ ଯାଏ ନାହିଁ ମୋ ଦର୍ଶନ ।୬୯ ।
କରିବି ନିଧନ ଦୁଷ୍ଟ ଦୁର୍ଯ୍ୟୋଧନ କହିବୁ ଯଦି ଭ୍ରାତା ସହିତ,
ବାନ୍ଧି ପଦ ହସ୍ତ ତୁମ୍ଭ ପଦଗତ କରିବି କୁହ ମୋର ଅଗ୍ରତ ।୭୦ ।
ଯଦି ଇଚ୍ଛା ତୋର ଧ୍ୱଂସିବି ନଗର ଗଚାଡ଼ି ବିଶାଳ ପରବତ,
ଯେଉଁ ନଗରରେ ବସେ ନିଦ୍ୱନ୍ଦ୍ୱରେ ଶତ୍ରୁ ତୋର ଧୃଷ୍ଟରାଷ୍ଟ୍ର ପୁତ୍ର ।୭୧ ।
ମନରେ ପ୍ରସନ୍ନ ହୋଇ ଭୀମସେନ ଗଦ୍ଗଦ ମୁଦ୍ରାରେ ବୋଲେ ଗୀର,
ହେ ବାନର ଈଶ ତୃପ୍ତ ମୋ ମାନସ କୃପାଦୃଷ୍ଟି ଅଭିଷ୍ଟ ମୋହର ।୭୨ ।
ଦୟା ଦୃଷ୍ଟିପାତ କଲେ ପରାଜିତ ଶତ୍ରୁ ଆପେ ହୋଇବ ନିଶ୍ଚୟ,
ସେତିକି କରୁଣା ଥାଉ ମହାମନା ଭୟ ଆମ୍ଭଙ୍କୁ କରିବ ଭୟ ।୭୩ ।
ଅଞ୍ଜନାର ବାଳ ବୋଇଲେ ନିଷ୍ଫଳ ଦରଶନ ମୋର ହେବ ନାହିଁ,
ତୁମ୍ଭେ ମୋର ଭାଇ ଅବଶ୍ୟ ଏ ପାଇଁ ପ୍ରିୟ କିଛି କରିବଇଁ ମୁହିଁ ।୭୪ ।
ଦେଉଛି ବଚନ ତୁମର ଗର୍ଜନ ସାଥେ ମିଶି ରଣେ ମୋ ଗର୍ଜନ,
ଶତ୍ରୁ ହୃଦେକମ୍ପ ଯେହ୍ନେ ଭୂମିକମ୍ପ ସର୍ଜି ଭେଜିବ ଯମ ସଦନ ।୭୫ ।
ଅର୍ଜ୍ଜୁନ ରଥରେ ରହି ଧ୍ୱଜା ପରେ କରିବି ସିଂହନାଦ ଭୀଷଣ,
ଅଇରି ଶ୍ରବଣ ଘେନି ସେ ଗର୍ଜନ ଦେଖିବ ସମ୍ମୁଖେ ମରଣ ।୭୬ ।
ଚଳିବ ସୁଖରେ ସ୍ମରିବ ମନରେ କେବେ କେବେ ହେଲେ ଆବଶ୍ୟକ,
ଏ ରହଣୀ ସ୍ଥାନ ପ୍ରକଟ ଯେସନ ନ ହୋଇବ ଜରାସନ୍ଧାନ୍ତକ ।୭୭ ।
ଏତେ ଉଚ୍ଚାରଣ କରି ହନୁମାନ ସହସା ହୋଇଲେ ଅନ୍ତର୍ଦ୍ଧାନ,
ଭ୍ରାତା ଦରଶନ ପାଇ ଭୀମସେନ ହର୍ଷୋଲ୍ଲସିତ ହୋଇଲେ ମନ ।୭୮ ।
ବୟାଳିଶ ଛାନ୍ଦ ପ୍ରଭୁଙ୍କ ଆନନ୍ଦ ପାଇଁ କୃପାରୁ ହେଲା ସମାପ୍ତ,
ସୁରେଶ ବର୍ଣ୍ଣଇ ଅଞ୍ଜନା ତନୟୀ ହରି ପଦାବ୍ଜେ ହୋଇ ଆଶ୍ରିତ ।୭୯ ।



# ତ୍ରିଚତ୍ୱାରିଂଶ ଛାନ୍ଦ

**ରାଗ-ପୂରବୀ(ସତ୍ୟଭାମାଙ୍କ ଗର୍ବଚୂର୍ଣ୍ଣ)**

ଶଙ୍କର କୁମାର ପ୍ରଭୁ ଲମ୍ବୋଦର ପାଦ ତଳେ ନମି ବାରମ୍ବାର
ଶମ୍ଭୁ ଅବତାର ପବନ କୁମାର ଚରଣରେ କରିଣ ଜୁହାର ସେ
କରେ ମିନତି କରି ପ୍ରଣତି
ମାଗୁଛି ପଦ କହିବ ଶ୍ରୁତି ସେ ।୧ ।
ଅପୂର୍ବ ଚରିତ ଭକ୍ତି ରସେ ପ୍ଲୁତ ଭକ୍ତି ଭାବନାକୁ ମନେ ନେଇ
ଭକତି ରଙ୍ଗର ରଙ୍ଗିନ ଜରୀର ଦେଖିଲେ ଚଷମା ଦୃଢ଼େ ନାଇ ସେ
ଅଶାନ୍ତ ହୃଦ ହୋଇବ ଶାନ୍ତ
ଏ ହନୁମାନ ଚରିତାମୃତ ସେ ।୨ ।
ଦ୍ୱାରକା ଅଧୀଶ ଶ୍ରୀକୃଷ୍ଣ ବିଶ୍ୱେଶ ପ୍ରାଣପ୍ରିୟା ବାମା ସତ୍ୟଭାମା
ପ୍ରସନ୍ନତା ପାଇଁ ସୁରପୁର ଯାଇ ପାରିଜାତ ଶୁଦ୍ଧ ପୁଷ୍ପୋତ୍ତମା ସେ
ଆଣି ଦେବାରୁ ଚିତ୍ତେ ତାଙ୍କର
ଗଜୁରେ ଅଭିମାନ ଅଙ୍କୁର ସେ ।୩ ।
ଭାବିଲେ ମନରେ ସାରା ସଂସାରରେ ମୋ ପରି ନାହିଁ କେହି ସୁନ୍ଦରୀ
ସାରା ସଂସାରର ଅଟେ ଯେ ଆଧାର ତାଙ୍କର ମୁଁ ଯେଣୁ ପ୍ରାଣେଶ୍ୱରୀ ସେ
ପ୍ରକାଶିଲେ ଦିନେ ଶବଦରେ
ସୀତା ମୋ ଠୁଁ କି ବଳୀ ଶୋଭାରେ ସେ ।୪ ।
ରାମ ଅବତାରେ ତାହାଙ୍କ ପଛରେ ବୁଲିଲ କୁହ ନାଥ କିମ୍ପାଇଁ
ମୋଠୁ ଗୁଣବତୀ ଜନକ ଦୁହିତି କେଉଁ ଗୁଣେ ଅବା ଶ୍ରେଷ୍ଠ ଥାଇଁ ସେ
ଗର୍ବ ନାଶନ ଯଶୋଦାଧନ
ଶୁଣି ରହିଲେ ହୋଇ ମଉନ ସେ ।୫ ।
ଚକ୍ର ସୁଦର୍ଶନ ମନେ ଅଭିମାନ ଶଚିପତି ବଜ୍ରକୁ ହରାଇ
ଦୁର୍ବାସା ମହର୍ଷି ଦୋଷା ଦୋଷ କଷି ଚତୁର୍ଦ୍ଦଶ ଭୁବନ ବୁଲାଇ ସେ
ଲୋକାଲୋକ ଗିରି ଗର୍ବହାରୀ
ଗର୍ବ ଯେଣୁ ସହା ହରି ସ୍ମରି ସେ ।୬ ।
ବଳ ଅତୁଳିତ ପରାକ୍ରମାମିତ ଯେଣୁ ଅଖଣ୍ଡ ତେଜ ସମ୍ପନ୍ନ
ଅତିବେଗବାନ ହସ୍ତେ ନାରାୟଣ ହୋଇ ଥିବାରୁ ଶୋଭାୟମାନ ସେ
ଦିନୁଦିନୁ ବଢ଼ି ଅଭିମାନ
ପ୍ରକାଶେ କର୍ମ ମନ ବଚନ ସେ ।୭ ।
ପଶି ସୁରପୁରେ ନତ କରି ସୁରେ କଲେ ଅମୃତ ଭାଣ୍ଡ ହରଣ
ରାଜା ଶକ୍ରଜିତ ଆଦରି ପରାସ୍ତ ପଶିବାରୁ ଚରଣେ ଶରଣ

ଦେବ ଦାନବ ରଣେ ତାଣ୍ଡବ
ରଚି ଜିତିଲେ ହୃଦ ମାଧବ ସେ ।୮ ।
ବିନତା ନନ୍ଦନ ଗରୁଡ଼ର ମନ ଶକ୍ତି ସ୍ୱବଳ ବିକ୍ରମ ନେଇ
ଉଡ଼ିବା କ୍ଷମତା କାର୍ଯ୍ୟେ କୁଶଳତା ପ୍ରଭୁ ପ୍ରିୟତା କ୍ଷିପ୍ରତା ପାଇଁ
ଗର୍ବ ମାନସ ପୋଷି ବିଶେଷ
କରିଲେ ଅହଂକାର ପ୍ରକାଶ ସେ ।୯ ।
ପ୍ରଭୁଙ୍କ ବାହନ ସେବକ ବ୍ୟଜନ ସଖା ଆସନ ଓ ରଥ ଧ୍ୱଜା
ରୂପରେ ବିଖ୍ୟାତ ହୋଇବାରୁ ଚିତ୍ତ ଆବୋରିଲା ଅଭିମାନ ଅଜା* ସେ *ମାୟା
ପ୍ରୀତି ଭାଜନ ଏ ତିନିମୂର୍ତ୍ତି
ଗର୍ବ ଦେଖି ଦୁଃଖି କ୍ଷିତି ପତି ସେ ।୧୦ ।
ଗରବ ହରଣ କଥା ଚିନ୍ତି ମନ ସ୍ମରିଲେ ସମୀରଣ ନନ୍ଦନ
ପ୍ରଭୁଙ୍କର ଚିତ୍ତେ ସଙ୍କଳ୍ପ ଉଦିତେ ଦ୍ୱାରାବତି ପୁରେ ଆଗମନ ସେ
ପ୍ରବେଶି ରାଜକୀୟ ଉଦ୍ୟାନ
ବୃକ୍ଷେକରେ କଲେ ଆରୋହଣ ସେ ।୧୧ ।
ଭୂଧର ଆକାର ଅଞ୍ଜନୀ କୁମର ଦେଖିଣ ଉଦ୍ୟାନ ପ୍ରହରୀ
ବାଧା ଦେବା ପାଇଁ ପହଁଚିଲେ ଧାଇଁ ଉଚ୍ଚସ୍ୱରେ ରେ ରେ କାର କରି ସେ
ହନୁମାନ ଆଗ୍ନେୟ ଲୋଚନ
ଭୀତ ହେଲେ କରି ଦରଶନ ସେ ।୧୨ ।
ବୃକ୍ଷୁଁ ବୃକ୍ଷେ ଡେଇଁ ମିଷ୍ଟ ଫଳ ଖାଇ କିଛି ଫିଙ୍ଗନ୍ତି ଭକ୍ଷି ଅର୍ଦ୍ଧେକ
ସମଗ୍ର ଉଦ୍ୟାନ ଭାଙ୍ଗି ଡାଳମାନ ନଷ୍ଟ କରିଲେ ବୃକ୍ଷ ଅନେକ ସେ
ଦ୍ୱାରକାଧୀଶଙ୍କୁ ସମାଚାର
ଶୀଘ୍ର ନେଇ ଦେଲା ଅନୁଚର ସେ ।୧୩ ।
ବୈନତେୟ ରାଇ ଜଗତର ସାଇଁ ବୋଇଲେ ହେ ବିନତା ନନ୍ଦନ
କାହୁଁ ବଳବାନ କପି ରାଜୋଦ୍ୟାନ ମଧ୍ୟେ ଆସି ବଳେ ପ୍ରବେଶିଣ ସେ
ନଷ୍ଟ ଭ୍ରଷ୍ଟ କରୁ ଅଛି ଦୁଷ୍ଟ
ତା'ରେ ବାନ୍ଧି ଆଣ ମୋ ନିକଟ ସେ ।୧୪ ।
ସମସ୍ତ ସଇନ ପର୍ଯ୍ୟାପ୍ତରେ ଘେନ ପରିସ୍ଥିତି କରି ଆକଳନ
କିଏ ସେହି ବୀର ଚିତ୍ତ ତା' ଅସ୍ଥିର ଆସି କର୍ମ କରୁଛି ଏସନ ସେ
ଖଗପତି ଅହଂପୂର୍ଣ୍ଣ ଚିତ୍ତ
ପ୍ରଭୁ ନିର୍ଦ୍ଦେଶ ଦେଲା ଆଘାତ ସେ ।୧୫ ।
ମନରେ ଭାବଇ ଛାର କପି ପାଇଁ ସେନା ନେବା କି ବା ଦରକାର
ତା' ପାଇଁ ପର୍ଯ୍ୟାପ୍ତ ଏକା ଅଟେ ମୁଁ ତ କହିଲା କରିଣ ଅହଂକାର ସେ

ବାନ୍ଧି ଆଣ ଶୀଘ୍ର ଯେନ ତେନ
ହସି ଆଦେଶିଲେ ନାରାୟଣ ସେ ।୧୬ ।
ମୁରାରୀ ବାହନ ଯାଇ ରାଜୋଦ୍ୟାନ ଦେଖିଲେ କପି ନିଶ୍ଚିନ୍ତ ମନେ
ଭକ୍ଷୁ ଅଛି ଫଳ ଚଞ୍ଚଳ ଚଞ୍ଚଳ ବସି ଏକ ବୃକ୍ଷେ ଏକଧ୍ୟାନେ ସେ
କ୍ରୋଧ ଆବେଶେ କହିଲେ ରୋଷେ
ଧୃଷ୍ଟ ବାନର ତୁହି କିଏ ସେ ସେ ।୧୭ ।
ଉପେକ୍ଷା ଦୃଷ୍ଟିରେ ଚାହିଁ ମାତ୍ର ବାରେ ବୋଲେ କେଶରୀ ନନ୍ଦନ ତା'ରେ
ଦେଖୁଛୁ ବାନର କାର୍ଯ୍ୟ କରେ ତାର ନାହିଁ ନବୀନତା ଏ କାର୍ଯ୍ୟରେ ସେ
ଯାହ ନିଜେ ନିଜେ ନିଜ ପଥେ
ଛାଡ଼ି ମୋତେ ନିଶ୍ଚିନ୍ତରେ ଏଥେ ସେ ।୧୮ ।
ବଳ ଅଭିମାନେ ତାର୍କ୍ଷ୍ୟ ହନୁମାନେ ବୋଲେ ଚାଲ ମହାରାଜ ପାଶ
ଭାଷେ ହନୁମାନ ସେ କେଉଁ ରାଜନ ତାଙ୍କ ପାଶରେ ମୋ କାର୍ଯ୍ୟ କିସ ସେ
କ୍ରୋଧ ବଶେ ବିନତା ନନ୍ଦନ
ଦେଖାଇଲା ନିଜ ଟାଣ ପଣ ସେ ।୧୯ ।
କହେ ଖଗପତି ଆରେ ମୂଢ଼ମତି ଅଜ୍ଞାନ ପ୍ରାୟ ତୋର ଆଚାର
ବିଷ୍ଣୁଙ୍କ ବାହନ ମହା ବଳବାନ ଜାଣି ନାହୁଁ ବଳବୀର୍ଯ୍ୟ ମୋର ସେ
ବଳେ ଧରିଣ କରି ବନ୍ଧନ
ନେବି ରାଜନ ପାଶେ ଏ କ୍ଷଣ ସେ ।୨୦ ।
ଅବଜ୍ଞା ଚାହାଣି ପକାଇ ପାବନୀ ବୋଲେ ତୁଚ୍ଛ ପକ୍ଷୀ ତୋହ ପରି
ଦେଖିଛି ବହୁତ ଦେଖା କରାମତ ଦେଖୁ ନୟନ ଦୁଇ ମୋହରି ସେ
ବଳାଭିମାନୀ ବିନତା ସୁତ
ବାକ୍ୟ ଶ୍ରବଣେ ହେଲା ଆରକ୍ତ ସେ ।୨୧ ।
କ୍ରୋଧ ଆବେଶରେ କପିଈଶ ପରେ କରିଲା ପ୍ରଚଣ୍ଡ ଆକ୍ରମଣ
କଙ୍କି ସହ ଯେହ୍ନେ ଖେଳନ୍ତି ପ୍ରସନ୍ନେ ବାଳେ ସେହିପ୍ରାୟ ହନୁମାନ ସେ
କ୍ରୀଡ଼ା କରନ୍ତି ଆନନ୍ଦ ମନେ
ଗରୁଡ଼ ଲଢ଼ଇ ପ୍ରାଣ ପଣେ ସେ ।୨୨ ।
ଯୁଦ୍ଧ ବେଳୁ ବେଳ ହେବାରୁ ପ୍ରବଳ ଗରୁଡ଼ଙ୍କ ଦୂରାଗ୍ରହ ଜାଣି
ପୁଚ୍ଛେ ଦେଲେ ବାନ୍ଧି ପୀଡ଼ା କୋପେ କାନ୍ଦି ବିନୟେ ବିନତା ପୁତ୍ରମଣି ସେ
ନିବେଦିଲେ ଆର୍ତ୍ତ ସ୍ୱରରେ
ଡାକି ଆସିଥିଲି ଦୂତ ରୂପରେ ସେ ।୨୩ ।
ଦ୍ୱାରକାଧିପତି ସଂସାରରଗତି ମୁକ୍ତି ଦାତା କୃଷ୍ଣ ଭଗବାନ
ପେଶିଥିଲେ ମୋତେ ଦୟାକର ଚିତ୍ତେ କର ମୋ ସହିତ ଆଗମନ ସେ

ପୁଚ୍ଛ ବନ୍ଧନ ଫେଇ ମାରୁତି
ବୈରୀ ଭୁଲିଲେ ଶୁଣି ବିନତି ସେ ।୨୪ ।
କୋଶଳ ଅଧୀଶ ଜାନକୀଙ୍କ ଈଶ ଶ୍ରୀରାମ ଚନ୍ଦ୍ରଙ୍କର ମୁଁ ଭକ୍ତ
ଦ୍ୱାରକା ଅଧୀଶ ଗୋପୀଗୋପାଳେଶ ପାଶେ କିଂପା ହେବି ଉପସ୍ଥିତ ସେ
ଶୁଣି ଗରୁଡ଼ ବତାଏ ଭେଦ
ଶ୍ରୀରାମ କୃଷ୍ଣ ଦୁହେଁ ଅଭେଦ ସେ ।୨୫ ।
ଗରୁଡ଼ ନନ୍ଦନ ବୋଲଇ କଥନ ତୁମ୍ଭର ଏହି ସର୍ବଥା ସତ୍ୟ
କିନ୍ତୁ ମନ ମୋର ରମେ ଧନୁର୍ଧର ଶ୍ରୀରାମ ଚନ୍ଦ୍ର ଚରଣେ ନିତ୍ୟ ସେ
ଅନ୍ୟ କା'ର ସେବାରେ ହାଜର
କେବେ ନ ହେବି ମୁଁ ପକ୍ଷୀବର ସେ ।୨୬ ।
ବାଧ ଯିବା ପାଇଁ ଗରବ ଦେଖାଇ ଟାଣେ ହଟ କରିବାରୁ ଖଗ
ଧିରେ ଧରି ତା'ରେ ଫିଙ୍ଗି ଅବ୍ଧି ନୀରେ ଗମନ କଲେ ମଳୟ ନଗ ସେ
ସିନ୍ଧୁ ନୀରେ ଭିଜି ଲଜ୍ଜା ପାଇ
କୃଷ୍ଣ ନିକଟେ ହୋଇଲେ ଯାଇ ସେ ।୨୭ ।
ଖଗେ ସଦ୍ୟ ସ୍ନାତ ଦେଖି ଜଗନ୍ନାଥ ହାସ୍ୟେ ବୋଇଲେ ଅକାଳେ ସ୍ନାନ
କରିଲ କିମ୍ପାଇଁ କୁହ ହେ ଫିଟାଇ ମନ ହେଉ ସଂଶୟ ବିହୀନ ସେ
ପଡ଼ି ଚରଣେ ଗରୁଡ଼ ଆର୍ତ୍ତେ
ବର୍ଣ୍ଣେ ବାନର କର୍ତ୍ତୃତ୍ୱ ଯେତେ ସେ ।୨୮ ।
ସେ ଯେଉଁ ବାନର ମହା ପାରିବାର ସାମାନ୍ୟ ନୁହେଁ ଅସାଧାରଣ
ଧରି ମୋତେ ଧିରେ ଫିଙ୍ଗିଣ ଅବ୍ଧିରେ ବାଧ କରି କରାଇଛି ସ୍ନାନ ସେ
ବୁଡ଼ାଇଛି ମୋର ସନମାନ
ଅପାରଗେ କ୍ଷମ ଭଗବାନ ସେ ।୨୯ ।
ମନେ ମନେ ହସି ଭକ୍ତକୁଳ ଶଶି ବୋଇଲେ ହେ ବିନତା ନନ୍ଦନ
ସେବେ ସେ ଶ୍ରୀରାମ ତୁଚ୍ଛ ଅନ୍ୟ ନାମ ଭକ୍ତ ପ୍ରବର ସେ ହନୁମାନ ସେ
ମଳୟ ଗିରି ପରେ ଯାଇଣ
ବସିଲେଣି ଶ୍ରୀରାମେ ଚିନ୍ତିଣ ସେ ।୩୦ ।
ଅତିଶୀଘ୍ର ଯାଅ ସସମ୍ମାନେ କୁହ ସ୍ମରି ଅଛନ୍ତି ରଘୁନନ୍ଦନ
ଦ୍ୱାରକାଧିପତି ଚରଣେ ପ୍ରଣତି କରି ଗମିଲେ ବିନତା ସୁନ ସେ
ଯାଇ ମଳୟ ଗିରିରେ ହେଲେ
କୃଷ୍ଣଚନ୍ଦ୍ରାଦେଶ ପରଶିଲେ ସେ ।୩୧ ।
ପ୍ରିୟେ ସତ୍ୟଭାମା ବାମେ ରୁହ ବାମା ଜାନକୀଙ୍କର ସ୍ୱରୂପ ଧରି
ଭକ୍ତ ହନୁମାନ ନ ଜାଣଇ ଅନ୍ୟ ଛାଡ଼ି ରାଘବ କୋଦଣ୍ଡ ଧାରୀ ସେ

ଚକ୍ର ରାଜଙ୍କୁ ପୁଣି ହକାରି
ପ୍ରବେଶ ପଥ ରୁନ୍ଧ ଆବୋରି ସେ ।୩୨ ।
ବିନା ଆଦେଶରେ ରାଜ ପ୍ରାସାଦରେ କାହାରିକୁ ପ୍ରବେଶ ନ ଦେବ
ଚକ୍ର ଯିବା ପରେ ଧନୁର୍ବାଣ କରେ ଧରି ଶ୍ରୀରାମ ରୂପେ ମାଧବ ସେ
ସ୍ୱୟଂ ହେଲେ ସିଂହାସନାସୀନ
ଲୀଳାମୟଙ୍କ ଲୀଳା ମହାନ ସେ ।୩୩ ।
ବିନତା ତନୟୀ ତୀବ୍ରବେଗେ ଯାଇ ମଳୟାଚଳରେ ପହଞ୍ଚିଲେ
ହୃଦେ ଡରି ଡରି ଅନୁନୟ କରି କେଶରୀ ନନ୍ଦନଙ୍କୁ କହିଲେ ସେ
ଦ୍ୱାରକାରେ ଶ୍ରୀରଘୁନନ୍ଦନ
ସ୍ମରିଛନ୍ତି ଅଞ୍ଜନା ନନ୍ଦନ ସେ ।୩୪ ।
କରୁଣା ନିଧାନ ମୋ ଜୀବନ ଧନ ରାମଚନ୍ଦ୍ର ସ୍ମରିଛନ୍ତି ଶୁଣି
ହର୍ଷେ ବିମୋହିତ ହୋଇ ହନୁମନ୍ତ ବୋଲେ ଧନ୍ୟ ତୁମେ ଖଗମଣି ସେ
ଆଗେ ଚଳ ଯାଉଛି ପଶ୍ଚାତେ
ସମ୍ବାଦ ଦିଅ ପ୍ରଭୁ ଅଗ୍ରତେ ସେ ।୩୫ ।
ମନେ ଚିନ୍ତେ ଖଗ ବୃଦ୍ଧ ଶାଖାମୃଗ କେବେ ପହଞ୍ଚିବ ଦ୍ୱାରାବତୀ
ଭୟେ ନ ଭାଷିଣ ଶ୍ରୀପଦ ଚିନ୍ତିଣ ଅଭିମାନେ ଧରି ତୀବ୍ରଗତି ସେ
ଚଳଇ ଗରୁଡ଼ ପ୍ରଭୁ କତି
ଭାବେ ଗତିରେ ପାରିବି ଜିତି ସେ ।୩୬ ।
ପବନ କୁମର ଦ୍ୱାରାବତୀପୁର ପହଞ୍ଚି ରାଜସଦନ ଦ୍ୱାରେ
ପ୍ରବେଶିବା ବେଳେ ସୁଦର୍ଶନ ବଳେ ପଥ ରୋଧିଲା ପ୍ରଭୁ ଆଜ୍ଞାରେ ସେ
ହନୁ ଧରି ମୁଖରେ ପୁରାଇ
ପ୍ରଭୁ ପାଶରେ ମିଳିଲେ ଯାଇ ସେ ।୩୭ ।
ଦେଖି ପ୍ରାଣନାଥ ସ୍ୱୟଂ ରଘୁନାଥ ସୌମ୍ୟକାନ୍ତ କୋଦଣ୍ଡ ଧାରଣ
ପଡ଼ିଣ ଚରଣେ ସଜଳ ନୟନେ ମୁଖାରବିନ୍ଦ କରି ଦର୍ଶନ ସେ
ବୋଲେ ଅତୀବ ବିନୟ ହୋଇ
ବୋଲେ ନିସ୍ତରିଲି ପ୍ରଭୁ ମୁହିଁ ସେ ।୩୮ ।
ବାମାଙ୍ଗକୁ ଚାହିଁ ପାବନୀ ବୋଲଇ ମାତା ଜାନକ ସୁତା କାହାନ୍ତି
ଏ ଦାସୀ କିଏ ସେ ବସାଇଛ ପାଶେ ଅଥବା ଏ ମୋ ଚିତ୍ତର ଭ୍ରାନ୍ତି ସେ
ସତ୍ୟଭାମା ଶୁଣିଣ ଲଜ୍ଜିତ
ସୌନ୍ଦର୍ଯ୍ୟାଭିମାନ ହେଲା ଧ୍ୱସ୍ତ ସେ ।୩୯ ।
ଏ କାଳେ ଖେଚର ପହଞ୍ଚିଣ ଖର ଦେଖି ହନୁମାନ ବିଦ୍ୟମାନ
ମୁଖ କରି ନତ ହୋଇଣ ବିସ୍ମିତ କାକୁସ୍ଥେ ହେଲା ଦଣ୍ଡାୟମାନ ସେ

ବଳ ଅଭିମାନ ଅହଂକାର
ଖଗପତିର ହୋଇଲା ଚୂର ସେ ।୪୦ ।
ଗରବ ଗଞ୍ଜନ ରୁକ୍ମିଣୀ ରମଣ ମୁଖରେ ସ୍ମିତ ହାସ୍ୟ ଖେଳାଇ
ବୋଇଲେ ମାରୁତି ସିଂହଦ୍ୱାର କତି ରୋକିଲା କି କେ ଦମ୍ଭ ଦେଖାଇ ସେ
ମୁଖରୁ କାଢ଼ି ସୁଦରସନ
ସନ୍ତୋଷେ କପି କଲା ବର୍ଣ୍ଣନ ସେ ।୪୧ ।
ପ୍ରବେଶ ପଥରେ ଏହି ମୋ ପଥରେ ଥିଲା ପଥ ଓଗାଳି ମୋହର
ତୁମ୍ଭ ଦରଶନ ମଧ୍ୟେ ବ୍ୟବଧାନ ଭିଆଉଥିଲା ଏ ସହସ୍ରାର ସେ
ବିନା ପରଖେ ମୁଖରେ ରଖି
ଆସିଲି ଶୀଘ୍ର ବିଳମ୍ବ ଲକ୍ଷି ସେ ।୪୨ ।
ବିନତା ନନ୍ଦନ ଚକ୍ର ସୁଦର୍ଶନ ପ୍ରଭୁ ପ୍ରିୟା ସତ୍ୟଭାମା ଗର୍ବ
ହୋଇଣ ନିମିତ୍ତ ଭକ୍ତ ହନୁମନ୍ତ ପ୍ରଭୁ ଇଚ୍ଛାରେ କରି ଖରବ ସେ
ପ୍ରଭୁ ଚରଣେ କରି ବନ୍ଦନ
ମଳୟାଚଳେ କଲେ ଗମନ ସେ ।୪୩ ।
ପାବନୀ ମହିମା ଅନନ୍ତ ତା ସୀମା ନିର୍ଣ୍ଣୟ କରି ପାରେ କିଏ ସେ
ଗରବ ନାଶନ ଭକ୍ତ ପ୍ରାଣଧନ ଚରିତ ଅଧ୍ୟାୟ ତେୟାଳିଶେ
ହୋଇଲା ଶେଷ ଭଣେ ସୁରେଶ
କରୁଣା କରି ଗରବ ନାଶ ।୪୪ ।



# ଚତୁଶ୍ଚତ୍ୱାରିଂଶ ଛାନ୍ଦ

**ରାଗ-ଲଳିତ କାମୋଦୀ(ଶନି ହନୁମାନ ଯୁଦ୍ଧ)**

ଶୈଳସୁତା ସୁତ ପାଦେ ପ୍ରଣିପାତ କରିକି,
ନମୁଛି ହରିଙ୍କ ଭକ୍ତ ଶିରୋମଣି ହରିଙ୍କି ।
କର୍ଣ୍ଣରେ ପଦକୁ ପଦ କୃପାକରି କହିକି,
ଭକ୍ତେ ଉଦ୍ଧାରିବେ ଯେହ୍ନେ କରି ହରି କରୀକି ।୧ ।
ପ୍ରତାପରେ ଶନି ସତାନ୍ତି ଯେତେକ ଭକତ,
ପାବନୀ ନିଜ ତେଜେ ଯେମନ୍ତ କରନ୍ତି ହତ ।
ଅଧ୍ୟାୟ ଚତୁଶ୍ଚତ୍ୱାରିଂଶେ ହୋଇବ ବର୍ଣ୍ଣିତ,
ହନୁମାନ ଚରିତାମୃତ ଅପୂର୍ବ ଚରିତ ।୨ ।
ଏକଦିନ କଥା ଦିନାନ୍ତ ସମୀପ କାଳରେ,
ସୂର୍ଯ୍ୟଦେବ ରଥ ଥିଲା ଅସ୍ତାଚଳ ପାଶରେ ।
ଶୀତଳ ସମୀର ବହୁଥିଲା ମନ୍ଦ ଗତିରେ,
ସେତୁବନ୍ଧେ ଚାହିଁ ବସିଥିଲେ କପି ଧ୍ୟାନରେ ।୩ ।
ଶ୍ରୀରଘୁ ନନ୍ଦନ ଭୁବନ ମୋହନ ସ୍ୱରୂପ,
ମାନସରେ ଦେଖୁଥିଲେ ଚଳଚ୍ଚିତ୍ର ସ୍ୱରୂପ ।
ଜାନକୀ ଲକ୍ଷ୍ମଣ ସହଥିଲେ ଅଯୋଧ୍ୟାଧିପ,
ପୁଲ୍ଲକିତ ଦେହୁ ନିଃସରିତ ଚନ୍ଦ୍ର ଆତପ ।୪ ।
ଧ୍ୟାନେ ଥିଲେ ଲୀନ ଜଗତ ସ୍ମୃତିରୁ ବିସ୍ମୃତ,
ସ୍ମୃତିରେ କେବଳ ଥିଲେ ଶ୍ରୀରାମ ବିରାଜିତ ।
ଜିତେନ୍ଦ୍ରିୟ ହନୁ ଆତ୍ମଲୀନ ଭୁଲି ଜଗତ,
ଆତ୍ମାରେ ପ୍ରଭୁ ଦର୍ଶନେ ଥିଲେ ସେ ଆନନ୍ଦିତ ।୫ ।
ଛାୟାଦେବୀ ସୁତ ସାଗର କୂଳରେ ଏକାଳେ,
ଅସ୍ତାଚଳ ରବି ବିମ୍ବିତ ରତ୍ନାକର ଜଳେ ।
ଦୃଶ୍ୟକୁ ସ୍ଥାପୁଣୁ ସନ୍ତର୍ପଣେ ହୃଦୟ ସ୍ଥଳେ,
ଶକ୍ତି ପରାକ୍ରମ ଗର୍ବ ପଶି ଆନ୍ଦୋଳେ ଛଳେ ।୬ ।
ଭାବଇ ମନରେ ମୁଁ ଅତୁଳନ ଶକ୍ତିଧର,
ଧରଣୀ ବକ୍ଷରେ ମୋ ସମାନ ନାହିଁ କେ ବୀର ।
ବୀରତ୍ୱ ଜ୍ଞାତ ହୋଇଣ ଆଗମନେ ମୋହର,
ହରି ଭୟରେ ହରିଣୀ ଯେହ୍ନେ ପଳାନ୍ତି ଦୂର ।୭ ।
ନର ଅସୁର ଦୈତ୍ୟ ନାମ ଶ୍ରବଣେ କମ୍ପନ୍ତି,
ମୋ ସମାନ ବୀର ଚଉଦ ଭୁବନେ ନାହାନ୍ତି ।

ବ୍ୟାକୁଳ ମୋହର ନାମ ଶୁଣୁ ଶୁଣୁ ହୁଅନ୍ତି,
ଶକ୍ତି କା ସାଥେ ପରଖିବି କେହି ନ ଦିଶନ୍ତି ।୮ ।
ଶକ୍ତି ଥାଇ କିସ ଲାଭ ଭାବେ ଅହଂକାରରେ,
ପ୍ରୟୋଗ ଯେବେ ନ ହେବ ତାହାର ବାସ୍ତବରେ ।
ଯୁଦ୍ଧେଚ୍ଛା ପୂରାଇବ କେହ୍ନେ ଭାବୁଣୁ ଦୂରରେ,
ଶ୍ରୀରାମ ଭକତ ମାରୁତି ଆସିଲେ ଦୃଷ୍ଟିରେ ।୯ ।
ଭାବଇ ଯୁଦ୍ଧେଚ୍ଛା କଣ୍ଠୁ ଛଡ଼ାଇବି ଯାଦେଇ,
ପରାଜିତେ ଆନନ୍ଦ ଲଭିବି ମନ ପୂରାଇ ।
ବଜ୍ରାଙ୍ଗେ ଭେଟି ଦେବି ଜୟରେ ପରା ଲଗାଇ,
ଦୃଢ଼ ନିଶ୍ଚୟେ ପାବନୀ ସମ୍ମୁଖେ ହେଲା ଯାଇ ।୧୦ ।
ସାୟଂକାଳ ରବି କିରଣ ପ୍ରଭାବରେ ଶନି,
ଶ୍ୟାମବର୍ଣ୍ଣ ଦିଶେ ଯେହ୍ନେ ଅଗ୍ନି ଦଗ୍ଧ ଅବନୀ ।
ଭୀଷଣ ଆକୃତି ଧରି କରି କର୍କଶ ଧ୍ୱନି,
ବୋଲେ ଶୁଣ ଧ୍ୟାନେ ବଚନ ମୋହର ପାବନୀ ।୧୧ ।
ପ୍ରଖ୍ୟାତ ଶକ୍ତିଶାଳୀ ଶନି ସମ୍ମୁଖେ ତୁମ୍ଭର,
ଉପସ୍ଥିତ ଯୁଦ୍ଧ ମାଗୁଛି ଯାଚଞ୍ଚା ମୋହର ।
ପାଖଣ୍ଡ ଧ୍ୟାନ କରିବାର ମୁଦ୍ରା ତ୍ୟାଗ କର,
ଠିଆ ହୋଇ ଶୀଘ୍ର ମୋ ସାଥେ ଆରମ୍ଭ ସମର ।୧୨ ।
ଦୃଷ୍ଟି ପଡ଼ିଯାଏ ମୋହର ଯାହାର ରାଶିରେ,
ବାତାବର୍ତ୍ତ କଳା ବାଦଲ ଘୋଟେ ତା' ଭାଗ୍ୟରେ ।
ପଡ଼ିଛି ମୋ ଦୃଷ୍ଟି ଆଜି ତୁମ ରାଶି ଉପରେ,
ସମ୍ଭାଳ ଅଛି ଯଦି ସାମର୍ଥ୍ୟ ତୁମ ଭିତରେ ।୧୩ ।
ତିରସ୍କାର ପୂର୍ଣ୍ଣ ଶୁଣି ଅତ୍ୟନ୍ତ କଟୁ ବାଣୀ,
ନେତ୍ର ଖୋଲି ସମ୍ମୁଖେ ଦେଖି ରବିପୁତ୍ର ଶନି ।
ବୋଇଲେ ଶାଳିନତା ଶାନ୍ତି ଭରେ ଭକ୍ତମଣି,
ମହାତ୍ମା କିମ୍ପା ଆସିଛ ପ୍ରକାଶି କର ରଣି ।୧୪ ।
କିଏ ତୁମେ ପ୍ରଦାନ କର ତୁମ୍ଭ ପରିଚୟ,
ଭଙ୍ଗ କଲ ଧ୍ୟାନ ଅକାଳେ ଯାଉ ମୋ ସଂଶୟ ।
ରବ୍ୟଂଶ ଗର୍ବ ଅହଂକାରରେ ବୋଲଇ ବାକ୍ୟ,
ପରମ ପରାକ୍ରମୀ ଶନି ଜନକ ମୋ ସୂର୍ଯ୍ୟ ।୧୫ ।
ଭୂକମ୍ପରେ ଯେହ୍ନେ ପୃଥ୍ୱୀ ଥରେ ମୋର ଦର୍ଶନେ,
ଭୀତତ୍ରସ୍ତ ହୁଅନ୍ତି ସୁରାସୁର ଦାନବ ମନେ ।

ପୌରୁଷ ବଳ ଗାଥା କଥା ଶୁଣିଛି ଶ୍ରବଣେ,
ଆସିଛି ପରଖିବା ପାଇଁ ଶକତି ସାମନେ ।୧୬ ।
ସାବଧାନ ହୁଅ ଆସୁଛି ତୁମର ରାଶିରେ,
ସାମର୍ଥ୍ୟ ଥିଲେ ରୋକି ଠିଆ ହୁଅ ମୋ ପଥରେ ।
ଅଞ୍ଜନୀ ନନ୍ଦନ କହିଲେ ବିନମ୍ରେ ସଧିରେ,
ବୃଦ୍ଧ କପି ଧ୍ୟାନେ ରତ ନ ଲାଗ ମୋ ସାଥିରେ ।୧୭ ।
ପୁଣ୍ୟ ନାଶ କିମ୍ବା ଧ୍ୟାନେ ଭିଆଇ ବ୍ୟବଧାନ,
କୃପା କରି ଖୋଜ ଯୋଦ୍ଧା ଗମିଣ ଅନ୍ୟସ୍ଥାନ ।
ସଗର୍ବ ମଦମତ୍ତ ଶନି ବୋଲଇ ବଚନ,
ଫେରିବା ଜାଣିନି କରି କେଉଁ ସ୍ଥାନ ଗମନ ।୧୮ ।
ସ୍ୱଇଚ୍ଛାରେ ଗମେ ଭାଙ୍ଗି ସବୁ ବାଧା ବନ୍ଧନ,
ଯହିଁ ଯାଏ ତହିଁ ପ୍ରଦର୍ଶେ ପ୍ରାବଲ୍ୟ ପ୍ରାଧାନ୍ୟ ।
ନିକ୍ଷେପେ ରାଶିରେ ଯାହାର ମୋ ଦୃଷ୍ଟି କମାଣ,
ନିମିଷକେ ସଉଭାଗ୍ୟ କରେ ତା'ର ହରଣ ।୧୯ ।
ପାବନୀ ଛାୟାଜେ ପ୍ରାର୍ଥନା କଲେ ବାରବାର,
ମହାତ୍ମା ବୃଦ୍ଧ ମୁଁ ଦେହେ ଶକ୍ତି ନାହିଁ ମୋହର ।
ଧ୍ୟାନ କରିବାକୁ ଦିଅ ମୋତେ ମୋ ରଘୁବୀର,
ବିଘ୍ନ ନ ଉପୁଜାଇ ଯାଇ ଦେଖ ଅନ୍ୟ ଶୂର ।୨୦ ।
ନକର ଉତ୍ପନ୍ନ ବାଧା ମୋ ଭଜନ ଧ୍ୟାନରେ,
କଷ୍ଟା ବାଢ଼େ ବସ୍ତ୍ର ପକାଇ ଲଢୁଛ ଏଠାରେ ।
ଯାଅ ହେ ବାହାରି ଏଠାରୁ ନିଜର କାର୍ଯ୍ୟରେ,
ସନ୍ଧ୍ୟା କାଳ ମୋର ବ୍ୟତୀତ ହେଉଛି ବୃଥାରେ ।୨୧ ।
ଅତ୍ୟନ୍ତ ଉଦ୍ଧତ ବ୍ୟଙ୍ଗପୂର୍ଣ୍ଣ ଶବ୍ଦେ ଛାୟାଜ,
ବୋଲେ ତୀକ୍ଷ୍ଣ ସ୍ୱରେ ଭୀରୁ ବୋଲି ଜାଣିଲି ଆଜ ।
ଅଜ ପୌତ୍ର ଭକ୍ତ ଶୂର ନୁହେଁ ଦେଖିଲି ଅଜ,
ଡିଣ୍ଡିମ ବାଜୁଛି ସିନା ବୀରଙ୍କ ମଧ୍ୟେ ଗଜ ।୨୨ ।
ସ୍ଥିତି ଦେଖି ମନେ କରୁଣା ସଂଚାର ହୁଅଇ,
ପରାଜିତ ସ୍ୱରୂପ ଚିନ୍ତି ମନ କୁରୁଳଇ ।
ନିଶ୍ଚୟ ଅବଶ୍ୟ ନ ଛାଡ଼ି ରଣ କରିବଇଁ,
ମର୍ଯ୍ୟାଦାକୁ ଲଙ୍ଘି ହସ୍ତ ଧରି ରଣେ ଟାଣଇଁ ।୨୩ ।
କଥନ ନ ମାନି ହସ୍ତ ଧରି ଶନି ଟାଣନ୍ତେ,
ଏକ ଝଟକାରେ ହାତକୁ ଛଡ଼େଇ ଆଣନ୍ତେ ।

ପୁନଶ୍ଚ ହସ୍ତକୁ ଧରି ରବିସୁତ ସଶକ୍ତେ,
ଟାଣିବାରୁ ବୁଦ୍ଧି ଶିଖାଇବେ ଭାବିଲେ ଚିତ୍ତେ ।୨୪ ।
କପିବର ପୁଚ୍ଛ ବଢ଼ାଇ ଶନିକୁ ଗୁଡ଼ାଇ,
ଅଜଗର ଯେହ୍ନେ ଶିକାର ଜୀବେ ଲପେଟଇ ।
ପାଦଠାରୁ କଣ୍ଠ ଆବନ୍ଧିଣ ବାତ ତନୟୀ,
ବସିଲେ ନିଶ୍ଚିନ୍ତେ ଶ୍ରୀ ରଘୁବୀର ପଦଧ୍ୟାୟୀ ।୨୫ ।
ବ୍ୟର୍ଥ ସିଦ୍ଧ ହେଲା ଶକ୍ତି ପରାକ୍ରମାହଂକାର,
ଅବଶ ଅସହାୟ ନିରୁପାୟ ଶନିଶ୍ଚର ।
କଠିନ ବନ୍ଧନ ପୀଡ଼ାରେ କରେ ହାହାକାର,
ମଦାନ୍ଧ ଗର୍ବରେ ଚିତ୍ତେ ଚିନ୍ତେ ପଥ ମୁକ୍ତିର ।୨୬
ଏକାଳେ ଅଞ୍ଜନା ନନ୍ଦନ ତେଜିଣ ଆସନ,
ଆରମ୍ଭିଲେ ଦୌଡ଼ କରିବା ଅର୍ଥେ ପ୍ରଦକ୍ଷିଣ ।
ଶ୍ରୀରାମ ସେତୁଙ୍କ ସ୍ମରିଣ ଶ୍ରୀରାମ ଚରଣ,
ଲମ୍ବିତ ପୁଚ୍ଛରେ ଶନି ବନ୍ଧନରେ ଥାଇଣ ।୨୭ ।
ଦୌଡ଼ିବା କାରଣରୁ ଭକ୍ତରାଜ ହନୁମାନ,
ପୁଚ୍ଛ ବନ୍ଧା ଶନି ପିଟାଖାଇ ଲହୁଲୁହାଣ ।
ଭାଲୁ କପି ଥୁଆ ଶିଳାରେ ଆଘାତ ପାଇଣ,
ଉଚ୍ଚସ୍ୱରେ କଲା ଅତୀବ ଦୁଃଖରେ ରୋଦନ ।୨୮ ।
ସୂର୍ଯ୍ୟସୁତ ଅହଂକାରକୁ ଚିନ୍ତିଣ ମାରୁତି,
ଜାଣିଶୁଣି ପୁଚ୍ଛକୁ ଶିଳା ପରେ ବି ପିଟନ୍ତି ।
ଶ୍ରୀରାମ ସେତୁର ବାରବାର ପରିକ୍ରମନ୍ତି,
ଉଗ୍ରବେଗ ବୀର ମନରେ ବିଶ୍ରାମ ନ ଚିନ୍ତି ।୨୯ ।
ଅତୀବ ଅଦ୍ଭୁତ ଦୟନୀୟ ଦଶା ଶନିର,
ରକ୍ତେ ଲଥପଥ ଶିଳାଘାତେ ସାରା ଶରୀର ।
ବନ୍ଧନ ବା ବେଗ ନ ଦେଖି ସାମାନ୍ୟ ମନ୍ଥର,
ପ୍ରାର୍ଥନା କରଇ ସୂର୍ଯ୍ୟ ସୁତ ହୋଇ କାତର ।୩୦ ।
ନମସ୍ତେ ଶ୍ରୀପଦ ବାୟୁପୁତ୍ର ରୁଦ୍ର ଅଜର,
ନମସ୍ତେ ଅନଘ ଅମୃତ୍ୟ ମୁନି ବୀରବୀର ।
ନମସ୍ତେ ଧନଦ ନିର୍ଗୁଣ ଗ୍ରାମବାସ ବୀର,
ପିଙ୍ଗାକ୍ଷ ଅକାୟ ବରଦ ଜନାଶ୍ରୟ ପର ।୩୧ ।
ଅବ୍ୟକ୍ତ ନିଧିପତି ସୀତାଶୋକ ବିନାଶନ,
ଅନାଦି ପିଙ୍ଗ ରୋମ ଶ୍ରୁତିଗମ୍ୟ ସନାତନ ।

ଅବ୍ୟଗ୍ର ବିଶ୍ୱପ ବାଗ୍ମୀ ବିଶ୍ୱାତ୍ମା ଭଗବାନ,
ଆରୋଗ୍ୟକର୍ତ୍ତା ଶିବ ଦେବତା ଭୟ ଭଞ୍ଜନ ।୩୨ ।
ନମସ୍ତେ ବ୍ୟକ୍ତାବ୍ୟକ୍ତ ସର୍ବ ଭର୍ଗ ରସାଧର,
ନମସ୍ତେ ବିଶ୍ୱହେତୁ ଦେବ ରାମ ବିଶ୍ୱମ୍ଭର ।
ନମସ୍ତେ ବିଶ୍ୱେଶ ଅବ୍ୟୟ ଅଜ ହରୀଶ୍ୱର,
ନମସ୍ତେ କଲ୍ୟାଣ ପ୍ରକୃତି ବିଶ୍ୱ ବିଶ୍ୱାକାର ।୩୩ ।
ନମସ୍ତେ ବିଶ୍ୱନାଥ ସ୍ଥିର ଜ୍ୟେଷ୍ଠ ରାମ ଭକ୍ତ,
ନମସ୍ତେ ନିରାମୟ ବିଶ୍ୱମୂର୍ତ୍ତି ଗ୍ରାମଖ୍ୟାତ ।
ନମସ୍ତେ ପ୍ରଣବ ବ୍ୟାପକ ରବି ରାମଦୂତ,
ନମସ୍ତେ ବିଶ୍ୱସେବ୍ୟ ବୈଦ୍ୟ ବୃଦ୍ଧ ଜଗଦ୍ଧିତ ।୩୪ ।
ନମସ୍ତେ ବିଶ୍ୱଚେଷ୍ଟ ବାଳ ଯୁବା ବିଶ୍ୱହର,
ନମସ୍ତେ ବିଶ୍ୱଗମ୍ୟ ବିଶ୍ୱଧ୍ୟେୟ କଳାଧର ।
ନମସ୍ତେ କପିଶ୍ରେଷ୍ଠ ପ୍ଲବଂଗମ ବନେଚର,
ନମସ୍ତେ ଭୂ ଭୁବ ସ୍ୱ ତତ୍ତ୍ୱଗମ୍ୟ ଧରାଧର ।୩୫ ।
ନମସ୍ତେ ସତ୍ୟ ତତ୍ତ୍ୱ ଶିବଧର୍ମ ପ୍ରତିଷ୍ଠିତା,
ନମସ୍ତେ ମହଲୋକ ଜନଲୋକ ଦ୍ରୋଣହର୍ତ୍ତା ।
ନମସ୍ତେ ରାମେଷ୍ଟ ପୂର୍ଣ୍ଣ ଜାନକୀ ପ୍ରାଣଦାତା,
ନମସ୍ତେ ତପସଖା ପୂର୍ଣ୍ଣକାମ ଶକ୍ତିନେତା ।୩୬ ।
ନମସ୍ତେ ଅଞ୍ଜନା ସୁନୁ ଧରାପତି ରକ୍ଷୋଘ୍ନ,
ନମସ୍ତେ ଫାଲ୍ଗୁନପ୍ରିୟ ବ୍ରହ୍ମପୁଚ୍ଛ ତପନ ।
ନମସ୍ତେ ହେତୁ ଜ୍ଞାନୀ ଗରୁଡ଼ସ୍ମୟ ଭଞ୍ଜନ,
ନମସ୍ତେ ଅହେତୁ ଗର୍ବ ପର୍ବତ ପ୍ରମର୍ଦ୍ଦନ ।୩୭ ।
ନମସ୍ତେ ପୁଣ୍ଡରୀକାକ୍ଷ ଭକ୍ତୋଦୟୋ ଅମଳ,
ନମସ୍ତେ ଭକ୍ତଲକ୍ଷ୍ଣ ଶରଣାଗତ ବତ୍ସଳ ।
ନମସ୍ତେ ବାନର ଗୋଷ୍ପଦୀକୃତବାରୀଶ କାଳ,
ନମସ୍ତେ ପୁଣ୍ଡରୀକାକ୍ଷ ପୀତବାସ କପିଳ ।୩୮ ।
ନମସ୍ତେ ଜଗନ୍ନାଥ ରକ୍ଷପ୍ରାଣାପହାରକ,
ନମସ୍ତେ ପରବ୍ରହ୍ମ ପୁଚ୍ଛ ରାମେଷ୍ଟ କାରକ ।
ନମସ୍ତେ ଅମିତ ପୁଚ୍ଛ ଶକ୍ତି ରାକ୍ଷସ ମାରକ,
ନମସ୍ତେ କଳ୍ପସ୍ଥାୟୀ ଶାକିନୀ ଜୀବ ହାରକ ।୩୯ ।
ନମସ୍ତେ ଦିବାକର ସମପ୍ରଭ ଜନେଶ୍ୱର,
ନମସ୍ତେ ଜଗଦ୍ଗୁରୁ ଭକ୍ତପାଳନ ତତ୍ପର ।

ନମସ୍ତେ ଦେବୋଦ୍ୟାନ ବିହାରୀ ବାନରେଶ୍ୱର,
ନମସ୍ତେ ଅମିତ ବିକ୍ରମ ତ୍ରିଭୁବନେଶ୍ୱର ।୪୦ ।
ନମସ୍ତେ ଚିରଞ୍ଜିବୀ ବୁବୁକାର ହତାରାତି,
ନମସ୍ତେ ପାର୍ଥଧ୍ୱଜ ସୁଗ୍ରୀବାଦିଯୁତୋ କୀର୍ତ୍ତି ।
ନମସ୍ତେ ଅକ୍ଷଘ୍ନ ସତ୍ୟ ବିଶ୍ୱଭର୍ତ୍ତା ସଦ୍ବୃତି,
ନମସ୍ତେ ପ୍ରାଂଶୁ ହରି ଜଗନ୍ନେତା ପୂଣ୍ୟକୀର୍ତ୍ତି ।୪୧ ।
ନମସ୍ତେ ବାୟୁପୁତ୍ର ସଦାଶିବ ଜଗଦ୍ଧୀଶ,
ନମସ୍ତେ କୀର୍ତ୍ତିପ୍ରଦ ଶ୍ରୀପଦ କାଳ ପୁରୁଷ ।
ନମସ୍ତେ ଭକ୍ତୋଦୟ ଭକ୍ତଗମ୍ୟ ଭୂତାବାସ,
ନମସ୍ତେ ବିଶ୍ୱଜେତା ଲାଙ୍ଗୁଳାହତ ରାକ୍ଷସ ।୪୨ ।
ନମସ୍ତେ ଶ୍ରୀଶ ଲଙ୍କାରି ବାସୁଦେବ ସନ୍ନତ,
ନମସ୍ତେ ଶ୍ରୀରାମ ସ୍ୱରୂପ ବିଶ୍ୱପ୍ରତିଷ୍ଠିତ ।
ନମସ୍ତେ ଲଙ୍କେଶ ଗୃହଭଞ୍ଜନ କୃଷ୍ଣ ସୁତ,
ନମସ୍ତେ ଭୁକ୍ତିମୁକ୍ତିଦ କୀର୍ତ୍ତିଦାୟକ ଶାନ୍ତ ।୪୩ ।
ନମସ୍ତେ ଭକ୍ତଭାଗ୍ୟପ୍ରଦାୟକ ଶାନ୍ତିପ୍ରଦ,
ନମସ୍ତେ ଉଦଧିକ୍ରମଣ ଜଗନ୍ମଙ୍ଗଳଦ ।
ନମସ୍ତେ ସଂସାରଭୟନାଶନ ଜୟପ୍ରଦ,
ନମସ୍ତେ କୃଷ୍ଣ କୃଷ୍ଣ ବସୁ ବାର୍ଧିବନ୍ଧନକୃଦ ।୪୪ ।
ନମସ୍ତେ ସମୁଦ୍ର ଶିବ ଦେବ ବିଶ୍ୱ ପାବନ,
ନମସ୍ତେ ବିଶ୍ୱଭୋକ୍ତା ପୁଣ୍ୟଶ୍ରବଣ କୀର୍ତ୍ତନ ।
ନମସ୍ତେ ଧ୍ୟେୟ ଲୟ ଜଗତ୍ପାବନାପାବନ,
ନମସ୍ତେ ସମୀର ତନୁଜ ମାଳୀ ନିରଂଜନ ।୪୫ ।
ନମସ୍ତେ ରାମଭକ୍ତି ବିଧାୟକ ଜିତେନ୍ଦ୍ରିୟ,
ନମସ୍ତେ ମାରଘ୍ନ ଉର୍ଦ୍ଧ୍ୱଗ ବିଭୀଷଣ ପ୍ରିୟ ।
ନମସ୍ତେ ଲାଙ୍ଗୁଳୀ ଦେବେଶ ସାକ୍ଷୀ ସିଦ୍ଧାଶ୍ରୟ,
ନମସ୍ତେ ବ୍ରହ୍ମଚାରୀ ବୀର ଧାତା ରାମଧ୍ୟେୟ ।୪୬ ।
ନମସ୍ତେ ପୁଣ୍ୟଗତି ପୁଣ୍ୟଚେତା ବୀରତାର,
ନମସ୍ତେ ଚୈତନ୍ୟ ବିଗ୍ରହ ଶୂର ଜିତମାର ।
ନମସ୍ତେ ଜ୍ଞାନଦ ପ୍ରାଣଦ ମହୋକ୍ଷ ଈଶ୍ୱର,
ନମସ୍ତେ ପିପ୍ପଳାଶ୍ରୟ ସିଦ୍ଧିଦ ଭୟଙ୍କର ।୪୭ ।
ନମସ୍ତେ ଲଙ୍କେଶନିଧନସ୍ଥାୟୀ ଜଗତ୍ ପ୍ରାଣ,
ନମସ୍ତେ କାଳାଗ୍ନି ଲଙ୍କା ଦାହକ ସମୀରଣ ।

ନମସ୍ତେ କପିଶ ଦ୍ୱାଦଶରାଶିଗ ବରୁଣ,
ନମସ୍ତେ ଲକ୍ଷ୍ମଣ ପ୍ରାଣଦାତା ନିରତି ପ୍ରାଣ ।୪୮ ।
ନମସ୍ତେ ସୀତା ଜୀବନ ହେତୁକ ହୃଷିକେଶ,
ନମସ୍ତେ ପ୍ରଳୟାନ୍ତକ ପୁଣ୍ୟରାଶି ବିଶ୍ୱେଶ ।
ନମସ୍ତେ ଅପ୍ରମେୟାତ୍ମା ସର୍ବାଶ୍ରୟ ଭୂତେଶ,
ନମସ୍ତେ ଚନ୍ଦ୍ର ସୂର୍ଯ୍ୟାଗ୍ନିନେତ୍ର ସିଦ୍ଧି ଲୋକେଶ ।୪୯ ।
ନମସ୍ତେ ଦୁରାରାଧ ରେବତ୍ୟାଦି ନିବାରକ,
ନମସ୍ତେ ହନୁମାନ ହବ୍ୟବାହ ପ୍ରକାଶକ ।
ନମସ୍ତେ ଭାଗ୍ୟଦ ହିରଣ୍ୟଗର୍ଭ ଅନନ୍ତକ,
ନମସ୍ତେ ବିଷ୍ଣୁଭକ୍ତ ପୁଚ୍ଛ ଲଙ୍କା ବିଦାହକ ।୫୦ ।
ନମସ୍ତେ ନିର୍ମଳ ଜଗତ୍ ପ୍ରଭୁ ସଦସଦ୍ରୂପ,
ନମସ୍ତେ ପୁଚ୍ଛବଦ୍ଧଯାତୁଧାନ ଜଟୀ ଆପ ।
ନମସ୍ତେ ଦେବାରି ଦର୍ପହା ବଳୀ ନିରତ୍ରପ,
ନମସ୍ତେ ତପସାଧ୍ୟ ଗୁଣାତୀତ ନିର୍ବିକଳ୍ପ ।୫୧ ।
ନମସ୍ତେ ଜାନକୀଧନଶୋକୋତ୍ଥତାପହର୍ତ୍ତା,
ନମସ୍ତେ ଶୁଦ୍ଧ ବୁଦ୍ଧ ପରାତ୍ପର ହୋତା ଧାତା ।
ନମସ୍ତେ ନଗରଗ୍ରାମପାଳ କାରଣ କର୍ତ୍ତା,
ନମସ୍ତେ ପ୍ରକୃତେପର ସଦ୍ଗତିପ୍ରଦ ନେତା ।୫୨ ।
ନମସ୍ତେ ଭକ୍ତାନୁକମ୍ପୀ ବାଂମୟ ମହେଶ୍ୱର,
ନମସ୍ତେ ପୁରୁହୂତ ଶନୈଶ୍ଚର ପୁରନ୍ଦର ।
ନମସ୍ତେ ଭାସ୍ୱାନ ଦୈତ୍ୟାରି ପ୍ଳବଙ୍ଗମେଶ୍ୱର,
ନମସ୍ତେ ଭକ୍ତାଭୟବରପ୍ରଦ ମହାବୀର ।୫୩ ।
ନମସ୍ତେ ଛାୟାପହାରୀ କପିଳ କାବ୍ୟକର୍ତ୍ତା,
ନମସ୍ତେ ବାୟୁଗତିମାନ ବାୟୁ କ୍ରୋଧହର୍ତ୍ତା ।
ନମସ୍ତେ କୌବେର ଈଶ୍ୱର ସଦ୍ୟ ସ୍ଫୂର୍ତିଦାତା,
ନମସ୍ତେ ରବିବିଭାବସୁ ତମୋହର୍ତ୍ତା ସ୍ମର୍ତ୍ତା ।୫୪ ।
ନମସ୍ତେ କ୍ରୋଧ ସୌମ୍ୟ କ୍ରୋଧସଂରକ୍ତଲୋଚନ,
ନମସ୍ତେ ପୁରୁଷୋତ୍ତମ ଗୁରୁ ମଧୁସୂଦନ ।
ନମସ୍ତେ ଭକତେ ବରପ୍ରଦ ବିଶ୍ୱଜୀବନ,
ନମସ୍ତେ ମରୁତ ଉଡ୍ଡୀନୋଡ୍ଡୀନଗତିମାନ ।୫୫ ।
ନମସ୍ତେ ବିପାପ୍ମା ଜଗଦାତ୍ମା ଶର୍ବରୀପତି,
ନମସ୍ତେ ଜଗଦ୍ୟୋନି ଜଗଦନ୍ତ ପୁରାରାତି ।

ନମସ୍ତେ ଅଜିତ ବିକ୍ରମ ପ୍ରତିଗ୍ରାମସ୍ଥିତି,
ନମସ୍ତେ ମହଦଦଡ୍କୃତି କ୍ଷେତ୍ରଜ୍ଞ ସଦ୍ଗତି ।୫୬ ।
ନମସ୍ତେ ଯାତୁଧାନ ରିପୁପ୍ରିୟ କାମପାଳ,
ନମସ୍ତେ ଚନ୍ଦ୍ର କୁଜ ସୌମ୍ୟ ଗୁରୁ ଯମ ସ୍ଥୂଳ ।
ନମସ୍ତେ ନକ୍ଷତ୍ରମାଳୀ ଗୁଣାକାର ଦିକ୍‌ପାଳ,
ନମସ୍ତେ ହିରଣ୍ମୟ କ୍ଷେତ୍ରହର୍ତ୍ତା ଅନାକୁଳ ।୫୭ ।
ନମସ୍ତେ ମହାନ ଅଗ୍ନି ଯମ କାମ ଅନେକ,
ନମସ୍ତେ ସେତୁବନ୍ଧ ବିଶାରଦ ଲଘୁ ଏକ ।
ନମସ୍ତେ ପୁରାଣ କବ୍ୟ କାବ୍ୟ ହବି ସାତ୍ତ୍ୱିକ,
ନମୋ ନମସ୍ତେ ରାହୁ କେତୁ କପି ନିଷ୍କଳଙ୍କ ।୫୮ ।
ନମସ୍ତେ ସମୀରଜ ପଲ୍ୱଳୀକୃତସାଗର,
ନମସ୍ତେ ଖଂ ମଶକୀକୃତଦେବାରି ଖେଚର ।
ନମସ୍ତେ ସୂତ୍ରାତ୍ମା ସ୍ୱଧା ସ୍ୱପ୍ରକାଶ ଅମର,
ନମସ୍ତେ ବେଦାନ୍ତବେଦ୍ୟ ସ୍ୱାହାବାୟୁ ଭୂଚର ।୫୯ ।
ନମସ୍ତେ ଭାଗୀରଥି ପଦାମ୍ଭୋଜ ବହ୍ନି ହୋତା,
ନମସ୍ତେ ପୃଥ୍ୱୀବିଶାମ୍ପତି ରାଜରାଜ ଦାତା ।
ନମସ୍ତେ ଉଦ୍ଗୀଥ ବେଦବେଦାଙ୍ଗ ପାରଶ ହର୍ତ୍ତା,
ନମସ୍ତେ ଅଙ୍ଗଦ ପ୍ରିୟ ସୂକ୍ଷ୍ମ ପରମ ଗୋପ୍ତା ।୬୦ ।
ନମସ୍ତେ ଭୂତାତ୍ମା ଗୁଣନିଧି କଳ୍ପପାଦପ,
ନମସ୍ତେ ଚିନ୍ତାମଣି ଅନୁତ୍ତମ ନାଦରୂପ ।
ନମସ୍ତେ ସୁରଭି ଋଣତ୍ରୟହର ନିର୍ଲେପ,
ନମସ୍ତେ ପୁଣ୍ୟଶ୍ଳୋକ ମାୟା ନିର୍ମିତ ବିଷ୍ଟପ ।୬୧ ।
ନମସ୍ତେ ପୁଣ୍ୟଶ୍ଳୋକ ଜ୍ୟୋତିଷ୍ମାନ ଅପ୍ରପଞ୍ଚ,
କିଲ୍‌କିଳାରାବ ସନ୍ତ୍ରସ୍ତ ଭୂତ ପ୍ରେତ ପିଶାଚ ।
ନମସ୍ତେ ଅନାଦି ଜ୍ୟୋତି ନିରାଲମ୍ବ ଅକୂର୍ଚ୍ଚ,
ନମସ୍ତେ କପିନ୍ଦ୍ର ଶୁକ୍ଳ ଗଦାହସ୍ତ ସୁସଞ୍ଚ ।୬୨ ।
ନମସ୍ତେ ପରବ୍ରହ୍ମ ସର୍ବଗତି ପ୍ରଜାଧାର,
ନମସ୍ତେ ଶ୍ରୁତି ଗାଥା ମନୁସ୍ମୃତି ସ୍ୱର୍ଗଦ୍ୱାର ।
ନମସ୍ତେ ପୁମାନ ଅପରାଜିତ ଯତୀଶ୍ୱର,
ନମସ୍ତେ ଜନ ପ୍ରଜାଦ୍ୱାର ଅପସ୍ମାର ହର ।୬୩ ।
ନମସ୍ତେ ତମୋହର୍ତ୍ତା ଗୁଣାକାର ଗୁଣାଶ୍ରୟ,
ନମସ୍ତେ ବୃଦତ୍ କର୍ମା ବୃହଦ୍ୟଶା ଗୁଣମୟ ।

ନମସ୍ତେ ବୃହଦ୍ଧନୁ ମଳୟାଚଳ ସଂଶ୍ରୟ,
ନମସ୍ତେ ବୃହଦୀଶ୍ୱର ବ୍ରହ୍ମ ଅମିତମାୟ ।୬୪ ।
ନମସ୍ତେ ବୃହତ୍ ମୁଦ୍ରା ସ୍ୱୟଂ ଜ୍ୟୋତି କପିପତି,
ନମସ୍ତେ ବୃହତ୍ କର୍ଣ୍ଣ ତମ ଜ୍ୟୋତି ମହାଦ୍ୟୁତି ।
ନମସ୍ତେ ଗୋପାଳ କଳିପାବନ ଜିତାରାତି,
ନମସ୍ତେ ବୃହଉନୁ ବୃହଜ୍ଜାନୁ ବୃହଦ୍ଗତି ।୬୫ ।
ନମସ୍ତେ ବୃହତ୍ କାର୍ଯ୍ୟ ବୃହତ୍ ପୁଚ୍ଛ ବୃହତ୍ପାଦ,
ନମସ୍ତେ ବୃହତ୍ କର ବୃହଲ୍ଲୋକ ଫଳପ୍ରଦ ।
ନମସ୍ତେ ତତ୍ତ୍ୱଜ୍ଞ ସପ୍ତପାତାଳଗାମୀ ଶ୍ରୀଦ,
ନମସ୍ତେ ବୃହଲ୍ଲୋକନୁତ ଦ୍ରଷ୍ଟା ସଦାନନ୍ଦ ।୬୬ ।
ନମସ୍ତେ ବୃହତ୍ ସେବ୍ୟ ବିଦ୍ୟାଦାତା ନାଗ ଖଗ,
ନମସ୍ତେ ଜଗଦ୍ ଗୁରୁ ଯୋଗଗମ୍ୟ ଶାଖାମୃଗ ।
ନମସ୍ତେ ଉତ୍ତରାଶାସ୍ଥିତ ବୈକୁଣ୍ଠ ଭାବଗ,
ନମସ୍ତେ ଦିବ୍ୟୌଷଧି ବଶ ପ୍ରଳୟ ହରିଗ ।୬୭ ।
ନମସ୍ତେ ଦେବାଚାର୍ଯ୍ୟ ତତ୍ତ୍ୱ ଚତୁର ବ୍ରାହ୍ମଣ,
ସହସ୍ରକନ୍ଧର ବଳବିଧ୍ୱଂସନ ବିଚକ୍ଷଣ ।
ନମସ୍ତେ ସହସ୍ରବାହୁ ସତ୍ୟବାଦୀ ଭୀଷଣ,
ନମସ୍ତେ ବ୍ରହ୍ମବାଦୀ ପରାବର ଶୁଦ୍ଧ ଘ୍ରାଣ ।୬୮ ।
ନମସ୍ତେ ଦୟାଯୁତ ତତ୍ତ୍ୱଦାତା ମୋକ୍ଷଦ୍ୱାର,
ନମସ୍ତେ କଳିକାଳ ପରାଶର ନିରାକାର ।
ନମସ୍ତେ ଶରଭ ଆକାଶଚାରୀ କଳାଧର,
ନମସ୍ତେ ନିତ୍ୟମୁକ୍ତ ପୁରାଣ ଶ୍ରୁତିଚଞ୍ଚୁର ।୬୯ ।
ନମସ୍ତେ ବୁଦ୍ଧ ମାୟା ଉର୍ଜ୍ଜିତରକ୍ଷ ରାଜସ,
ନମସ୍ତେ ମାୟାତୀତ ମାୟାଶ୍ରୟ ବୃହନ୍ନାସ ।
ନମସ୍ତେ ମହେଶ କୃତସଂସ୍ତବ ସୁଖ ବ୍ୟାସ,
ନମସ୍ତେ ଅମର ସତ୍ୟସନ୍ଧ ତତ୍ତ୍ୱ ପ୍ରକାଶ ।୭୦ ।
ନମସ୍ତେ ମାୟାନିର୍ବର୍ତ୍ତକ ସୁଖୀ ମହାଯୋଗୀ,
ନମସ୍ତେ ସୁଖପ୍ରଦ ମହେଶ୍ୱର ମନୋବେଗୀ ।
ନମସ୍ତେ ବରାହ ରସ ରସଜ୍ଞ ସଦାଯୋଗୀ,
ନମସ୍ତେ ବାୟୁରୂପଧୃକ୍ ଚତୁର୍ଭୁଜ ଯୋଗୀ ।୭୧ ।
ନମସ୍ତେ ଦ୍ୱିବାହୁ ସମ୍ମାନ ଅନାଦିନିଧନ,
ନମସ୍ତେ ହୟଗ୍ରୀବ ସଂସାରଭୟନାଶନ ।

ନମସ୍ତେ ବଚନ କୋବିଦ ବ୍ରହ୍ମପୁରାତନ,
ନମସ୍ତେ ଖଗାନନ କପିବକ୍ତ୍ର ବୃହସ୍ବନ ।୭୨ ।
ନମସ୍ତେ ନରସିଂହ ବଚ ଶ୍ରୁତି ବୃହତ୍ ଗତି,
ନମସ୍ତେ ଜୟଦ୍ରଥ ବିମସ୍ଥର ବୃହଚ୍ଛକ୍ତି ।
ନମସ୍ତେ ଲକ୍ଷ୍ମଣ ପ୍ରାଣଦାତା ବନ୍ଦ୍ୟ ଗୋପତି,
ନମସ୍ତେ ପରାଜିତ ଦଶାନନ ରୂପ ଶ୍ରୁତି ।୭୩ ।
ନମସ୍ତେ କାଳନେମିପ୍ରାଣହାରୀ ଭକ୍ତରାଜ,
ନମସ୍ତେ ପାରିଜାତ ନିବାସୀ ସ୍ପର୍ଶ ସହଜ ।
ନମସ୍ତେ ସ୍ପର୍ଶନ କିଙ୍କରାନ୍ତକର ଦ୍ୱିଭୁଜ,
ନମସ୍ତେ ମକରୀଶାପମୋକ୍ଷଦ ଦଶଭୁଜ ।୭୪ ।
ନମସ୍ତେ ଚକ୍ଷୁ ଗନ୍ଧ ସିଂହିକା ପ୍ରାଣହାରକ,
ନମସ୍ତେ ସ୍ପର୍ଶନ ବୃଷଦଂଶକ ରୂପଧୃକ ।
ନମସ୍ତେ ତୁମ୍ବର ମହାରାବଣକୁଳାନ୍ତକ,
ନମସ୍ତେ ବିଶ୍ୱବୀଜ ମେଘନାଦରଣୋତ୍ସୁକ ।୭୫ ।
ନମସ୍ତେ ବୈକୁଣ୍ଠ ଭଜନପ୍ରିୟ ବଟୁ ଭ୍ରାତା,
ନମସ୍ତେ ଲଙ୍କାଲଙ୍କାରବିଧ୍ୱଂସୀ ଶ୍ରଦ୍ଧା ପିତା ।
ନମସ୍ତେ ସଂସାର ସାରଥି ଜମ୍ବୁମାଳିହନ୍ତା,
ନମସ୍ତେ ନିତ୍ୟ ସମ୍ପୂର୍ଣ୍ଣ କାମ ତନ୍ଦ୍ରା ମାତା ।୭୬ ।
ନମସ୍ତେ ମେଘ ଗମ୍ଭୀର ନିନଦୋ ମହାନାଦ,
ନମସ୍ତେ ଭୃଗୁ କବି ରାତ୍ରିଂଚର ଗୃହାଗ୍ନିଦ ।
ନମସ୍ତେ ଦୁର୍ବାସା କାମଫଳପ୍ରଦ ମୁକୁଳ,
ନମସ୍ତେ ନଖଦଂଷ୍ଟ୍ରାୟୁଧ ଗଣପ ନାରଦ ।୭୭ ।
ନମସ୍ତେ ବିଶ୍ୱକ୍ଷେତ୍ର ବିଶ୍ୱବୀଜ ଯଜମାନ,
ନମସ୍ତେ ବିଶ୍ୱନେତ୍ର ମୁଦ୍ରାପହାରୀ ଚ୍ୟବନ ।
ନମସ୍ତେ ବିଶ୍ୱପ ରୁଣ୍ଡମାଳୀ କାମଦହନ,
ନମସ୍ତେ ଅହଙ୍କାର ମାନଗ ଅମୂର୍ତ୍ତିମାନ ।୭୮ ।
ନମସ୍ତେ ଦ୍ରଂଷ୍ଟ୍ରା ଶତ ମୂର୍ତ୍ତି ମହାଦେବାତ୍ମକ,
ନମସ୍ତେ ସହସ୍ରାକ୍ଷ ପିଶାଚ ଗ୍ରହଘାତକ ।
ନମସ୍ତେ ମାରୁତି କେଶବ ରକ୍ଷୋବିନାଶକ,
ନମସ୍ତେ ଅନେକାସ୍ୟ ମେଘବୃଷ୍ଟିନିବାରକ ।୭୯ ।
ନମସ୍ତେ ଗିରୀଶ ବୁଦ୍ଧିକ୍ଷମା ସହସ୍ରପାତ୍,
ନମସ୍ତେ ଉତ୍ତମ ସହସ୍ରମୁର୍ଦ୍ଧା କାମଜିତ୍ ।

ନମସ୍ତେ ନେତିନେତୀତିଗମ୍ୟ ଗିରିଜାକାନ୍ତ,
ନମସ୍ତେ ମହାଭାଗ ସୁରସାସ୍ୟବିନିର୍ମୁକ୍ତ ।୮୦ ।
ନମସ୍ତେ ମହାନିଧି ରାତ୍ରିସଞ୍ଚାରକୁଶଳ,
ନମସ୍ତେ ମହାଭର୍ଗ ସପ୍ତଦ୍ୱୀପୋରୁମଣ୍ଡଳ ।
ନମସ୍ତେ ଦୁର୍ବାସା ଅଙ୍ଗିରା ବଶିଷ୍ଠ ଅମଳ,
ନମସ୍ତେ ଭକ୍ତାଭୟବରପ୍ରଦ ମହାବଳ ।୮୧ ।
ନମସ୍ତେ ମହାକାର ରକ୍ଷୋଗ୍ନଦାହ ଦର୍ପହା,
ନମସ୍ତେ ଦର୍ପଦ କ୍ଷିତି ଭାରହା ଦୁଃଖହା ।
ନମସ୍ତେ ତୁମ୍ବର ମନ୍ତ୍ରସୁର ଗର୍ଭଦୋଷହା,
ନମସ୍ତେ ମନ୍ତ୍ରୟିତା ପୌଲସ୍ତ୍ୟବଳଦର୍ପହା ।୮୨ ।
ନମସ୍ତେ ରାଜେନ୍ଦ୍ର କାମ ମହାର୍ଦ୍ଧିଦ ଯାଜକ,
ନମସ୍ତେ ଭୂପତି ବଳ କୃତାଗମ ପାବକ ।
ନମସ୍ତେ ବିଜୟୀ ଭୂରି ଦକ୍ଷିଣ ପରାତ୍ମକ,
ନମସ୍ତେ ସହସ୍ରାଂଶୁ ସିଦ୍ଧିଦ ସିଦ୍ଧିହେତୁକ ।୮୩ ।
ନମସ୍ତେ ମହାତେଜା ସିଦ୍ଧ ସଙ୍କଳ୍ପ ପିତର,
ନମସ୍ତେ ମହାଦ୍ୟୁତି ମହାସନ ମହୋଦର ।
ନମସ୍ତେ ରତ୍ନାଭ ସିଦ୍ଧାର୍ଥ ସର୍ବରକ୍ଷାକର,
ନମସ୍ତେ ଜିତାମିତ୍ରୋ ନବଦ୍ୱାରାପୁରାଧାର ।୮୪ ।
ନମସ୍ତେ ମହାମନ୍ତ୍ର ଜୟ ଅମ୍ଭୋଧିଲଙ୍ଘନ,
ନମସ୍ତେ ମହାମତି ସତ୍ୟଧର୍ମ ପ୍ରମୋଦନ ।
ନମସ୍ତେ ମେଘାଦ ଶୋକହାରୀ ବାୟୁନନ୍ଦନ,
ନମସ୍ତେ ସପ୍ତଛନ୍ଦୋନିଧି ସପ୍ତାବ୍ଧିଲଙ୍ଘନ ।୮୫ ।
ନମସ୍ତେ ମହାଗମ ସପ୍ତାଙ୍ଗ ରାଜ୍ୟ ସୁଖଦ,
ନମସ୍ତେ ରୌଦ୍ରକର୍ମା ନୃତ୍ୟବିଦ୍ୟା ବିଶାରଦ ।
ନମସ୍ତେ ରକ୍ଷୋଘ୍ନ ଦୌର୍ଭାଗ୍ୟନାଶନ ଆନନ୍ଦ,
ନମସ୍ତେ ସପ୍ତପାତାଳ ସଂଶ୍ରୟ ମେଘନାଦ ।୮୬ ।
ନମସ୍ତେ ସପ୍ତଛନ୍ଦ ସପ୍ତର୍ଷିଗଣବନ୍ଦିତ,
ନମସ୍ତେ ସପ୍ତହୋତା ସପ୍ତମାତୃନିଷେବିତ ।
ନମସ୍ତେ ସପ୍ତଜନାଶ୍ରୟ ସପ୍ତସାମୋପଗୀତ,
ନମସ୍ତେ ସ୍ୱରାଶ୍ରୟ ରୁଷ୍ଟଚିତ୍ତପ୍ରସାଦତ ।୮୭ ।
ନମସ୍ତେ ବିଷ୍ଣୁ ବିଭୁ ବ୍ୟଗ୍ର କବଚୀ କୀର୍ତ୍ତିଦ,
ନମସ୍ତେ ଭ୍ରାଜିଷ୍ଣୁ ଉଗ୍ରବେଗ ପୁତ୍ରପୌତ୍ରଦ ।

ନମସ୍ତେ ବ୍ରହ୍ମୋଶ ସ୍ତୁତି ସ୍ତୋତା ବନ୍ଧମୋକ୍ଷଦ,
ନମସ୍ତେ ଶ୍ରୀଧର କ୍ରୁରକର୍ମା ପରମାନନ୍ଦ ।୮୮ ।
ନମସ୍ତେ ସୋମ ଜୀବଦାତା ସମର୍ଥ କୁଣ୍ଡଳୀ,
ନମସ୍ତେ ସପ୍ତସ୍ୱର୍ଲୋକ ମୁକୁଟ ଚିତ୍ରମାଳୀ ।
ନମସ୍ତେ ସମୀର ତନୟ ବିଶ୍ରାମ ମେଖଳୀ,
ନମସ୍ତେ ପରପାରାୟଣ ସ୍ତୁତ୍ୟ ଜ୍ୱାଳାମାଳୀ ।୮୯ ।
ନମସ୍ତେ ଶତକ୍ରତୁ ସପ୍ତପାତାଳଚରଣ,
ନମସ୍ତେ ନବନାଥ ମହେଶ୍ୱର ସ୍ୱର୍ଣ୍ଣବର୍ଣ୍ଣ ।
ନମସ୍ତେ ବିଶୁଦ୍ଧାତ୍ମ ନାରାୟଣ ପରାୟଣ,
ନମସ୍ତେ ନାରସିଂହ ସର୍ବଦୁଃଖ ନିବର୍ହଣ ।୯୦ ।
ନମସ୍ତେ ପ୍ରତିବାଦୀ ମୁଖସ୍ତମ୍ଭ ଜୀବଦାତା,
ନମସ୍ତେ ପୁଚ୍ଛହତାସୁର ଦୁଷ୍ଟଗ୍ରହନିହନ୍ତା ।
ନମସ୍ତେ ସମଗ୍ରଗୁଣଶାଳୀ ବଳାଢ଼୍ୟ ଭୋକ୍ତା,
ନମସ୍ତେ ଧର୍ମନେତା କୃପାକର ପୁରୁଜେତା ।୯୧ ।
ନମସ୍ତେ ବାଳଗ୍ରହ ବିନାଶୀ କୈବଲ୍ୟ ରୂପ,
ନମସ୍ତେ ମେଘଜୀବନହେତୁ ପୌଢ଼ପ୍ରତାପ ।
ନମସ୍ତେ ବାରାହ ଅନର୍ଥାପହାରୀ ସ୍ୱରୂପ,
ନମସ୍ତେ ଉଗ୍ରକୃତ୍ୟ ଉଗ୍ରନେତ୍ର ମେରୁରୂପ ।୯୨ ।
ନମସ୍ତେ ମେଘଶ୍ୟାମ ପରାଭିଚାର ଶମନ,
ନମସ୍ତେ ଖଂଗୀ ବୀର ନବଦ୍ୱାର ନିକେତନ ।
ନମସ୍ତେ ଅଚଳୋଦ୍ଧାରକ ଅରିଷ୍ଟ ନାଶନ,
ନମସ୍ତେ ଜିଷ୍ଣୁସାରଥି ସ୍ତୁତ୍ୟ ଅଘନାଶନ ।୯୩ ।
ନମସ୍ତେ ଆର୍ଥିବନ୍ଧ୍ୟ ଅର୍ଥ ଶତମନ୍ୟୁନୁତ,
ନମସ୍ତେ ଇଷ୍ଟଦ ଅମୋଘଦୃଷ୍ଟି ସେତୁକୃତ ।
ନମସ୍ତେ ଆତ୍ମଭୂ ନିରାଶ୍ରୟ ଗଣସେବିତ,
ନମସ୍ତେ ବାମନ ଯୋଦ୍ଧା ନିତ୍ୟ ସିଦ୍ଧିସଂସ୍ତୁତ ।୯୪ ।
ନମସ୍ତେ ମେଘନାଦରିପୁ ବଳୀ ସଦାଶ୍ରୟ,
ନମସ୍ତେ ମତ୍ସ୍ୟ କୂର୍ମ ସର୍ବକର୍ମା ଦାନ୍ତ ସତ୍ୟ ।
ନମସ୍ତେ ତକ୍ଷକ ବାସୁକି ସୁଧନ ସହାୟ,
ନମସ୍ତେ ନଖଦାରିତରକ୍ଷା ହରି ବିଜୟ ।୯୫ ।
ନମସ୍ତେ ରାମ କୃଷ୍ଣ ଶିବ ବୁଦ୍ଧ କଳ୍କି ବୃକୋଦର,
ନମସ୍ତେ ରାମାଶ୍ରୟ ନନ୍ଦୀ ଯୋଗବିଦାମ୍ବର ।

ନମସ୍ତେ କପୀଶ ଜଗନ୍ନାଥ ଯୋଗତତ୍ପର,
ନମସ୍ତେ କୁଶଳ ଜମଦଗ୍ନିଜ ଦିଗମ୍ବର ।୯୬ ।
ନମସ୍ତେ ଭୃଙ୍ଗୀ ଚଣ୍ଡୀ ସର୍ବାବାସ ହ୍ରସ୍ୱନାଶ,
ନମସ୍ତେ କୈବଲ୍ୟ ପନ୍ନଗୋରଗ ବାନରେଶ ।
ନମସ୍ତେ ଦିବ୍ୟ ମେଘନାଦସଂହତ ରାକ୍ଷସ,
ନମସ୍ତେ ଗରୁଡ଼ ଗଣେଶ ଶେଷ ଅକଳ୍ମଷ ।୯୭ ।
ନମସ୍ତେ ବଜ୍ରଦଂଷ୍ଟ୍ର ନଖାୟୁଧ ଅଚଞ୍ଚଳ,
ନମସ୍ତେ ଦୁଃଖନାଶନ ମଣିଗ୍ରୀବ ଅସ୍ଥୁଳ ।
ନମସ୍ତେ ପାବନ ପବନ ଅଭ୍ୟାସ କୁଶଳ,
ନମସ୍ତେ ଭକ୍ତକାମଦୁକ ନମସ୍ତେ ନିଷ୍କଳ ।୯୮ ।
ନମସ୍ତେ ସ୍ୱସ୍ତିମାନ ପ୍ରେତବିଦ୍ରାବଣଯମ,
ନମସ୍ତେ ବଜ୍ରାଙ୍ଗ ଶରଣ ସତ୍ୟପରାକ୍ରମ ।
ନମସ୍ତେ ଭାସ୍କର ସ୍ୱସ୍ତିଦ ଅନନ୍ତ ବିକ୍ରମ,
ନମସ୍ତେ ନାନାଚେଷ୍ଟା ସ୍ୱସ୍ତିମାନ ପ୍ଲବଙ୍ଗମ ।୯୯ ।
ନମସ୍ତେ ପବନାତ୍ମଜ କାନ୍ତା ଅଘନାଶନ,
ନମସ୍ତେ ସତାଂଗତି ଗର୍ବପର୍ବତଭେଦନ ।
ନମସ୍ତେ ଅନଶ୍ୱ ବାୟୁବଂଶୋଦ୍ଭବ ତପନ,
ନମସ୍ତେ ଅଞ୍ଜନାପ୍ରାଣଲିଙ୍ଗ ଶୁଭ ଜୀବନ ।୧୦୦ ।
ନମସ୍ତେ ବିନୀତାତ୍ମା ସତ୍ୟଗର୍ଭ ସୁଧୀ ଶୂଳୀ,
ନମସ୍ତେ ପ୍ରକଟୀକୃତ ବିକ୍ରମ ରୁଦ୍ର ମୌଳି ।
ନମସ୍ତେ ମୈନାକ ବନ୍ଦିତ ଯୋଗାତ୍ମା ମେଖଳୀ,
ନମସ୍ତେ ଭଦ୍ରରୂପ ରୁଦ୍ରରୂପ ବନମାଳୀ ।୧୦୧ ।
ନମସ୍ତେ କାନ୍ତିଦଂମଣ୍ଡଳ ଜୟ ଶୀତିକଣ୍ଠ,
ନମସ୍ତେ ଫାଲ୍ଗୁନୀ ସୁନୁ ସତ୍ୟହେତୁ ଲମ୍ବୋଷ୍ଠ ।
ନମସ୍ତେ ସତ୍ୟଦ ଅନଘଶାସନ ଶ୍ରୀକଣ୍ଠ,
ନମସ୍ତେ ଅବ୍ୟଗ୍ର ସୂକ୍ଷ୍ମଦର୍ଶନ କମ୍ବୁକଣ୍ଠ ।୧୦୨ ।
ନମସ୍ତେ ଅମିତଶର୍ମା ଭର୍ଗ ସାମଗାୟକ,
ଶାକିନୀ ଡାକିନୀ ଯକ୍ଷରକ୍ଷ ଭୁତ ଭଞ୍ଜକ ।
ନମସ୍ତେ ଅକ୍ଷର ଅଷ୍ଟାଙ୍ଗ ଯୋଗଫଳଭୁକ୍,
ନମସ୍ତେ ଯୋଗକର୍ତ୍ତା ଶୁରସେନାବିଦାରକ ।୧୦୩ ।
ନମସ୍ତେ ବେଦପାରଗ ଯୋଗବିଦ୍ ଖଣ୍ଡଳ,
ନମସ୍ତେ ଯୋଗ ଯୋନି ଶିଖାଧର ଧର୍ମପାଳ ।

ନମସ୍ତେ ବିପଶ୍ଚିତକବି ଅନନ୍ତ ମଙ୍ଗଳ,
ନମସ୍ତେ ଶ୍ଳିଷ୍ଟଜଙ୍ଘ ଶ୍ଳିଷ୍ଟଜାନୁ ଅନାକୁଳ ।୧୦୪ ।
ନମସ୍ତେ ବହୁଯୋଜନ ବିସ୍ତୀର୍ଣ୍ଣ ପୁଚ୍ଛ କ୍ଷର,
ନମସ୍ତେ ଭକ୍ତବତ୍ସଳ ସୁରେଶ୍ୱର ଅକ୍ଷର ।
ନମସ୍ତେ ଅମୋଘ ସେତୁକୃତ ସତ୍ୟଗୋଚର,
ନମସ୍ତେ ରାମସାରଥି ଆଧ୍ୟାତ୍ମ୍ୟ ବିଦ୍ୟାସାଗର ।୧୦୫ ।
ନମସ୍ତେ ରାମସେବକ ସଙ୍କର୍ଷଣ କମ୍ପନ,
ନମସ୍ତେ ଭକ୍ତ ସିଦ୍ଧି ଦାତା ଭକ୍ତାଘ ସହନ ।
ନମସ୍ତେ ସୁଗ୍ରୀବାଦି ସ୍ତୁତ ସଂସୃତି ନାଶନ,
ନମସ୍ତେ ନଖଯୁଦ୍ଧ ବିଶାରଦ ସ୍ୱସ୍ତିମାନ ।୧୦୬ ।
ନମସ୍ତେ ନାଗକନ୍ୟା ଭୟଧ୍ୱଂସୀ କର୍ମାଧ୍ୟକ୍ଷ,
ନମସ୍ତେ ବୀତରାଗ ସ୍ତୁତିପ୍ରିୟ ସୁରାଧ୍ୟକ୍ଷ ।
ନମସ୍ତେ ପୁରୁଷ ପ୍ରସନ୍ନାତ୍ମା ପୁଣ୍ଡରୀକାକ୍ଷ,
ନମସ୍ତେ ଉଲୁଖଳମୁଖ ଦୃଢ଼ ଧର୍ମାଧ୍ୟକ୍ଷ ।୧୦୭ ।
ନମସ୍ତେ ହରିରୁଦ୍ରାନୁସେକ ଅସୁରାରାତି,
ନମସ୍ତେ ଉଲୁଖଳମୁଖ ଜିଷ୍ଣୁ ବିଦ୍ୟାରାତ୍ରି ।
ନମସ୍ତେ ସୁଶର୍ମା ଲୋକନାଥ ଜଗତୀପତି,
ନମସ୍ତେ କମ୍ପନ କିଲ୍କିଳ ରାବହତାରାତି ।୧୦୮ ।
ନମସ୍ତେ ଭବୋପାୟ ଭକ୍ତବଜ୍ରନିବାରକ,
ନମସ୍ତେ ଭବିଷ୍ଣୁ ଅନପାୟ ସଂନାୟକ ।
ନମସ୍ତେ ପ୍ରମୋଦ ଆନନ୍ଦ ଚିତ୍ରରୂପଧୃକ୍,
ନମସ୍ତେ ଲୋକନାଥ ଭକ୍ତତାପ ନିବାରକ ।୧୦୯ ।
ନମସ୍ତେ ହରିରୁଦ୍ରାନୁସେକ ଗୁଣପ୍ରବାହ,
ଅକାରାଦି ହକାରାନ୍ତ ବର୍ଣ୍ଣ କୃତ ବିଗ୍ରହ ।
ନମସ୍ତେ ରୋଚିଷ୍ଣୁ ଗ୍ରସିଷ୍ଣୁ ଆନନ୍ଦ ବିଗ୍ରହ,
ନମସ୍ତେ କପାଳଭୃତ ଭୂମିକମ୍ପନ ସିଂହ ।୧୧୦ ।
ନମସ୍ତେ ରଂଜନଧ୍ୱଜ ଜିଷ୍ଣୁ ପ୍ରମଥେଶ୍ୱର,
ନମସ୍ତେ ରକ୍ତବର୍ଣ୍ଣ ନବଦ୍ୱାର ପୁରାଧାର ।
ନମସ୍ତେ ସୂତ୍ରାତ୍ମା ମାନଦ ପଞ୍ଚାକ୍ଷର ପର,
ନମସ୍ତେ ଋକ୍ଷ ପ୍ରଭୁ ସପ୍ତଦ୍ୱୀପପତିନ୍ଧର ।୧୧୧ ।
ନମସ୍ତେ ଶ୍ଳିଷ୍ଟପାଣି ସତ୍ୟସନ୍ଧ କାମଗତି,
ନମସ୍ତେ ଶ୍ମଶାନସ୍ଥାନନିଳୟ ଜ୍ଞାନମୂର୍ତ୍ତି ।

ନମସ୍ତେ ପ୍ରତ୍ୟଗ୍ର ଶତ୍ରୁଘ୍ନ ତ୍ରିମାର୍ଗବସତି,
ନମସ୍ତେ ଯୋଗିନୀବୃନ୍ଦ ବନ୍ଦ୍ୟଶ୍ରୀ ସ୍ଥାଣୁ ଶକ୍ତି ।୧୧୨ ।
ନମସ୍ତେ ବ୍ରହ୍ମଚାରୀ ଧୃତଦଣ୍ଡ ପୁରୁଷ୍ଟୁତ,
ନମସ୍ତେ ସଦାଚାର ବୃଦ୍ଧିମଦ ଫଳହସ୍ତ ।
ନମସ୍ତେ ମାନଦ ଇନ୍ଦ୍ରିୟରିପୁ ସଦ୍ୟୋଜାତ,
ନମସ୍ତେ ଭକ୍ତାଭୟ ପ୍ରଦାୟକ ବିଷ୍ଣୁଭକ୍ତ ।୧୧୩ ।
ନମସ୍ତେ ସର୍ବବିତ୍ ସଂସାର ଭୟନାଶନ,
ନମସ୍ତେ ଡମ୍ବରୁପ୍ରିୟ ନନ୍ଦୀ ପ୍ରିୟ ଶ୍ରୀମାନ ।
ନମସ୍ତେ ଅନନ୍ତ ଉତ୍ତମ ସହସ୍ର ବଦନ,
ନମସ୍ତେ ସର୍ବକର୍ମ ଫଳପ୍ରଦ ସୁରେଶାନ ।୧୧୪ ।
ନମସ୍ତେ ପଞ୍ଚବିଂଶତି ତତ୍ତ୍ୱଙ୍କ ଦଶାତ୍ମକ,
ନମସ୍ତେ ସ୍ୱଲୋକାଭୟକୃତ ପଞ୍ଚମାତୃକ ।
ନମସ୍ତେ ବିରୂପ ଷଟଚକ୍ରଚାମ ନାରକ,
ନମସ୍ତେ ଅଷ୍ଟମୂର୍ତ୍ତି ନୟୋପେତ କାମଧୁକ୍ ।୧୧୫ ।
ନମସ୍ତେ ଧୂମକେତୁ ଧର୍ମ ସର୍ବବଶ୍ୟକର,
ନମସ୍ତେ ଅର୍ଥଦ ଧର୍ମପଦ ବ୍ରହ୍ମତପ୍ର ।
ନମସ୍ତେ ଈଶ୍ୱର ତାରକ ଗର୍ଜନ୍ନିଶାଚର,
ନମସ୍ତେ ସର୍ବଲକ୍ଷ୍ମୀପ୍ରଦ ରକ୍ତାମ୍ବରଧର ।୧୧୬ ।
ନମସ୍ତେ ମହାକେତୁ ସତ୍ୟକେତୁ ଶର୍ବ ଶ୍ରୀତ,
ନମସ୍ତେ ଫଳଭୁକ୍ ମହାରଥ ଧନ୍ୱୀ ଶ୍ୱେତ ।
ନମସ୍ତେ ଅଜୟ ପରିବାର ଜୟ ଈଡ଼ିତ,
ନମସ୍ତେ ଚତୁର୍ନବତିମନ୍ତ୍ରଙ୍କ ସର୍ବବିତ୍ ।୧୧୭ ।
ନମସ୍ତେ ଲୌହାଙ୍ଗ ଉର୍ଜସ୍ୱାନ ସୁରସୁନ୍ଦର,
ନମସ୍ତେ ଶମ୍ଭୁତେଜା ସାର୍ବଭୌମ ଶ୍ୱେତାମ୍ବର ।
ନମସ୍ତେ ଶୁଭାଙ୍ଗ ପ୍ଲବଙ୍ଗମ ଶ୍ରୀପରିବାର,
ନମସ୍ତେ ବିଭୁଷଣ ରକ୍ତମାଲ୍ୟ ଯଶସ୍କର ।୧୧୮ ।
ନମସ୍ତେ କପି ନମସ୍ତେ ସ୍ମୃତିବିଜ ନମସ୍ତେ,
ନମସ୍ତେ ଜୟ ନମସ୍ତେ ପ୍ରଭୁ ଯୁବା ନମସ୍ତେ ।
ନମସ୍ତେ ସ୍ୱତନ୍ତ୍ର ରୁଦ୍ର ଭୀମ ରକ୍ତ ନମସ୍ତେ,
ନମସ୍ତେ ଅଞ୍ଜନା ନନ୍ଦନ କ୍ଷମାକର ମୋତେ ।୧୧୯ ।
କରୁଣା ମୟ ଭକ୍ତରାଜ କୃପାକର ବାରେ,
ନିଜ ଉଦଣ୍ଡତାର ଦଣ୍ଡ ମିଳିଲାଣି ମୋରେ ।

ସୁଦୟା କରିଣ କରୁଣା ବରଷ ମୋ ପରେ,
ପୁଚ୍ଛ ବନ୍ଧନୁ ମୁକାଳି କ୍ଷମ କ୍ଷମା ଗୁଣରେ ।୧୨୦।
ଶନିଙ୍କର ସ୍ତୁତିରେ ଶାନ୍ତ ହୋଇ ହନୁମାନ,
ଦୌଡ଼ ତେଜି ଦୟା ମୂର୍ତ୍ତି ହେଲେ ଦଣ୍ଡାୟମାନ ।
ଅସହ୍ୟ ପୀଡ଼ାରେ ଗ୍ରସିତ ଚଣ୍ଡାଂଶୁ ନନ୍ଦନ,
କ୍ଷମାକର ବୋଲି ଆତୁରେ କରିଲେ ନିବେଦନ ।୧୨୧।
ବିନୀତାତ୍ମା ସମୀରାତ୍ମଜ ବୋଇଲେ ଶନିରେ,
ବଚନ ଦେବ ନ ଆସିବ ମୋ ଭକ୍ତ ରାଶିରେ ।
ବନ୍ଧନୁ ମୁକ୍ତି ମୁଁ ଦେବି ତେବେ ଏହି ସର୍ତ୍ତରେ,
ନ କଲେ ଏସନ ଦଣ୍ଡିବି କଠୋର ଦଣ୍ଡରେ ।୧୨୨।
ଆତୁରେ ସବିତା ଆତ୍ମଜ ବିକଳେ ବୋଲଇ,
ମୁକ୍ତି ଦିଅ ତୁମ ଭକ୍ତେ କେବେ ଚାହିଁବି ନାହିଁ ।
ଶରଣ ପଶୁଛି ଚରଣେ ନାଥ କ୍ଷମା ଦେଇ,
ରକ୍ଷାକର ରକ୍ଷାକର ମୋର ବନ୍ଧନ ଫେଇ ।୧୨୩।
ଶରଣାଗତବତ୍ସଳ ପ୍ରଭୁ ବାତ କୁମର,
ସାମାନ୍ୟ ଶିଥିଳ କରିଲେ ବନ୍ଧନ ପୁଚ୍ଛର ।
କଠୋର ବନ୍ଧନୁ ମୁକ୍ତି ଲଭି ଶନିଶ୍ଚର,
ମାରୁତି ଚରଣେ ନମେ ଶ୍ରଦ୍ଧାରେ ବାରବାର ।୧୨୪।
ବୋଇଲା ଗଦ୍ଗଦେ ଚନ୍ଦ୍ରାର୍କ ଥିବା ଯାଏ ବିଶ୍ୱେ,
ଗାଇବ ଯେ ସହସ୍ରନାମ ଭକ୍ତ ମନ ହର୍ଷେ ।
ପୂଜୁଥିବ ନାଥ ତୁମ୍ଭଙ୍କୁ ସଂସାରେ ବିଶ୍ୱାସେ,
ନ ଚାହିଁବି କେବେ ନ ଯିବି ତା'ର ରାଶି ପାର୍ଶ୍ୱେ ।୧୨୫।
ପ୍ରଣମି ପୁଣି ସ୍ୱପଥେ ଚଳିଲେ ଶନିଶ୍ଚର,
ଚତୁଚତ୍ୱାରିଂଶ ଛାନ୍ଦ ବର୍ଣ୍ଣନ ଏପ୍ରକାର ।
ଭକ୍ତି ରସେ ହେଇଲା ଶେଷ ଘେନ ଧୀର ନର,
ଭଣଇ ସୁରେଶ କହିଲେ ଯେହ୍ନେ ହନୁବୀର ।୧୨୬।



# ପଞ୍ଚଚତ୍ୱାରିଂଶ ଛାନ୍ଦ

ରାଗ-କେଦାର ଚକ୍ରକେଳୀ

(ଶ୍ରୀକ୍ଷେତ୍ରରେ ହନୁମାନଙ୍କ ଲୀଳା)

ଗୌରୀ ନନ୍ଦନ ବିଘ୍ନ ବିନାଶନ,
ଚରଣ ଦୁଇ କରୁଛି ବନ୍ଦନ ।
ବାତ କୁମର ଶ୍ରୀରାମ ଭକତ,
ଯୁଗଳ ପଦେ କରି ପ୍ରଣିପାତ ।୧ ।
ମାଗି ଆଶିଷ ମାରୁତି ଚରିତ,
ବର୍ଣ୍ଣନ ଅର୍ଥେ ବଳାଇଛି ଚିତ୍ତ ।
ଭକତି ରସ ଘେନିବେ ସୁମନେ,
କରୁଣା କରି ପଦ କୁହ କର୍ଣ୍ଣେ ।୨ ।
ସୁଜନେ ଶୁଣ ଶୁଦ୍ଧ ସୁଧା ରସ,
ମର୍ତ୍ତ୍ୟ ବୈକୁଣ୍ଠେ ପ୍ରଭୁ ନୀଳାଦ୍ରୀଶ ।
ସୃଷ୍ଟି ପ୍ରାରମ୍ଭୁ ଉଭା ହୋଇ ହରି,
ମାନବ ଲୀଳା ଅଛନ୍ତି ଆଚରି ।୩ ।
ମଳୟଗିରି ପରେ ହନୁମାନ,
ନିଶ୍ଚିନ୍ତେ ବସି କରୁଛନ୍ତି ଧ୍ୟାନ ।
ପ୍ରଭୁ ସ୍ମରିଲେ ପହଞ୍ଚି ତତ୍‌କ୍ଷଣ,
କଳାଠାକୁର ସେବାରେ ନିମଗ୍ନ ।୪ ।
ହୋଇ ଦେଖନ୍ତି ବ୍ୟବସ୍ଥା ସମସ୍ତ,
ସୁଖ ସୁବିଧା ହେବନ୍ତେ ଅବାଧିତ ।
ଶ୍ରୀମନ୍ଦିରରେ ବିଭିନ୍ନ ରୂପରେ
ଥାଇ ସେବନ୍ତି ଶ୍ରୀପତି ପୟରେ ।୫ ।
ପ୍ରଭୁ ଶ୍ରୀହସ୍ତେ ପାଏ ବୋଲି ଶୋଭା,
କରଇ ବୋଲି ପ୍ରଭୁ କାର୍ଯ୍ୟ ନିର୍ଭା ।
ପ୍ରଭୁଙ୍କ ଅଙ୍ଗ ରକ୍ଷୀ ସୁଦର୍ଶନ,
ସୁରକ୍ଷା ଦିଏ ନାଥେ ପ୍ରତିକ୍ଷଣ ।୬ ।
ଭାବଇ ମନେ ମୋହୁଁ ବଳିୟାର,
ନାହିଁ ସଂସାରେ ଏସନ କେ ବୀର ।
ଜାଣି ତାହାର ମନେ ଅହଂକାର,
ଗର୍ବଗଞ୍ଜନ କାଳିଆ ଠାକୁର ।୭ ।

ଗର୍ବ ତା ହରଣ କରିବା ପାଇଁ,
ହୃଦରେ ଉପାୟ ନେଇ ଏକଇ ।
ଶ୍ରୀକ୍ଷେତ୍ରାଧିପ ନୀଳାଚଳ ଈଶ,
ଦିନେ ଡାକିଲେ ଚକ୍ରରାଜ ପାଶ ।୮ ।
ବୋଇଲେ ତୁମ୍ଭେ ତ୍ୱରିତେ ଏକ୍ଷଣି,
ଡକାଇ ଆଣ ଶୀଘ୍ର ଭକ୍ତମଣି ।
ମଳୟ ଗିରି ପରେ ହନୁମାନ,
ଅଛନ୍ତି ସୁଖେ କରି ଯୋଗ ଧ୍ୟାନ ।୯ ।
ବହୁତ କାଳୁ ଭକତ ମୋହର,
ଆସି ନାହାନ୍ତି ଏଥେ ଶ୍ରୀମନ୍ଦିର ।
ଦେଖିନାହିଁ ମୁଁ ମୋର ପ୍ରିୟଭକ୍ତ,
କହିବ ସ୍ମରୁଛନ୍ତି ଜଗନ୍ନାଥ ।୧୦ ।
ନିର୍ଦ୍ଦେଶ ପ୍ରାପ୍ତେ ଚକ୍ର ସୁଦର୍ଶନ,
ତକ୍ଷଣେ ଚଳିଲେ ମଳୟ ବନ ।
ଦେଖିଲେ ବାତ ସୁତ କରିଧ୍ୟାନ,
ନାମ ଜପରେ ଅଛନ୍ତି ମଗନ ।୧୧ ।
ରାମାନନ୍ଦି ତିଳକ ଦେହେ ଶୋହେ,
ଧିର ସମୀର ସୁଶୀତଳ ବହେ ।
ଶ୍ରୀରାମ ନାମ ସୁମଧୁର ସ୍ୱରେ,
କଣ୍ଠୁ ଶୁଭଇ ସୁତାଳ ଲୟରେ ।୧୨ ।
ହସ୍ତେ ବାଜଇ ତାଳ ଦିବ୍ୟ ତାଳେ,
ପୁଚ୍ଛ ନାଚଇ ତା'ର ତାଳେ ତାଳେ ।
ପୁଚ୍ଛରେ ବନ୍ଧା ଘଣ୍ଟି ଟିଣିଟିଣି,
ବାଜି ସୃଷ୍ଟଇ ନୈସର୍ଗିକ ଧ୍ୱନି ।୧୩ ।
ଦୋଳାୟମାନ ସମଗ୍ର ଶରୀର,
ତରୁ ଯେସନ ବହିଲେ ସମୀର ।
ମୁଖ ମଣ୍ଡଳୁ ଝରେ ଦିବ୍ୟ ଆଭା,
ଅପୂର୍ବ ଶାନ୍ତି ଆଚ୍ଛାଦିତ ଶୋଭା ।୧୪ ।
ତନ୍ମୟ ହୋଇ ବନ୍ୟଜନ୍ତୁ ସର୍ବେ,
ଝୁମୁ ଅଛନ୍ତି ବାଳେ ଯେହ୍ନେ ପର୍ବେ ।
ଚକ୍ର ତନ୍ମୟେ ରହିଲେ ଅନାଇ,
ପ୍ରଭୁ ନିର୍ଦ୍ଦେଶ ବିସ୍ମରଣ ହୋଇ ।୧୫ ।

ଏମନ୍ତେ କିଛି କାଳ ହେଲା ଗତ,
ଫେରି ବାସ୍ତବେ ପାଇଣ ସଂବିତ ।
ବୋଲଇ ଚକ୍ର କରି ଦଣ୍ଡବତ,
ପ୍ରଭୁ ଆଜ୍ଞାରେ ଭୋ ମରୁତ ସୁତ ।୧୬ ।
ଏତେ ଆସିଛି ତୁମ୍ଭ ସନ୍ନିଧାନ,
ସଚରାଚର ଚଉଦ ଭୁବନ ।
ପାଳନ କର୍ତ୍ତା ଜଗତର ନାଥ,
ଜଗତ ଚିନ୍ତେ ଯା'ର ରୂପ ମାଥ ।୧୭ ।
ଶ୍ରୀକ୍ଷେତ୍ରାଧିପ ନୀଳଶୈଳବାସୀ,
ସ୍ମରି ଅଛନ୍ତି ଅଞ୍ଜନାର ଶିଶି ।
ତତ୍କ୍ଷଣେ ସନ୍ନିଧାନେ ଉପସ୍ଥିତ,
ହେବା ଇଚ୍ଛନ୍ତି ଅମ୍ବୁଜାଙ୍କ କାନ୍ତ ।୧୮ ।
ଶୁଣି ମାରୁତି ଉଠିଣ ଝଟତି,
ବୋଇଲେ ଚାଲ ପହଞ୍ଚୁଛି କତି ।
ତହିଁ ହୋଇବି ବିଳମ୍ବ ନ କରି,
ଆଗରେ ଚଳ ଆହେ ବେଗ ଧାରି ।୧୯ ।
ପହଞ୍ଚିବି ମୁଁ ତତ୍କ୍ଷଣେ ତ୍ୱରିତେ,
ଭେଟିବି ପ୍ରଭୁ କାଳିଆ ସାଆନ୍ତେ ।
ମର୍ତ୍ତ୍ୟ ବୈକୁଣ୍ଠେ ମୋ କୋଦଣ୍ଡଧାରୀ,
ବିଜେ ଛନ୍ତି ଦାରବ ତନୁ ଧରି ।୨୦ ।
ମାନୁଷୀ ଲୀଳା ଆଚରି ମହୀରେ,
ଲୀଳା କରନ୍ତି ଭକତ ସାଥିରେ ।
ଭକତ ବନ୍ଧୁ ପତିତପାବନ,
ଭକତ ପ୍ରାଣ ଭକତ ଜୀବନ ।୨୧ ।
ଆଗେ ଚଳିଲେ ଚକ୍ର ସୁଦର୍ଶନ,
ପଛରେ ଭକ୍ତ ରାଜ ହନୁମାନ ।
ଅହଂକାରରେ ଅତିକ୍ଷୀପ୍ର ବେଗେ,
ମିଳି ଶ୍ରୀକ୍ଷେତ୍ରେ ଜଗି ଚାରି ଦିଗେ ।୨୨ ।
ଶ୍ରୀମନ୍ଦିରକୁ ରୁନ୍ଧିଲେ ସତ୍ୱର,
ତୀବ୍ର ଗତିରେ ଚଳି ଚାରି ଦ୍ୱାର ।
ପହଞ୍ଚି ସିଂହ ଦ୍ୱାରେ ହନୁମାନ,
ପ୍ରବେଶ ଅର୍ଥେ ବଳାବନ୍ତେ ମନ ।୨୩ ।

ମହାତେଜସ୍ୱୀ ଚକ୍ର ସୁଦର୍ଶନ,
ଦେଖିଲେ ଓଗାଳି ଅଛି ପଥେଣ ।
ତହୁଁ ଉତ୍ତର ଦ୍ୱାରେ ଗଲେ ଚଳି
ସେଠି ବି ଦେଖିଲେ ଜଗିଛି ବଳୀ ।୨୪ ।
ଚାରିଦ୍ୱାରରେ ଦେଖି ସୁଦର୍ଶନ,
କ୍ଷଣେ ଚିନ୍ତିଲେ ଅଞ୍ଜନା ନନ୍ଦନ ।
ପ୍ରଭୁ ଦର୍ଶନେ ଏ ଚକ୍ର ବାଧକ,
ଗର୍ବାହଂକାରେ ସାଜିଛି କଣ୍ଟକ ।୨୫ ।
କ୍ଷଣେ ରହିଣ ସ୍ମରି ଜଗନ୍ନାଥ,
ସୃଷ୍ଟିଲେ ଆଉ ଛଅଗୋଟି ହସ୍ତ ।
ଚାରି ଦ୍ୱାରରୁ ଚାରି ଚକ୍ର ହସ୍ତେ,
ଧରି ପ୍ରବେଶ ହୋଇଲେ ତୁରିତେ ।୨୬ ।
ଦୁଇ ହସ୍ତରେ କରିଲେ ପ୍ରଣାମ,
ଅନ୍ୟଦୁଇଟିରେ ଜପନ୍ତି ନାମ ।
ରତ୍ନବେଦୀରେ ଜଗତର ନାଥ,
ସମ୍ମୁଖେ ଯାଇ କଲେ ଦଣ୍ଡବତ ।୨୭ ।
ମାରୁତିର ଏ ଅପୂର୍ବ ବେଶ,
ଦର୍ଶନେ ହେଲେ ପ୍ରୀତ ପୀତବାସ ।
ବୋଇଲେ ହନୁ ମାନ ହସ୍ତେ ଚାରି,
କିସ ଧରିଛ କୁହ ହେ ତୁମ୍ଭରି ।୨୮ ।
ଚାରି ହସ୍ତରୁ ଚକ୍ର ମୁକ୍ତ କରି,
ବୋଲେ ମାରୁତି ଘଟଣା ବିସ୍ତାରି ।
ଧର୍ମ ଅର୍ଥ ମୋକ୍ଷ କାମ ଦୁଆର,
ରୁନ୍ଧି କିପରି ଥିଲେ ଚକ୍ରବୀର ।୨୯ ।
ପ୍ରଭୁ ଦର୍ଶନେ ବାଧା ଉପୁଜାଇ,
ଶ୍ରୀମନ୍ଦିରକୁ ନ ଦେଲେ ପୁରାଇ ।
ବିଳମ୍ବ ଜାଣି ଅଷ୍ଟ ଭୁଜ ହୋଇ,
ଧରି ଆସିଲି ସମ୍ମୁଖେ ହେ ସାଇଁ ।୩୦ ।
ଲଜ୍ଜା ପାଇଣ ଚକ୍ର ସୁଦର୍ଶନ,
କାଷ୍ଠ ଗଡ଼ି ପ୍ରାୟ ତଳେ ପଡ଼ିଣ ।
ଗର୍ବାହଂକାର ପାଇଁ ମାଗି କ୍ଷମା,
ବୋଲେ କ୍ଷମାକର ଆହେ ମହିମା ।୩୧ ।

ପ୍ରଭୁ ବୋଇଲେ ମର୍ତ୍ତ୍ୟ ବୈକୁଣ୍ଠରେ,
ଶୋଭା ପାଇବ ନାହିଁ ମୋ ହସ୍ତରେ
ଏ କ୍ଷେତ୍ରେ ନିର୍ଭୟେ ରହିବେ ଭକ୍ତେ,
ପତିତପାବନ ଅର୍ଥେ ଏ କ୍ଷେତ୍ରେ ।୩୨ ।
ଯେଣୁ ବିଜୟ କରିଅଛୁ ଆମ୍ଭେ,
ଶସ୍ତ୍ରରୂପକୁ ପରିହର ତୁମ୍ଭେ ।
ନ ରହିବ ତୁମ୍ଭ ଶସ୍ତ୍ର ସ୍ୱରୂପ,
ରହିବ ବାମେ ଧରି ସ୍ୱୟଂ ରୂପ ।୩୩ ।
ବାତ ନନ୍ଦନେ ନୀଳଶୈଳପତି,
ବୋଇଲେ ଧନ୍ୟ ତୁମ୍ଭ ମତି ।
ମୋକ୍ଷ ଦ୍ୱାର ମୋକ୍ଷ ପ୍ରଦ ସାକ୍ଷାତ,
ଦେଉଛି ତା'ର ସୁରକ୍ଷା ଦାୟିତ୍ୱ ।୩୪ ।
ତପଶ୍ଚର୍ଯ୍ୟା ନିମନ୍ତେ ଶ୍ରେଷ୍ଠ ସ୍ଥାନ,
ତପ ସାଧିବ କରି ଅବସ୍ଥାନ ।
ଅଷ୍ଟଭୁଜ ଚକ୍ରି ସ୍ୱରୂପ ଧରି,
ନୀଳଶୈଳ ଜଗି ଥିବ ମୋହରି ।୩୫ ।
ସମୀରାତ୍ମଜ ଆନନ୍ଦ ଗଦ୍ଗଦେ,
ଉତ୍ତର ଦ୍ୱାରେ ରହି ମହାନନ୍ଦେ ।
ଅଭକ୍ତେ ଭୟ ଅଭୟ ଭକତେ,
ପ୍ରଦାନ କରି ତାନ୍ତି ତୁରିତେ ।୩୬ ।
ପ୍ରଭୁଙ୍କ କାର୍ଯ୍ୟରେ ସଦା ତତ୍ପର,
ନମିଲେ ନାଶ ପାଏ ଅହଂକାର ।
ଭକ୍ତି ପ୍ଳାବିତ ହୃଦୟେ ହୁଅଇ,
ସଂସାର ଜ୍ୱାଳା ଯାଏ ଲୋପ ପାଇ ।୩୭ ।
ଭକତ ଜନେ ଏଣେ ଦିଅ ମନ,
ଶ୍ରୀକ୍ଷେତ୍ରେ ବାୟୁ ସୁତ ହନୁମାନ ।
ଯେ ନାମେ ଯେ ସ୍ଥାନେ ଯେପରି ଥାଇ,
ପ୍ରଭୁଙ୍କ ପଦ ଯୁଗଳକୁ ଧାୟୀ ।୩୮ ।
ସେହି ଚରିତ ମାରୁତି ଆଖ୍ୟାନ,
ତାଙ୍କ କୃପାରେ ହୋଇବ ବର୍ଣ୍ଣନ ।
ଭକତ ଶ୍ରେଷ୍ଠ ଅନନ୍ୟ ଭକତି,
ଜାଣିବ ଭକ୍ତି ରସେ ଦେଲେ ମତି ।୩୯ ।

ପ୍ରଭୁଙ୍କ ପ୍ରିୟା ମାତା ଲକ୍ଷ୍ମୀ ପିତା,
ସାଗର ରାଜା ବରୁଣ ଦେବତା ।
ଦିବସରାତି କରଇ ଗର୍ଜନ,
ପହୁଡ଼େ ବାଧା କରଇ ଉତ୍ପନ୍ନ ।୪୦ ।
ଭକ୍ତାର୍ତ୍ତି ଶୁଣି ସମସ୍ତ ଦିବସ,
ବଡ଼ ସିଂହାର ବେଶେ ନୀଳାଦ୍ରୀଶ ।
ନିଶ୍ଚିନ୍ତରେ କରିବାକୁ ଶୟନ,
ପହୁଡ଼ କରାନ୍ତି ସେବକ ଗଣ ।୪୧ ।
ଭିତର ଗାଉଣୀ କରିଣ ନୃତ୍ୟ,
ଶୁଣାଏ ଗୀତ ଗୋବିନ୍ଦ ଚରିତ ।
ଏକାନ୍ତ ନୀତି ମହାଲକ୍ଷ୍ମୀ ସାଥେ,
ରଚନ୍ତି ମୋଦେ ପ୍ରଭୁ ଜଗନ୍ନାଥେ ।୪୨ ।
ନିଶାର୍ଦ୍ଧେ ଗର୍ଜେ ସ୍ୱଭାବେ ଶଶୁର,
ପ୍ରତି ନିଶାରେ ଶବଦ ତାହାର ।
ପ୍ରଭୁ ନିଦ୍ରାରେ କଲାରୁ ବ୍ୟାଘାତ,
ପ୍ରଭୁ ହୋଇଲେ ଅତୀବ ବିରକ୍ତ ।୪୩ ।
କି କହିବେ ବା ପ୍ରିୟା ଜନ୍ମଦାତା,
ସମ୍ମାନ ଯୋଗ୍ୟ ଯେହ୍ନେ ନିଜ ପିତା ।
ସ୍ମରଣ କରି ଭକ୍ତ ହନୁମାନେ,
ବୋଇଲେ ବାବୁ ଶୁଣ ସାବଧାନେ ।୪୪ ।
ଶ୍ୱଶୁର ମୋର ମହୋଦଧି ରାଜା,
ଅତି ଦୁଃଖ ଦେଉଛି ତା ଗରଜା ।
ଗର୍ଜନେ ତା'ର ନିଦ୍ରା ନ ଆସଇ,
ଉପାୟ କର ବାବୁ ଧ୍ୟାନ ଦେଇ ।୪୫ ।
ଆସିବ ନାହିଁ କର୍ଣ୍ଣକୁ ଶବଦ,
ଶ୍ରୀମନ୍ଦିରକୁ କର ନିସ୍ତବଦ ।
ମେଘ ପରାୟେ ସମୁଦ୍ର ଗର୍ଜନ,
ରୋକିବାର୍ଥେ ମେଘନାଦ ନିର୍ମାଣ ।୪୬ ।
ପ୍ରାଚୀର ସୁଦୃଢ଼େ କରିବା ଆଶେ
ଡକାଇଲେ ବିଶ୍ୱକର୍ମାଙ୍କୁ ପାଶେ
ଶବ୍ଦ ଅଭେଦୀ ସେହି ମେଘନାଦ
ଗଢ଼ିଲେ ନାଶନେ ଶବ୍ଦ ପ୍ରମାଦ ।୪୭ ।

କେଶରୀ ସୁତ ରହି କାନ ପାତି,
ସଜାଗେ ଜଗି ପୁନଶ୍ଚ ଶୁଣନ୍ତି ।
ଅର୍ଥଦ୍ୱାରରେ ଦିଅନ୍ତି ପ୍ରହରା,
କାଳେ ପ୍ରବେଶିବ ଶବ୍ଦ ଗମ୍ଭୀରା ।୪୭ ।
ଶବ୍ଦ ଆକର୍ଷୀ ଶ୍ରବଣ ପଥରେ,
ଶବ୍ଦଶୂନ୍ୟ କରନ୍ତି ଶ୍ରୀମନ୍ଦିରେ ।
ପ୍ରଭୁ ମନ୍ଦିରେ କରନ୍ତି ଶୟନ,
ପ୍ରଭୁ ଖୁସିରେ ସୁଖୀ ଅନୁମାନ ।୪୮ ।
ଅଞ୍ଜନୀ ସୁତ ସଙ୍କଟ ମୋଚନ,
କାନପତା ହନୁମାନ ରୂପେଣ ।
ବିରାଜି ପଶ୍ଚିମ ଦ୍ୱାରେ ଶ୍ରୀକ୍ଷେତ୍ରେ,
ଉଦ୍ଧାରନ୍ତି ଭକ୍ତ ଡାକିଲେ ଆର୍ତ୍ତେ ।୪୯ ।
ହୃଦୟେ ସ୍ମରି ଅଞ୍ଜନା କୁମର,
ପଞ୍ଚଚତ୍ୱାରିଂଶ ଅଧ୍ୟା ଏଠାର ।
ମୂଢ଼ ସୁରେଶ କରୁଛି ସମାପ୍ତ,
ଶ୍ରୀହନୁମାନ ଚରିତ ଅମୃତ ।୫୦ ।
ପ୍ରଭୁ ଚରଣେ ନମି ବାରମ୍ବାର,
ଗ୍ରନ୍ଥ ସମାପ୍ତ କରୁଛି ଏଠାର ।
କୃପାକର ହେ ସମୀର ନନ୍ଦନ,
ପଦେ ତୁମର ସଦା ଥାଉ ମନ ।୫୧ ।
ଭକ୍ତିହୀନ ଜ୍ଞାନ ହୀନ ଅଧମ,
ଖଣ୍ଡାୟତ କୁଳେ ମୋର ଜନମ ।
ପିତା ଗୋବିନ୍ଦ ମାତା ପଦ୍ମାଦେବୀ,
ଜନ୍ମୁ ଚିହ୍ନିଛି ମା ବ୍ରାହ୍ମଣୀ ଦେବୀ ।୫୨ ।
ଆସ୍ଥାନ ପାଶେ ଜନ୍ମି ହସିଖେଳି,
ଜଣାଇ ବଢ଼ିଛି ଅଳି ଅର୍ଦ୍ଦୋଳି ।
ଚାଲିବା କାଳୁ ଶ୍ରୀ ଦଧିବାମନ,
ନମିଛି ପାଦେ ପତିତପାବନ ।୫୩ ।
ସୀତା ବିଳାସ କବି ସତ୍ୟବାଦୀ,
ସାମନ୍ତରା ବଂଶୀ ଅଛି ପ୍ରସିଦ୍ଧି ।
ଖଲିବରାଢ଼ ଜ୍ୟେଷ୍ଠ ପିତା କୃତ,
ଚୌରାଅଶି ଛାନ୍ଦେ ମହାଭାରତ ।୫୪ ।

ଏ ଦୁଇ ବିଭୁତି ଜନ୍ମ ମୋ ଗ୍ରାମେ,
ଢେଣ୍ଡୁରା ବାଜେ ଏ ଦୁହିଁଙ୍କ ନାମେ ।
ପୋଡ଼ା ଶରଣକୁଳ ଗ୍ରାମ ମୋର,
ସମ୍ପ୍ରତି ନାମ ହରିହରପୁର ।୫୫ ।
ଶରଣକୁଳରେ ଲଡୁକେଶ୍ୱର,
ଲଡୁବାବା ପୀଠ ଉତ୍କଳେ ସାର,
ଇଷ୍ଟ ଦେବତା ସେ ନବ ଦୁର୍ଗର,
ହୃଦେ ବସିଛି ମୋ ରୂପ ତାଙ୍କର ।୫୬ ।
ଅବ୍ୟକ୍ତ ଲିଙ୍ଗ ରୂପ ଛତ୍ରାକାର,
ହରିହର ଦୁଇ ଏକ ଶରୀର ।
ଭଣ୍ଡାର ତଳେ କୁସୁମୀର କୂଳେ,
ଶରଣଦ୍ୟନ୍ତି ଡାକିଲେ ଆକୁଳେ ।୫୭ ।
ନୈସର୍ଗିକ ପୀଠ ପବିତ୍ର ସ୍ଥାନ,
ଏକ୍ଷେତ୍ରେ ଜନମି ଜୀବନ ଧନ୍ୟ ।
ଆରାଧ୍ୟ ରୂପେ ଶିବ ଅବତାର,
ଘେନିଛି ପ୍ରାଣେ ଅଞ୍ଜନା କୁମର ।୫୮ ।
ତାଙ୍କ ଚରିତ ଲେଖନୀର ମୁନେ,
ବର୍ଣ୍ଣିବା ଇଛା ପୋଷୀ ଥିଲି ମନେ ।
ଦୟାରୁ ତାଙ୍କ ଯଥା କଥା ଭାବେ,
ରୂପ ଦେଇଛି ସ୍ମରି ରୂପ ଭାବେ ।୫୯ ।
କାବ୍ୟ ପାଠ କରିନି ମୁଁ ଅଜ୍ଞାନ,
ଜାଣେନା କାବ୍ୟର ଗୁଣ ଲକ୍ଷଣ ।
ସୁଜନେ ଭକ୍ତି ରସରେ ଘେନିବ,
ଦୋଷ ଗୁଣ ଲୁପ୍ତେ ଭକ୍ତି ଦିଶିବ ।୬୦ ।





ସମାଜସେବୀ ମୁରାରୀ ତ୍ରିପାଠୀ ଜୀବନୀ ପୁସ୍ତକ ଉନ୍ମୋଚନ



ବିପ୍ଳବ ଶିଶୁ କବିତା ସଂଗ୍ରହ ପୁସ୍ତକ ଉନ୍ମୋଚନ

## କପିଳସଂହିତାର ଲୋକାର୍ପଣ

ପ୍ରଗତିବାଦୀ



ଲଡୁବାବା ସ୍ତୋତ୍ର ମାଳା ପୁସ୍ତକ ଉନ୍ମୋଚନ





କବି ତିଳକ ଡଃ ସୁରେଶ ଚନ୍ଦ୍ର ବରାଡ଼ ନୟାଗଡ଼ ଜିଲ୍ଲା ଅନ୍ତର୍ଗତ ଶରଣକୂଳ ନିକଟବର୍ତ୍ତୀ ହରିହରପୁର ଗ୍ରାମରେ ଏକ କୁଳୀନ ଖଣ୍ଡାୟତ ପରିବାରରେ ୧୯୬୮ ମସିହା ଜୁଲାଇ ୬ ତାରିଖରେ ପିତା ଗୋବିନ୍ଦ ବରାଡ଼ ଓ ମାତା ପଦ୍ମାଙ୍କର କୋଳ ମଣ୍ଡନ କରିଥିଲେ। ୧୯୭୩ ମସିହାରେ କରଡ଼ା ହରିହରପୁର ପ୍ରାଥମିକ ବିଦ୍ୟାଳୟରେ ବିଦ୍ୟାଧ୍ୟୟନ ଆରମ୍ଭ କରି ୧୯୭୮ ମସିହାରେ ନାରାୟଣ ଉଚ୍ଚ ବିଦ୍ୟାଳୟକୁ ଷଷ୍ଠ ଶ୍ରେଣୀରେ ଅଧ୍ୟୟନ ନିମନ୍ତେ ଗମନ କରିଥିଲେ। ୧୯୮୦ ମସିହାରେ ସପ୍ତମ ଶ୍ରେଣୀ ବୃତ୍ତି ପାଇ ସେହି ବିଦ୍ୟାଳୟରୁ ୧୯୮୩ ମସିହାରେ ପ୍ରଥମ ଶ୍ରେଣୀରେ ମେଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ସେହିବର୍ଷ ନୟାଗଡ଼ କଲେଜରେ ଉଚ୍ଚ ମାଧ୍ୟମିକ ଶ୍ରେଣୀରେ ବିଜ୍ଞାନ ବିଷୟ ରଖି ନାମ ଲେଖାଇଥିଲେ। ପରେ ସେଇଠି ପଦାର୍ଥ ବିଜ୍ଞାନ ସମ୍ମାନ ସହ୧୯୮୯ ମସିହାରେ ସ୍ନାତକ ଡ଼ିଗ୍ରୀ କୃତିତ୍ୱର ସହିତ ହାସଲ କରିଥିଲେ। ୧୯୯୪ ମସିହାରେ ଭଞ୍ଜ ବିହାର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅର୍ଥନୀତି ବିଷୟରେ ଓ ୨୦୨୦ରେ ଓଡ଼ିଶା ମୁକ୍ତ ବିଶ୍ୱବିଦ୍ୟାଳୟ, ସମ୍ବଲପୁରରୁ ଓଡ଼ିଆ ବିଷୟରେ ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରିଛନ୍ତି। ବିଜ୍ଞାନର ଛାତ୍ର ହୋଇଥିଲେ ମଧ୍ୟ ସେ ପଣ୍ଡିରିଡ଼ା ମାନପୁର ଉଚ୍ଚ ବିଦ୍ୟାଳୟରେ ୧୯୯୦ ମସିହାରୁ ତାଲିମପ୍ରାପ୍ତ ହିନ୍ଦୀ ଶିକ୍ଷକରୂପେ କାର୍ଯ୍ୟରତ ଓ ହିନ୍ଦୀ ସହିତ ବିଜ୍ଞାନ ତଥା ଗଣିତ ଅଧ୍ୟାପନାରେ ନିଯୁକ୍ତ ଅଛନ୍ତି। ସମୟାନୁବର୍ତ୍ତୀତା, ପରୋପକାରୀତା, ସଚ୍ଚୋଟତା, ନିୟମାନୁବର୍ତ୍ତୀତା ଓ ଛାତ୍ରବତ୍ସଳତା ପାଇଁ ସେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବେଶ୍ ପରିଚିତ। ଜଣେ ସମାଜସେବୀ, ଲେଖକ, କବି ଓ ଗବେଷକରୂପରେ ସମାଜରେ ସେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି। "ଗୁରୁକୁଳ ପବ୍ଲିଶିଙ୍ଗ୍ ହାଉସ୍,ଶରଣକୂଳ" ତାଙ୍କର ନିଜସ୍ୱ ପ୍ରକାଶନ ସଂସ୍ଥା। ତାଙ୍କ ଦ୍ୱାରା ରଚିତ "ମହିମାମୟ ଲକ୍ଷ୍ମୀବାବା", "ପୁରୁଷୋତ୍ତମ ସ୍ତବ", "ଲକ୍ଷ୍ମୀବାବା ବିଳାସ", ଶିଶୁକବିତା ପୁସ୍ତକ "ବିପ୍ଲବ" ଓ ସମ୍ପାଦିତ "ଲକ୍ଷ୍ମୀବାବା ଭଜନ ମାଳା", "ନୀଳାଚଳକ୍ଷେତ୍ର ମହାତ୍ମ୍ୟ(କପିଳସଂହିତା)",ଲକ୍ଷ୍ମୀବାବା ସ୍ତୋତ୍ର ମାଳା, ଝିଲି ମହାଭାରତ ପ୍ରକାଶିତ ହୋଇ ଭକ୍ତ ମହଲରେ ଉଚ୍ଚ ପ୍ରଶଂସିତ। ତାଙ୍କର ପ୍ରକାଶ ଅପେକ୍ଷାରେ ଥିବା ଅନ୍ୟ ରଚନା ଗୁଡ଼ିକ ହେଲା "ଶ୍ରୀଜଗନ୍ନାଥ ଜ୍ଞାନ ମଣ୍ଡଳ" ଓ "ଶ୍ରୀଜଗନ୍ନାଥଙ୍କ ବେଶ ପରଂପରା: ଏକ ଅଧ୍ୟୟନ", ।

